ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର କଥିତ

# ଇଷ୍ଟ ଏବଂ ଇଷ୍ଟାନୁସରଣ ପ୍ରସଙ୍ଗ

ସଂକଳକ

ଶ୍ରୀ ବିଦ୍ୟୁତ୍‌ରଞ୍ଜନ ଚକ୍ରବର୍ତ୍ତୀ

ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର କଥିତ

# ଇଷ୍ଟ ଏବଂ ଇଷ୍ଟାନୁସରଣ ପ୍ରସଙ୍ଗ

ସଂକଳକ

ଶ୍ରୀ ବିଦ୍ୟୁତ୍‌ରଞ୍ଜନ ଚକ୍ରବର୍ତ୍ତୀ

ପ୍ରକାଶକ :
ଚର୍ଯ୍ୟାଗ୍ରୀ ପ୍ରକାଶନ
'ଅଭିବାଦନ' ସତ୍ସଙ୍ଗ
ଦେଓଘର, ଝାଡ଼ଖଣ୍ଡ, ପିନ - ୮୧୪୧୧୬

ପରିବେଶକ :
ବିବେକ-ବିତାନ
ସତ୍ସଙ୍ଗ, ଦେଓଘର, ଝାଡ଼ଖଣ୍ଡ
ପିନ୍ - ୮୧୪ ୧୧୬

ପ୍ରଥମ ପ୍ରକାଶ : ବିଜୟା ଦଶମୀ ୧୪୧୨
ଦ୍ୱିତୀୟ ପ୍ରକାଶ : ନବବର୍ଷ ୧୪୨୪

ଅନୁବାଦକ :
ଶ୍ରୀ ସରୋଜକାନ୍ତ ଦତ୍ତ

ଦକ୍ଷିଣା : ୧୦୦ ଟଙ୍କା ମାତ୍ର (Rs. 100/- only)

ଜୟଗୁରୁ ଉଦ୍ୟୋଗ (ମୋ.9331804688) ଦ୍ୱାରା ଅକ୍ଷରସଜ୍ଜା ଏବଂ ସେଞ୍ଚୁରୀ ପ୍ରେସ୍, କୋଲକାତା-୭୦୦୦୦୯ ରୁ ମୁଦ୍ରିତ ।

# ନିବେଦନ

ପ୍ରିୟପରମ ଶ୍ରୀଶ୍ରୀଠାକୁରଙ୍କର ଆଶୀର୍ବାଦରୁ ଇଷ୍ଟ ଏବଂ ଇଷ୍ଟାନୁସରଣ ପ୍ରସଙ୍ଗରେ କହିବା ତାଙ୍କର କଥାଗୁଡ଼ିକର ସଂକଳନ କାର୍ଯ୍ୟ ସମାପ୍ତ ହେଲା ।

ଇଷ୍ଟ କଥାର ଅର୍ଥ ମଙ୍ଗଳ । ମଣିଷ ମାତ୍ରେହିଁ ନିଜ ମଙ୍ଗଳର ପିଆସୀ ଓ ପ୍ରୟାସୀ । କିନ୍ତୁ ସେହି ମଙ୍ଗଳ ରହିଥାଏ ତାର ଅଭ୍ୟସ୍ତ ସଂସ୍କାରର ଅନ୍ତରାଳରେ । ଏହି ଅଭ୍ୟସ୍ତ ସଂସ୍କାରର ଅନ୍ତରାଳରେ ଥିବା ମଣିଷର ଆକାଂକ୍ଷିତ ମଙ୍ଗଳ ତାକୁ ବାସ୍ତବରେ ମଙ୍ଗଳର ଅଧିକାରୀ କରେଇବା ପାଇଁ ଯୁଗେ ଯୁଗେ ନରବପୁ ଆଶ୍ରୟ କରି ପୁରୁଷୋତ୍ତମ ମହିମାରେ ବ୍ୟକ୍ତ ହୋଇଥାଆନ୍ତି । ସେହି ବ୍ୟକ୍ତ ପୁରୁଷହିଁ ଅବ୍ୟକ୍ତ ଈଶ୍ୱରଙ୍କର ବାସ୍ତବ ମୂର୍ତ୍ତି ଏବଂ ସେ ହିଁ ମଣିଷର ଇଷ୍ଟ-ମୂର୍ତ୍ତ ମଙ୍ଗଳ । ତାଙ୍କୁ ବିସର୍ତ ଅନୁସରଣର ମଧ୍ୟ ଦେଇହିଁ ମଣିଷ ପ୍ରକୃତ ମଙ୍ଗଳର ଅଧିକାରୀ ହୋଇପାରେ । ଅତ ତାଙ୍କୁ ଅନୁସରଣ କରିବା ମାନେ ତାଙ୍କର କଥାଗୁଡ଼ିକୁ ଅନୁସରଣ କରିବା, ତାଙ୍କର ନୀତି-ନିର୍ଦ୍ଦେଶର ବା ଅନୁଶାସନ-ବାକ୍ୟର ଅନୁସରଣ କରିବା । ଯେଉଁ ଅନୁଶାସନର ଅନୁରାଗ-ଉଚ୍ଛଳ, ସକ୍ରିୟ ଏବଂ ଅବିକୃତ ଅନୁସରଣରେ ମନୁଷ୍ୟର ବିଚ୍ଛିନ୍ନ ଜୀବନ ଓ ଜଗତର ସମସ୍ତ ବିରୋଧର ଚରମ ସମାଧାନ ହୁଏ, ମଣିଷ କାମକ୍ରୋଧ ଇତ୍ୟାଦି ପ୍ରବୃତ୍ତିକୁ ବଶ କରେଇ ଅଖଣ୍ଡ ବ୍ୟକ୍ତିତ୍ୱର ଅଧିକାରୀ ହୁଏ । ଏବଂ ଏହି ଅଖଣ୍ଡ ବ୍ୟକ୍ତିତ୍ୱରେ ପ୍ରତିଷ୍ଠିତ ବ୍ୟକ୍ତିହିଁ ହୋଇପାରେ ତାର ନିଜର, ନିଜ ପରିବାରର, ବ୍ୟଷ୍ଟିସହ ପରିବେଶର ସର୍ବବିଧ ମଙ୍ଗଳର ସାର୍ଥକ ଓ ସମର୍ଥ ହୋତା ।

ଏହିପରି ଇଷ୍ଟ-ପୁରୁଷ, ଗୁରୁ-ପୁରୁଷୋତ୍ତମହିଁ ଜଗତର ପ୍ରକୃତ ମଙ୍ଗଳାକାଂକ୍ଷୀ । ସେ ଯାହାକିଛି କହନ୍ତି ସବୁହିଁ ଇଷ୍ଟପ୍ରସଙ୍ଗ, ଇଷ୍ଟାନୁସରଣ ପ୍ରସଙ୍ଗ । ଏହି ସଂକଳନରେ ପରମଶ୍ରଦ୍ଧାସ୍ପଦ ଶ୍ରୀ ପ୍ରଫୁଲ୍ଲ କୁମାର ଦାସଙ୍କ ସଂକଳିତ ମହାଗ୍ରନ୍ଥ 'ଆଲୋଚନା ପ୍ରସଙ୍ଗ'ର ଏ ପର୍ଯ୍ୟନ୍ତ ପ୍ରକାଶିତ ବାଇଶ ଖଣ୍ଡରୁ ଇଷ୍ଟ ଏବଂ ଇଷ୍ଟାନୁସରଣ ପ୍ରସଙ୍ଗରେ ବିଭିନ୍ନ ଲୋକଙ୍କର ପ୍ରଶ୍ନର ଉତ୍ତରରେ ଶ୍ରୀଶ୍ରୀଠାକୁର ଯାହା କହିଛନ୍ତି ସେଥିରୁ କିଛି କଥା ସଂକଳିତ ହୋଇଛି । ଉତ୍ତର-ବୈଚିତ୍ର୍ୟ ଯୋଗୁଁ ଏକ ପ୍ରକାରର ଅନେକ ପ୍ରଶ୍ନ ସଚେତନ ଭାବରେ ରଖା ହୋଇଛି । ପ୍ରତ୍ୟେକ ପ୍ରଶ୍ନୋତ୍ତର ଶେଷରେ ଆଲୋଚନା ପ୍ରସଙ୍ଗର (ଆ:ପ୍ର:) ଖଣ୍ଡସଂଖ୍ୟା, ତାରିଖ, ମାସ ଓ ସାଲ ଉଲ୍ଲିଖିତ ହୋଇଛି ଯାହାଦ୍ୱାରା ଆଗ୍ରହୀ ପାଠକ ପ୍ରୟୋଜନ ହେଲେ ମୂଳ ବହିର ସାହାଯ୍ୟ ନେଇ ପାରିବେ ।

ଆମ୍ଭମାନଙ୍କ ଜୀବନରେ ଇଷ୍ଟଙ୍କର ସ୍ଥାନ କେଉଁଠି, ତାଙ୍କ ସହିତ ଆମର ଯୋଗ କେତେ ଗଭୀର, ଇଷ୍ଟାନୁସରଣ ପାଇଁ ଆମେମାନେ କିପରି ହେବା ଉଚିତ, ପାରିପାର୍ଶ୍ୱିକ ପ୍ରତି

ଆମ୍ଭମାନଙ୍କର ସମ୍ବନ୍ଧହିଁ ବା କିପରି ହେବା ଦରକାର ଇତ୍ୟାଦି ସମ୍ବନ୍ଧରେ କେହି ଜଣେ ମଧ୍ୟ ଯଦି ଏହି ସଂକଳନ ମାଧ୍ୟମରେ ଅନୁପ୍ରାଣୀତ ହୁଅନ୍ତି–ମନେ କରିବି ପରିଶ୍ରମ ସାର୍ଥକ ହେଲା।

ପରିଶେଷରେ ପ୍ରାର୍ଥନା କରେଁ, ଆମ୍ଭ ମାନଙ୍କର ଜୀବନ ଇଷ୍ଟମୟ ହୋଇଉଠୁ। ଆମ୍ଭ ମାନଙ୍କ ଜୀବନରେ ଜନ୍ମଜନ୍ମାନ୍ତର ଧରି ସେହିଁ ପ୍ରଥମ ଓ ପ୍ରଧାନ ହୋଇ ରହନ୍ତୁ। 'ବନ୍ଦେପୁରୁଷୋତ୍ତମ୍'।

ଶ୍ରାବଣ ପୂର୍ଣ୍ଣିମା, ୧୪୧୨
ବିବେକ-ବିତାନ
ଇଷ୍ଟପଦାଶ୍ରୀତ, ସତ୍ସଙ୍ଗ, ଦେଓଘର

ବିନୀତ
**ଶ୍ରୀ ବିଦ୍ୟୁତ୍ ରଞ୍ଜନ ଚକ୍ରବର୍ତ୍ତୀ**

✦✦✦✦

**ଇଷ୍ଟେ ଏକନିଷ୍ଠତା**
**ନଷ୍ଟ କର ନାହିଁ,**
**ଧର୍ମ-ସାଧନାରେ ଜାର-ବୃତ୍ତି-ସମ୍ପନ୍ନ ହେବାକୁ ଯାଅ ନାହିଁ,**
**ସେଥିରେ କିନ୍ତୁ,**
**ଇତୋଭ୍ରଷ୍ଟସ୍ତତୋନଷ୍ଟତା ଅବଶ୍ୟମ୍ଭାବୀ....**

*ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର* (ଚର୍ଯ୍ୟାସୂକ୍ତ, ୧୬୨)

✦✦✦✦

'ରା'

ଇଷ୍ଟ ଏବଂ ଇଷ୍ଟାନୁସରଣ ପ୍ରସଙ୍ଗର ଓଡ଼ିଆ ସଂସ୍କରଣ ପ୍ରକାଶିତ ହେଲା। ଏହାକୁ ଓଡ଼ିଆ ଅନୁବାଦ କରିଛନ୍ତି ପରମ ପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କର ପୂତପବିତ୍ର ଅଧର୍ଯ୍ୟ ପାଞ୍ଝାପ୍ରାପ୍ତ ଶ୍ରୀ ସରୋଜକାନ୍ତ ଦତ୍ତ। ଶ୍ରୀମାନ୍ ସରୋଜର ସୁଦୀର୍ଘ ଇଷ୍ଟମୟ ଜୀବନ ପ୍ରାର୍ଥନା କରୁଛି।

ଇଷ୍ଟାନୁସରଣ ପ୍ରୟାସୀ ମଣିଷଙ୍କର ଏହି ସଂକଳନ କାର୍ଯ୍ୟରେ ଲାଗିଲେ ଉଭୟଙ୍କର ପରିଶ୍ରମ ସାର୍ଥକ ହେବ।

ବିନୀତ
ସଂକଳକ

ତା ୦୩/୧୦/୨୦୧୧ ରିଖ

**ଶ୍ରୀ ବିଦ୍ୟୁତ୍ ରଞ୍ଜନ ଚକ୍ରବର୍ତ୍ତୀ**

# ସୂଚିପତ୍ର

ତୁମର ଇଷ୍ଟ ଯିଏ

ଏକମାତ୍ର ତାଙ୍କୁହିଁ ଧାରଣ କର

ସର୍ବତୋଭାବରେ –

ଚଳନରେ, ଚରିତ୍ରରେ – କାୟମନୋବାକ୍ୟରେ, –

ତାହାହିଁ ତୁମର ଧର୍ମ;

ଯାହା – କିଛି କର, ତାହା କର ଏକମାତ୍ର

ତାଙ୍କରି ପାଇଁ –

ତାଙ୍କରି ପରିପୋଷଣରେ, ପରିବର୍ଦ୍ଧନରେ, ସେବାରେ –

ତାହାହିଁ ତୁମର କର୍ମ;

ଏକମାତ୍ର ତାଙ୍କଠାରେହିଁ ରୁହ –

ତାହା ସବୁରକମରେ – ସମ୍ବୋଧି ନେଇ –

ତାହାହିଁ ତୁମର ସତ୍ତା – ପରମପୁରୁଷାର୍ଥ।

ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର

(ଶାଶ୍ୱତୀ ଅଖଣ୍ଡ, ୨୯୪)

## ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କ କଥିତ

## – ଇଷ୍ଟ ଏବଂ ଇଷ୍ଟାନୁସରଣ ପ୍ରସଙ୍ଗ –

*ସଂକଳକ - ଶ୍ରୀଯୁକ୍ତ ବିଦ୍ୟୁତ୍ ରଞ୍ଜନ ଚକ୍ରବର୍ତ୍ତୀ*

**ପ୍ର. – ଇଷ୍ଟଙ୍କ ଦ୍ୱାରା ପରିଚାଳିତ ହେଲେ ମଣିଷର ହୁଏ କ'ଣ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଇଷ୍ଟଙ୍କ ଦ୍ୱାରା ଚାଳିତ ହେଲେ କେତେ କ'ଣ ଯେ ହୋଇପାରେ ତାହା କୁହାଯାଏ ନାହିଁ। ଇଷ୍ଟଙ୍କ ଉପରେ ଏକାନ୍ତ ଅନୁରକ୍ତି ରହିଲେ ମଣିଷ କର୍ମଫଳ ମଧ ଏଡ଼ାଇ ପାରେ।

ଆ.ପ୍ର. ୧ମ/ତା ୧୬.୬.୧୯୩୯

**ପ୍ର. – ଇଷ୍ଟାନୁସରଣ ପାଇଁ ମଣିଷ ମାତ୍ରେହିଁ ପ୍ରଧାନ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ମଣିଷ ମାତ୍ରେହିଁ ଯଜନ, ଯାଜନ, ଇଷ୍ଟଭୃତି ପ୍ରଧାନ କରଣୀୟ – ନିଜକୁ ସାଧନା କରିବାକୁ ହେବ। ତା ସହିତ ପାରିପାର୍ଶ୍ୱିକଙ୍କୁ ବୁଝାଇବାକୁ ହେବ, ଆଉ ଇଷ୍ଟ ଭରଣର ମଧଦେଇ ନିଜର ସର୍ବଶକ୍ତି ଇଷ୍ଟଙ୍କଠାରେ କେନ୍ଦ୍ରାୟିତ କରି ସତ୍ତାକୁ ଅଟୁଟ କରି ତୋଳିବାକୁ ହେବ।

ଆ.ପ୍ର. ୧/୯.୧୦.୧୯୩୯

**ପ୍ର. – ଇଷ୍ଟ ଏବଂ ଗୁରୁ କ'ଣ ଅଲଗା ?**

**ଶ୍ରୀଶ୍ରୀଠାକୁର** – ଯାହାହିଁ କରିବାକୁ ଯାଅ, ମୂଳରେ ରହିବା ଦରକାର ଗୁରୁଭକ୍ତି – ଯାହାଦ୍ୱାର ପ୍ରବୃତ୍ତି ନିଜ ଆୟତ୍ତରେ ରହେ, ସେବା ବୃତ୍ତି ସଜାଗ ହୋଇଉଠେ କାର୍ଯ୍ୟ ନିଖୁଣ ହୁଏ। ଏହି ଗୁରୁଭକ୍ତିରୁହିଁ ମଣିଷ ମଙ୍ଗଳର ଅଧିକାରୀ ହୁଏ। ତେଣୁ ଗୁରୁଙ୍କୁ ଇଷ୍ଟ କୁହାଯାଏ। ଇଷ୍ଟମାନେ ମଙ୍ଗଳ, ଅର୍ଥାତ୍ ଗୁରୁଙ୍କୁ ଅନୁସରଣ କରିଲେ ହିଁ ମଣିଷର ମଙ୍ଗଳ ହୁଏ। ଅଉ ଏହି ଅନୁସରଣର ପନ୍ଥାହିଁ ହେଉଛି-ଯଜନ, ଯାଜନ, ଇଷ୍ଟଭୃତି।

ଆ.ପ୍ର. ୧/୯.୧୦.୧୯୩୯

**ପ୍ର. – ଇଷ୍ଟାନୁସରଣରେ କ'ଣ ଦେଖିବାକୁ ବା ଜାଣିବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – ଅନ୍ୟମାନେ କିଏ କ'ଣ କଲେ - ଦେଖିବୁ ନାହିଁ, ନିଜ ଆଡ଼କୁ ଚାହିଁବୁ। ଆଉ ଜାଣିବୁ, ଯେତେ ସବୁ ବାଣୀ, ନିୟମ କାନୁନ ତା ଅନ୍ୟମାନଙ୍କ ପାଇଁ ନୁହେଁ, ତୋ ନିଜ ପାଇଁ – ତେଣୁ ନିଜକୁ ପ୍ରଥମେ ଠିକ୍ କରିବୁ। ଆ.ପ୍ର. ୧/୧୫.୧୦.୧୯୩୯

**ପ୍ର. – ଇଷ୍ଟ ନ ରହିଲେ କ'ଣ ହୁଏ ? ରହିଲେ ହିଁ ବା କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଗୁରୁ (ଇଷ୍ଟ) ନ ରହିଲେ ମଣିଷର balance (ସମତା) ଠିକ୍

ରହେ ନାହିଁ। ..... ହୋଇପାରେ ଜଣେ ମଣିଷ ସାମାନ୍ୟ, ନଗନ୍ୟ, କିନ୍ତୁ ଯଦି ଇଷ୍ଟଙ୍କଠାରେ ତାର ଟାଣ ଥାଏ ସେ ବଡ଼ ହେବ ହିଁ ହେବ। ଆଜି ଯେଉଁ ମଣିଷକୁ ଦେଖୁଛ ମିଟ୍‌ମିଟ କରି ଅନାଉଛି, ପରଦିନ ସେ ଯେ କେତେ ବଡ଼ ହୋଇ ଉଠିବ ତାହା କ'ଣ ତୁମେ କହିପାରିବ ? ମୂଳ ସମ୍ବଳ ଟିକକ ରହିଲେ ତାର ଉନ୍ନତି ଅବଶ୍ୟମ୍ଭାବୀ – ଏହି ଅନୁରାଗହିଁ ତାକୁ ଯୋଗ୍ୟତାରେ ଦିଗ୍‌ବିଜୟୀ କରି ତୋଳେ।

ଆ.ପ୍ର. ୧/୧୭.୧୦.୧୯୩୯

**ପ୍ର. – ଇଷ୍ଟାନୁସରଣରେ ଭବସାଗରର କମ୍ପାସ କାହାକୁ କୁହାଯାଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟ-ସ୍ୱାର୍ଥ ଓ ଇଷ୍ଟ ପ୍ରତିଷ୍ଠାହିଁ ହେଲା ଭବସାଗରର Compass (ଦିଗ ନିର୍ଣ୍ଣୟ ଯନ୍ତ୍ର), କ'ଣ କରଣୀୟ, ଏହାଦ୍ୱାରାହିଁ ମାପି ଠିକ୍ କରିବାକୁ ହେବ – ଏହାଛଡ଼ା ଆଉ କଥା ନାହିଁ – ଗୋଟିଏ ଯେପରି North Pole (ଉତ୍ତର ମେରୁ) ଆଉ ଗୋଟିଏ ଯେପରି South Pole (ଦକ୍ଷିଣ ମେରୁ)। କେବଳ ଇଷ୍ଟସ୍ୱାର୍ଥ ଦେଖିଲେହିଁ ହେବ ନାହିଁ। ତୁମେ ହୁଏତ ଦଶଲକ୍ଷ ଟଙ୍କା ଚୋରି କରି ଇଷ୍ଟ ସ୍ୱାର୍ଥ ସିଦ୍ଧ କରିପାର-କିନ୍ତୁ ସେଥିରେ ଲୋକେ କହିବେ ଯେ ଅମୁକ ଚୋରର ଗୁରୁ- ସେଥିରେ ଇଷ୍ଟସ୍ୱାର୍ଥ ସାଧନ ହୋଇପାରେ କିନ୍ତୁ ଇଷ୍ଟପ୍ରତିଷ୍ଠା ହେବ ନାହିଁ – ଏହି ଦିଗକୁ ଖିଆଲ ରଖିବାକୁ ହେବ।

ଆ.ପ୍ର. ୧/୧୭.୧୦.୧୯୩୯

**ପ୍ର. – ଇଷ୍ଟପ୍ରାଣତାର ରକମ ଭେଦ ଅଛି କି ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟପ୍ରାଣତା ତିନି ରକମର– ସବୁଠାରୁ ଭଲ ହେଲା Passion-pervading attachment (ବୃତ୍ତିଭେଦୀ ଅନୁରାଗ), ଯେ ବୃତ୍ତି ମୋର ଇଷ୍ଟଙ୍କୁ fulfil (ପରିପୂରଣ) କରେ ନାହିଁ, ତା ସହିତ ମୋର କୌଣସି ସମ୍ପର୍କ ନାହିଁ। ଆଉ ଯାହା କୌଣସି ନା କୌଣସି ଭାବରେ ଇଷ୍ଟଙ୍କୁ fulfil (ପରିପୂରଣ) କରେ, ସେ ସମ୍ବନ୍ଧରେ ମୋର କୌଣସି ପ୍ରଶ୍ନ ନାହିଁ – ତାହା ମୁଁ କରିବି ହିଁ। ଆଉ ଗୋଟିଏ ରକମ ହେଲା – Passion-compromising (ପ୍ରବୃତ୍ତି ସହିତ ଆପୋଷକାରୀ)। ମୋର complex (ପ୍ରବୃତ୍ତି) ସହିତ ଯେତେଟିକିଏ ଖାପ ଖାଏ, ଇଷ୍ଟଙ୍କୁ ସେତେ ଟିକକ follow (ଅନୁସରଣ) କରେ। ଆଉ ନିକୃଷ୍ଟ ହେଲା Passionate (ପ୍ରବୃତ୍ତି ମୁଖୀ) – ଏଠାରେ ଇଷ୍ଟଙ୍କୁ ମୋର ବୃତ୍ତିର fulfillment (ପୂରଣ) ପାଇଁ utilise (ବ୍ୟବହାର) କରେ – ଠାକୁର ମୁଁ ତୁମକୁ କେତେ ଭକ୍ତି କରେ, ଡାକେ, ଦିନରାତି କାନ୍ଦେ, ଠାକୁର, ଏହି ଝିଅଟି ସହିତ ଯଦି ମୋର ବାହାଘର କରାଇ ଦିଅ, ତାହେଲେ ତୁମେ ପ୍ରକୃତ ଠାକୁର, ତେବେ ତୁମକୁ ଭୋଗ ଦେବି ଇତ୍ୟାଦି।

ଆ.ପ୍ର. ୧/୧୯.୧୦.୧୯୩୯



**ପ୍ର. – ଇଷ୍ଟାନୁସରଣରେ କ'ଣ କାମ, କ୍ରୋଧକୁ କମାଇବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – କାମ, କ୍ରୋଧ କମାଇବାର କିଛି ପ୍ରୟୋଜନ ନାହିଁ, କେବଳମାତ୍ର ସେଗୁଡ଼ିକୁ ଇଷ୍ଟମୁଖୀ ନିୟନ୍ତ୍ରିତ କରିବାକୁ ହେବ – କାମ, କ୍ରୋଧ ଇତ୍ୟାଦି ମରିଗଲେ ଇଷ୍ଟଙ୍କର କାର୍ଯ୍ୟ କାହାଦେଇ କରିବ ?

ଆ.ପ୍ର. ୧/୭.୧୨.୧୯୩୯

**ପ୍ର. – ଇଷ୍ଟପ୍ରାଣ ହୋଇ ଧର୍ମ ପଥରେ ଚାଲିବାର ଚିହ୍ନ କ'ଣ ?**

**ଶ୍ରୀଶ୍ରୀଠାକୁର** – ଧର୍ମର ଗୋଟିଏ ଚିହ୍ନ ଅଛି – ପୂଜା ଅର୍ଚ୍ଚନା କରେ, ଭଗବାନଙ୍କୁ ଭଲପାଏ ଅଥଚ ମୋର ଦକ୍ଷତା, କ୍ଷିପ୍ରତା ବଢୁନାହିଁ, ପାରିପାର୍ଶ୍ୱିକ ସହିତ ମୁଁ ଉଚ୍ଛଳ ହୋଇ ଉଠୁନାହିଁ – ଏଥିରେ କିନ୍ତୁ ବୁଝିବାକୁ ହେବ, ମୋର ଚାଲିବାରେ ଗୋଳମାଳ ଅଛି। କେହି ଐଶ୍ୱର୍ଯ୍ୟ ଚାହୁଁ ବା ନ ଚାହୁଁ – ଇଷ୍ଟପ୍ରାଣ ହୋଇ ଚାଲିବାର ପଥରେ ଐଶ୍ୱର୍ଯ୍ୟତାକୁ ଆଲିଙ୍ଗନ କରିବହିଁ। ସେବା ସମ୍ଭୁତ ପ୍ରକୃତ ଐଶ୍ୱର୍ଯ୍ୟ ହେଲା ଗୋଟିଏ ନିଦର୍ଶନ ଯେ ସେ ଧର୍ମକୁ ଯଥାଯଥ ଆଚରଣ କରୁଛି।

ଆ.ପ୍ର. ୧/୭.୧୨.୧୯୩୯

**ପ୍ର. – ଇଷ୍ଟଙ୍କୁ କୌଣସି ଆକାଂକ୍ଷା ନେଇ ଭଲ ପାଇଲେ, କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – କୌଣସି ଗୋଟିଏ ସ୍ତର ବା ଅବସ୍ଥା ବା ଆର୍ଥିକ ଉନ୍ନତି ଲାଭ କରିବାର ଆକାଂକ୍ଷା ନେଇ ଯିଏ ଇଷ୍ଟଙ୍କୁ ଭଲପାଏ – ତାର କିଛିହିଁ ହୁଏ ନାହିଁ।

ଆ.ପ୍ର. ୧/୭. ୧୨.୧୯୩୯

**ପ୍ର. – ଇଷ୍ଟଙ୍କୁ ଭଲଲାଗିଗଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ମଣିଷ 'ଅନନ୍ୟଭାକ୍' ଅର୍ଥାତ୍ ଅନନ୍ୟ ଭଜନଶୀଳ ହୋଇ ହିଁ ଅଛି – ଇଷ୍ଟଙ୍କୁ ନେଇ 'ଅନନ୍ୟଭାକ୍' ହୋଇ ପାରିଲେ ହିଁ କାମ ସଫା। ତାଙ୍କୁ ଭଲ ଲାଗିଗଲେ ହିଁ ସବୁକିଛି ତଳେ ପଡ଼ିଯାଏ – ଯାଜନରେ ସେହି ତାଙ୍କ ପାଇଁ ତାଙ୍କୁ ଭଲ ପଇବା ସୃଷ୍ଟି ହୁଏ। ଯାଜନରେ brain ର(ମସ୍ତିଷ୍କର) ସବୁଗୁଡ଼ିକ sphere (ଦିଗ) active (ସକ୍ରିୟ) ହୋଇଉଠେ, କ୍ଷୁଦ୍ର-କ୍ଷୁଦ୍ର ବାସନାର knot ଓ obsession (ଗଣ୍ଠି ଓ ଅଭିଭୂତି) ଗୁଡ଼ିକ ଭାଙ୍ଗିଯାଏ, ଯଦି କିନା ମଣିଷ ନିରାଶୀ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହୋଇ ଯାଜନର ଆନନ୍ଦ ପାଇଁହିଁ ଯାଜନ କରି ଚାଲେ।

ଆ.ପ୍ର. ୧/୭.୧୨.୧୯୩୯

**ପ୍ର. – ଇଷ୍ଟଙ୍କ ପାଇଁ ଭିକ୍ଷା କଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କ ପାଇଁ ଭିକ୍ଷା ମଣିଷକୁ ଭିତରୁ ତିଆରି କରିତୋଳେ। ଇଷ୍ଟାର୍ଥେ ବିଧିମତ ଭିକ୍ଷା ମଣିଷକୁ ବଡ଼ କରିତୋଳେ, ପୁଣି ବୃତ୍ତିସ୍ୱାର୍ଥ-ପ୍ରଲୁବ୍ଧ ଭିକ୍ଷା ନର୍କକୁ ନେଇଯାଏ।

ଆ.ପ୍ର. ୧/୮.୧.୧୯୪୦

**ପ୍ର. – ଇଷ୍ଟାନୁସରଣରେ କାହାଙ୍କର ଧ୍ୟାନ କରିବାକୁ ହୁଏ ? ତାଙ୍କର ଅବର୍ତ୍ତମାନରେ କ'ଣ ହେବ ?**

**ଶ୍ରୀଶ୍ରୀଠାକୁର –** ଯୁଗାବତାରଙ୍କ ଛଡା ଅନ୍ୟ କେହି ଧେୟ ନୁହଁନ୍ତି । ଯୁଗାବତାରଙ୍କ ଅବର୍ତ୍ତମାନରେ ତାଙ୍କ ପ୍ରତି ଅଚ୍ୟୁତ-ଆନତିସମ୍ପନ୍ନ, ଛନ୍ଦାନୁବର୍ତ୍ତୀ, ଜୀବନବୃଦ୍ଧିଦ ଓ ଆଚରଣ-ସିଦ୍ଧ ତଦ୍‌ବଂଶଧର ଇଷ୍ଟ-ପ୍ରତୀକସ୍ୱରୂପ ରହିପାରନ୍ତି । ପରବର୍ତ୍ତୀ ଆସିଗଲେ ସେତେବେଳେ ସେହିଁ ହେବେ ଧେୟ । ଆ.ପ୍ର. ୧/୮.୧.୧୯୪୦

**ପ୍ର. – ଇଷ୍ଟସ୍ୱାର୍ଥୀ ହେଲେ କ'ଣ ହେବ ?**

**ଶ୍ରୀଶ୍ରୀଠାକୁର –** ମୁଁ ଯେତେ କଥାହିଁ କୁହେ ନା କାହିଁକି, ସାର କଥା ହେଲା, ଇଷ୍ଟସ୍ୱାର୍ଥୀ ହୁଅ – ଇଷ୍ଟସ୍ୱାର୍ଥୀ ହେଲେ ସବୁ ଗୋଳମାଳ ତୁଟିଯିବ । ମଣିଷ ସ୍ତ୍ରୀ ସ୍ୱାର୍ଥୀ ହୁଏ, ତା ପାଇଁ ହିଁ ଅର୍ଥସମସ୍ୟା, ରୋଗ, ମାଲିମକର୍ଦ୍ଦମା, ଅଶାନ୍ତି ଏବଂ ଅନ୍ୟାନ୍ୟ ଯେତେସବୁ ବିଭ୍ରାଟ । ମୁଁ ଯାହାର ସ୍ୱାର୍ଥ ହୁଏ, ମୋତେ ଯିଏ ଦିଏ ମୋ ପାଇଁ ଯିଏ କରେ, ତାର ଭଲହିଁ ହୁଏ, କିନ୍ତୁ ମଣିଷ ତାହା ବୁଝେ ନାହିଁ । ଆ.ପ୍ର. ୧/୨୭.୧.୧୯୪୦

**ପ୍ର. – ଇଷ୍ଟସ୍ୱାର୍ଥ ପ୍ରତିଷ୍ଠାରେ କିଭଳି ତୀବ୍ରତା ଥିବା ଦରକାର ?**

**ଶ୍ରୀଶ୍ରୀଠାକୁର –** ଏପରି ତୀବ୍ରତା ଥିବା ଦରକାର ଯେ, ସମସ୍ତଙ୍କୁ ଇଷ୍ଟାନତ ନ କଲା ପର୍ଯ୍ୟନ୍ତ କ୍ଷାନ୍ତ ହେବନାହିଁ, ଏଥିରେ ଚରମ ଦୁଃଖ ହେଉ, ନ ହେଲେ ହେଉ ଉନ୍ନତିର ଉନ୍ନତ ଶିଖର । ଯାହାର ଟାଣ ଯେତେ ଅମଳିନ, ସଂକଳ୍ପ ମଧ୍ୟ ତାର ସେତେ ପକ୍କା ।
ଆ.ପ୍ର. ୧/୪.୨.୧୯୪୦

**ପ୍ର. – ଇଷ୍ଟାନୁସରଣରେ କିଏ କେତେ ବଡ଼ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟସ୍ୱାର୍ଥ ପ୍ରତିଷ୍ଠାପନ୍ନ ହୋଇ ଯଜନ, ଯାଜନ, ଇଷ୍ଟଭୃତି କରିଚାଲିବାହିଁ ସବୁ; ଏହାର ଆଗ୍ରହ ଯାହାର ଯେତେ ବେଶୀ ଏବଂ ବୃତ୍ତି ଯାହାର ଯେତେ ନିୟନ୍ତ୍ରିତ – ସେହିଁ ସେତେ ବଡ଼ । ଯେଉଁମାନେ ବଡ଼ ହୋଇଛନ୍ତି ସେମାନେ କୌଣସି ନା କୌଣସି ପ୍ରକାରେହିଁ ଏହା କରିଛନ୍ତି । ଆ.ପ୍ର. ୧/୧୫.୭.୧୯୪୦

**ପ୍ର. – ଇଷ୍ଟାନୁସରଣରେ କେତେବେଳେ କଠିନ ବା କଷ୍ଟକର ବୋଧ ରହେ ନାହିଁ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟସ୍ୱାର୍ଥପ୍ରତିଷ୍ଠା ଯାହକୁ ନିଶା ପରି ପାଇ ବସେ, ତା ପାଖରେ କଠିନ ବୋଧ ରହେ ନାହିଁ । କଥା ତ ଏହି ଗୋଟିଏ – ତାଙ୍କର ସୁଖହିଁ ମୋର ସୁଖ, ତାଙ୍କର ସ୍ୱାର୍ଥହିଁ ମୋର ସ୍ୱାର୍ଥ । ମଣିଷ ନିଜର ସୁଖ-ସ୍ୱାଚ୍ଛନ୍ଦ୍ୟ, ସ୍ୱାର୍ଥ ପାଇଁ ଯେପରି କରେ, ଇଷ୍ଟଙ୍କ ପାଇଁ ସେହି ଠିକକ କରିବା – ଏହା ହାତୀ-ଘୋଡ଼ା କିଛି ନୁହେଁ, ଆଉ ଏହାଭିତରେ ତତ୍ତ୍ୱର ବିଷୟ ମଧ୍ୟ କିଛି ନାହିଁ । ଏହି ଝୋଁକଟା ଆସିଗଲେ ସେତେବେଳେ ମଣିଷ ସବୁପାରେ, ଆଉ ସେଥିରେ କଷ୍ଟର ବୋଧ ରହେ ନାହିଁ । ଆ.ପ୍ର. ୧/୧୮.୩.୧୯୪୧



**ପ୍ର. – ଇଷ୍ଟାନୁସରଣରେ ପ୍ରବୃତ୍ତି ବା ପସନ୍ଦର ମାପକାଠି କ'ଣ ?**

**ଶ୍ରୀଶ୍ରୀଠାକୁର –** ତୁମର ଏପରି କୌଣସି ପ୍ରବୃତ୍ତି ବା ପସନ୍ଦ ରହିବ ନାହିଁ ଯାହା ଶ୍ରେଷ୍ଠଙ୍କୁ ଅତିକ୍ରମ କରିଯାଏ, ଯାହା ତୁମେ ଶ୍ରେଷ୍ଠଙ୍କ ପାଇଁ quickly (ତ୍ୱରିତ ଭାବରେ), easily (ସହଜ ଭାବରେ) ଓ willingly sacrifice (ସ୍ୱେଚ୍ଛାରେ ତ୍ୟାଗ) କରି ନ ପାର । ଏହି ଇଷ୍ଟସ୍ୱାର୍ଥପରାୟଣତା – ସର୍ବତ୍ର ହିଁ ଏହି ଏକ କଥା, ତା'ଛଡ଼ା ଆଉ କଥା ନାହିଁ । ଗୀତାରେ ଯେଉଁ ଏତେ କଥା, ତାର ସାର ମଧ୍ୟ ଏହା । ଆ.ପ୍ର. ୧/୨୨.୩.୧୯୪୧

**ପ୍ର. – ଇଷ୍ଟାନୁସରଣରେ ଆହାରାଦିର କଷ୍ଟ କେତେବେଳେ ବାଧା ହୁଏ ନାହିଁ ?**

**ଶ୍ରୀଶ୍ରୀଠାକୁର –** ମନରେ ଯଦି ଇଷ୍ଟଙ୍କ ପାଇଁ ନିଶା ଥାଏ, ସମ୍ବେଗ ଥାଏ, ତେବେ ଅତି ଅଳ୍ପ ଆହାରରେ ହିଁ ମଣିଷ ଚଳି ଯାଇପାରେ, ଆଉ ସେଥିରେ ସେ ସୁସ୍ଥ ଓ କର୍ମଠ ଥାଏ । ଆଉ ଏହି ନିଶା ଯଦି କମ୍ ହୁଏ, ଭୋଗର ଦିଗକୁ ଯଦି ମନ ଯାଏ, ସେତେବେଳେ ଏହି ଭୋଗର ଉପକରଣ ଯେତେହିଁ ବଢୁ, କୌଣସିଟା ହିଁ ତାର ଦେହକୁ ଲାଗେ ନାହିଁ, ପ୍ରକୃତ ପୁଷ୍ଟି ଯୋଗାଏ ନାହିଁ, ବରଂ ଆଳସ୍ୟ, ଅବସାଦ, ରୋଗ-ଯନ୍ତ୍ରଣା-ହିଁ ବଢ଼ିବାକୁ ଲାଗେ । ଆ.ପ୍ର. ୧/୨୫.୩.୧୯୪୧

**ପ୍ର. – ଇଷ୍ଟଙ୍କର କାମ କରିବାକୁ ଯାଇ କଷ୍ଟ ବୋଧ ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର –** କାମ ଆବେଶରେ ସ୍ତ୍ରୀ ପୁରୁଷ/ଯେପରି କରନ୍ତି ଉପଭୋଗ, ଇଷ୍ଟକାର୍ଯ୍ୟରେ ବାସ୍ତବତାରେ/ସେପରି ହେଲେ ତେବେହିଁ ଯୋଗ । ଇଷ୍ଟଙ୍କର କାମ କରିବାକୁ ଯାଇ ଯଦି କଷ୍ଟ ବୋଧ ହୁଏ, ବୁଝିବାକୁ ହେବ କୌଣସି passion (ପ୍ରବୃତ୍ତି) unwilling (ଅନିଚ୍ଛୁକ) ଅଛି, uninterested (ଅନାଗ୍ରହୀ) ଅଛି – ପ୍ରକୃତ ଯୋଗ ହୋଇନାହିଁ; ଆଉ ପ୍ରକୃତରେ କାମର ନିଶା ପରି ଲାଗେ, କାମ-ଚକ୍ଷୁ ଗଜାଏ ।
ଆ.ପ୍ର. ୧/୭.୭.୧୯୪୧

**ପ୍ର. – ଇଷ୍ଟସ୍ୱାର୍ଥପ୍ରତିଷ୍ଠାରେ ଅନୁରାଗର ଲକ୍ଷଣ କ'ଣ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଦିଗକୁ interest (ଅନୁରାଗ) ଆସିଲେ ସେତେବେଳେ ଦୁଇଜଣ ଦେଖା ହେଲେହିଁ କଥା ଉଠିବ କିପରି ଭାବରେ consolidation (ସଂହତି) ଅଣାଯାଏ, କେଉଁଠାରେ କ'ଣ କରାଯାଏ ଇତ୍ୟାଦି । କୌଣସି ବୃତ୍ତିହିଁ

ସେତେବେଳେ prominent (ପ୍ରଧାନ) ହୋଇ ଉଠିପାରେ ନାହିଁ.... ଏପରି ନୁହେଁ ଯେ ପ୍ରବୃତ୍ତିଟା ନାହିଁ, ତାହା ପୂର୍ଣ୍ଣମାତ୍ରାରେ ଥାଏ, କିନ୍ତୁ ଆପଣ ତାର ଅଧୀନ ନୁହଁନ୍ତି – ବର ଆପଣଙ୍କର principle ଓ purpose (ଆଦର୍ଶ ଓ ଉଦ୍ଦେଶ୍ୟ) fulfill (ପରିପୂରଣ) କରିବା ପାଇଁ ନାନା ଭାବରେ ତାକୁ କାର୍ଯ୍ୟରେ ଲଗାନ୍ତି । ଆ.ପ୍ର. ୧/୧୩.୧୧.୧୯୪୧

**ପ୍ର. – ଇଷ୍ଟାନୁସରଣରେ ଛୋଟମୋଟ ବୃତ୍ତି କିପରି ବାଧା ସୃଷ୍ଟି କରେ ?**

**ଶ୍ରୀଶ୍ରୀଠାକୁର** – ଗୋଟାଏ ବଡ଼ magnet (ଚୁମ୍ବକ)ର ସମ୍ମୁଖରେ ଯଦି ଆଉ ଗୋଟିଏ ଛୋଟ magnet (ଚୁମ୍ବକ) ଥାଏ ଏବଂ ଦୂରରେ ଗୋଟିଏ needle (ଛୁଞ୍ଚ) ଥାଏ, needle (ଛୁଞ୍ଚଟା) ସହଜରେ ବଡ଼ magnetରେ (ଚୁମ୍ବକରେ) ଲାଗି ପାରେ ନାହିଁ। ଛୋଟମୋଟ ବୃତ୍ତି ମଧ୍ୟ ଇଷ୍ଟଙ୍କ ପଥରେ ଏହିପରି ବାଧା ଜନ୍ମାଏ। ଆ.ପ୍ର. ୧/୧୭.୧୧.୧୯୪୧

**ପ୍ର. – ଇଷ୍ଟଙ୍କର ପଥରେ ଚାଲିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ମଣିଷ ବୃତ୍ତି ଭିତର ଦେଇ ଚାଲି ଚାଲି ପ୍ରତି କ୍ଷେତ୍ରରେ ଠକିଥାଏ, ଜଗତ ଠାରୁ ଧକ୍କା ଖାଏ – ଅଥଚ ଇଷ୍ଟଙ୍କ ପଥରେ ଚାଲିଲେ ସବୁକିଛିରହିଁ ସାମଞ୍ଜସ୍ୟ ହୁଏ, ଏହି ସିଧାକଥାଟିକୁ ମଣିଷ ବୁଝେ ନାହିଁ। ସ୍ତ୍ରୀକୁ ମଣିଷ କେତେ ରକମରେ ଖୁସି କରିବାକୁ ଚେଷ୍ଟା କରେ, ତଥାପି ସେ ଖୁସି ହୁଏ ନାହିଁ। ପୁଣି ଯେଉଁ ସ୍ୱାମୀ ଇଷ୍ଟଙ୍କୁ ନେଇ ଆପ୍ରାଣ, ତା ସ୍ତ୍ରୀ ହୁଏତ ଗର୍ବରେ କହୁଛି – ଶିବଙ୍କ ପରି ସ୍ୱାମୀ ପାଇଛି।

ଆ.ପ୍ର. ୧/୧୮.୧୧.୧୯୪୧

**ପ୍ର. – ଇଷ୍ଟାନୁସରଣରେ ଅଦ୍ୱୈତ ଜ୍ଞାନ କ'ଣ ?**

**ଶ୍ରୀଶ୍ରୀଠାକୁର** – ରାମକୃଷ୍ଣ ଠାକୁର କହୁଥାନ୍ତି "ଅଦ୍ୱୈତ ଜ୍ଞାନ ଆଞ୍ଚଳରେ ବାନ୍ଧି ଯାହା ଖୁସି ତାହା କର" – ଇଷ୍ଟସ୍ୱାର୍ଥ ପ୍ରତିଷ୍ଠା ହେଲା ଏହି ଅଦ୍ୱୈତ ଜ୍ଞାନ।

ଆ.ପ୍ର. ୧/୧୮.୧୧.୧୯୪୧

**ପ୍ର. – ଇଷ୍ଟାନୁସରଣରେ କେଉଁମାନଙ୍କୁ ସନ୍ଦେହ କରିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ଯେଉଁମାନେ ଠାକୁରଙ୍କ ଦ୍ୱାରା କେତେଟା fulfilled (ପରିପୂରିତ) – ସେ କଥା ନ କହି ଠାକୁରଙ୍କୁ ସେମାନେ କେତେଟା fulfil (ପରିପୂରଣ) କରିଛନ୍ତି ସେଇଟାହିଁ ବେଶୀ କରି କୁହନ୍ତି, ସେମାନଙ୍କୁ ସନ୍ଦେହ କରିବାକୁ ହୁଏ।

ଆ.ପ୍ର. ୧/୨୧.୧୧.୧୯୪୧

**ପ୍ର. – ଇଷ୍ଟଙ୍କ ସମ୍ବନ୍ଧରେ ମନରେ କିପରି ଭାବ ଥିବା ଦରକାର ?**

**ଶ୍ରୀଶ୍ରୀଠାକୁର** – ଏହି ଭାବ ଦରକାର – ଇଷ୍ଟହିଁ ମୋର ସବୁ, ତାଙ୍କରି ପାଇଁହିଁ ବଞ୍ଚିଅଛି, ମୋର ଉନ୍ନତି କହିଲେ ବୁଝେ ତାଙ୍କର ଉନ୍ନତି, ତାଙ୍କର ସ୍ୱାର୍ଥ, ତାଙ୍କର ପ୍ରତିଷ୍ଠା, ଏହା ଯେତେଟା କରିପାରିଲି ସେତେଟାହିଁ ମୋର ଜୀବନର ସାର୍ଥକତା.... ସେହିପରି ଭଲପାଇବା ଯଦି ଥାଏ, ସେତେବେଳେ ତାଙ୍କ ଛଡ଼ା, ତାଙ୍କର ଭଲମନ୍ଦ ଛଡ଼ା, ତାଙ୍କର ସ୍ୱାର୍ଥପ୍ରତିଷ୍ଠା ଛଡ଼ା ଅଲଗା କୌଣସି ବୋଧହିଁ ରହେ ନାହିଁ।

ଆ.ପ୍ର. ୧/୨୧.୧୧.୧୯୪୧



**ପ୍ର. – ଇଷ୍ଟାନୁସରଣରେ କେଉଁଟିର ଦାମ ଅଛି ?**

**ଶ୍ରୀଶ୍ରୀଠାକୁର** – ପିଲାବେଳୁ ବୃତ୍ତିସ୍ୱାର୍ଥ ଓ ବୃତ୍ତିପ୍ରତିଷ୍ଠା ବଡ଼ ନ ହୋଇ ଯଦି ମା'ବାପାଙ୍କର ସ୍ୱାର୍ଥପ୍ରତିଷ୍ଠା ବଡ଼ ହୁଏ, ତେବେ ଘରେ-ଘରେ ଦୁର୍ଗା ଉତ୍ସବ ଲାଗିଯାଏ। ଅବଶ୍ୟ ମା' ବାପା ମଧ୍ୟ ଇଷ୍ଟପ୍ରାଣ ହେବା ଦରକାର। ଇଷ୍ଟପ୍ରାଣତାହିଁ ବସ୍ତୁ, ଆଉ କିଛିରହିଁ ଦାମ୍ ନାହିଁ। ଆ.ପ୍ର. ୧/୨୪.୧୧.୧୯୪୧

**ପ୍ର. – କାହା ଜୀବନରେ ଯଦି ଇଷ୍ଟ ନ ଥାନ୍ତି ?**

**ଶ୍ରୀଶ୍ରୀଠାକୁର** – Ideal (ଇଷ୍ଟ) ନ ରହିଲେ, ego (ଅହଂ) passion (ପ୍ରବୃତ୍ତି)ରେ rest କରେ (ଅନୁଗାମୀ ହୋଇଥାଏ), ego (ଅହଂ) ପ୍ରବୃତ୍ତି ଝୁଙ୍କା ହେଲେ ମଣିଷ whimsical (ଖାମଖିଆଲି) ହୁଏ, ସିଏ ଯେ କେତେବେଳେ କେଉଁ ଦିଗକୁ ଯିବ, କାହାକୁ କ'ଣ କରିବ ଆଉ ନିଜକୁ ବା କେଉଁ ଅବସ୍ଥା ମଧ୍ୟରେ ନେଇ ପକାଇବ ତାର ଠିକ୍ ନ ଥାଏ।

ଆ.ପ୍ର. ୧/୨୪.୧୧.୧୯୪୧

**ପ୍ର. – ଇଷ୍ଟଙ୍କଠାରେ ଯୁକ୍ତ ହେଲେ ମଣିଷ କିପରି ହୁଏ ?**

**ଶ୍ରୀଶ୍ରୀଠାକୁର** – ମଣିଷ Ideal (ଇଷ୍ଟ)ଙ୍କଠାରେ ଯୁକ୍ତ ହେଲେ wise (ପ୍ରଜ୍ଞାବାନ), sweet (ମଧୁର), grave (ଗମ୍ଭୀର) ଓ strong (ଶକ୍ତିମାନ) ହୁଏ, ତାର passion (ପ୍ରବୃତ୍ତି)-ଗୁଡ଼ିକ ମଧ୍ୟ ଏହି ଇଷ୍ଟଙ୍କରହିଁ ସେବା କରେ। ଇଷ୍ଟ ହେଲେ ଚିର ମଙ୍ଗଳମୟ, ସେଥିପାଇଁ ପ୍ରବୃତ୍ତିଗୁଡ଼ିକ ମଧ୍ୟ ସେତେବେଳେ ନିଜର ଓ ପରର ମଙ୍ଗଳ ଆବାହନ କରେ, ସେଗୁଡ଼ିକ ସେତେବେଳେ ଧର୍ମର ବାହକ ହୁଏ, ରିପୁ ହୋଇ ରହେ ନାହିଁ, ଆଉ ତାକୁ ଦମନ କରିବା ପାଇଁ କସରତ ମଧ୍ୟ କରିବାକୁ ହୁଏ ନାହିଁ।

ଆ.ପ୍ର. ୧/୨୪.୧୧.୧୯୪୧

**ପ୍ର. – ଇଷ୍ଟସ୍ୱାର୍ଥ, ଇଷ୍ଟପ୍ରତିଷ୍ଠା ବିଷୟରେ କିପରି ବୁଦ୍ଧି ରହିବା ଦରକାର ?**

**ଶ୍ରୀଶ୍ରୀଠାକୁର** – କେବଳ ନାମକୁ ମାତ୍ର ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠା କଲେ ଚଳିବ ନାହିଁ, ମଣିଷ ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠା ନେଇ ଘୂରେ, ତା ପଛରେ ମଧ୍ୟ ଅନେକ ସମୟରେ

ହୁଏତ କୌଣସି ଝିଅପିଲାର ବାହାବା ପାଇବା, ତାର ଦୃଷ୍ଟି ଆକର୍ଷଣ କରିବା ବା ନାମ କମେଇବାର ଉଦ୍ଦେଶ୍ୟ ଥାଏ। ସେଥିରେ ଯେ ବେଶୀ କିଛି ଫଳ ହୁଏ ତା ନୁହେଁ। ଏହି ବୁଦ୍ଧି ରହିବା ଦରକାର ଯେ, ମୋର ସବୁକିଛି ଦେଇ ତାଙ୍କୁହିଁ ଉପଚୟୀ କରିତୋଳିବି, ତାଙ୍କରି ପାଇଁ ତାଙ୍କୁ ଚାହିଁବି। ଯାହାର ଟିକିଏ ମନ ଅଛି, ଇଚ୍ଛା ଅଛି, ସେ ହିଁ ପାରେ।

ଆ.ପ୍ର. ୧/୨୪.୧୧.୧୯୪୧

**ପ୍ର. – ଇଷ୍ଟାନୁସରଣରେ କେତେବେଳେ ପ୍ରବୃତ୍ତିକୁ ଏଡ଼େଇ ରହିହୁଏ ?**

**ଶ୍ରୀଶ୍ରୀଠାକୁର** – Ideal (ଇଷ୍ଟ)ଙ୍କ ଉପରେ fanatically inclined (ଗଭୀର ଭାବରେ ଆନତ) ରହିଲେ ହିଁ passion (ପ୍ରବୃତ୍ତି)ର ହାତେ-ଚାଖଣ୍ଡେ ଉପରେ ରହିହୁଏ।

ଆ.ପ୍ର. ୧/୨୬.୧୧.୧୯୪୧

**ପ୍ର. – ଇଷ୍ଟାନୁସରଣ ଠିକ୍ ରହିଲେ ମଣିଷ ବିନଷ୍ଟ ହୋଇପାରେ ନାହିଁ କାହିଁକି ?**

**ଶ୍ରୀଶ୍ରୀଠାକୁର** – ମଣିଷ ବିନଷ୍ଟ ହୁଏ ପ୍ରବୃତ୍ତି ବଶ୍ୟତାରେ, କିନ୍ତୁ with all our passions (ସବୁ ପ୍ରବୃତ୍ତି ନେଇ) ଇଷ୍ଟଙ୍କଠାରେ interested (ଆଗ୍ରହୀ) ହେଲେ ବିନଷ୍ଟ ହେବାର ଉପାୟ ନାହିଁ। ବେଶ୍ୟାଳୟକୁ ଯିବା ସମୟରେ ବାପା, ମା', ସ୍ତ୍ରୀ କେତେ କହନ୍ତି, କାନ୍ଦନ୍ତି କିନ୍ତୁ ସେ ସବୁ କଥା ମଣିଷ ସେତେବେଳେ କ'ଣ ଶୁଣେ ? – ଏହିପରି with all our passions (ସବୁ ପ୍ରବୃତ୍ତି ନେଇ) ତାଙ୍କ ଠାରେ ଅଚ୍ଛେଦ୍ୟ ଭାବରେ ଚିରକାଳ ପାଇଁ interested (ଆଗ୍ରହୀ) ହେବା ଦରକାର, ତାହାଦ୍ୱାରା ବିନଷ୍ଟିର ମୂଳ ମରିଯାଏ, ବିନଷ୍ଟ ହେବ କିପରି ? ତାର ମାନେ ଏହାନୁହେଁ ଯେ, ତାର ଦୁଃଖ କଷ୍ଟ ରୋଗଶୋକ ମୃତ୍ୟୁ ହେବ ନାହିଁ। ଦୁଃଖ, କଷ୍ଟ, ରୋଗ, ଶୋକ ଆସିଲେ ମଧ୍ୟ ତାହାକୁ କିପରି ଭାବରେ ଶୁଭରେ ନିୟନ୍ତ୍ରଣ କରିବାକୁ ହେବ, ସେ ତାହା ଜାଣିଥାଏ। ସବୁ ଅବସ୍ଥାକୁହିଁ ସେତେବେଳେ ସେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ପରିପୋଷକ କରି ବିନ୍ୟସ୍ତ କରି ତୋଳେ। ସେତେବେଳେ କିଛିହିଁ ତାକୁ ଦବାଇ ପାରେ ନାହିଁ, ହଟେଇ ପାରେ ନାହିଁ, ସେ ନିରାଶ ହୁଏ ନାହିଁ, ହତାଶ ହୁଏ ନାହିଁ, କିଛିରେ ବି ସେ ହାଲ ଛାଡ଼େ ନାହିଁ।

ଆ.ପ୍ର. ୧/୨୯.୧୧.୧୯୪୧

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ଜୀବନରେ ଭକ୍ତିର ଜାଗରଣ ହେଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଭକ୍ତି ଯଦି ମଣିଷ ଜୀବନରେ ଥରେ ଜାଗ୍ରତ ହୁଏ, ସେ ଏପରି କର୍ମ କମ୍ ହିଁ କରେ ଯାହାଦ୍ୱାରା ନୂତନ କରି ଦୁର୍ଭୋଗର ଆମଦାନୀ ହୁଏ। ଆମର ସମସ୍ତ ଦୁର୍ଭୋଗର ମୂଳରେ ଅଛି ପ୍ରବୃତ୍ତି ଜନିତ କର୍ମ।

ଆ.ପ୍ର. ୧/୨୯.୧୧.୧୯୪୧



**ପ୍ର. – ଇଷ୍ଟକର୍ମରେ ଦୁଃଖ କଷ୍ଟ ମଧ୍ୟ କେତେବେଳେ ସୁଖର ମନେହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟକର୍ମ କରିବାକୁ ଯାଇ ମଣିଷର ଜୀବନରେ ଅନେକ ଦୁଃଖ-କଷ୍ଟ ଆସିପାରେ, କିନ୍ତୁ ଇଷ୍ଟପ୍ରୀତି ଯଦି ଥାଏ, ଏଗୁଡ଼ିକହିଁ ସେତେବେଳେ ସୁଖକର ମନେହୁଏ, ସେଗୁଡ଼ିକ ମନକୁ କଷ୍ଟ କରିପାରେ ନାହିଁ, କାରଣ ତାହା କରି ସତ୍ତା ପୁଷ୍ଟ ହେବା ଛଡ଼ା କ୍ଷୁର୍ଣ୍ଣ ହୁଏ ନାହିଁ। ଏହି ପଥରେ ଚାଲୁ ଚାଲୁ ସ୍ୱାଭାବିକ ଭାବରେ କାହାର ଯଦି ମୃତ୍ୟୁ ମଧ୍ୟ ହୁଏ, ସେଥିରେ ସେ ଉନ୍ନତତର ଜୀବନର ଅଧିକାରୀ ହୁଏ, ଏପରିକି ହୁଏତ ସ୍ମୃତିବାହୀ ଚେତନା ମଧ୍ୟ ଲାଭ କରିପାରେ। ସେଥିପାଇଁ, ଜୀବନର ପଥରେ ଆଗେଇ ଯିବାଛଡ଼ା ତା' କ୍ଷେତ୍ରରେ ପଛକୁ ହଟିଯିବାଟା ବା ନଷ୍ଟ ପାଇଯିବାର ସମ୍ଭାବନାହିଁ ରହେ ନାହିଁ। ପୁରୁଷୋତ୍ତମଙ୍କ ପ୍ରତି ଭକ୍ତିହିଁ ଏହି ସବୁ ସଙ୍ଗଠିତ କରି ତୋଳେ।

ଆ.ପ୍ର. ୧/୨୯.୧୧.୧୯୪୧

**ପ୍ର. – ଇଷ୍ଟଙ୍କ ପ୍ରତି ଟାଣ ନେଇ ଯଦି କାହାର ମୃତ୍ୟୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ଆପୂରୟମାଣ ଇଷ୍ଟଙ୍କ ଠାରେ ଯଦି କାହାର ପ୍ରକୃତ ଟାଣ ଜନ୍ମେ ଏବଂ ତାହା ନେଇ ଯଦି ସେ ବିଗତ ହୁଏ ତେବେ ସେ ମହାନ ଜୀବନ ଲାଭ କରିବହିଁ। ପୁଣି, ଏହି ଜୀବନରେ ଯିଏ ଯେତେହିଁ ପ୍ରତିଷ୍ଠିତ ବା ବିଖ୍ୟାତ ହେଉ ନା କାହିଁକି, ସେ ଯଦି ସୁକେନ୍ଦ୍ରିକ ନ ହୁଏ, ପ୍ରବୃତ୍ତିହିଁ ଯଦି ତାର ଜୀବନର ନିୟାମକ ହୁଏ, ତେବେ ଏହି ବିଚ୍ଛିନ୍ନ ବିକେନ୍ଦ୍ରିକତା ତାର ମୃତ୍ୟୁକାଳୀନ ଭାବଭୂମି ଓ ପରଜନ୍ମକୁ ଯେ ଅପଗତିରେ ଅପକୃଷ୍ଟ କରିତୋଳିବ, ସେଥିରେ ସନ୍ଦେହ କମହିଁ।

ଆ.ପ୍ର. ୧/୨୯.୧୧.୧୯୪୧

**ପ୍ର. – ଇଷ୍ଟନିଷ୍ଠ ହେଲେ ମଣିଷ କିପରି ହୁଏ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଇଷ୍ଟନିଷ୍ଠ ହେଲେ ଖୋଳପାବିହୀନ ତରବାରୀ ପରି ହୋଇଯାଏ, ସେତେବେଳେ ସେ କୌଣସି ପ୍ରକାରେ ଇଷ୍ଟବିରୋଧୀ ଦୁର୍ବଳତା ସହିତ compromise (ଆପୋଷରଫା) କରେ ନାହିଁ।

ଆ.ପ୍ର. ୧/୨୯.୧୧.୧୯୪୧

**ପ୍ର. – ଇଷ୍ଟଗ୍ରହଣର ପ୍ରୟୋଜନୀୟତା କେତେବେଳେ ସହଜରେ ବୁଝାଇ ଦିଆଯାଇ ପାରେ ?**

**ଶ୍ରୀଶ୍ରୀଠାକୁର** – ପ୍ରତିଟି ପଦକ୍ଷେପରେ ଶ୍ୱାସ-ପ୍ରଶ୍ୱାସରେ ତୁମେ ଯଦି ଇଷ୍ଟଙ୍କୁ ନେଇ ଚାଲ, ଇଷ୍ଟହିଁ ଯଦି ତୁମର ଯଥା ସର୍ବସ୍ୱ ହୋଇଉଠନ୍ତି, ସେତେବେଳେ ଯେ କୌଣସି ମଣିଷକୁ ତୁମେ କ୍ଷଣମାତ୍ରକେ ଇଷ୍ଟଗ୍ରହଣର ପ୍ରୟୋଜନୀୟତା ସହଜ ଭାବରେ ବୁଝାଇଦେଇ ପାରିବ, ସେତେବେଳେ ତା' ପାଇଁ ତୁମକୁ ଆଉ ଦର୍ଶନଶାସ୍ତ୍ର ଦେଖିବାକୁ (ଓଲଟିବାକୁ) ପଡ଼ିବ ନାହିଁ। ନିଜର ଜୀବନଟିକୁ ଇଷ୍ଟଙ୍କଠାରେ ଅଚ୍ୟୁତ, ସୁକେନ୍ଦ୍ରିକ ଓ ସୁବିନ୍ୟସ୍ତ କରି ତୋଳିବାକୁ ଯାଇ,

ନିଜକୁ ଅଧ୍ୟୟନ କରିବାକୁ ଯାଇ ତୁମେ ଯେଉଁ ବୋଧ, ବିବେଚନା, ଅନୁଭୂତି ଓ ନିୟମନ, କୁଶଳତା ଆୟତ୍ତ କରିବ, ତାହାରି ସାହାଯ୍ୟରେ ତୁମେ ସାରା ଦୁନିଆକୁ ବୋଧ କରିପାରିବ, ସୁନିୟନ୍ତ୍ରିତ କରି ତୋଳିପାରିବ, ତୁମର ଦର୍ଶନ ଅର୍ଥାତ୍ ଦେଖା ସେତେବେଳେ କେତେଜଣଙ୍କର ଆଖି ଖୋଲି ଦେବ।

ଆ.ପ୍ର. ୧/୩୦.୧୧.୧୯୪୧

**ପ୍ର. – ଇଷ୍ଟଙ୍କର ଯାଜନ କେତେବେଳେ ଫଳବତୀ ହେବ ?**

**ଶ୍ରୀଶ୍ରୀଠାକୁର** – ଏକଥା ନୁହେଁ ଯେ, perfect (ପୂର୍ଣ୍ଣ, ନିଖୁଣ) ହୋଇ ଯାଜନରେ ଓହ୍ଲାଇବାକୁ ହେବ। ଇଷ୍ଟମୁଖୀ ହୋଇ ଯଜନ, ଯାଜନ, ଇଷ୍ଟଭୃତି ତିନିଟି ହିଁ ଚଳାଇ ରଖିବା ଦରକାର। ଇଷ୍ଟଙ୍କୁ ଅବଲମ୍ବନ କରି ଯେତେହିଁ ଆମ୍ଭେମାନେ ଆତ୍ମନିୟନ୍ତ୍ରଣ-ତତ୍ପର ହେବୁଁ – ନିରନ୍ତର ସକ୍ରିୟତାରେ – ସେତେହିଁ ଆମର ଯାଜନ ଫଳବତୀ ହେବ, ସୂକ୍ଷ୍ମ ଆତ୍ମ ସମୀକ୍ଷାର ଭିତର ଦେଇ ପ୍ରତ୍ୟେକଙ୍କୁ ଯଥାଯଥ ଭାବରେ ନିରିକ୍ଷଣ କରିପାରିବୁ, ତେବେ ଯାଇ ଚାଲିବାଟା ବାସ୍ତବ-ଅଭିଜ୍ଞତାପ୍ରସୂତ ଓ ଯଥା ପ୍ରୟୋଜନ ହେବ। ତାହା ସହିତ ପୁଣି ରହିବ ଇଷ୍ଟସମ୍ବେଗ, ମଣିଷ ପ୍ରତି ଦରଦ, ସବୁଟା ମିଶି ତାହା ମଣିଷକୁ ବୋଧ ସନ୍ଦିପ୍ତ କରି ତୋଳିବ।

ଆ.ପ୍ର. ୧/୩୦.୧୧.୧୯୪୧

**ପ୍ର. – ଇଷ୍ଟହୀନ ଓ ଇଷ୍ଟନିଷ୍ଠ ଏହି ଦୁଇଟି ମଧ୍ୟରେ ପାର୍ଥକ୍ୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ବହୁଲୋକ ଏପରି ଅଛନ୍ତି, ଯେଉଁମାନଙ୍କର ପ୍ରକୃତିହିଁ ସେମାନଙ୍କୁ ସତ୍‌ରେ ଅନୁରକ୍ତ ହେବାକୁ ଦିଏ ନାହିଁ। ତଥାପି ଯେ ଯେପରିହିଁ ହେଉ, ଇଷ୍ଟହୀନ ବ୍ୟକ୍ତି ଯେତେ ପ୍ରତିଷ୍ଠିତ ବା ବିଖ୍ୟାତହିଁ ହେଉ ଇଷ୍ଟନିଷ୍ଠ ତୁମେ ତାର ଅନେକ ଉପରେ, ଏକଥା ସ୍ମରଣ ରଖିବାକୁ ଭୁଲ ନାହିଁ। ସେଥିପାଇଁ କାହା ସମ୍ବନ୍ଧରେ ଆଶା ବା ଚେଷ୍ଟା ଛାଡ଼ ନାହିଁ, ତୁମର ପାରଗତା ସମ୍ବନ୍ଧରେ ସନ୍ଦିହାନ ହୁଅ ନାହିଁ। ସେହି ପରମକାରୁଣିକ ପ୍ରାଣନ-ଦୀପନାରୂପରେ ସମସ୍ତଙ୍କର ଅନ୍ତରରେ ହିଁ ବିଦ୍ୟମାନ, କିଏ ଜାଣେ, କେଉଁ ମୁହୂର୍ତ୍ତରେ, କାହାର ଅନୁପ୍ରେରଣାରେ, କାହା ଭିତର ଦେଇ କାହା ଜୀବନରେ କି ପରିବର୍ତ୍ତନ ଅସିବ।

ଆ.ପ୍ର. ୧/୩୦.୧୧.୧୯୪୧

**ପ୍ର. – ଇଷ୍ଟାନୁରାଗ ଥିବା ସତ୍ତ୍ୱେ ମଧ୍ୟ ସଂହତି ଆସେ ନାହିଁ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କଠାରେ ଅନୁରାଗ ଥିବା ସତ୍ତ୍ୱେ ମଧ୍ୟ, ପ୍ରତ୍ୟେକଙ୍କର ପ୍ରବୃତ୍ତି ସଂଜାତ କେତେଗୁଡ଼ିଏ superstition (କୁସଂସ୍କାର) ଥାଏ, ସେ ସେଥିରେ isolated (ବିଚ୍ଛିନ୍ନ ସୀମାୟିତ) ହୋଇଥାଏ। ବୃତ୍ତିଭେଦୀଟାଣ ଯେତେ ସମୟ ଯାଏ ନ ହୁଏ, ସେତେ ସମୟ ପର୍ଯ୍ୟନ୍ତ ଏହି ଗଣ୍ଡି କାଟି ଇଷ୍ଟଙ୍କର ଚାହିଦାର ପରିପ୍ରେକ୍ଷୀରେ ସମସ୍ତଙ୍କୁ ନିଜର କରି



ନେଇ ପାରେ ନାହିଁ, ନିଜସ୍ୱ ସଂକୀର୍ଣ୍ଣ ଜଗତରେ ବାସ କରେ। କିନ୍ତୁ ଇଷ୍ଟଙ୍କ ପ୍ରତି ଟାଣ ହେଲେ ନିଜର ବୈଶିଷ୍ଟ୍ୟ ଅକ୍ଷୁର୍ଣ୍ଣ ରଖି ମଧ୍ୟ ସବୁ ବୈଶିଷ୍ଟ୍ୟଙ୍କୁ ଶ୍ରଦ୍ଧା କରିବାକୁ ଶିଖେ, ଭଲପାଇବାକୁ ଶିଖେ, ସମସ୍ତଙ୍କ ସହିତ ସଂଗତି ରଖି ଚାଲି... କୁ ଶିଖେ।

ଆ.ପ୍ର. ୧/୩୦.୧୧.୧୯୪୧

**ପ୍ର. – ଇଷ୍ଟଙ୍କ ରଙ୍ଗରେ ରଙ୍ଗିନ ହୋଇ ରହିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କ ରଙ୍ଗରେ ଯିଏ ଯେତେ ରଙ୍ଗୀନ ହୋଇ ରହିଥାଏ ସେ ସେତେ uncoloured (ରଙ୍ଗବିହୀନ) ଅବସ୍ଥାରେ ପ୍ରତ୍ୟେକଙ୍କୁ ପର୍ଯ୍ୟବେକ୍ଷଣ ଓ ଅନୁଧାବନ କରିପାରେ। ଅଧିକାଂଶ ଲୋକହିଁ ପ୍ରବୃତ୍ତିର ତାଳରେ ଚାଲନ୍ତି, ସେଥିପାଇଁ କୋଡ଼ିଏ ବର୍ଷ ଧରି ଯାହା ସହିତ ଏକତ୍ର ହୋଇ ଗୋଟିଏ ଘରେ ରହନ୍ତି, ହୁଏତ ତାର ମଧ୍ୟ ବୈଶିଷ୍ଟ୍ୟଟା ବୁଝନ୍ତି ନାହିଁ। ଏହି ନ ବୁଝିବା ପାଇଁ କେତେ ଗଣ୍ଡଗୋଳ ହୁଏ, ପୁଣି କେବଳ ବୁଝିଗଲେ ଯେ ହୁଏ ତା ମଧ୍ୟ ନୁହେଁ। ପ୍ରବୃତ୍ତି-ଅଭିଭୂତିର କବଳରେ ଯେତେବେଳେ ଆମ୍ଭେମାନେ ପଡ଼ିଯାଉଁ, ସେତେବେଳେ କେଉଁଠି କାହା ସହିତ କିପରି ବ୍ୟବହାର ସମୀଚିନ – ତାହା ଜାଣିବା ସତ୍ତ୍ୱେ ମଧ୍ୟ ଆଚରଣରେ ଫୁଟାଇ ତୋଳିପାରୁନା। ସେଥିପାଇଁ ଟିକିଏ ବୁଦ୍ଧିମାନ ଲୋକ ଯେଉଁମାନେ ସେମାନେ ସବୁ ସମୟରେ ଇଷ୍ଟରତ ହୋଇ ପ୍ରବୃତ୍ତି-ଅଭିଭୂତିର ହାତେ ଉପରେ ରହିବାକୁ ଚେଷ୍ଟା କରନ୍ତି।

ଆ.ପ୍ର. ୧/୨.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣରେ ଭକ୍ତର ମନର ଭାବ କିପରି ଥାଏ ?**

**ଶ୍ରୀଶ୍ରୀଠାକୁର** – ସେ ମୋର ସବୁ କରିବେ, ଏହା ଭକ୍ତିର ଅନ୍ତରାୟ ! ଭକ୍ତର ମନର ଭାବ – ମୋ ପାଇଁ ପ୍ରଭୁ ଯେପରି କଷ୍ଟ ନ ପାଆନ୍ତି, ବରଂ ମୁଁ ହିଁ ତାଙ୍କର କଷ୍ଟ ଲାଘବ କରିବି ତାଙ୍କର ଭାର ବହନ କରିବି, ତାଙ୍କୁ ସ୍ୱସ୍ତି ଦେବି, ତାଙ୍କର ଦାୟିତ୍ୱ ମୁଣ୍ଡପାତି ନେବି, ତାଙ୍କର ଇଚ୍ଛା ପୂରଣ କରିବି। ଏହି ଆଗ୍ରହ-ଉନ୍ମାଦନାର ଭିତର ଦେଇହିଁ ତାର ଶକ୍ତି ବଢ଼ି ଉଠେ, ସେ ଅସମ୍ଭବକୁ ସମ୍ଭବ କରି ପକାଇ ପ୍ରତି ମୁହୂର୍ତ୍ତରେ ଗୁରୁଙ୍କ ଦୟା ଅନୁଭବ କରେ, ଆଉ ସହସ୍ର ମୁଖରେ ତାଙ୍କର ଗୁଣଗାନ କରେ। ତା ନ କରି ଗୁରୁଙ୍କ ପାଖରେ ଯେଉଁମାନେ "ଦେହି" "ଦେହି" କରନ୍ତି, ସ୍ୱାର୍ଥ-ପ୍ରତ୍ୟାଶା ପୂରଣ ପାଇ ତାଙ୍କ ପାଖରେ ଘୂରନ୍ତି, ସେମାନଙ୍କର ଶକ୍ତି ଖର୍ବ ହୋଇଯାଏ, ସେମାନେ ଶାନ୍ତି ପାଆନ୍ତି ନାହିଁ, ସେମାନଙ୍କର ଅଭାବ ମଧ୍ୟ ମେଣ୍ଟେ ନାହିଁ।

ଆ.ପ୍ର. ୧/୩.୧୨. ୧୯୪୧

**ପ୍ର. – ଇଷ୍ଟାନୁସରଣରେ ଯେଉଁ ଭକ୍ତିର ପଥ ସେଥିରେ ଅସତ୍ ବା ଅନ୍ୟାୟ ପ୍ରତି କିପରି ମନୋଭାବ ନେଇ ଚାଲିବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – ଏକଥା କେହି ମନେକର ନାହିଁ ଯେ ଭକ୍ତିର ପଥରେ ଚାଲିବାକୁ ଗଲେ ଅସତ୍ ବା ଅନ୍ୟାୟର ମଧ୍ୟ ସମର୍ଥନ କରିବାକୁ ହେବ, ତାହା ନିରୋଧ କରିବାକୁ ହିଁ ପଡ଼ିବ – କିନ୍ତୁ ତାହା ଶୁଭ ବୁଦ୍ଧି ପ୍ରଣୋଦିତ ହୋଇ-ଆତ୍ମପ୍ରତିଷ୍ଠା ପାଇଁ ମଧ୍ୟ ନୁହେଁ, କାହାକୁ ହୀନ ପ୍ରତିପନ୍ନ କରିବା ବା ଜବଦ କରିବା ପାଇଁ ମଧ୍ୟ ନୁହେଁ – ସମସ୍ତଙ୍କର ମଙ୍ଗଳ ପାଇଁ, ଇଷ୍ଟସ୍ୱାର୍ଥପ୍ରତିଷ୍ଠା ପାଇଁ।

ଆ.ପ୍ର. ୧/୩.୧୨.୧୯୪୧

**ପ୍ର. – ଇଷ୍ଟଗ୍ରହଣ ସତ୍ତ୍ୱେ ମଧ୍ୟ ଜୀବନରେ ପାପ ଓ ବିଭ୍ରାନ୍ତ ଚଳଣୀ କେତେବେଳେ ଆସେ ?**

**ଶ୍ରୀଶ୍ରୀଠାକୁର** – ଆମ୍ଭମାନଙ୍କର ସମସ୍ତ ପାପ ଓ ବିଭ୍ରାନ୍ତ ଚଳନର ମୂଳରେ ହିଁ ଅଛି ଉତ୍ସବିମୁଖତା। ଶ୍ରେୟୋବିଧାୟକ ପିତା-ମାତା, ଗୁରୁଜନ ଓ ଗୁରୁଙ୍କ ପ୍ରତି ଆମ୍ଭେମାନେ ଯେତେ ହିଁ ବିମୁଖ ହେଉ, ଆଚରଣର ଭିତର-ଦେଇ ସେତେହିଁ ସେମାନଙ୍କୁ ଅସ୍ୱୀକାର କରିଥାଉଁ, ସେମାନଙ୍କର ନୀତି ଲଂଘନ କରିବାକୁ ସେତେବେଳେ ଆମମାନଙ୍କର ବିବେକ ବାଧା ଦିଏ ନାହିଁ। ଏହା ମଧ୍ୟ ଗୋଟିଏ ଧରଣର ଅକୃତଜ୍ଞତା, ଏବଂ ଏହାଠାରୁ ହିଁ ବହୁ ଦୋଷ-ଦୁର୍ବଳତା ଆମ୍ଭମାନଙ୍କ ଚରିତ୍ରରେ ବସା ବାନ୍ଧିବାର ସୁଯୋଗ ପାଏ, ସେତେବେଳେ ଆତ୍ମବିଶ୍ଳେଷଣ ଓ ଆତ୍ମସଂଶୋଧନର ବୁଦ୍ଧି ରହେ ନାହିଁ। କିନ୍ତୁ ଗୁରୁଜନ ବା ଗୁରୁଙ୍କ ପ୍ରତି ପ୍ରକୃତରେ କୃତଜ୍ଞତା-ବୋଧ ଯଦି ଥାଏ, ସେତେବେଳେ ଆମ୍ଭମାନଙ୍କର ସବୁ-କିଛି ଦେଇ ସେମାନଙ୍କୁ ନନ୍ଦିତ କରିବାର ଆଗ୍ରହହିଁ ପ୍ରବଳ ହୋଇଉଠେ, ତା ଫଳରେ ଭୁଲଭ୍ରାନ୍ତି ଆପେ ହିଁ ସଂଶୋଧନ ହୋଇଯାଇଥାଏ। ତେବେ ଗୁରୁଜନ ବା ଉପକାରକ କେହି ଯଦି ଇଷ୍ଟପରିପନ୍ଥି ହୁଅନ୍ତି, ସେଠାରେ ତାଙ୍କର ବିରୋଧି ହେଲେ ଅନ୍ୟାୟ ହେବ ନାହିଁ। ବିଭୀଷଣ ଯେପରି ରାବଣକୁ ଛାଡ଼ିଥିଲେ ରାମଚନ୍ଦ୍ରଙ୍କ ପାଇଁ, ସେ ଯଦି ତାହା ନ କରିଥାନ୍ତେ, ତାହା ହେଲେହିଁ କିନ୍ତୁ ଅନ୍ୟାୟ ହୋଇଥାନ୍ତା।

ଆ.ପ୍ର. ୧/୩.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣର ସମ୍ବେଗ କେତେବେଳେ ସହଜରେ ସଞ୍ଚାରିତ କରାଯାଏ ?**

**ଶ୍ରୀଶ୍ରୀଠାକୁର** – ସ୍ୱସ୍ତିର ବିଷୟ ଏହା ଯେ, will to live is constant (ବଞ୍ଚିବାର ଇଚ୍ଛା ଚିରନ୍ତନ), ତାର being (ସତ୍ତା)କୁ touch (ସ୍ପର୍ଶ) କରିପାରିଲେ, ସେ ସାଡ଼ା ଦେବହିଁ। ଧର୍ମଦାନର ମରକୋଚ (କୌଶଳ) ଏହାରି ଭିତରେ, ବଞ୍ଚିବାର ଓ ପ୍ରକୃତ ଉପଭୋଗର କୌଶଳ ଦେଖାଇ ଦେବାହିଁ ପ୍ରକୃତରେ ଧର୍ମଦାନ। ବିବର୍ତ୍ତନର ପ୍ରତି ଉଦଗ୍ର ଆଗ୍ରହ ଜନ୍ମାଇ ଦେବାକୁ ହୁଏ, ତା ସହିତ ସର୍ବମଙ୍ଗଳ ମୂର୍ତ୍ତି ଇଷ୍ଟଙ୍କର ଚିତ୍ର ଏପରି ମନମୋହନ ଭାବରେ ତା ସମ୍ମୁଖରେ ତୋଳି ଧରିବାକୁ ହୁଏ – ଯାହାଦ୍ୱାରା ସମଗ୍ର ସତ୍ତାର ସମ୍ବେଗ ନେଇ ସେ ସେଥିରେ ଆନତ ହେବା ପାଇଁ ଉଦ୍ଦାମ ହୋଇଉଠେ। ଯାଜନର ମରକୋଚ (କୌଶଳ) ଏହି ଟିକକ। କିନ୍ତୁ ଆମର ଜୀବନରେ ଇଷ୍ଟଙ୍କ ପାଇଁ ଯଦି ଇଷ୍ଟ ନ ହୁଅନ୍ତି, ଆମର କୌଣସି କିଛି ପାଇଁ ଯଦି ତାଙ୍କୁ ଅନୁସରଣ କରୁ, ତେବେ ଏହି ନିର୍ମଳ, ନିଖୋଦ, ଅମୃତ-ଆବେଗ ଟିକକ ମଣିଷ ମଧ୍ୟରେ ସଞ୍ଚାରିତ କରାଇ ଦେଇପାରିବୁ ନାହିଁ।

ଆ.ପ୍ର. ୧/୩.୧୨.୧୯୪୧



**ପ୍ର. – ଇଷ୍ଟାନୁରାଗ କେତେବେଳେ ଉପଭୋଗ୍ୟ ହୋଇଉଠେ ?**

**ଶ୍ରୀଶ୍ରୀଠାକୁର** – ମଣିଷର ଅନିୟନ୍ତ୍ରୀତ ପ୍ରବୃତ୍ତିଚଳନର ସମ୍ଭାବ୍ୟତା ଥିବା ସତ୍ତ୍ୱେ ମଧ୍ୟ ସେ ଯେତେବେଳେ ତାହା ଉପେକ୍ଷା କରି ସ୍ୱେଚ୍ଛାରେ ଇଷ୍ଟମୁଖୀ ହୋଇ ଚାଲେ, ଈଶ୍ୱରମୁଖୀ ହୋଇ ଚାଲେ – ଅନୁରାଗ ନିବଦ୍ଧହୋଇ ବୃତ୍ତି-ପ୍ରବୃତ୍ତିର ସୁନିୟନ୍ତ୍ରଣରେ, ସେତେବେଳେହିଁ ସେହି ଅନୁରାଗ ଉଭୟଙ୍କଠାରେ ଉପଭୋଗ୍ୟ ହୋଇଉଠେ, ଲୀଳାରସର ଆସ୍ୱାଦନ ଏପରି ସ୍ଥଳରେହିଁ ସମ୍ଭବ ହୁଏ।

ଆ.ପ୍ର. ୧/୩.୧୨.୧୯୪୧

**ପ୍ର. – ଇଷ୍ଟସର୍ବସ୍ୱ କିପରି ଭାବରେ ହୋଇ ଉଠାଯାଏ ?**

**ଶ୍ରୀଶ୍ରୀଠାକୁର** – ଅନୁରାଗମୁଖର ହୋଇ ଖୁବ୍ ଫୂର୍ତ୍ତିରେ ନାମଧ୍ୟାନ ଚଳାଇ ଯାଅ, ପ୍ରତିଟି କାର୍ଯ୍ୟରେ ଇଷ୍ଟସନ୍ଧିତ୍ସୁ ଆଗ୍ରହ ନେଇ ମଧ୍ୟ ଚାଲ, ନିଜର ଜୀବନକୁ ଇଷ୍ଟ-ସର୍ବସ୍ୱ କରିପକାଅ, ଦେଖିବ ତୁମ୍ଭମାନଙ୍କ ଭିତରେ, କେତେ ଜିନିଷ ଜାଗି ଉଠିବ। ଅବଶ୍ୟ କୌଣସି କିଛିର ଲୋଭ ରଖ ନାହିଁ, ସେତେବେଳେ ଏହି ଲୋଭହିଁ ପର୍ଦ୍ଦା ପକାଇ ଦେବ, ଆଗେଇବାକୁ ଦେବ ନାହିଁ। ...ତାଙ୍କୁହିଁ ମନପ୍ରାଣ ଦେଇ ଭଲପାଅ, ତାଙ୍କର ସଙ୍ଗ କର, ତାଙ୍କୁ ଅନୁସରଣ କର, ସକ୍ରିୟ ଭାବରେ ତାଙ୍କର ଇଚ୍ଛା ପୂରଣ କର, ତାଙ୍କ ପାଇଁ ସ୍ୱଇଚ୍ଛାରେ ଆନନ୍ଦର ସହିତ ଦାୟିତ୍ୱ ଗ୍ରହଣ କର ଏବଂ ତାହା କୃତିତ୍ୱର ସହ ନିଷ୍ପନ୍ନ କର, ଏହି ସ୍ରୋତ ମଧ୍ୟରେ ନିଜକ ପକାଇ ଦିଅ, ନିଜ-ନିଜ ପୁଟୁଳିର ଭାବନା ଛାଡ଼, ତାଙ୍କର ଯାହା-କିଛିକୁ ନିଜର କରିନେଇ ତାଙ୍କରି ପାଇଁ ଖଟ, ତାଙ୍କରି ପ୍ରୀତି ଓ ପ୍ରତିଷ୍ଠା-କାମନାରେ ପ୍ରତ୍ୟେକଙ୍କୁ ତାଙ୍କର ବୈଶିଷ୍ଟ୍ୟ ମାଫିକ୍ ସେବା ଦିଅ – ଏହି ସ୍ରୋତରେ ପଡ଼ି ତୁମ୍ଭେମାନେ ଦେଖିବାକୁ ପାଇବ, ତୁମ୍ଭମାନଙ୍କର ଅଜାଣତରେ ତୁମ୍ଭେମାନେ ପରିପୂର୍ଣ୍ଣ ବୋଧ-ସଙ୍ଗତି ନେଇ ବହୁତ କିଛି ଜାଣି ପକାଇଛ। ଏହି ଚଳନର ପଥରେ ହିଁ ସର୍ବଜ୍ଞତ୍ୱବୀଜ, ବ୍ରହ୍ମଜ୍ଞାନ ଉଦ୍‌ଭିନ୍ନ ହୋଇଉଠେ। ଏସବୁ କିଛି ଅଦ୍ଭୁତ (ଯାଦୁ) ବା ଏଜଗତର ସହିତ ବିଚ୍ଛିନ୍ନ ବ୍ୟାପାର ନୁହେଁ।

ଆ.ପ୍ର. ୧/୪.୧୨.୧୯୪୧

**ପ୍ର. – ଇଷ୍ଟ ଜୀବନର ସହିତ କେତେଟା ଜଡ଼ିତ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କୁ ନେଇହିଁ ତ ମୁଁ-ବୋଧ। ଏହି ଦେହ ରହିଥିବା ପର୍ଯ୍ୟନ୍ତ,

ମୋର ଏହି ରୂପ ରହିଥିବା ପର୍ଯ୍ୟନ୍ତ, ତାଙ୍କର ରୂପ ଛାଡ଼ି ଯିବାର ଜୋ ନାହିଁ। ସେ ଯଦି ପରେ ଅନ୍ୟରୂପ ନେଇ ଆସନ୍ତି, ଏବଂ ମୁଁ ମଧ୍ୟ ଅନ୍ୟ ଦେହ ନେଇ ଆସେ, ସେତେବେଳେ ଅବଶ୍ୟ ସେଇ ରୂପହିଁ ବଡ଼ ହେବ। ଆ.ପ୍ର. ୧/୪.୧୨.୧୯୪୧

**ପ୍ର. – ଇଷ୍ଟଙ୍କ ପାଇଁ ଆପ୍ରାଣ ହୋଇ ଉଠିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କ ପାଇଁ ଆପ୍ରାଣ ହୋଇ ଉଠିଲେ ସେତେବେଳେ ସଂସାର ମଧ୍ୟ ଇଷ୍ଟଙ୍କ ପାଇଁ ହୋଇ ଉଠେ। କିଛିଦିନ ଅଭାବ-ଅଭିଯୋଗ, struggling period (ଟଣାଟଣି ଅବସ୍ଥା) ଚାଲିଲେ ମଧ୍ୟ ଇଷ୍ଟଙ୍କର କାମ ଠିକ୍ ଠିକ୍ ଉପଚୟୀ ଭାବରେ କରିବାକୁ ଲାଗିଲେ – ତାଙ୍କଠାରେ ଠିକ୍ ଠିକ୍ interested (ଆଗ୍ରହୀ) ହୋଇ ଉଠିଲେ ବେଶୀଦିନ ତାହା ରହେ ନାହିଁ। ସେତେବେଳେ ଆମ୍ଭମାନଙ୍କର ଚରିତ୍ରବଳ, ଯୋଗ୍ୟତା, ମଣିଷ-ସମ୍ପଦ ସବୁ-କିଛିହିଁ ବଢ଼ି ଯାଏ, ଦୁଃଖ ରହେ ନାହିଁ। ଯେ ପର୍ଯ୍ୟନ୍ତ ଆମ୍ଭେମାନେ ନିଜକୁ ନେଇ ବିବ୍ରତ ରହୁ, ସେ ପର୍ଯ୍ୟନ୍ତ କେହି ଆମ୍ଭମାନଙ୍କର ନିଜର ହୁଅନ୍ତି ନାହିଁ। କିନ୍ତୁ ଯେଉଁ ମୁହୂର୍ତ୍ତରେ ଆମ୍ଭେମାନେ ଇଷ୍ଟଙ୍କୁ ନେଇ ମାତି ଉଠୁ, ତାଙ୍କରି ସ୍ୱାର୍ଥ-ପ୍ରତିଷ୍ଠା କଲ୍ପେ ପାରିପାର୍ଶ୍ୱିକଙ୍କର ସେବାରେ ଉନ୍ମୁଖ ହୋଇଉଠୁ, ସେତେବେଳେହିଁ ସମସ୍ତେ ନିଜର ହୋଇ ଧରା ଦିଅନ୍ତି, ସେହିମାନେ ହିଁ ଆମ୍ଭମାନଙ୍କର ଦୁଃଖ ଦୂରୀକରଣ ପାଇଁ ବଦ୍ଧପରିକର ହୋଇ ଛିଡ଼ାହୁଅନ୍ତି। ପୁଣି, ଯିଏ ଠିକ୍ ଠିକ୍ ଇଷ୍ଟପ୍ରାଣ, ସେ ପରିବାରର ସମସ୍ତଙ୍କୁ ହିଁ ଏପରିଭାବରେ ଅନୁପ୍ରାଣିତ କରି ତୋଳେ, ଯାହାଦ୍ୱାରା ପରିବାର ମଧ୍ୟରେ ଗୋଟିଏ integration ଓ consolidation (ସଂହତି ଓ ସଂଘବଦ୍ଧତା) ଆସିଥାଏ, ପ୍ରତ୍ୟେକେ ଇଷ୍ଟଙ୍କ ପାଇଁ ଓ ପରସ୍ପରଙ୍କ ପାଇଁ କରନ୍ତି। ଏହି loving urge ହିଁ (ପ୍ରୀତିପ୍ରାଣ ଆକୂତିହିଁ) ପ୍ରତ୍ୟେକଙ୍କର କର୍ମଶକ୍ତିକୁ ବଢ଼େଇ ତୋଳେ, ପୁଣି concentric (ସୁକେନ୍ଦ୍ରିକ) ହେବା କାରଣରୁ କାର୍ଯ୍ୟଗୁଡ଼ିକ ମଧ୍ୟ welladjusted ଓ profitable (ସୁନିୟନ୍ତ୍ରିତ ଓ ଲାଭଜନକ) ହୁଏ।

ଆ.ପ୍ର. ୧/୪.୧୨.୧୯୪୧

**ପ୍ର. – ଇଷ୍ଟଙ୍କୁ ଦେବାର ଆକୂତି ରହିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର –** ଧର, ଇଷ୍ଟଭୃତିର ଭିତର ଦେଇ ସଂସାରର ପ୍ରତ୍ୟେକଙ୍କ ମଧ୍ୟରେ କିପରି ଗୋଟିଏ excess urge (ଅଧିକ ଆକୂତି) ଆସି ହାଜର ହୁଏ, ସେହି ଦୀପନ-ବେଗର ଚଳଣ ଓ କରଣ ସଂସାରକୁ ସ୍ୱଚ୍ଛଳତାରେ ଉଛୁଳ କରି ତୋଳେ। ସେତେବେଳେ ଇଷ୍ଟଙ୍କର ଚାହିଦା ପୂରଣ ପାଇଁ ସେମାନେ ସର୍ବଦା ପ୍ରସ୍ତୁତ ହୋଇ ରହିଥାନ୍ତି, ସେ କେତେବେଳେ କ'ଣ ଚାହାଁନ୍ତି, ତାଙ୍କ ପାଇଁ ଆଗରୁ କିଛି କିଛି ସଂଗ୍ରହ କରି ରଖନ୍ତି।



ଇଷ୍ଟଙ୍କରଟା ଯଦି ଠିକ୍ ଥାଏ, ସଂସାର ତ ତାର ତଳେ, ସେହିଟା ମଧ୍ୟ ଠିକ୍ ଥାଏ। ଯେପରି ଜଣକର ନିଜର ସଂସାର ପାଇଁ ମାତ୍ର ତିରିଶ ଟଙ୍କା ଲାଗେ, କିନ୍ତୁ ଇଷ୍ଟଙ୍କ ପାଇଁ ଆଉ ଯଦି ଦଶ ଟଙ୍କା ସଂଗ୍ରହ କରିବାକୁ ହୁଏ, ତେବେ ଚାଳିଶ ଟଙ୍କାର urge (ଆକୂତି) ନେଇ ଚାଲିଚାକୁ ତାହା ସଂଗ୍ରହ କରିବାକୁହିଁ ହେବ, କାରଣ, ଇଷ୍ଟଙ୍କୁ ନ ଦେଇ, ନ ଖୁଆଇ ତାର ତୃପ୍ତିହିଁ ନାହିଁ, ଆଉ ଇଷ୍ଟଙ୍କର ସ୍ୱାର୍ଥପ୍ରତିଷ୍ଠା ପାଇଁ, ଇଷ୍ଟଙ୍କୁ ଏହି ଦେବା ବଜାଇ ରଖିବା ପାଇଁ ନିଜର ବଞ୍ଚିବାଟିକୁ ବଞ୍ଚାଇ ରଖିବାକୁ ହେବ, ସେଥିପାଇଁ ସମଗ୍ର ଅର୍ଜନଟାହିଁ ଯେପରି ଇଷ୍ଟଙ୍କ ପାଇଁ। ୪୦ ଟଙ୍କା ଭିତରେ ତ ୩୦ ଟଙ୍କା ଅଛି ହିଁ, ସେଥିପାଇଁ ଅଭାବ ରହେ ନହିଁ। ଇଷ୍ଟଙ୍କୁ ଦେବାର, ଇଷ୍ଟସ୍ୱାର୍ଥପ୍ରତିଷ୍ଠାର urge (ଆକୂତି)ର ଦୌଲତରେ ହିଁ କିନ୍ତୁ ତୁମେ ସ୍ୱଚ୍ଛଳତାରେ ଉଛୁଳ ହୋଇ ଉଠିଲ, ଇଷ୍ଟଙ୍କୁ ମଧ୍ୟ ଦେଲ, ପାରିବାରିକ ସଂସ୍ଥାନ ମଧ୍ୟ କଲ, drudgery (ଦିଗ୍‌ଦରି) ବା ବିଭ୍ରାନ୍ତି ଆଉ ରହିଲା ନାହିଁ, ମୂଳରେ ଇଷ୍ଟ ଥିବା କାରଣରୁ ସବୁ କାର୍ଯ୍ୟ ସରଳ ଓ ସୁନ୍ଦର ହୋଇ ଉଠିଲା। ଆ.ପ୍ର. ୧/୪.୧୨.୧୯୪୧

**ପ୍ର. – ଇଷ୍ଟସ୍ୱାର୍ଥ, ଇଷ୍ଟପ୍ରତିଷ୍ଠାର ଧନ୍ଦା କ'ଣ ପାଇଁ ରହିବା ଦରକାର ?**

**ଶ୍ରୀଶ୍ରୀ ଠାକୁର –** ଇଷ୍ଟସ୍ୱାର୍ଥ, ଇଷ୍ଟପ୍ରତିଷ୍ଠା ହେଲା ଭବସମୁଦ୍ରର compass (ଦିଗନିର୍ଣ୍ଣୟ-ଯନ୍ତ୍ର), ଏହା ଭିତର-ଦେଇ ହିଁ ଆସେ ବ୍ରହ୍ମଜ୍ଞାନ ବା ବୃଦ୍ଧିର ଜ୍ଞାନ, ଆତ୍ମଜ୍ଞାନ ଅର୍ଥାତ୍ ଚଳନ୍-ଜ୍ଞାନ। ଇଷ୍ଟାର୍ଥଆପୂରଣୀ ଧନ୍ଦା ଯଦି ନ ଥାଏ, ତତ୍‌ପୂରଣୀ ବାସ୍ତବ କର୍ମର ଦାୟିତ୍ୱ ଯଦି ମଣିଷ ଗ୍ରହଣ ନ କରେ, ତେବେ ଚକ୍ଷୁ ବନ୍ଦ କରି ସାଧନା ସେ ଯେତେହିଁ କରୁ ନା କାହିଁକି, ତାହାର କିନ୍ତୁ ଏହି ଜ୍ଞାନ ଫୁଟେ ନାହିଁ। କରିବା ଭିତର ଦେଇ, ଚାଲିବା ଭିତର ଦେଇ ଆସେ ଅଭିଜ୍ଞତା, ଆସେ ଭୂୟୋଦର୍ଶନ, ତାହା ଯାହାର ଯେତେ ଏକସୂତ୍ରସଙ୍ଗତ ତାର ଜ୍ଞାନ ସେତେ ପକ୍କା। ଆ.ପ୍ର. ୧/୪.୧୨.୧୯୪୧

**ପ୍ର. – ଇଷ୍ଟଭରଣ-ଧନ୍ଦା ରହିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଭରଣ-ଧନ୍ଦା ଯାହାର ମନ-ମଥାରେ ରହିଥାଏ, ତାର ପ୍ରବୃତ୍ତିଗୁଡ଼ିକ ମଧ୍ୟ ଧିରେ ଧିରେ ସୁବିନ୍ୟସ୍ତ ହୋଇଉଠେ, ତାର ସବୁକିଛିର ମଧ୍ୟ ଦେଇ ଗୋଟିଏ ଏକସୂତ୍ରନିବଦ୍ଧ ସମାହାର ହେବାକୁ ଲାଗେ, ସେଥିପାଇଁ ବୋଧ ମଧ୍ୟ ସେହିପରି ଫୁଟିଉଠେ। ତା'ଛଡ଼ା, ସେ କେବଳ ଭାବ-ବିଳାସୀ ହୁଏ ନାହିଁ, ତାର ଭାବିବା, କରିବା, ମଧ୍ୟରେ ଗୋଟିଏ ସଙ୍ଗତି ଥାଏ। ଏହିଭାବରେ ତାର ଜୀବନରେ କୃତକାର୍ଯ୍ୟତାର ପଥ ଖୋଲିଯାଏ। ଆ.ପ୍ର. ୧/୪.୧୨.୧୯୪୧

**ପ୍ର. – ଇଷ୍ଟଭୃତିର ମୂଳ କଥା କ'ଣ ?**

ଶ୍ରୀଶ୍ରୀଠାକୁର – ଭୋଜ୍ୟଟା ବା ପଇସାଟା ଇଷ୍ଟଭୃତିର ମୂଳ କଥା ନୁହେଁ, ଏହାର ମୂଳକଥା ହେଲା ଇଷ୍ଟଙ୍କୁ ଦେବାର ଆବେଗ, ତାଙ୍କୁ ନ ଦେଇ, ନ ଖୁଆଇ ମୋତେ ଭଲ ଲାଗେ ନାହିଁ, ସେଥିପାଇଁ ସର୍ବାଗ୍ରେ ମୋର ତାଙ୍କର ସେବାର ଆୟୋଜନ। ଏହି ଆବେଗ ଯେତେବେଳେ ମଣିଷର ଅନ୍ତରରେ ନିଶା ପରି ହୋଇଉଠେ, ସେ ସେତେବେଳେ ତାର ସବୁ କରିବାର ଭିତର ଦେଇ ତାଙ୍କୁହିଁ ଅର୍ଘ୍ୟ-ନନ୍ଦିତ କରିବାକୁ ଚାହେଁ, ଜୀବନରେ ଯେପରି ତାର ଗୋଟିଏ ଅଫୁରନ୍ତ ଉତ୍ସାହ ଲାଗିଯାଏ। ଆ.ପ୍ର. ୧/୫.୧୨.୧୯୪୧

**ପ୍ର. – କେତେବେଳେ ଇଷ୍ଟାନୁରାଗ ଗଭୀରତର ହେବାକୁ ଲାଗେ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟାର୍ଥ-ଆପୂରଣର ସହିତ ସଙ୍ଗତି ରଖି ଦୁନିଆର ଯେତେ କିଛିର ସହିତହିଁ ଆମ୍ଭେମାନେ ସମ୍ବନ୍ଧାନ୍ୱିତ ହେଉ ନା କାହିଁକି, ସେଥିରେ ଲାଭ ଛଡ଼ା କ୍ଷତି ନାହିଁ। ନାନା ବ୍ୟକ୍ତି, ବିଷୟ ଓ ବ୍ୟାପାରକୁ ଇଷ୍ଟାନୁଗ ନିୟନ୍ତ୍ରଣରେ ଆମେ ଯେତେହିଁ ସୁବିନ୍ୟସ୍ତ କରି ତୋଳି ପାରିବୁ, ସେତେହିଁ ଆମ୍ଭମାନଙ୍କର ବ୍ୟକ୍ତିତ୍ୱ ବିସ୍ତାର ଲାଭ କରିବ ଏବଂ ଇଷ୍ଟାନୁରାଗ ମଧ ଗଭୀରତର ହୋଇ ଉଠିବ, ଏବଂ ଧର୍ମର ଉଦ୍ଦେଶ୍ୟ ଯେ ସପରିବେଶ ବଞ୍ଚିବା ବଢ଼ିବା-ତାହା ମଧ ଏହି ପଥରେ ସାର୍ଥକ ହୁଏ। ନଚେତ୍ ପରିବେଶର ସହିତ ସମ୍ପର୍କହରା ଜୀବନ କିନ୍ତୁ ଧର୍ମ ନୁହେଁ। ତାହାବୋଲି ଯାହାଦ୍ୱାରା ଇଷ୍ଟନିଷ୍ଠା ବ୍ୟାହତ ହୁଏ ସେପରି ସଂସର୍ଗଦିଗକୁ ଢଳି ପଡ଼ିବା କିନ୍ତୁ ଠିକ୍ ନୁହେଁ। ଆ.ପ୍ର. ୧/୫.୧୨.୧୯୪୧

**ପ୍ର. – ଇଷ୍ଟବିହିନ ସାଧନାରେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟବିହିନ ସାଧନାର ମଧଦେଇ ମଣିଷ ଗୋଟିଏ ଦାନବ, ପାଗଳ ବା ଦୁଶମନ ମଧ ହୋଇ ଉଠିପାରେ, କାରଣ, ସେତେବେଳେ ସାଧନାର ଭିତର-ଦେଇ ସେ ଯଦି କୌଣସି ଶକ୍ତି ଲାଭ କରେ, ତାହା ସେ ନିଜର ଖୁସି, ଖିଆଲ ବା ପ୍ରବୃତ୍ତି-ମାଫିକ୍ ହିଁ ବ୍ୟବହାର କରିବ। ସାଧନା ମାନେ acquisitive effort (ଅଧିଗମନୀ ପ୍ରୟାସ), ଯେ-କୌଣସି ଦିଗରେହିଁ ମଣିଷ ସାଧନା କରୁ, ଯେପରି ବିଦ୍ୟା, ଶକ୍ତି ବା ଯୋଗ୍ୟତା ସେ ଆହରଣ କରୁ, ତାର ପଛରେ ଯଦି ଇଷ୍ଟାନୁରାଗ ନ ଥାଏ, ସେଥିରେ କିନ୍ତୁ ସେହି ଏକ ରକମ ଫଳ ଦେଖା ଦେବ। ସେଥିପାଇଁ ଜୀବନର ଆଦି, ମଧ ଓ ଅନ୍ତରେ – ସର୍ବାବସ୍ଥାରେ ଯେଉଁ ଜିନିଷଟି ଦରକାର, ତାହା ହେଲା ଏହି ଇଷ୍ଟପ୍ରାଣତା।

ଆ.ପ୍ର. ୧/୬.୧୨.୧୯୪୧

**ପ୍ର. – ଇଷ୍ଟଙ୍କର ଇଚ୍ଛା-ପୂରଣରେ କେତେଟା ଆଗ୍ରହଶୀଳ ହେବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ତୁମର ରକ୍ତର ଗୋଟିଏ କଣିକା, ଶରୀରର ଗୋଟିଏ cell (କୋଷ) ବା ଇଚ୍ଛାର ଗୋଟିଏ ଖିଅ ଯଦି ଥାଏ, ଯାହା ମୋର (ଇଷ୍ଟଙ୍କର) ଇଚ୍ଛା ପରିପୂରଣରେ ସକ୍ରିୟ ଭାବରେ ଆଗ୍ରହଶୀଳ ହୋଇ ଉଠିନାହିଁ, ତାହା ହିଁ ଦିନେ ମସ୍ତ ବଡ଼ ବାଧା ସୃଷ୍ଟି କରି ତୋଳି ପାରେ। ଏହି ବାଧାର ଅପସାରଣ ଯାହା ମଧରେ ହୋଇଯାଇଛି, ତାର ଅସାଧ କିଛି ନାହିଁ। ଏହିପରି ଯିଏ, ସେ ଯଦି ନିରହଂକାର ହୋଇ ଯନ୍ତ୍ରସ୍ୱରୂପ କାର୍ଯ୍ୟ କରିଯାଇପାରେ, ପରମପିତା ତାକୁ ନିତ୍ୟ ଶକ୍ତିର ଯୋଗାଣ ଦିଅନ୍ତି। ସେ ଭାବେ ନାହିଁ – 'ମୁଁ ପାରିବି କି ନା', ସେ ଜାଣେ ଯେ ତାର ନ କରିଲେ ହିଁ ନ ହୁଏ, ସେଥିପାଇଁ କରିହିଁ ଚାଲେ, ଏବଂ ପାରେ ମଧ। ପୁଣି ତାର ଏହି ଆକୁଳତା ବହୁ ଲୋକଙ୍କୁ ଏକତ୍ରିତ କରିତୋଳେ। ସେ ନିଜେ ଯାହା ପାରେ ନାହିଁ, ଅନ୍ୟର ସାହାଯ୍ୟରେ ତାହା କରେ। ଆ.ପ୍ର. ୧/୬.୧୨.୧୯୪୧

**ପ୍ର. – ଇଷ୍ଟପ୍ରାଣ ମଣିଷର ଅର୍ଥନୈତିକ ସମସ୍ୟାର ମଧ କ'ଣ ସମାଧାନ ହୁଏ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଇଷ୍ଟପ୍ରାଣ ହେଲେ ତାର ଚଳନ ଓ ଚରିତ୍ର ସୁନିୟନ୍ତ୍ରିତ ହୁଏ, ତାର ବୁଦ୍ଧିବୃତ୍ତି, ଦକ୍ଷତା, ଯୋଗ୍ୟତା, ସେବାବୁଦ୍ଧି, କର୍ମକ୍ଷମତା ପୁଷ୍ଟ ହୋଇଉଠେ। ଏହାଦାରା ସେ ଲୋକଙ୍କର ପ୍ରୋୟଜନ-ପୂରଣୀ ସ୍ୱଭାବ-ସମ୍ପନ୍ନ ହୋଇଉଠେ, ସେଥିରେ ତାର ଅର୍ଥନୈତିକ ସମସ୍ୟାର ସମାଧାନ ହେବାହିଁ ତ ଉଚିତ୍। ତା'ଛଡ଼ା ମଣିଷହିଁ ମଣିଷର ସବୁଠାରୁ ବଡ଼ ସମ୍ପଦ, ସେ-ଦୃଷ୍ଟିରୁ ଯାଜନମୁଖର, ସେବାପ୍ରାଣ, ଇଷ୍ଟାନୁରାଗୀ ଯିଏ, ଯାହାର ଚଳଣୀ ସୁସାମଞ୍ଜସ୍ୟ, ବ୍ୟବହାର ହୃଦ୍ୟ ଓ ମନୋଜ୍ଞ, ତାହାର ଲୋକ-ସମ୍ପଦ ତ ବଢ଼ିଯିବାହିଁ ସ୍ୱାଭାବିକ। ତାର ଦରିଦ୍ର ହୋଇ ରହିବାର କାରଣ ତ ଖୋଜି ମିଳେ ନାହିଁ। କାରଣ, ଅର୍ଥନୈତିକ ଉନ୍ନତିର ବୁନିଆଦ ଯେ ଦକ୍ଷତା, ଯୋଗ୍ୟତା, କ୍ଷିପ୍ରତା, ଚରିତ୍ର, ନିରାଳସ-ସେବାବୁଦ୍ଧି, ସୁସଙ୍ଗତ-ଚଳନ – ତାର କୌଣସିଟାର ହିଁ ସେଥିରେ ଅଭାବ ନ ଥାଏ। ଅବଶ୍ୟ ସେମାନେ ହୁଏତ ପ୍ରୟୋଜନାତିରିକ୍ତ consume (ବ୍ୟବହାର) ନ କରି ପାରନ୍ତି। ତେବେ ମଣିଷ ଯଦି କେବଳ ମୁହେଁ-ମୁହେଁ ଇଷ୍ଟପ୍ରାଣ ହୁଏ, ଅଥଚ ବାସ୍ତବରେ ସେପରି ହୁଏ ନାହିଁ, ତାହାହେଲେ ମଧ ସେ ଯେ ଅର୍ଥନୈତିକ-ଜୀବନରେ କୃତି ହେବ, ଏ-କଥା କହି ହେବ ନାହିଁ। ....ମୋର କଥା ହେଲା, ମଣିଷର ଇଷ୍ଟପ୍ରାଣତା ସହିତ ଜଡ଼ିତ ଅଛି ତାର ସୁନିୟନ୍ତ୍ରିତ ଯୋଗ୍ୟତା ଏବଂ ଏହା ସହିତ ଜଡ଼ିତ ଅଛି ତାର ଅର୍ଥନୈତିକ ଅବସ୍ଥା।

ଆ.ପ୍ର. ୧/୭.୧୨.୧୯୪୧

**ପ୍ର. – ଇଷ୍ଟପ୍ରେମୀ ଓ ଇଷ୍ଟସ୍ୱାର୍ଥୀ ହେଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଏପରି ବୋକା – ଇଷ୍ଟଙ୍କ ପ୍ରତି normally actively interested (ସହଜ ସକ୍ରିୟ ଭାବରେ ଆଗ୍ରହୀ) ହେଲେ ସେ ସହଜରେ ହିଁ ସବୁ ପାଏ,

ଏହି କଥାଟିହିଁ ବୁଝେ ନାହିଁ, ସେଥିପାଇଁ ଯେଉଁଥିରେ ବ୍ୟର୍ଥ ହେବ, ସେହି ପଥହିଁ ବାଛି ନିଏ। ମଣିଷ ବାସ୍ତବ କରଣ-ସହ ମୁଖ୍ୟତଃ ଇଷ୍ଟପ୍ରେମୀ ଓ ଇଷ୍ଟସ୍ୱାର୍ଥୀ ହେଲେ, ତାର ଏହି ଚରିତ୍ରହିଁ ତାକୁ ସବୁ ପ୍ରାପ୍ତ କରାଏ।

ଆ.ପ୍ର. ୧/୮.୧୨.୧୯୪୧

**ପ୍ର. – ଇଷ୍ଟଙ୍କଠାରେ ଦୃଢ଼ ପ୍ରତ୍ୟୟ ହେଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର –** Conviction (ଦୃଢ଼ ପ୍ରତ୍ୟୟ) ହେଲେ କୌଣସି ପ୍ରକାରେହିଁ ସଂଶୟ ଆସେ ନାହିଁ, ସମସ୍ତଙ୍କୁ face (ସମ୍ମୁଖୀନ) କରିପାରେ। ସେତେବେଳେ ଯୁକ୍ତି-ବୁଦ୍ଧି ଠେଲି ବାହାରେ, ଆତ୍ମସମର୍ଥନ ପାଇଁ ମଣିଷ ଯେପରି ମରିପଡ଼ି ଲାଗେ, ଇଷ୍ଟଙ୍କର ଯାହାକିଛିକୁ ସମର୍ଥନ ପାଇଁ ମଧ ସେ ସେହିପରି ପାଗଳ ହୋଇଉଠେ। ଇଷ୍ଟଙ୍କର କୌଣସି-କୌଣସି ଆଚରଣର ତାତ୍ପର୍ଯ୍ୟ ସେ ହୁଏତ ବୁଦ୍ଧି ଦେଇ ହୃଦୟଙ୍ଗମ କରି ନ ପାରେ, କିନ୍ତୁ ତାର ଏହି ବିଶ୍ୱାସ ଅଟୁଟ ଥାଏ ଯେ, ସେ ଯାହା କିଛି କରିଛନ୍ତି, ତାହା ବ୍ୟଷ୍ଟି ଓ ସମଷ୍ଟିର ସର୍ବୋତ୍ତମ ମଙ୍ଗଳ ପାଇଁ ଏବଂ ଏହି ବିଶ୍ୱାସହିଁ ସେଠାରେ ତାକୁ ଯୁକ୍ତି-ବୁଦ୍ଧିର ଯୋଗାଣ ଦିଏ।

ଆ.ପ୍ର. ୧/୯.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣର ସ୍ୱାର୍ଥରେ କେଉଁଟିକୁ ପ୍ରଶ୍ରୟ ଦେବା ଅନୁଚିତ୍ ?**

**ଶ୍ରୀଶ୍ରୀଠାକୁର –** ଏପରି କୌଣସି କଥା, ଚିନ୍ତା ବା କାର୍ଯ୍ୟକୁ ପ୍ରଶ୍ରୟ ଦେବା ଉଚିତ ନୁହେଁ, ଯାହା ଇଷ୍ଟ ସମ୍ବନ୍ଧରେ ପ୍ରତ୍ୟୟକୁ ଶିଥିଳ କରି ତୋଳେ, ଏପରିକି ଥଟ୍ଟା-ପରିହାସରେ ମଧ ନୁହେଁ। ଅସର୍ତକ ମୁହୂର୍ତ୍ତରେ ଏହି ସବୁ ଚିନ୍ତା, ଚଳନ, ବାକ୍ୟ, କାର୍ଯ୍ୟ ଓ ସଙ୍ଗ ଅଜାଣତରେ ମଣିଷର ଅନେକ ପରିମାଣରେ କ୍ଷତି କରେ। କେତେ ଯେ କ୍ଷତି କରେ, ତାହା crisis (ସଂକଟ)ର ମୁହୂର୍ତ୍ତ ଛଡ଼ା ବୁଝାଯାଏ ନାହିଁ। ଏପରି ହୁଏତ ମଣିଷ ବେଶ୍ ଅଛି, କିନ୍ତୁ ଇଷ୍ଟାନୁସରଣ କ୍ଷେତ୍ରରେ ଯେଉଁଠାରେ ପ୍ରବଳ ବାଧା, ବିପତ୍ତି, ଦୁଃଖ, କଷ୍ଟ, ନିର୍ଯ୍ୟାତନା, ସ୍ୱାର୍ଥଘାତ, ପ୍ରବୃତ୍ତି ବା ଇଚ୍ଛା -ଦମନର ସମ୍ମୁଖୀନ ହେବାକୁ ହୁଏ, ସେଠାରେ ସେ କାବୁ ହୋଇପଡ଼େ, ପଛେଇ ଯାଏ। ଭିତରେ 'କିନ୍ତୁ'-'କିନ୍ତୁ' ଭାବ ରହିଲେ ଏହି ଅବସ୍ଥାରେ ମୁଣ୍ଡ ଟେକି କରି ଇଷ୍ଟଙ୍କ ପାଇଁ ଦୃଢ଼ ଭାବରେ ଠିଆ ହୋଇପାରେ ନାହିଁ।

ଆ.ପ୍ର. ୧/୯.୧୨.୧୯୪୧

**ପ୍ର. – ଇଷ୍ଟଙ୍କୁ ପରିବେଷଣ କରିବା ପାଇଁ କ'ଣ ବିଶେଷ ଆବହାୱା ଦରକାର ? କୌଶଳ କ'ଣ ?**

**ଶ୍ରୀଶ୍ରୀଠାକୁର –** ତୁମେ ଏକାହିଁ ଗୋଟିଏ atmosphere (ଆବହାୱା) – ଯାହା ସଙ୍ଗରେ ମିଶିବ, ସିଏ ଭିଜିଯିବ, bedewed (ନିକ୍ଷିକ୍ତ) ହୋଇଯିବ (–ଏହିପରି ହେବାକୁ ହୁଏ)। ମଣିଷର ଅଛି ଚାହିଦା, ଅଛି ଟାଣ, ସବୁଗୁଡ଼ିକ ମିଶାଇ concentration (ଏକାଗ୍ରତା)କୁ ଆଣି ଇଷ୍ଟଙ୍କୁ ପରିବେଷଣ କରିବ। ଗୋଷେଇ ଘରେ ପ୍ରଚୁର ଖାଇବା ରହିଲେ କେବଳ ହୁଏନାହିଁ, ପରିବେଶକ ଦରକାର, ପରିବେଶଣର ଦୋଷରୁ କେତେ ଲୋକ ପେଟ ଭରି ଖାଇବାକୁ ପାଆନ୍ତି ନାହିଁ, କେତେଜଣଙ୍କର ପୁଣି ପେଟ ଖରାପ ହୁଏ, କେତେଜଣ ପୁଣି ତାଙ୍କର ରୁଚି ମାଫିକ୍ ଜିନିଷ ପ୍ରୟୋଜନ ଅନୁସାରେ ନ ପାଇବା କାରଣରୁ ସେମାନଙ୍କର ଖାଇବାଟା ତୃପ୍ତିଦାୟକ ହୁଏନାହିଁ, ଏପଟେ ପୁଣି ଖାଦ୍ୟ ମଧ ନଷ୍ଟ ହୁଏ। ତୁମ୍ଭମାନଙ୍କର ଯେପରି ସେହିପରି ନ ହୁଏ। ପରମପିତା ତୁମମାନଙ୍କୁ ମାଲ ମସଲା ପ୍ରଚୁର ଦେଇଛନ୍ତି। ସବୁରକମର ପ୍ରଶ୍ନ ଓ ସମସ୍ୟାର ସମାଧାନହିଁ ତୁମ୍ଭମାନଙ୍କ ପାଖରେ ଅଛି। ବର୍ତ୍ତମାନ ଯଦି ସ୍ଥଳ ବିଶେଷରେ ଯେଉଁଠି ଯେପରି ଭାବରେ ଯେତେ ଟିକିଏ ଯାହା ପରିବେଷଣ କରିବା ଦରକାର, ତାହା କରିପାର, ତା'ହେଲେ ହିଁ ହୁଏ। ତୁମ୍ଭେମାନେ ମଧ ମଣିଷକୁ ପାଇବ, ମଣିଷ ମଧ ତୁମକୁ ପାଇବ। ଉଭୟଙ୍କର ହିଁ ସୁଖ ହୁଏ। ଆ.ପ୍ର. ୧/୯.୧୨.୧୯୪୧



**ପ୍ର. – ଇଷ୍ଟାନୁସରଣରେ ମଣିଷର ପ୍ରବୃତ୍ତିର ଯେଉଁ ବାଧା, ତାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର –** ଯାହାର ଯେଉଁ ପ୍ରବୃତ୍ତିହିଁ ଥାଉ – ତାହା ଯଦି ଇଷ୍ଟସ୍ୱାର୍ଥପ୍ରତିଷ୍ଠାରେ ନିଯୁକ୍ତ ହୁଏ ତାର ଭିତର ଦେଇହିଁ ସେ ଅନେକ ବଡ଼ ହୋଇ ଉଠିପାରେ, ତାର ଏହି ପ୍ରବୃତ୍ତିହିଁ ଲୋକକଲ୍ୟାଣକର ହୋଇଉଠେ। ଧରାଯାଉ, ଜଣେ ହିଂସ୍ର ଓ ହିଂସୁକ ପ୍ରକୃତିର; ଅସତ୍, ଅନ୍ୟାୟ ଓ ପାପ ଯାହା, ତାର ବିରୁଦ୍ଧରେ ତାର ଏହି ଭାବ ଯଦି ପ୍ରଯୁକ୍ତ ହୁଏ, ସେଥିରେ ତାର ମଧ ମଙ୍ଗଳ, ଅନ୍ୟର ମଧ ମଙ୍ଗଳ। ସତ୍ କାହାକୁ ଭଲ ନ ପାଇଲେ ଏହି ମୋଡ଼ ଫେରାଇବା ସମ୍ଭବ ହୁଏ ନାହିଁ। ସେଥିପାଇଁ ମଣିଷକୁ ଇଷ୍ଟଙ୍କଠାରେ ଯୁକ୍ତ କରିବାର କଥା କୁହେ, ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ କରି ତୋଳିବାର କଥା କୁହେ। ....ଇଷ୍ଟସ୍ୱାର୍ଥ ପ୍ରତିଷ୍ଠାର ସହାୟକ କରି କାର୍ଯ୍ୟରେ ଲଗେଇ ପାରିଲେ କିଛିହିଁ ପରିତ୍ୟାଗ କରିବାକୁ ପଡ଼େ ନାହିଁ।

ଆ.ପ୍ର. ୧/୯.୧୨.୧୯୪୧

**ପ୍ର. – ଇଷ୍ଟଙ୍କ ପ୍ରତି ସତ୍ତାଗତ ଆକର୍ଷଣରେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କ ପ୍ରତି ଆମର ଆକର୍ଷଣ ଯେତେ ସତ୍ତାଗତ ହୁଏ, ଏହି ଆକର୍ଷଣ ଆମ୍ଭମାନଙ୍କର ଚଳନ-ଚରିତ୍ରର ଯେତେ ନିୟାମକ ହୁଏ, ତାଙ୍କ ଠାରେ ସକ୍ରିୟ ଭାବରେ ମୁଗ୍ଧ ଓ ବୁଦ୍ଧ ହୋଇ ନିରବଚ୍ଛିନ୍ନ ଚଳନରେ ଯେତେ ଚାଲୁଁ, ସେତେହିଁ ଆମ୍ଭମାନଙ୍କ ସ୍ପର୍ଶରେ ମଣିଷର ଅନ୍ତର୍ନିହିତ ସ୍ୱଚ୍ଛ ଓ ନିର୍ମଳ ବୁଦ୍ଧି ଜାଗି ଉଠିବ ଏବଂ ସେହି ମନ ନେଇ ସେମାନେ ଅପେକ୍ଷାକୃତ ଶୀଘ୍ର ଏବଂ ସହଜ ଭାବରେ ବୁଝିପାରିବେ। ତୁମର ଚରିତ୍ର ଓ ବ୍ୟକ୍ତିତ୍ୱର

ସେହି radiation (ବିକିରଣ) ଯଦି ନ ଥାଏ, ତେବେ ଲକ୍ଷ-ଲକ୍ଷ କଥା କହି ମଧ୍ୟ ତୁମେ ମଣିଷର ମନକୁ ଛୁଇଁ ପାରିବ ନାହିଁ।

ଆ.ପ୍ର. ୧/୯.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣରେ ବାଧାଗୁଡ଼ିକ କେତେବେଳେ ନିୟନ୍ତ୍ରିତ ହୋଇଥାଏ ?**

**ଶ୍ରୀଶ୍ରୀଠାକୁର** – Ideal (ଇଷ୍ଟଙ୍କର) interest (ସ୍ୱାର୍ଥ) prominent (ପ୍ରଧାନ) ହୋଇ ଉଠିବା ଦରକାର, ସେତେବେଳେ ହିଁ ସବୁ adjusted (ନିୟନ୍ତ୍ରିତ) ହୁଏ। ହୃଦୟଟା ଯଦି ଥରେ କବଜାକୁ ଆସେ, ଇଷ୍ଟଙ୍କର ମୁହଁଟା ଯଦି ଅହରହ ଆଖିଆଗରେ ଭାସେ, ସେ ହିଁ ଯଦି ସବୁଠାରୁ ବଡ଼ ହୁଅନ୍ତି, ସେତେବେଳେ ସ୍ୱତଃହିଁ ଅନିୟନ୍ତ୍ରିତ ଯାହା ତାହା adjusted (ନିୟନ୍ତ୍ରିତ) ହୁଏ। Adjust (ନିୟନ୍ତ୍ରଣ) କରି ତାପରେ କ'ଣ enterested (ଆଗ୍ରହୀ) ହୁଏ ? ତାହା କେବେ ହୁଏ ନାହିଁ, ଆଉ ଏହାଛଡ଼ା adjustment-ର (ନିୟନ୍ତ୍ରଣର) ରାସ୍ତାହିଁ ନାହିଁ।

ଆ.ପ୍ର. ୨/୧୦.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣରେ ମନର ନିରୁଦ୍ଧ ଗ୍ରନ୍ଥିଗୁଡ଼ିକର ନିରସନ ଓ ସମାଧାନର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଉପାୟ ଏହି ଇଷ୍ଟସ୍ୱାର୍ଥପ୍ରତିଷ୍ଠାର urge (ଆକୂତି)। ନାମ ଧ୍ୟାନରେ ଏହିଗୁଡ଼ିକ ଜାଗି ଉଠିଥାଏ, ଏବଂ ତାର ନିୟନ୍ତ୍ରଣ, ସାମଞ୍ଜସ୍ୟ ଓ ସମାଧାନର ପଥ ଆବିଷ୍କୃତ ହୁଏ। "ଇଷ୍ଟ ଆର ଇଷ୍ଟ ସ୍ୱାର୍ଥେ ମନେର ଆନାଗୋନା, ଏମନି କ'ରେ ଧ୍ୟାନେ ଆସେ ଚିର-ସଂଯୋଜନା।" ମସ୍ତିଷ୍କର କୋଷଗୁଡ଼ିକ ନାମର ତରଙ୍ଗରେ ଯେତେହିଁ ଆନ୍ଦୋଳିତ ଓ ଆଲୋଡ଼ିତ ହୋଇଥାଏ, ସେତେହିଁ ସେଗୁଡ଼ିକର ଭିତରେ ଅନୁସ୍ୟୂତ ନାନା ଛାପ ଆତ୍ମପ୍ରକାଶ କରିଥାଏ। ଅନେକ ବିଭତ୍ସ ଚିନ୍ତା, କଳ୍ପନା ଓ ପ୍ରବୃତ୍ତି ହାଜିର ହେବାକୁ ଲାଗେ। ଅନେକେ ଏହିସବୁ ଦେଖି ଆତଙ୍କିତ ହୋଇଉଠନ୍ତି, ଭାବନ୍ତି 'ମୋର ବୋଧହୁଏ ଅଧୋଗତି ହେଉଛି', ପୁଣି କେହି କେହି, 'ମନ ଏକାଗ୍ର ଓ ସଂଯତ ହେଉନାହିଁ, ମନର ଚଞ୍ଚଳତା ଓ ମଳିନତା ବଢ଼ିଯାଉଛି', ଇତ୍ୟାଦି ଭାବି ନାମ କରିବା ଛାଡ଼ି ଦିଅନ୍ତି। ତା କିନ୍ତୁ ଠିକ୍ ନୁହେଁ। ନାମରେ ସୁପ୍ତ ଯାହା, ତାହା ଯେ ଆତ୍ମପ୍ରକାଶ କରେ, ତାହା ହିଁ ଲାଭ, ସେତେବେଳେ ବୁଝାଯାଏ, ନାମର କ୍ରିୟା ହେଉଛି, କିନ୍ତୁ ଧ୍ୟାନ-ସମନ୍ୱିତ ନାମ ଦରକାର। ମନର କୋଣରେ ଯାହା ଉଙ୍କି ମାରୁ ନା କାହିଁକି, ଧ୍ୟାନ ସାହାଯ୍ୟରେ ସେହିଟିକୁ ଇଷ୍ଟଙ୍କ ସହିତ ସଙ୍ଗତିଶୀଳ ଓ ଇଷ୍ଟାର୍ଥପୂରକ କରି ତୋଳିବାର କାୟଦାଟା ମୁଣ୍ଡରେ ଆଙ୍କିଦେବାକୁ ହୁଏ, ପୁଣି ବାସ୍ତବ କର୍ମକ୍ଷେତ୍ରରେ ହାତ-କଲମରେ ସେହିପରି ମଧ୍ୟ କରିବାକୁ ହୁଏ। ଏହିପରି କରି ଚାଲିବାର ମଧ୍ୟ ଦେଇ ସେଗୁଡ଼ିକର ସମାଧାନ ଓ ନିରସନ ହୁଏ, ନଚେତ ଚାପ



ଦେବା ଅବସ୍ଥାରେ ଥାଏ। କେତେବେଳେ ଯେ କେଉଁ ପ୍ରବୃତ୍ତି ଅଡୁଆରେ ପକାଏ ତାର ଠିକ୍ ନଥାଏ।

ଆ.ପ୍ର. ୨/୧୧.୧୨.୧୯୪୧

**ପ୍ର. ଇଷ୍ଟଙ୍କ ନାମ-ଧ୍ୟାନର ସମୟରେ କୌଣସି ଜଘନ୍ୟ ଚିନ୍ତା ମୁଣ୍ଡରେ ଆସିଲେ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଅସ୍ତି-ବୃଦ୍ଧିର ବିରୋଧି ଯାହା, ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ପ୍ରତିକୂଳ ଯାହା, ତାକୁହିଁ ଜଘନ୍ୟ କୁହାଯାଇ ପାରେ। ବର୍ତ୍ତମାନ ଆପଣଙ୍କ ପକ୍ଷରେ ଯାହା ଜଘନ୍ୟ ହୋଇଅଛି, ତାକୁହିଁ ଆପଣ ସୁଷ୍ଠ ଓ ସୁନ୍ଦର କରି ତୋଳି ପାରନ୍ତି, ଯଦି ତାକୁ ଅସ୍ତିବୃଦ୍ଧି-ଅନୁକୂଳ ଓ ଇଷ୍ଟପ୍ରତିଷ୍ଠାର ସହାୟକ କରି ତୋଳି ପାରନ୍ତି। ଧରନ୍ତୁ, କୌଣସି ଝିଅ ପ୍ରତି ଅବାଞ୍ଛିତ ଅନୁରାଗ ଆପଣଙ୍କର ଅଛି, ଏବଂ ଏହା ଆପଣଙ୍କ ମନ ମଧ୍ୟରେ ଚାପି ହୋଇ ରହିଛି। ନାମ-ଧ୍ୟାନ ସମୟରେ ସେହି ଚିନ୍ତାଟା ଭାସି ଉଠିଲା, ସେତେବେଳେ ଏହି ଚିନ୍ତାରେ ଅସ୍ଥିର ହୋଇ ଆପଣ ସେହିଟାକୁ ଯେତେ ତଡ଼ିବାକୁ ଚେଷ୍ଟା କରୁଛନ୍ତି, ସେତେହିଁ ଯେପରି ତାହା ଆପଣଙ୍କୁ ପାଇ ବସିଛି। କିନ୍ତୁ ସେତେବେଳେ ଯଦି ଆପଣ ଚିନ୍ତା କରନ୍ତି, ମୁଁ ଯଦି କାହାକୁ ଭଲପାଏ, ତାର ଯାହାଦ୍ୱାରା ଭଲ ହୁଏ ତାହାହିଁ ତ ମୋର କରଣୀୟ। ପରମପିତାଙ୍କ ପାଖରେ ତାର ମଙ୍ଗଳ ପାଇଁ ଯଦି ପ୍ରାର୍ଥନା କରନ୍ତି, ଯେଉଁଥିରେ ସେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହୁଏ, ସୁଖୀ ହୁଏ, ସେଥିପାଇଁ ଆପଣଙ୍କର ଯଦି କିଛି କରିବାର ଥାଏ, ସମ୍ମାନଯୋଗ୍ୟ ବ୍ୟବଧାନ ବଜାଇ ରଖି ଆପଣଙ୍କ ବଂଶ-ମର୍ଯ୍ୟାଦା ଓ ଇଷ୍ଟଗୌରବ ସ୍ମରଣ ରଖି ତାହା କିଭଳି କରାଯାଇ ପାରିବ ତାର କୌଣସି ଉପାୟ ଯଦି ଆପଣ ଚିନ୍ତା କରନ୍ତି ତାହା ତ ଦୋଷାବହ ହେବ ନାହିଁ। ବରଂ ଏହି ଚିନ୍ତା ଇଷ୍ଟାସ୍ୱାର୍ଥ ପ୍ରତିଷ୍ଠାର ସହିତ ଗୁନ୍ଥି ହୋଇଥିବାରୁ ମଙ୍ଗଳ ପ୍ରସୂହିଁ ହେବ। ଏହାକୁହିଁ କହନ୍ତି ନିୟନ୍ତ୍ରଣ, ସାମଞ୍ଜସ୍ୟ ଓ ସମାଧାନ। ସମାଧାନ କେବଳ ମଥାରେ ଆସିଲେ ହେବ ନାହିଁ, ତାକୁ କାର୍ଯ୍ୟର ମଧ୍ୟ ଦେଇ ବାସ୍ତବତାରେ ରୂପ ଦେବାକୁ ହେବ। ଧରନ୍ତୁ, ଜଣକ ପ୍ରତି ଗଭୀର ବିଦ୍ୱେଷଭାବ ପୋଷଣ କରିଛନ୍ତି, ଧ୍ୟାନ ସମୟରେ ଏହି ଚିନ୍ତା ଆପଣଙ୍କୁ କଷ୍ଟ ଦେଉଛି। ଆପଣ ହୁଏତ ଧ୍ୟାନରେ ବସି ଠିକ୍ କଲେ, ତା ସହିତ ଏଣିକି ବନ୍ଧୁ ପରି ମିଶିବେ, ଆଜିହିଁ ତା ଘରକୁ ଯିବେ, ନିଜ ଗଛର ଗୋଟିଏ ଲାଉ ନେଇ ଯିବେ, ଆଉ ତାର ପିଲାମାନଙ୍କ ପାଇଁ କିଛି ଚିନାବାଦାମ ନେଇଯିବେ। କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ଭିତରର ନିରୋଧ ପ୍ରବୃତ୍ତି କାରଣରୁ ତାହା ଆପଣ ଆଉ କଲେ ନାହିଁ, ଆଉ ମନେ-ମନେ ହୁଏତ ଭାବିଲେ, ମୋର ଅନ୍ତରରେ ବିଦ୍ୱେଷ ନ ରହିଲେହିଁ ହେଲା, ବାହାରେ ଏସବୁ କରିବାର ଦରକାର କ'ଣ ? କିନ୍ତୁ ଜେମ୍ସ କହିଛନ୍ତି – It is purpose that God looks at, and not the intension. Prupose-ର ବ୍ୟୁତ୍ପତ୍ତିଗତ ଅଥ ହେଉଛି set forth, ଅର୍ଥାତ୍ କେଉଁ ଉଦ୍ଦେଶ୍ୟ

ସେହି radiation (ବିକିରଣ) ଯଦି ନ ଥାଏ, ତେବେ ଲକ୍ଷ-ଲକ୍ଷ କଥା କହି ମଧ୍ୟ ତୁମେ ମଣିଷର ମନକୁ ଛୁଇଁ ପାରିବ ନାହିଁ।

ଆ.ପ୍ର. ୧/୯.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣରେ ବାଧାଗୁଡ଼ିକ କେତେବେଳେ ନିୟନ୍ତ୍ରିତ ହୋଇଥାଏ ?**

**ଶ୍ରୀଶ୍ରୀଠାକୁର** – Ideal (ଇଷ୍ଟଙ୍କର) interest (ସ୍ୱାର୍ଥ) prominent (ପ୍ରଧାନ) ହୋଇ ଉଠିବା ଦରକାର, ସେତେବେଳେ ହିଁ ସବୁ adjusted (ନିୟନ୍ତ୍ରିତ) ହୁଏ। ହୃଦୟଟା ଯଦି ଥରେ କବଜାକୁ ଆସେ, ଇଷ୍ଟଙ୍କର ମୁହଁଟା ଯଦି ଅହରହ ଆଖିଆଗରେ ଭାସେ, ସେ ହିଁ ଯଦି ସବୁଠାରୁ ବଡ଼ ହୁଅନ୍ତି, ସେତେବେଳେ ସ୍ୱତଃହିଁ ଅନିୟନ୍ତ୍ରିତ ଯାହା ତାହା adjusted (ନିୟନ୍ତ୍ରିତ) ହୁଏ। Adjust (ନିୟନ୍ତ୍ରଣ) କରି ତାପରେ କ'ଣ enterested (ଆଗ୍ରହୀ) ହୁଏ ? ତାହା କେବେ ହୁଏ ନାହିଁ, ଆଉ ଏହାଛଡ଼ା adjustment-ର (ନିୟନ୍ତ୍ରଣର) ରାସ୍ତାହିଁ ନାହିଁ।

ଆ.ପ୍ର. ୨/୧୦.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣରେ ମନର ନିରୁଦ୍ଧ ଗ୍ରନ୍ଥିଗୁଡ଼ିକର ନିରସନ ଓ ସମାଧାନର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଉପାୟ ଏହି ଇଷ୍ଟସ୍ୱାର୍ଥପ୍ରତିଷ୍ଠାର urge (ଆକୂତି)। ନାମ ଧ୍ୟାନରେ ଏହିଗୁଡ଼ିକ ଜାଗି ଉଠିଥାଏ, ଏବଂ ତାର ନିୟନ୍ତ୍ରଣ, ସାମଞ୍ଜସ୍ୟ ଓ ସମାଧାନର ପଥ ଆବିଷ୍କୃତ ହୁଏ। "ଇଷ୍ଟ ଆର ଇଷ୍ଟ ସ୍ୱାର୍ଥେ ମନେର ଆନାଗୋନା, ଏମନି କ'ରେ ଧ୍ୟାନେ ଆସେ ଚିତ୍ତ-ସଂଯୋଜନା।" ମସ୍ତିଷ୍କର କୋଷଗୁଡ଼ିକ ନାମର ତରଙ୍ଗରେ ଯେତେହିଁ ଆନ୍ଦୋଳିତ ଓ ଆଲୋଡ଼ିତ ହୋଇଥାଏ, ସେତେହିଁ ସେଗୁଡ଼ିକର ଭିତରେ ଅନୁସ୍ୟୂତ ନାନା ଛାପ ଆତ୍ମପ୍ରକାଶ କରିଥାଏ। ଅନେକ ବିଭତ୍ସ ଚିନ୍ତା, କଳ୍ପନା ଓ ପ୍ରବୃତ୍ତି ହାଜିର ହେବାକୁ ଲାଗେ। ଅନେକେ ଏହିସବୁ ଦେଖି ଆତଙ୍କିତ ହୋଇଉଠନ୍ତି, ଭାବନ୍ତି 'ମୋର ବୋଧହୁଏ ଅଧୋଗତି ହେଉଛି', ପୁଣି କେହି କେହି, 'ମନ ଏକାଗ୍ର ଓ ସଂଯତ ହେଉନାହିଁ, ମନର ଚଞ୍ଚଳତା ଓ ମଳିନତା ବଢ଼ିଯାଉଛି', ଇତ୍ୟାଦି ଭାବି ନାମ କରିବା ଛାଡ଼ି ଦିଅନ୍ତି। ତା କିନ୍ତୁ ଠିକ୍ ନୁହେଁ। ନାମରେ ସୁପ୍ତ ଯାହା, ତାହା ଯେ ଆତ୍ମପ୍ରକାଶ କରେ, ତାହା ହିଁ ଲାଭ, ସେତେବେଳେ ବୁଝାଯାଏ, ନାମର କ୍ରିୟା ହେଉଛି, କିନ୍ତୁ ଧ୍ୟାନ-ସମନ୍ୱିତ ନାମ ଦରକାର। ମନର କୋଣରେ ଯାହା ଉଙ୍କି ମାରୁ ନା କାହିଁକି, ଧ୍ୟାନ ସାହାଯ୍ୟରେ ସେହିଟିକୁ ଇଷ୍ଟଙ୍କ ସହିତ ସଙ୍ଗତିଶୀଳ ଓ ଇଷ୍ଟାର୍ଥପୂରକ କରି ତୋଳିବାର କାୟଦାଟା ମୁଣ୍ଡରେ ଆଙ୍କିଦେବାକୁ ହୁଏ, ପୁଣି ବାସ୍ତବ କର୍ମକ୍ଷେତ୍ରରେ ହାତ-କଲମରେ ସେହିପରି ମଧ୍ୟ କରିବାକୁ ହୁଏ। ଏହିପରି କରି ଚାଲିବାର ମଧ୍ୟ ଦେଇ ସେଗୁଡ଼ିକର ସମାଧାନ ଓ ନିରସନ ହୁଏ, ନଚେତ ଚାପ



ଦେବା ଅବସ୍ଥାରେ ଥାଏ। କେତେବେଳେ ଯେ କେଉଁ ପ୍ରବୃତ୍ତି ଅଡୁଆରେ ପକାଏ ତାର ଠିକ୍ ନଥାଏ।

ଆ.ପ୍ର. ୨/୧୧.୧୨.୧୯୪୧

**ପ୍ର. ଇଷ୍ଟଙ୍କ ନାମ-ଧ୍ୟାନର ସମୟରେ କୌଣସି ଜଘନ୍ୟ ଚିନ୍ତା ମୁଣ୍ଡରେ ଆସିଲେ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଅସ୍ତି-ବୃଦ୍ଧିର ବିରୋଧି ଯାହା, ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ପ୍ରତିକୂଳ ଯାହା, ତାକୁହିଁ ଜଘନ୍ୟ କୁହାଯାଇ ପାରେ। ବର୍ତ୍ତମାନ ଆପଣଙ୍କ ପକ୍ଷରେ ଯାହା ଜଘନ୍ୟ ହୋଇଅଛି, ତାକୁହିଁ ଆପଣ ସୁଷ୍ଠୁ ଓ ସୁନ୍ଦର କରି ତୋଳି ପାରନ୍ତି, ଯଦି ତାକୁ ଅସ୍ତିବୃଦ୍ଧି-ଅନୁକୂଳ ଓ ଇଷ୍ଟପ୍ରତିଷ୍ଠାର ସହାୟକ କରି ତୋଳି ପାରନ୍ତି। ଧରନ୍ତୁ, କୌଣସି ଝିଅ ପ୍ରତି ଅବାଞ୍ଛିତ ଅନୁରାଗ ଆପଣଙ୍କର ଅଛି, ଏବଂ ଏହା ଆପଣଙ୍କ ମନ ମଧ୍ୟରେ ଚାପି ହୋଇ ରହିଛି। ନାମ-ଧ୍ୟାନ ସମୟରେ ସେହି ଚିନ୍ତାଟା ଭାସି ଉଠିଲା, ସେତେବେଳେ ଏହି ଚିନ୍ତାରେ ଅସ୍ଥିର ହୋଇ ଆପଣ ସେହିଟାକୁ ଯେତେ ତଡ଼ିବାକୁ ଚେଷ୍ଟା କରୁଛନ୍ତି, ସେତେହିଁ ଯେପରି ତାହା ଆପଣଙ୍କୁ ପାଇ ବସିଛି। କିନ୍ତୁ ସେତେବେଳେ ଯଦି ଆପଣ ଚିନ୍ତା କରନ୍ତି, ମୁଁ ଯଦି କାହାକୁ ଭଲପାଏ, ତାର ଯାହାଦ୍ୱାରା ଭଲ ହୁଏ ତାହାହିଁ ତ ମୋର କରଣୀୟ। ପରମପିତାଙ୍କ ପାଖରେ ତାର ମଙ୍ଗଳ ପାଇଁ ଯଦି ପ୍ରାର୍ଥନା କରନ୍ତି, ଯେଉଁଥିରେ ସେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହୁଏ, ସୁଖୀ ହୁଏ, ସେଥିପାଇଁ ଆପଣଙ୍କର ଯଦି କିଛି କରିବାର ଥାଏ, ସମ୍ମାନଯୋଗ୍ୟ ବ୍ୟବଧାନ ବଜାଇ ରଖି ଆପଣଙ୍କ ବଂଶ-ମର୍ଯ୍ୟାଦା ଓ ଇଷ୍ଟଗୌରବ ସ୍ମରଣ ରଖି ତାହା କିଭଳି କରାଯାଇ ପାରିବ ତାର କୌଣସି ଉପାୟ ଯଦି ଆପଣ ଚିନ୍ତା କରନ୍ତି ତାହା ତ ଦୋଷାବହ ହେବ ନାହିଁ। ବରଂ ଏହି ଚିନ୍ତା ଇଷ୍ଟାସ୍ୱାର୍ଥ ପ୍ରତିଷ୍ଠାର ସହିତ ଗୁନ୍ଥି ହୋଇଥିବାରୁ ମଙ୍ଗଳ ପ୍ରସୂହିଁ ହେବ। ଏହାକୁହିଁ କହନ୍ତି ନିୟନ୍ତ୍ରଣ, ସାମଞ୍ଜସ୍ୟ ଓ ସମାଧାନ। ସମାଧାନ କେବଳ ମଥାରେ ଆସିଲେ ହେବ ନାହିଁ, ତାକୁ କାର୍ଯ୍ୟର ମଧ୍ୟ ଦେଇ ବାସ୍ତବତାରେ ରୂପ ଦେବାକୁ ହେବ। ଧରନ୍ତୁ, ଜଣକ ପ୍ରତି ଗଭୀର ବିଦ୍ୱେଷଭାବ ପୋଷଣ କରିଛନ୍ତି, ଧ୍ୟାନ ସମୟରେ ଏହି ଚିନ୍ତା ଆପଣଙ୍କୁ କଷ୍ଟ ଦେଉଛି। ଆପଣ ହୁଏତ ଧ୍ୟାନରେ ବସି ଠିକ୍ କଲେ, ତା ସହିତ ଏଣିକି ବନ୍ଧୁ ପରି ମିଶିବେ, ଆଜିହିଁ ତା ଘରକୁ ଯିବେ, ନିଜ ଗଛର ଗୋଟିଏ ଲାଉ ନେଇ ଯିବେ, ଆଉ ତାର ପିଲାମାନଙ୍କ ପାଇଁ କିଛି ଚିନାବାଦାମ ନେଇଯିବେ। କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ଭିତରର ନିରୋଧ ପ୍ରବୃତ୍ତି କାରଣରୁ ତାହା ଆପଣ ଆଉ କଲେ ନାହିଁ, ଆଉ ମନେ-ମନେ ହୁଏତ ଭାବିଲେ, ମୋର ଅନ୍ତରରେ ବିଦ୍ୱେଷ ନ ରହିଲେହିଁ ହେଲା, ବାହାରେ ଏସବୁ କରିବାର ଦରକାର କ'ଣ ? କିନ୍ତୁ ଜେମ୍ସ କହିଛନ୍ତି – It is purpose that God looks at, and not the intension. Prupose-ର ବ୍ୟୁତ୍ପତ୍ତିଗତ ଅଥ ହେଉଛି set forth, ଅର୍ଥାତ୍ କେଉଁ ଉଦ୍ଦେଶ୍ୟ

ନେଇ କେଉଁ କାର୍ଯ୍ୟ ମଧ୍ୟରେ ତୁମେ ନିଜକୁ ନ୍ୟସ୍ତ କରିଛ ସେହିଟାହିଁ ହେଲା କଥା, ତୁମର ଅଳସ ଇଚ୍ଛାର କୌଣସି ଦାମ୍ ନାହିଁ।

ଆ.ପ୍ର. ୨/୧୧.୧୨.୧୯୪୧

**ପ୍ର. – ଇଷ୍ଟଙ୍କର ନାମ-ଧ୍ୟାନ ସମୟରେ ଚଞ୍ଚଳ ମନର ପଛରେ ଦୌଡ଼ିହିଁ କ'ଣ ମନକୁ ସ୍ଥିର କରିବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – ତୁମେ ତ ମନର ପଛରେ ଦୌଡ଼ିବ ନାହିଁ, ଦୌଡ଼ିବ ଇଷ୍ଟଙ୍କ ପଛରେ – ତୁମର ଯାହା ଅଛି ତାକୁ ହିଁ ନେଇ। ତୁମର ଭଲମନ୍ଦ ସବୁ-କିଛିକୁହିଁ ଇଷ୍ଟଙ୍କର ହତିଆର କରି ନେବାକୁ ହେବ। ଇଷ୍ଟଙ୍କୁ କେନ୍ଦ୍ର କରି ତୁମର ଭଲମନ୍ଦ ସବୁ-କିଛିକୁ readjust (ନବୀନଭାବେ ବିନାୟିତ) କରି ତୋଳିବାକୁ ହେବ। ଏହା ଯଦି ନ କର, ତେବେ ତୁମର undivided personality (ଅଖଣ୍ଡ ବ୍ୟକ୍ତିତ୍ୱ) ଗଢ଼ିଉଠିବ ନାହିଁ। ତୁମର ତଥାକଥିତ ଭଲଟିକୁ ଯଦି ଇଷ୍ଟଙ୍କର କାର୍ଯ୍ୟରେ ଲଗାଇପାର, ତଥାକଥିତ ମନ୍ଦଟିକୁ ବା ଲଗାଇ ପାରିବ ନାହିଁ କାହିଁକି ? ସବୁ ପ୍ରବୃତ୍ତିକୁହିଁ ଯେ ତାଙ୍କ କାର୍ଯ୍ୟରେ ଲଗାଯାଏ, ଆଉ ଏହି ଲଗାଇବାଟାହିଁ ଧର୍ମ। ଜୀବନର କ୍ଷେତ୍ରରେ ସବୁ ପ୍ରବୃତ୍ତିରହିଁ ଉପଯୋଗିତା ଅଛି, ଯଦି ତାହା ଧର୍ମାନୁଗ ହୁଏ, ଇଷ୍ଟାନୁଗ ହୁଏ। ତୁମେ ଯେଉଁଟିକୁ କାଟି-ଛାଟି ବାଦ୍ ଦେବ – ସେହିଟିର ସେବା ଓ ସୁଫଳଠାରୁ ସେତେଟା ବଞ୍ଚିତ ହେବ। ଧରାଯାଉ ତୁମେ କ୍ରୋଧୀ, ଏହି କ୍ରୋଧ ବିସର୍ଜନ ଦେବାକୁ ଯାଇ ଯଦି ତୁମେ righteous indignation ଅର୍ଥାତ୍ ପରାକ୍ରମକୁ ବିଦାୟ ଦିଅ, ତାହେଲେ ତୁମର ଜୀବନହିଁ ଦୁର୍ବହ ହୋଇଉଠିବ, ଆଉ ଦିନ ପରେ ଦିନ ଅସତ୍‌କୁ ପ୍ରଶ୍ରୟ ଦେବାକୁ ବାଧ୍ୟ ହେବ। ପୁଣି ଗୋଟିଏ ପ୍ରବୃତ୍ତି ମଧ୍ୟ ଯଦି ତୁମର ଇଷ୍ଟାର୍ଥ-ସଂନ୍ୟସ୍ତ ହେବାକୁ ବାକି ଥାଏ, ଅସଂଲଗ୍ନ ଥାଏ, ତେବେ ତାର ପ୍ରରୋଚନାରେ ତୁମେ କେତେବେଳେ ଯେ କ'ଣ କରିପାର, ତାର ଠିକ୍ ନାହିଁ। ଏହିପରି ବିଚ୍ଛିନ୍ନ ଜୀବନ କେତେବେଳେହିଁ ନିର୍ଭର ଯୋଗ୍ୟ ନୁହେଁ।

ଚଞ୍ଚଳତା ହେଲା ମନର ଧର୍ମ, ଚଞ୍ଚଳତା ଲକ୍ଷେ ବଢୁ ସେଥିରେ କ୍ଷତି ନାହିଁ, ଯଦି ତାହା ଇଷ୍ଟାର୍ଥେ ହୁଏ। ବିଭିନ୍ନ ପ୍ରକାରର ଚଞ୍ଚଳତା ଯେତେବେଳେ ଇଷ୍ଟାର୍ଥୀ ହୁଏ, ସେତେବେଳେହିଁ ଆସେ ସ୍ଥୈର୍ଯ୍ୟ, ସେତେବେଳେହିଁ ଆସେ ସାମ୍ୟଭାବ ଅର୍ଥାତ୍ balance. ସେତେବେଳେ ଲକ୍ଷ କର୍ମ ଓ ଦାୟିତ୍ୱ ଭିତରେ ମଧ୍ୟ ଆମ୍ଭେମାନେ ଦିଗହରା ହେଉନା, ସବୁଟିକୁ ସୁସାମଞ୍ଜସ୍ୟର ସହ ଆନ୍ୱିତ କରି ତୋଳିବା ପାଇଁ ଅସୀମ ଶକ୍ତି ଗଜାଇ ଉଠେ। ଆଉ ଏହା ଖୁବ୍‌ହିଁ ଠିକ୍ କଥା, ମଣିଷ ଯେତେ ହିଁ ଇଷ୍ଟମୟ ହୋଇ ଉଠିଥାଏ, ସେତେହିଁ ତାର ଶରୀର ଓ ମନର ଅବାନ୍ତର ବିକ୍ଷେପ ଓ ବିଶୃଙ୍ଖଳା ସ୍ତିମିତ ହୋଇଆସିଥାଏ। ଉତ୍ତାଳ କର୍ମଚାଞ୍ଚଲ୍ୟର ଭିତରେ ମଧ୍ୟ ସେ ଗଭୀର ପ୍ରଶାନ୍ତି ଅନୁଭବ କରେ। ତଥାକଥିତ ଭଲମନ୍ଦ ଦ୍ୱାରା ସେ ଖୁବ୍



ଗୋଟିଏ ଆବିଷ୍ଟ ହୁଏ ନାହିଁ। ସାକ୍ଷୀସ୍ୱରୂପ ସବୁ ଦେଖି ଯାଏ ଏବଂ ନିୟନ୍ତ୍ରଣ, ସାମଞ୍ଜସ୍ୟ, ସମାଧାନ, ବିନିଯୋଗ, ପ୍ରତ୍ୟାହାର, ଉପେକ୍ଷା ବା ତିତିକ୍ଷା ଯେଉଁଠାରେ ଯେପରି ପ୍ରୟୋଜନ ତାହାହିଁ କରି ଚାଲେ। ଜୀବନକୁ ନେଇ ସେ ସେତେବେଳେ ଆଉ ବିବ୍ରତ ବୋଧ କରେ ନାହିଁ।

ଆ.ପ୍ର. ୨/୧୧.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣର ସ୍ୱାର୍ଥରେ ଆମର କର୍ମର ଧରଣ କିପରି ହେବା ଦରକାର ?**

**ଶ୍ରୀଶ୍ରୀଠାକୁର** – ସବୁ-କିଛି ସୁକେନ୍ଦ୍ରିକ ହୋଇ, ଇଷ୍ଟସ୍ୱାର୍ଥପ୍ରତିଷ୍ଠାମୁଖର ହୋଇ କରିବା ଦରକାର, ଆଉ ତାହାହିଁ ଧର୍ମ। ନଚେତ୍ ଇଷ୍ଟଙ୍କ ସହିତ ସଙ୍ଗତି ନାହିଁ, ଖୁବ୍ ସେବା କରି ବୁଲୁଛି ତାହା କିନ୍ତୁ ପ୍ରବୃତ୍ତିର ସେବା। ପୁଣି ପର ପାଇଁ ଖୁବ୍ କରେ, ନିଜର ଦିଗକୁ ମୋଟେ ହିଁ ଖିଆଲ ନାହିଁ, ନିଜକୁ ବିପନ୍ନ ଓ ବିଧ୍ୱସ୍ତ କରି ତୋଳୁଛି, ତାର ମଧ୍ୟ କୌଣସି ମାନେ ହୁଏ ନାହିଁ। ମୋତେ ନିଜକୁ ମଧ୍ୟ ସୁସ୍ଥ ରଖିବାକୁ ହେବ, ସକ୍ରିୟ ରଖିବାକୁ ହେବ, ଚଳଚ୍ଛୀଳ ରଖିବାକୁ ହେବ। ମୁଁ ଯଦି ନିଜେ ଠିକ୍ ନ ରହେ ତେବେ ଇଷ୍ଟାର୍ଥୀ ସେବା କରିବି କିପରି ? ମନେ ରଖିବାକୁ ହେବ – ମୋର ଏହି ଜୀବନ ମଧ୍ୟ ମୋ ଇଷ୍ଟଙ୍କର, ସେଥିପାଇଁ ଏହାକୁ ଅବିହିତ ଭାବରେ ନିପୀଡ଼ିତ କରିବାର ଅଧିକାର ମୋର ନାହିଁ।

ଆ.ପ୍ର. ୨/୧୧.୧୨.୧୯୪୧

**ପ୍ର. – ଇଷ୍ଟଙ୍କୁ ଧରି ଚାଲିବାଟାହିଁ କ'ଣ ଯଥେଷ୍ଟ ନୁହେଁ ?**

**ଶ୍ରୀଶ୍ରୀଠାକୁର** – କେବଳ ଇଷ୍ଟଙ୍କୁ ଧରି ଚାଲିବାହିଁ ଯଥେଷ୍ଟ ନୁହେଁ, ସମସ୍ତ ବୃତ୍ତି-ପ୍ରବୃତ୍ତି ଓ ସତ୍ତା ଦେଇ ତାଙ୍କଠାରେ ଅନୁରକ୍ତ ହେବାକୁ ହେବ, ତାଙ୍କୁ ଅନୁସରଣ କରିବାକୁ ହେବ, ଆଉ ଯେଉଁଠାରେ ଯେତେ ଟିକିଏ ଫାଙ୍କ, ଅମେଳ ବା ଦ୍ୱନ୍ଦ୍ୱ ଅଛି, ସେହି ଟିକକ ଠିକ୍ କରିତୋଳିବାକୁ ହେବ, ଏହାକୁହିଁ କହନ୍ତି unrepelling adherence (ଅଚ୍ୟୁତ ଅନୁରାଗ)। ...ସମ୍ୟକଭାବରେ ଇଷ୍ଟନିବଦ୍ଧ ନ ହେଲେ ମଣିଷ ସାଧୁ ବି ହୁଏ ନାହିଁ, ସନ୍ନ୍ୟାସୀ ବି ହୁଏ ନାହିଁ, ଆଉ ସମ୍ୟକ ଭାବରେ ଯିଏ ଇଷ୍ଟନିବଦ୍ଧ ହୋଇଉଠେ, ସେ ଯଦି ଖୁବ୍ ଶଇତାନ ମଧ୍ୟ ହୁଏ ତାର ଶଇତାନି ମଧ୍ୟ ପୁଣ୍ୟ ପ୍ରଭା ବିକିରଣ କରେ।

ଆ.ପ୍ର. ୨/୧୨.୧୨.୧୯୪୧

**ପ୍ର. – ଇଷ୍ଟ କିଏ କେତେ ପ୍ରୟୋଜନୀୟ ?**

**ଶ୍ରୀଶ୍ରୀଠାକୁର** – ଯାହାଙ୍କର ଆଧିପତ୍ୟ ଆମ ଉପରେ ଥିବା କାରଣରୁ ଜଗତର ଯାହାକିଛି ବୁଝାଯାଏ, ଜଣାଯାଏ, ସତ୍ତାନୁପୋଷଣୀ କରି ନିୟନ୍ତ୍ରିତ କରାଯାଏ ଓ ସେ ସବୁ ଉପରେ ଆଧିପତ୍ୟ ବିସ୍ତାର କରିବା ସମ୍ଭବ ହୁଏ ଏବଂ ଯାହାଙ୍କୁ ଦେଇ, ଯାହାଙ୍କ ଦ୍ୱାରା

ବିଶ୍ୱବ୍ରହ୍ମାଣ୍ଡର ଅନନ୍ତବୈଚିତ୍ର୍ୟର ସବୈଶିଷ୍ଟ୍ୟ ସଂହତି ଆମ ପାଖରେ ଉଦ୍‌ଭାସିତ ହୋଇଉଠେ, ସେହିଁ ହେଲେ ଆମର ଇଷ୍ଟ, ଆମର ଭଗବାନ, ଆମର ଈଶ୍ୱର। ସୁତରାଂ ତାଙ୍କୁ ଛାଡ଼ି ଗୋଟିଏ ପାଦ ବି ଚାଲିବା ଆମ ପକ୍ଷରେ ସମ୍ଭବ ନୁହେଁ।

ଆ.ପ୍ର. ୨/୧୨.୧୨.୧୯୪୧

**ପ୍ର. – ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେବାକୁ ହେବ କାହିଁକି ?**

**ଶ୍ରୀଶ୍ରୀଠାକୁର** – ପ୍ରଥମେ ଦରକାର ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେବା, ଏହା ହେଲେ ତୁମେ ଧର୍ମରାଜ୍ୟରେ ପଶିବାର ଚାବିକାଠିଟି ହାତରେ ପାଇଲ, ସେତେବେଳେ ଆଉ ବେଚାଲରେ (ବିପଥରେ) ପାଦ ପଡ଼ିବ ନାହିଁ। ତୁମର ଯେତେ ଟିକିଏ କ୍ଷମତାହିଁ ଥାଉ ତାହାହିଁ କଲ୍ୟାଣ ପଥରେ ନିୟୋଜିତ ହେବ। ଆଉ ଏହି ଇଷ୍ଟଙ୍କୁ ଖୁସି କରିବା ଆକୂତି ଠାରୁ, ତୁମେ ଆହୁରି ଅଧିକ ଅଧିକ ଆରାଧନା ଓ ତପସ୍ୟା କରିବ, ତାହା ଦ୍ୱାରା ତୁମର ସାମର୍ଥ୍ୟ ମଧ ବଢ଼ିଯବ, ଆଉ ସେହି ସାମର୍ଥ୍ୟ ହେବ କଲ୍ୟାଣ କଳ୍ପତରୁ। ....ଯଦି ବଞ୍ଚିବାକୁ ଚାହାଁନ୍ତି, ବଞ୍ଚାଇବାକୁ ଚାହାଁନ୍ତି, ନିଜର ଓ ପରିବେଶର ଜୀବନରେ balance (ସାମଞ୍ଜସ୍ୟ) ଆଣିବାକୁ ଚାହାଁନ୍ତି, ତେବେ ନିଜେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହୁଅନ୍ତୁ, ଅନ୍ୟକୁ ମଧ ତାହା କରି ତୋଳନ୍ତୁ – ତାହା intellectually (ବୁଦ୍ଧିଗତଭାବରେ) ବା philosophically (ଦାର୍ଶନିକ-ଭାବରେ) ନୁହେଁ; ବାସ୍ତବରେ, ପ୍ରତିଟି ମୁହୂର୍ତ୍ତରେ ପ୍ରତିଟି ବିଷୟରେ। ଏହି ନିଶା କରିନେବାକୁ ହୁଏ, ସେଥିରେ ଯାହା ଥାଉ କପାଳରେ। ସବୁ ପ୍ରତ୍ୟାଶା ଛାଡ଼ ପାଗଳ ପରି ଲାଗିଯିବାକୁ ହୁଏ, ସେତେବେଳେ ହୃଦୟଟି, ମୁଖମଣ୍ଡଳଟ ଡଗମଗ ହୋଇ ରହିଥାଏ – ଭାବରେ, ଭାଷାରେ ଓ ଆନନ୍ଦରେ।

ଆ.ପ୍ର. ୨/୧୩.୧୨.୧୯୪୧

**ପ୍ର. – ଇଷ୍ଟଙ୍କର ଭକ୍ତ କିପରି ହୁଏ ?**

**ଶ୍ରୀଶ୍ରୀଠାକୁର** – ଭକ୍ତି କେବେହେଲେ ବି ମଣିଷକୁ ଦୁର୍ବଳ କରେ ନାହିଁ, ସେ ମଣିଷକୁ କରିତୋଳେ ଚିର ପରାକ୍ରମଶୀଳ, ଉର୍ଜ୍ଜୀ ଅନୁରାଗ-ସମ୍ପନ୍ନ। ତେଣୁ ଭକ୍ତ କେତେବେଳେ ବି ଇଷ୍ଟଙ୍କର ବୋଝ ହୁଏ ନାହିଁ, ଭାର ହୁଏ ନାହିଁ, ଗଳଗ୍ରହ ହୁଏ ନାହିଁ, ସେ ହୁଏ ତାଙ୍କର ବଳ, ଭରସା, ସମ୍ପଦ, ଆଶା-ଉଦ୍ଦୀପନାର ମାଣିକ। ହନୁମାନଙ୍କୁ ଦେଖିନାହଁ ? ରାମଚନ୍ଦ୍ର ମୁହ୍ୟମାନ ହୋଇଗଲେ ମଧ ସେ ଦବି ଯାଆନ୍ତି ନାହିଁ। ତାଙ୍କର ଯେ ମା ଜାନକୀଙ୍କୁ ଉଦ୍ଧାର ନ କରିଲେହିଁ ନ ହୁଏ। ସବୁ ଦାୟିତ୍ୱ ମୁଣ୍ଡରେ ନେଇ ଯେପରି କରି ଯାହା କରିଲେ ମା ଜାନକୀଙ୍କର ଉଦ୍ଧାର ହେବ, ସେ ତାହାହିଁ କଲେ। ଏଥିରେ ସେ ପାପ-ପୁଣ୍ୟ, ଇହକାଳ-ପରକାଳ, ସ୍ୱର୍ଗ-ମୋକ୍ଷ, ଭଗବାନ ଲାଭ କିଛିର ହିଁ ଧାର ଧାରି ନାହାଁନ୍ତି। ରାମଚନ୍ଦ୍ରଙ୍କୁ ଖୁସି କରିବା, ତାଙ୍କର ମୁହଁରେ ହସ ଫୁଟେଇବା, ତାଙ୍କର ଇଚ୍ଛା ପୂରଣ କରିବା – ଏହାଛଡ଼ା ଅନ୍ୟ କୌଣସି ଚାହିଦାର ଲାଳସାହିଁ ତାଙ୍କର ନ ଥିଲା। ନିଜକୁ ଭୁଲି ଯାଇ ଇଷ୍ଟଙ୍କର ତୃପ୍ତି ପାଇଁ, ତାଙ୍କର ପ୍ରୀତି ପାଇଁ ଏପରି ବେପରୁଆ ଭାବରେ କର୍ମମାତାଲ ହୋଇ ଉଠିବାହିଁ ଧର୍ମ। ଏହି ପଥରେ ଆତ୍ମନିୟନ୍ତ୍ରଣ, ଭଗବାନ ଲାଭ, ସୁଖ-ଶାନ୍ତି, ଆନନ୍ଦ, ଜୟ, ଯଶ, ଐଶ୍ୱର୍ଯ୍ୟ, ସାଫଲ୍ୟ, ସାର୍ଥକତା ସବୁହିଁ ଆସି ସହଜରେ ଧରା ଦିଏ, କିନ୍ତୁ କୌଣସିଟି ପାଇଁ ମୁଣ୍ଡ ଖେଳାଇବାକୁ ପଡ଼େ ନାହିଁ।

ଆ.ପ୍ର. ୨/୧୩.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣରେ ମାତୁଆଲା ହେଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଏହା ଠିକ୍ ଜାଣ ଯେ – ଦୁନିଆ ତେଲିଆ ମୁଣ୍ଡରେ ତେଲ ଦେବାକୁ ଭଲପାଏ। ଯେତେବେଳେ ତୁମେ ଇଷ୍ଟଙ୍କୁ ନେଇ ମାତୁଆଲା ହୋଇ ଅଛ, କେହି ତୁମକୁ ଶ୍ରଦ୍ଧା, ସମ୍ମାନ ବା ଖୋସାମତ କଲେ ବା ନ କଲେ ସେ ଦିଗକୁ ଚାହିଁ ଦେଖିବାକୁ ଅବକାଶ ନାହିଁ, ସେତେବେଳେହିଁ ଦେଖିବ ତୁମକୁ ଶ୍ରଦ୍ଧା ଓ ସମ୍ମାନ ଦେବା ପାଇଁ ସମସ୍ତେ ଉଠି ପଡ଼ି ଲାଗିଛନ୍ତି। ଯେତେବେଳେ ତୁମେ ନିଜ ପେଟର ଧନ୍ଦା ଭୁଲି, ସମସ୍ତଙ୍କର ପେଟର ଧନ୍ଦାରେ ବ୍ୟସ୍ତ ହୋଇଛ, ସେତେବେଳେ ତୁମକୁ କିଛି ଖୁଆଇ ପାରିଲେ, ଦେଇ ପାରିଲେ ମଣିଷ ଯେପରି ବର୍ତ୍ତି ଯାଉଛି। ସେଥିପାଇଁ କୁହାଯାଏ 'ବୀରଭୋଗ୍ୟା ବସୁନ୍ଧରା'।

ଆ.ପ୍ର. ୨/୧୩.୧୨.୧୯୪୧

**ପ୍ର.ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠାହିଁ ଯେଉଁମାନଙ୍କର ଜୀବନରେ ପ୍ରଥମ ଓ ପ୍ରଧାନ ସେମାନେ କିପରି ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠା ଯେଉଁମାନଙ୍କ ଜୀବନରେ normally primary prominent (ସ୍ୱତଃ ହିଁ ପ୍ରଥମ ଓ ପ୍ରଧାନ), ସେହିମାନେହିଁ ଈଶ୍ୱର-କୋଟି ପୁରୁଷ। ଏହିପରି ଯେଉଁମାନେ, ସେମାନେ କୌଣସି ପ୍ରକାର selfish consideration-ରେ ହିଁ (ସ୍ୱାର୍ଥ-ଚିନ୍ତାରେ ହିଁ) deviated (ବ୍ୟତିକ୍ରାନ୍ତ) ହୁଅନ୍ତି ନାହିଁ।

ଆ.ପ୍ର. ୨/୧୩.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣର ପଥରେ ପରିବାରକୁ ଭଲଭାବରେ ରଖିବାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଏହା ଠିକ୍ ଜାଣ – ନିଜର ବୃହତ୍ତର ପରିବେଶକୁ ଯଦି ସୁସ୍ଥ, ସ୍ୱଚ୍ଛ ରଖିବାର ଦାୟିତ୍ୱ ଗ୍ରହଣ ନ କର, ଲକ୍ଷେ ଚେଷ୍ଟା କରି ମଧ ତୁମେ ତୁମର ପରିବାରକୁ ଭଲଭାବରେ ରଖିପାରିବ ନାହିଁ। ନିଜକୁ ଛୋଟ କରି ଭାବିଲେହିଁ ଟ ଠକିଯାଅ। ମନେରଖ,

ତୁମେ ତୁମ ଇଷ୍ଟଙ୍କର, ସେଥିପାଇଁ ତୁମେ ସମସ୍ତଙ୍କର, କାରଣ ସମସ୍ତଙ୍କର ପାଇଁ ହିଁ ସେ, ପୁଣି ତୁମେ ଯଦି ସମସ୍ତଙ୍କର ହୁଅ, ସମସ୍ତେ ହିଁ ତୁମର। ତୁମର କ'ଣ କିଛି ଶେଷ ଅଛି ? ଇୟତ୍ତା ଅଛି ? ଯେ ତୁମେ ଅଟକି ଯିବ ! ଘରେ ଘରେ ତୁମର ପରମଆତ୍ମୀୟ, ଦେଶ ଦେଶରେ ତୁମର ଭାଇ-ବନ୍ଧୁ, ମଣିଷର ହୃଦୟ ହୃଦୟରେ ତୁମର ଘର ଦ୍ୱାର, ସମସ୍ତଙ୍କର ଖଳା-ହମାରରେ ତୁମର ଖାଇବାର ଅନ୍ନ, ତୁମର ପୁଣି ପରବାୟ କେଉଁଥିରେ ? ସେଥିପାଇଁ କୁହେଁ, ଅଭାବ କିଛିର ନାହିଁ, ଅଭାବ ଅଛି କେବଳ ଭାବରେ, ଭାବ ମାନେ 'ଚିନ୍ତା' ନୁହେଁ 'ହେବା'। ଇଷ୍ଟଙ୍କ ଠାରେ ତୁମର ଭାବ ହେଉ, ଅର୍ଥାତ୍ ତୁମେ ସକ୍ରିୟ ଭାବରେ ଇଷ୍ଟସର୍ବସ୍ୱ ହୋଇ ଉଠ, ଆଉ ସେହି ସଙ୍ଗେ ସଙ୍ଗେ ଇଷ୍ଟଙ୍କର ଯେଉଁମାନେ, ସେମାନେ ତୁମର ବାସ୍ତବରେ ନିଜର ହୋଇ ଉଠନ୍ତୁ – ଦେଖିବ ମା' ଲକ୍ଷ୍ମୀ ତୁମର ସୁବିଧା କରିବାକୁ ନିଜଆଡ଼୍ ଆଗେଇ ଆସିବେ।

ଆ.ପ୍ର. ୨/୧୫.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣରେ ଲୋକସେବାର ଧରଣ କିପରି ହେବ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟପ୍ରାଣ ସେବା ନ ହେଲେ ଅର୍ଥାତ୍ ସେବା ଭିତରେ ଇଷ୍ଟାର୍ଥ-ପ୍ରତିଷ୍ଠାର ବୁଦ୍ଧି ନ ରହିଲେ, ଆତ୍ମପ୍ରତିଷ୍ଠା ପାଇଁ ମଣିଷର ବୃତ୍ତିରେ ତେଲ ମାଲିସ କରି ସେବା କରିବୁଲିଲେ, ସେ ସେବାର ଫଳ ଦାନା ବାନ୍ଧି ଉଠେ ନାହିଁ, ....। ଏହିପରି ସେବାକୁ ଅନେକେ ସତ୍‌କର୍ମ ମନେ କରନ୍ତି, କିନ୍ତୁ ସେବା ସହିତ ଧର୍ମଦାନ ଯଦି ନ ଥାଏ ଇଷ୍ଟଙ୍କର ସ୍ୱାର୍ଥ, ଇଷ୍ଟଙ୍କର ପ୍ରୀତି, ଇଷ୍ଟଙ୍କର ପ୍ରତିଷ୍ଠା ଯଦି ନ ଥାଏ, ମଣିଷକୁ ଯୋଗ୍ୟ ଓ ମହତ କରିତୋଳିବାର ପ୍ରଚେଷ୍ଟା ଯଦି ନ ଥାଏ, ଏକ କଥାରେ ସେବା ଯଦି ସୁକେନ୍ଦ୍ରିକ ନ ହୁଏ, ତେବେ ସେ ସେବାର କୌଣସି ଦାମ୍ ନାହିଁ, ତାହା ଅସତ୍ କର୍ମରେ ହିଁ ସାମିଲ। ଅସତ୍ ମାନେ – ଯାହା ଜୀବନ-ବୃଦ୍ଧିର ପରିପନ୍ଥୀ। ସେ ସେବାରେ ନିଜର ବା ପରର କାହାରି ଭଲ ହୁଏ ନାହିଁ।

ଆ.ପ୍ର. ୨/୧୫.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣ କିପରି ଭାବରେ ମଣିଷର ଆତ୍ମରକ୍ଷାର ପ୍ରବୃତ୍ତିକୁ ମଧ୍ୟ ସାହାଯ୍ୟ କରେ ?**

**ଶ୍ରୀଶ୍ରୀଠାକୁର** – କେବଳ ମାତ୍ର ଆତ୍ମରକ୍ଷାର ପ୍ରବୃତ୍ତିହିଁ ମନୁଷ୍ୟର ସତ୍ତା-ସଂରକ୍ଷଣରେ ଖୁବ୍ ବେଶି ଗୋଟିଏ ସହାୟତା କରିପାରେ ନାହିଁ, ଯଦି ଇଷ୍ଟ ଓ ପାରିପାର୍ଶ୍ୱିକଙ୍କୁ ରକ୍ଷାର ପ୍ରବୃତ୍ତି ତାର ପ୍ରବଳ ହୋଇ ନ ଉଠେ। ସବୁ ଅବସ୍ଥାରେ ଇଷ୍ଟଙ୍କର ସତ୍ତା, ସ୍ୱାର୍ଥ ଓ ଇପ୍ସାକୁ ଯଦି ଆମେ ପ୍ରାଧାନ୍ୟ ଦେଇ ଚାଲିବାରେ ଅଭ୍ୟସ୍ତ ହେଉ, ଏବଂ ତାଙ୍କର ପ୍ରୀତି ଓ ପ୍ରତିଷ୍ଠା କାମନାରେ ପାରିପାର୍ଶ୍ୱିକଙ୍କର ସଂରକ୍ଷଣ ଓ ସମ୍ବର୍ଦ୍ଧନାରେ ଯତବାନ ହେଉଁ, ସେତେବେଳେହିଁ



ଆମ୍ଭେମାନେ ଆତ୍ମସଂରକ୍ଷଣ ଓ ଆତ୍ମସମ୍ବର୍ଦ୍ଧନା ପାଇଁ ଯାହା ଯାହା କରଣୀୟ ତାହା ଠିକ୍ ଭାବରେ କରିପାରୁ। ତା ପୂର୍ବ ପର୍ଯ୍ୟନ୍ତ ପ୍ରବୃତ୍ତିହିଁ ଆମମାନଙ୍କୁ ଘେରି ଧରିଥାଏ, ଆମ୍ଭମାନଙ୍କର ଚାଲିବାର ପଥ ଆମ୍ଭମାନଙ୍କର ଆଖି ସାମନାରେ ଠିକ୍ ଠିକ୍ ଫୁଟି ଉଠେ ନାହିଁ।

ଆ.ପ୍ର. ୨/୧୬.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ବ୍ୟକ୍ତି-ଜୀବନର ଚରମ ବିକାଶର ସହଜ ପଥ କ'ଣ ?**

**ଶ୍ରୀଶ୍ରୀଠାକୁର** – ଦେଖ, ତୁମ୍ଭମାନଙ୍କୁ ମୁଁ ଗୋଟିଏ ଛୋଟ କଥା କହୁଛି – ମୋ ପାଖରୁ ଯେତେବେଳେ ଯେଉଁ ନିର୍ଦ୍ଦେଶ ପାଅ, ଯେଉଁ ଅଭିଜ୍ଞତାର କଥା ଶୁଣ, ସେତେବେଳେ ହିଁ ଯଦି ତାହା ସାଧ୍ୟାନୁସାରେ ଅନୁଶୀଳନ କରିବାକୁ ଲାଗିଯାଅ, ଅନାୟାସରେ ତୁମ୍ଭମାନଙ୍କର ବହୁ ସାଧନା ସହଜ ହୋଇଯିବ। ବେମାଲୁମ ଭାବରେ କାଳ କାଳକୁ ଯେ ଜଣେ ଜଣେ କ'ଣ ହୋଇ ଉଠିବ, ତାହା ତୁମ୍ଭେମାନେ ନିଜେ ଠିକ୍ ପାଇବ ନାହିଁ, କିନ୍ତୁ ଦୁନିଆ ଠିକ୍ ପାଇବ। ...ତୁମ୍ଭେମାନେ କେତେ ଜଣ ମଣିଷ ଯଦି ଯୋଗ୍ୟ ହୋଇଉଠ, ତାହାହେଲେ ମୁଁ ସାରା ଦେଶ, ଏପରିକି ଦୁନିଆ ସମ୍ବନ୍ଧରେ ନିଶ୍ଚିନ୍ତ ହୋଇପାରେ।

ଆ.ପ୍ର. ୨/୧୭.୧୨.୧୯୪୧

**ପ୍ର.– ଇଷ୍ଟାର୍ଥକରଣର ମଧ୍ୟ ଦେଇ କ'ଣ ହୁଏ ? ତାହା ଆଗେ ନା ସାଂସାରିକ ଉନ୍ନତିର ଚେଷ୍ଟା ଆଗେ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟାର୍ଥକରଣରେ ଜୀବନର ସବୁଗୁଡ଼ିକ ଦିଗ with a meaning (ଗୋଟିଏ ଅର୍ଥ ନେଇ) adjusted (ନିୟନ୍ତ୍ରିତ) ହୁଏ, ପ୍ରୟୋଜନଗୁଡ଼ିକ ମଧ୍ୟ ସାର୍ଥକତା-ମୁଖର ହୋଇଉଠେ, ପ୍ରବୃତ୍ତିଜନିତ ଅବାନ୍ତର ପ୍ରୟୋଜନ କମି ଯାଏ। ଆଉ ହାତ-କଲମରେ କରି କୃତି ହୋଇ କୃତାର୍ଥତାର ଉପଢ଼ୌକନରେ ତାଙ୍କୁ ନନ୍ଦିତ କରିବାର ଏକ ଆବେଗ ସୃଷ୍ଟି ହୁଏ, ତାଠାରୁ ଆସେ inquisitiveness (ଅନୁସନ୍ଧିତ୍ସା)। କାର୍ଯ୍ୟର ଅନ୍ଧି-ସନ୍ଧି, ଫନ୍ଦିଫିକର, ପାରମ୍ପର୍ଯ୍ୟ କ୍ରମେ କେଉଁଠି କେତେବେଳେ କ'ଣ କରିବାକୁ ହେବ, କାହାକୁ କ'ଣ କହିବାକୁ ହେବ, କାହା ସହିତ କିପରି ବ୍ୟବହାର କରିବାକୁ ହେବ, ଅନ୍ତରାୟ ଗୁଡ଼ିକୁ କିପରି ବିନ୍ୟସ୍ତ କରି profitable (ଲାଭଜନକ) କରି ତୋଳିବାକୁ ହେବ, ସାହାଯ୍ୟ କେଉଁ ଭାବରେ କେଉଁ source-ରୁ (ମାଧ୍ୟମରୁ) ପାଇ ହେବ, ନିଜର ଅଭ୍ୟାସ-ବ୍ୟବହାର ଚାଲି-ଚଳନ କେତେଟା ଠିକ୍ କରିବାକୁ ହେବ – ଇତ୍ୟାଦି ସବୁ ସମ୍ବନ୍ଧରେ ସେତେବେଳେ ଗୋଟିଏ ସୁସମନ୍ୱିତ ଧ୍ୟାନଶୀଳ କର୍ମ ତତ୍ପରତା ଗଜାଇଉଠେ, ଏହା ଭିତର ଦେଇ ସବୁଗୁଡ଼ିକର

ସମାଧାନ ନେଇ ଗୋଟିଏ consolidated universe of experience (ଦାନାବାନ୍ଧା ଅଭିଜ୍ଞତାର ଦୁନିଆ) ଫୁଟି ଉଠେ। ତାହା ଦ୍ୱାରା ଗୋଟିଏ ବିରାଟ wiseness (ପ୍ରଜ୍ଞା) ସଂହତ ହୋଇ ରହିଥାଏ – ମଣିଷ ସୁନିୟନ୍ତ୍ରିତ ହୁଏ, ସୁନ୍ଦର ହୁଏ, ଦକ୍ଷ ହୁଏ, ସାଶ୍ରୟୀ ହୁଏ, ଅର୍ଜ୍ଜନପଟୁ ହୁଏ, ସବୁକାର୍ଯ୍ୟରେ ସଫଳତା ତାକୁ ଦାସୀ ପରି ଅନୁସରଣ କରେ। 'ନାନ୍ୟ ପନ୍ଥା ବିଦ୍ୟତେଅୟନାୟ।' ଯେଉଁମାନେ ସାଂସାରିକ ଉନ୍ନତି ବା ଟଙ୍କା ଉପାୟର କଥା ବଡ଼ କରି ଭାବନ୍ତି, ସେହି ଦିଗଟା ଠିକ୍ କରି ପରେ ଇଷ୍ଟଙ୍କର କାମ କରିବାକୁ ଚାହାଁନ୍ତି – there lies their folly (ସେହିଠାରେ ହିଁ ସେମାନଙ୍କର ନିର୍ବୁଦ୍ଧତା)। ଯାହା କେବେବି ହେବାର ନୁହେଁ, ସେମାନେ ତାହାହିଁ କରିବା ପାଇଁ ଚାହାଁନ୍ତି – ତାହା କ'ଣ କେବେ ହୋଇପାରେ ?

ଆ.ପ୍ର. ୨/୧୭.୧୨.୧୯୪୧

**ପ୍ର. – ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ସହାୟକ ଓ ଅନିବାର୍ଯ୍ୟ ହେଲେ ମୃତ୍ୟୁକୁ ମଧ୍ୟ କ'ଣ ବରଣ କରାଯାଏ ?**

**ଶ୍ରୀଶ୍ରୀଠାକୁର –** ମରଣଟା ଯଦି ଜୀବନବୃଦ୍ଧି ବା ଇଷ୍ଟସ୍ୱାର୍ଥପ୍ରତିଷ୍ଠା ପାଇଁ ପ୍ରୟୋଜନ ହୁଏ – ସେତେବେଳେ ଅନ୍ୟ କଥା। ତେଣୁ ଗୀତାରେ ଅଛି, 'ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ, ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍।' ନଚେତ୍ ଅଯଥା ଜୀବନ ଦେବାରେ ତ କୌଣସି ଲାଭ ନାହିଁ। ଅବଶ୍ୟ ଇଷ୍ଟଙ୍କର କାମ ତୁମକୁ କରିବାକୁ ହେବ, ସମସ୍ତ ଦାୟିତ୍ୱ ନେଇ। ଝୁଙ୍କ ନେଇ। ପ୍ରତି ମୁହୂର୍ତ୍ତରେ ନିଜକୁ ବଞ୍ଚାଇବାର ଲକ୍ଷ୍ୟ ପ୍ରବଳ ହେଲେ ସେତେବେଳେ ଆଉ କୌଣସି କାର୍ଯ୍ୟ କରିପାରିବ ନାହିଁ। ତା ବୋଲି ବୃଥାରେ ଯେ ବିପଦକୁ ଡାକି ଆଣିବ ତାହାମଧ୍ୟ ନୁହେଁ। ବେପରୁଆ ଇଷ୍ଟଚଳଣିର ସଙ୍ଗେ ସଙ୍ଗେ ହିଁ ପୁଣି ଥାଏ ଏକ ସୁ-ବ୍ୟବସ୍ଥ ସୁସଙ୍ଗତ ଗତି। ଏହିପରି ଚଳଣ ଯହାର, ତାହାର ବୁଦ୍ଧି ଥାଏ ଇଷ୍ଟଙ୍କର କାର୍ଯ୍ୟ ହାସଲ କରିବା, ତାର ସେହି ପଥରେ ଅନ୍ତରାୟ ଯେଉଁଗୁଡ଼ିକ ସେଗୁଡ଼ିକ ସେ କୌଶଳ କରି ଏଡ଼ାଇ ବା ନିୟନ୍ତ୍ରଣ କରି ଚାଲିପାରେ।

ଆ.ପ୍ର. ୨/୧୭.୧୨.୧୯୪୧

**ପ୍ର. – ଇଷ୍ଟକାର୍ଯ୍ୟ କରିବାକୁ ଯାଇ ଯଦି ବିପଦରେ ପଡ଼ିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କ ପ୍ରତି ଭଲପାଇବା ଯାହାର ଥାଏ, ସେ ଇଷ୍ଟ କାର୍ଯ୍ୟ କରିବାକୁ ଯାଇ ବିପଦରେ ପଡ଼ିଲେ ମଧ୍ୟ, ବିପଦକୁ କିପରି କରି ସମ୍ପଦରେ ପରିଣତ କରିବାକୁ ହୁଏ, ତାହା ସେ ଜାଣେ। ସେ ସହଜରେ ଫସି ଯାଏ ନାହିଁ। ପୁଣି ସେହି କାର୍ଯ୍ୟରେ କଷ୍ଟ ବା ବିପଦ-ଆପଦ ଯେତେ ହିଁ ଥାଉ ନା କାହିଁକି, ତାହା ତାକୁ ଦବାଇ ଦେଇପାରେ ନାହିଁ। କଷ୍ଟର ଦିଗକୁ ତାହର ଭୃକ୍ଷେପହିଁ ଥାଏ ନାହିଁ, ବା ସେ କଥା କାହା ପାଖରେ କହି ବାହାଦୁରି



ନେବାର ଆକାଂକ୍ଷା ମଧ୍ୟ ଖୁବ୍ ଗୋଟିଏ ଦେଖାଯାଏ ନାହିଁ। ପ୍ରିୟତମଙ୍କର ଖୁସିରେ ହିଁ ତାର ଖୁସି, ଆଉ ତାଙ୍କୁ ଖୁସି କରିବାର କର୍ମମାତାଲ ନିଶାରେ ହିଁ ତାର ଶରୀର-ମନ-ମୁଣ୍ଡ ଟାଙ୍ଗା ହୋଇ ରହେ।

ଆ.ପ୍ର. ୨/୧୭.୧୨.୧୯୪୧

**ପ୍ର. – ଇଷ୍ଟକେନ୍ଦ୍ରିକ ହୋଇ ଚାଲିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର –** ମଣିଷ ଯଦି ସର୍ବତୋଭାବେ ଇଷ୍ଟକେନ୍ଦ୍ରିକ ହୁଏ, ସେତେବେଳେ କିନ୍ତୁ ସେ ଆଉ ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୁଏ ନାହିଁ, ବରଂ ସବୁ ପ୍ରବୃତ୍ତିକୁ ହିଁ ସେ ପରିଚାଳନା କରି ଇଷ୍ଟାର୍ଥପ୍ରତିଷ୍ଠାର ଉପଯୋଗୀ କରେ। ଏପରି କରିହିଁ ମଣିଷର ଗ୍ରହଦୋଷ ଖଣ୍ଡନ ହୁଏ। ...ସେଥିପାଇଁ କୁହେ, 'କିଂ କୁର୍ବନ୍ତି ଗ୍ରହାଃ ସର୍ବେ ଯସ୍ୟ କେନ୍ଦ୍ରେ ବୃହସ୍ପତିଃ'। ବୃହସ୍ପତି ମାନେ ସଦ୍‌ଗୁରୁ, ଜୀବନର କେନ୍ଦ୍ରରେ ତାଙ୍କୁ ବସାଇବା ଦରକାର, ତାଙ୍କର ଭଜନ ଦ୍ୱାରା ତାଙ୍କୁହିଁ ନିଜର ଭାଗ୍ୟବିଧାତା କରି ତୋଳିବା ଦରକାର, ନ ହେଲେ କେବଳ ମାତ୍ର ଦୀକ୍ଷା ନେଲେ ହେବ ନାହିଁ। ତେବେ ଦୀକ୍ଷା ନେଇ ଯେଉଁମାନେ ଯଜନ, ଯାଜନ, ଇଷ୍ଟଭୃତି ଠିକ୍‌ଭାବରେ କରନ୍ତି, ସେମାନେ କିନ୍ତୁ ଅନେକଟା ବଞ୍ଚି ଯାଆନ୍ତି। ସବୁ ବ୍ୟାପରରେ ଇଷ୍ଟଙ୍କୁ ଯେଉଁମାନେ ମୁଖ୍ୟ କରିଚାଲନ୍ତି, ତାଙ୍କର ତ କଥାହିଁ ନାହିଁ। ଖରାପ କିଛି ଆସିଲେ ହିଁ ସେମାନେ ତାକୁ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଅନୁଶୀଳନରେ ପକାଇ ଦେଇ ଭଲର ଦିଗକୁ ସଜାଡ଼ି ନିଅନ୍ତି।

ଆ.ପ୍ର. ୨/୧୭.୧୨.୧୯୪୧

**ପ୍ର. – ଇଷ୍ଟଙ୍କୁ ଦେବାର ଧନ୍ଦା ରହିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର –** ଯେଉଁମାନେ ଦିଅନ୍ତି, ସେମାନେ କିନ୍ତୁ ସବୁ ଦିଗରୁ ବଢ଼ିଉଠନ୍ତି। ଦେବାର ଆଗ୍ରହହିଁ ସେମାନଙ୍କର କର୍ମ-କୌଶଳ ଖୋଲିଦିଏ। ପୁଣି ଇଷ୍ଟଙ୍କୁ ଦେବାର ଧନ୍ଦାରେ ଯେଉଁମାନେ କର୍ମ-ବ୍ୟାପୃତ ହୋଇଉଠନ୍ତି, ଏହି ବୁଦ୍ଧି, ଫନ୍ଦି-ଫିକର ନେଇ ଘୁରନ୍ତି, ସେହି ଆକୁଳ ପ୍ରଚେଷ୍ଟା ହିଁ ସେମାନଙ୍କର ଗ୍ରହବୈଗୁଣ୍ୟ ଅର୍ଥାତ୍ ପ୍ରବୃତ୍ତି -ଅଭିଭୂତିକୁ ମଧ୍ୟ ଅନେକଟା କାବୁ କରିଦିଏ। ତେଣୁ ଶ୍ରେୟଙ୍କୁ ଦେବାର ବୁଦ୍ଧି ଯେତେ ବଢ଼େ ସେତେ ହିଁ ଭଲ। ମା-ବାପାଙ୍କୁ ଦେବାର ବୁଦ୍ଧି ଯେଉଁମାନଙ୍କର ଥାଏ, ସେମାନଙ୍କର ମଧ୍ୟ ଭଲ ହୁଏ।

ଆ.ପ୍ର. ୨/୧୭.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣରେ ଚାଲୁ ଚାଲୁ ମଣିଷର କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର –** ଶୁଣିଛି ଠାକୁର ରାମକୃଷ୍ଣଦେବ କହିଛନ୍ତି – ବାର ବର୍ଷ ବ୍ରହ୍ମଚର୍ଯ୍ୟ ପାଳନ କରିଲେ ମେଧାନାଡ଼ ଗଜାଏ। ବ୍ରହ୍ମଚର୍ଯ୍ୟ ମାନେ ବୃଦ୍ଧି ପଥରେ ଚାଲିବା, ଇଷ୍ଟଙ୍କ ପଥରେ ଚାଲିବା। ଇଷ୍ଟଙ୍କ ପଥରେ ଚାଲୁ-ଚାଲୁ ମଣିଷର ବେଭୁଲ ଚଳନ, ବିଭ୍ରାନ୍ତ ଚଳନ,

ବିସ୍ଫୁଟ ଚଳନ, ଖତମ ହୋଇଯାଏ। ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ବୁଦ୍ଧି ତାର ଏପରିହିଁ ମଜ୍ଜାଗତ ହୋଇଉଠେ ଯେ, ସେ କୌଣସି ପ୍ରକାରେହିଁ ତାହାଠାରୁ ବିଚ୍ୟୁତ ହୁଏ ନାହିଁ, ସେ-ସମ୍ବନ୍ଧରେ ତାର କେବେବି ଭୁଲ ହୁଏ ନାହିଁ, ଏହି ସ୍ମୃତି-ଚେତନା ତାର ପୁରାପୁରି ଥାଏ; ଭୁଲରେ ବି ସେ ଅନ୍ୟ ଚଳନରେ ଚାଲେ ନାହିଁ, ବେଚଳନରେ ତାର କେବେବି ପାଦ ପଡ଼େ ନାହିଁ, ତାର ଖରାପ ଗୁଣ ଯଦି କିଛି ଥାଏ, ତାକୁ ମଧ୍ୟ ସେତେବେଳେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର କାମରେ ଲଗାଏ। ସେଥିପାଇଁ କହିଛନ୍ତି, ମେଧାନାଡ଼ ଗଜାଏ ଅର୍ଥାତ୍ ଏହି ସ୍ମୃତି, ଏହି ଧୃତି ସ୍ୱଭାବଗତ ହୋଇ ସବୁ ସମୟରେ ତା ଭିତରେ ଜାଗ୍ରତ ଓ ସକ୍ରିୟ ଥାଏ।

ଆ.ପ୍ର. ୨/୨୦.୧୨.୧୯୪୧

**ପ୍ର. – ଇଷ୍ଟକେନ୍ଦ୍ରିକ ନ ହେଲେ ଅସୁବିଧା କ'ଣ ?**

**ଶ୍ରୀଶ୍ରୀଠାକୁର** – ଯିଏ ଯେତେ ବିକେନ୍ଦ୍ରିକ ଅର୍ଥାତ୍ Ideal (ଇଷ୍ଟ)-ଙ୍କୁ ଧାରଣ (ଧରିବା) ଯାହାର ଯେତେ କମ୍, ଜୀବନ ତାହାର ସେତେ କମ୍। କାରଣ, ମଣିଷକୁ ହୁଏତ ଇଷ୍ଟଙ୍କ ପଥରେ ଚାଲିବାକୁ ହେବ, ନହେଲେ ପ୍ରବୃତ୍ତିର ପଥରେ ଚାଲିବାକୁ ହେବ, ଏହାଛଡ଼ା କୌଣସି ତୃତୀୟ ପନ୍ଥା ନାହିଁ। ପ୍ରବୃତ୍ତିର ପଥରେ ମଣିଷ ଯେତେ ଚାଲେ, ତାର energy (ଶକ୍ତି) ସେତେ dissipated (ଅପବ୍ୟୟିତ) ହୁଏ, ତେଣୁ ଲାଭଜନକ ଯାହା, ଜୀବନୀୟ ଯାହା ସେପରି ବ୍ୟାପାରରେ ସେ ସ୍ୱତଃ ଧୀରଗତିସମ୍ପନ୍ନ ହୋଇପଡ଼େ। ପ୍ରବୃତ୍ତି ତାର ସତ୍ତାର ରସ ଖାଇ ଶୋଷି ନେଇଯାଏ, ସେଥିପାଇଁ ସତ୍ତା-ସମ୍ବର୍ଦ୍ଧନୀ ପ୍ରଚେଷ୍ଟାରେ ତାର ଅଭାବ ପରିଲକ୍ଷିତ ହୁଏ। ....Ideal centric urge (ଇଷ୍ଟ କେନ୍ଦ୍ରିକ ଆକୂତି) ହେଲା ମଣିଷର ସମସ୍ତ ଶକ୍ତିର ଉତ୍ସ। ଏହି urge (ଆକୂତି) ନ ରହିଲେ energy (ଶକ୍ତି) ରହେ ନାହିଁ, energy (ଶକ୍ତି) ନ ରହିଲେ depressed (ଅବସାଦ ଗ୍ରସ୍ତ) ହୁଏ, ଅପଟୁ ହୁଏ।

ଆ.ପ୍ର. ୨/୨୦.୧୨.୧୯୪୧

**ପ୍ର. – ଇଷ୍ଟସ୍ୱାର୍ଥପ୍ରତିଷ୍ଠାରେ ପ୍ରକୃତ ସ୍ୱାର୍ଥାନ୍ୱିତ ହେବାର ଲକ୍ଷଣ କ'ଣ ?**

**ଶ୍ରୀଶ୍ରୀଠାକୁର** – ଠାକୁର interest (ସ୍ୱାର୍ଥ) ହେଲେ ଠାକୁରଙ୍କର ଦୁନିଆର ଯାହା-କିଛି ସବୁଦିଗକୁ ସମତ୍ୱଦୀପ୍ତ ଦାୟିତ୍ୱ-ପୂର୍ଣ୍ଣ ଶ୍ୟେନ ଦୃଷ୍ଟି ରହିବହିଁ, ଏବଂ ସେମାନେ ପରସ୍ପର ପରସ୍ପରଙ୍କର fulfilling (ପରିପୂରଣୀ) ହେବେ ହିଁ। ପ୍ରତ୍ୟେକେ ତାର ନିଜସ୍ୱ କର୍ତ୍ତବ୍ୟ ଓ ଦାୟିତ୍ୱ ତ ସୁଷ୍ଠୁଭାବରେ ଉଦ୍‌ଯାପନ କରିବେହିଁ, ସଙ୍ଗେ ସଙ୍ଗେ ଅନଧିକାର ଚର୍ଚ୍ଚା ନ କରି ତାର ଜ୍ଞାନବୁଦ୍ଧି ଓ ସମର୍ଥାନୁସାରେ ଅପରକୁ ସାହାଯ୍ୟ କରିବାକୁ ଚେଷ୍ଟା କରିବେ। ....କେହି ଇଷ୍ଟସ୍ୱାର୍ଥପ୍ରତିଷ୍ଠାରେ ସ୍ୱାର୍ଥାନ୍ୱିତ ହେଲେ, ସହକର୍ମୀମାନଙ୍କୁ efficient (ଦକ୍ଷ) କରି



ତୋଳିବାର ଧନ୍ଦା ତାର ରହିବହିଁ। କାରଣ, ସେ ଜାଣେ ସେ ଏକାକୀ ତା ପକ୍ଷରେ ଇଷ୍ଟଙ୍କର ବିରାଟ ବହୁମୁଖୀ ଇଚ୍ଛା ପୂରଣ କରିବା ସମ୍ଭବ ନୁହେଁ, ତେଣୁ ସମସ୍ତଙ୍କୁହିଁ ସେ ତାଜା କରି ତୋଳିବାକୁ ଚାହେଁ। ସେ ବାହାବା ପାଇବାର କାଙ୍ଗାଳ ହୁଏ ନାହିଁ, ନିଜେ କରି ସେ ଅନ୍ୟକୁ ବାହାବା ଦେଇଥାଏ। ସେ ନିଜସ୍ୱ ନାମ, କାମ ବା ସ୍ୱାର୍ଥର ଧାର ଧାରେ ନାହିଁ। କେବଳ ସେ ଭାବେ ବାଞ୍ଛିତଙ୍କର ଇଚ୍ଛା କିପରି ପୂରଣ ହେବ, ଆଉ ସେପରି କରି ନିଜକୁ adjust (ନିୟନ୍ତ୍ରିତ) କରେ। ସେତେବେଳେ ତାର ବା ଅନ୍ୟର କୌଣସି ପ୍ରବୃତ୍ତି ହିଁ ତାର କାର୍ଯ୍ୟର ପଥରେ ବିଶେଷ ଗୋଟିଏ ବାଧା ସୃଷ୍ଟି କରିପାରେ ନାହିଁ। ସେ କେଉଁଠି ବୁଡ଼ି, କେଉଁଠି ଡେଇଁ, କେଉଁଠି ଏଡ଼ାଇ, କେଉଁଠି ମଧୁର ଭାବରେ ଆଘାତ କରି ଅନ୍ତରାୟ ଗୁଡ଼ିକୁ ସୁ-କୌଶଳରେ ଅତିକ୍ରମ କରିଚାଲେ। ତାର ସାନ୍ନିଧ୍ୟରେ ପୁଣି କେତେଜଣ ଏପରି ନିୟନ୍ତ୍ରଣ-କୌଶଳରେ ଅଭ୍ୟସ୍ତ ହୋଇ ଉଠନ୍ତି।

ଆ.ପ୍ର. ୨/୨୦.୧୨.୧୯୪୧

**ପ୍ର. – ଇଷ୍ଟ ଯଦି କାହା ପାଖରେ ମୁଖ୍ୟ ହୋଇ ନ ଉଠନ୍ତି ?**

**ଶ୍ରୀଶ୍ରୀଠାକୁର** – ରକ୍ତ-ମାଂସ-ସଂକୁଳ ଇଷ୍ଟ ଯାହା ପାଖରେ ମୁଖ୍ୟ ଓ ଏକମାତ୍ର ହୋଇ ଉଠି ନାହାନ୍ତି, ସେ କିନ୍ତୁ ଇଷ୍ଟପ୍ରେମ ତଥା ଧର୍ମର ଦ୍ୱାର ଠାରୁ ଅନେକ ଦୂରରେ।

ଆ.ପ୍ର. ୨/୨୦.୧୨.୧୯୪୧

**ପ୍ର. – ଇଷ୍ଟପ୍ରତିଷ୍ଠାରେ ସଫଳତା କେତେବେଳେ ସହଜ ହେବ ?**

**ଶ୍ରୀଶ୍ରୀଠାକୁର** – ଯଦି ଆଗ୍ରହ ଥାଏ... କାର୍ଯ୍ୟର ଭିତର ଦେଇ ସାରା ଦେଶକୁ କିପରି ସେବାରେ ସମୃଦ୍ଧ କରିତୋଳି ହେବ, ସର୍ବୋପରି ନିଜ ଭିତରର ଦୁନିଆ ଓ ବାହାରର ଦୁନିଆରେ ସର୍ବତ୍ର କିପରି ଇଷ୍ଟପ୍ରତିଷ୍ଠା କରି ହେବ, ...ସେହି ଆଗ୍ରହ-ସମ୍ବେଗହିଁ ସାଫଲ୍ୟକୁ ସହଜ କରି ତୋଳିବ। ଏହି ପ୍ରୟୋଜନ-ବୋଧ ଯଦି ନ ଥାଏ, ଏହି ନିଶା ଯଦି ନ ଥାଏ, ନିଜର ପ୍ରୟୋଜନ ମେଣ୍ଟି ଗଲେହିଁ ଯଦି ସବୁ ଆବେଗ ଥଣ୍ଡା ହୋଇଯାଏ, ତାହେଲେ ଯେପରି ଚାଲୁଛି, ସେହିପରି ଚାଲିବ।

ଆ.ପ୍ର. ୨/୨୦.୧୨.୧୯୪୧

**ପ୍ର. – ଇଷ୍ଟପ୍ରୀତିକୁ ଲକ୍ଷ୍ୟ କରି କାର୍ଯ୍ୟ କରିବାକୁ ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟପ୍ରୀତିକୁ ଲକ୍ଷ୍ୟ କରି କାର୍ଯ୍ୟ କଲେ ସେତେବେଳେ ପ୍ରତ୍ୟେକଟି କାର୍ଯ୍ୟ ତାଙ୍କର ଆରତି ପରି ହୁଏ। ସେଠାରେ ଅହମିକା ବା ପ୍ରବୃତ୍ତିର ପ୍ରାଧାନ୍ୟ ବେଶି ମାତ୍ରାରେ ରହିପାରେ ନାହିଁ। ସେଥିପାଇଁ ଦ୍ୱନ୍ଦ, ବିରୋଧ, ବିରକ୍ତି, ଦମ୍ଭ, ବିଦ୍ୱେଷ ସ୍ୱତଃ ହିଁ ପ୍ରଶମିତ ହୁଏ। ମଣିଷ କଠୋର, କ୍ଷିପ୍ର, ଅନନ୍ତ କର୍ମା ହୋଇ ମଧ୍ୟ ନିରଭିମାନ ଓ ନିର୍ବିରୋଧ ହୁଏ। ତା ବୋଲି ସେ କିନ୍ତୁ ଅନ୍ୟାୟର ସହିତ ଆପୋଷ-ରଫା କରେ ନାହିଁ, ଦୃପ୍ତ ବିନୟରେ

ସେଠାରେ ପ୍ରତିରୋଧ କରେ। ତାର ବ୍ୟକ୍ତିତ୍ୱ ଭିତରେ ଏପରି ଗୋଟିଏ ଉଜ୍ଜ୍ୱଳତା ଥାଏ ଯାହା ମଣିଷର ଅନ୍ତରର ଜଟିଳ ଅନ୍ଧକାରକୁ ଆଲୋକିତ କରି ଚୋଳେ।

ଆ.ପ୍ର. ୨/୨୧.୧୨.୧୯୪୧

**ପ୍ର. – ଇଷ୍ଟପ୍ରାପ୍ତି ମାନେ କ'ଣ ?**

**ଶ୍ରୀଶ୍ରୀଠାକୁର** – ତାଙ୍କୁ ପାଇଲେ କିଛି ବି ଅପ୍ରାପ୍ୟ ରହେ ନାହିଁ। ଆଉ ପାଇବା ମାନେ ହେବା। ଇଷ୍ଟଙ୍କୁ ତୁମ ମଧ୍ୟରେ ବସାଇ ଦେଲେ ତୁମର ବୈଶିଷ୍ଟ୍ୟାନୁସାରେ ତୁମେ ଯାହା ହୁଅ, ତାହାହିଁ ହେଲା ତୁମର ଇଷ୍ଟପ୍ରାପ୍ତି। ପୁଣି ଏହି ଇଷ୍ଟଙ୍କ ପାଇଁ ମଣିଷ ଯେତେବେଳେ ପାଗଳ ହୁଏ, ସେତେବେଳେହିଁ ସେ ପ୍ରକୃତିସ୍ଥ ହୁଏ। ତାର ପୂର୍ବପର୍ଯ୍ୟନ୍ତ ମଣିଷ ଅଳ୍ପବହୁତ ଅପ୍ରକୃତିସ୍ଥ ଜୀବନ ଯାପନ କରେ। ପ୍ରବୃତ୍ତିର ଅଧିନ ଯେଉଁଠି ଯିଏ ଯେତେ ପରିମାଣରେ, ଅପ୍ରକୃତିସ୍ଥ ମଧ୍ୟ ସେଠାରେ ସେ ସେତିକି ସେହିପରି। ଆ.ପ୍ର. ୨/୨୧.୧୨.୧୯୪୧

**ପ୍ର. – ଇଷ୍ଟାର୍ଥୀ ହେଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଇଷ୍ଟାର୍ଥୀ ହେଲେ, ତାର ଭଲମନ୍ଦ ସବୁ-କିଛିକୁହିଁ ଇଷ୍ଟାର୍ଥପୂରଣୀ କରି ଚୋଳିବାକୁ ଚାହେଁ, ଆଉ ଏହି ପ୍ରକ୍ରିୟାରେ ପଡ଼ି ତାର ସବୁ-କିଛିର ଗୋଟିଏ ଶୁଭ-ନିୟନ୍ତ୍ରଣ ହୋଇଚାଲେ। ସେଥିପାଇଁ କୁହାଯାଏ, ସଦ୍‌ଗୁରୁ ଲାଭ ହେଲେ କର୍ମଫଳ ବଦଳିଯାଏ। ....ଧରାଯାଉ, ତୁମର କର୍ମଫଳ ଏପରି ଅଛି ଯେ କୌଣସି ସମୟରେ ତୁମକୁ ଘରଛଡ଼ା ହୋଇ ରାସ୍ତାରେ ଘୂରିବାକୁ ହେବ। ଧର, ତୁମର ସ୍ତ୍ରୀ ତୁମକୁ ଏତେ ଉତ୍ୟକ୍ତ କରୁଛି ଯେ ଘରେ ରହିବା ଆଉ ସମ୍ଭବ ହେଉ ନାହିଁ – ତୁମର ସେତେବେଳେ ରାସ୍ତାରେ ଘୂରିବା ଛଡ଼ା ଆଉ ଉପାୟ ନାହିଁ। ତୁମେ ହୁଏତ ସଦ୍‌ଗୁରୁ ଗ୍ରହଣ କରିଛ ଏବଂ ଯାଜନଶୀଳ। ସେତେବେଳେ ହୁଏତ ତୁମେ ଘରର ଏହି ଅବସ୍ଥାରେ କିଛିଦିନ ଅଲଗା ରହି କୌଣସି ଋତ୍ୱିକଙ୍କ ସହିତ ଯାଜନ କର୍ମରେ ଗ୍ରାମ-ଗ୍ରାମ ଘୂରି ବୁଲିଲ। ତୁମେ ଯାଜନରେ ଏପରି ମଗ୍ନ ହୋଇ ଅଛ ଯେ, ସେହି ଆନନ୍ଦରେ ତୁମର ଶରୀର ଓ ମନ ଭଲ ହୋଇଗଲା। ଯେଉଁ ସମୟଟା ଖୁବ୍ ଦୁଃଖରେ କଟିବାର ଥିଲା, ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ନିଶାରେ ପଡ଼ି ତାହା ପରମ ଆନନ୍ଦମୟ ହୋଇ ଉଠିଲା। ଏହିପରି ହୁଏ। ଆ.ପ୍ର. ୨/୨୧.୧୨.୧୯୪୧

**ପ୍ର. – ଇଷ୍ଟ କାର୍ଯ୍ୟରେ କେଉଁଟା ମୂଲ୍ୟବାନ, କେଉଁଟା ଖରାପ ତା'ର ମାନଦଣ୍ଡ କ'ଣ ?**

**ଶ୍ରୀଶ୍ରୀଠାକୁର** – କେଉଁଟା ମୂଲ୍ୟବାନ ଜିନିଷ, କେଉଁଟା ଖରାପ ଜିନିଷ ତାର ଏକମାତ୍ର ମାନଦଣ୍ଡ ହେଲା, ସେଇଟା ଇଷ୍ଟଙ୍କର କାମରେ ଲାଗେ କିପରି ଓ କେତେ ପରିମାଣରେ।

ଆ.ପ୍ର. ୨/୨୧.୧୨.୧୯୪୧



**ପ୍ର. – ଇଷ୍ଟାନୁସରଣ କ'ଣ ଘର-ସଂସାର ଇତ୍ୟାଦି ବାଦ ଦେଇ କରିବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – ମୁଁ ଘର-ସଂସାର, ବିଷୟ-ଆଶୟ କୌଣସଟିକୁ ବାଦ୍ ଦେବାକୁ କହି ନାହିଁ। ସେଗୁଡ଼ିକ ଯଦି ଇଷ୍ଟଙ୍କ ପାଇଁ ହୁଏ, ତାହେଲେ କୌଣସି ଭାବନା ନାହିଁ। ତୁମ ଭିତରେ ଯଦି ସେହି ଧାରଣା ଥାଏ, ତେବେ ଛୁଆପିଲାଙ୍କ ଭିତରେ ମଧ୍ୟ ତାହା ପଶିଯିବ। ସଂସାର ଭଲକରି କରିପାରିବ, ଅଥଚ ଆଶକ୍ତ ହୋଇ ହାବୁଡୁବୁ ଖାଇବାକୁ ହେବ ନାହିଁ।

ଆ.ପ୍ର. ୨/୨୧.୧୨.୧୯୪୧

**ପ୍ର. – ଇଷ୍ଟଙ୍କ ପ୍ରୀତି ପାଇଁ କର୍ମ ମାତାଲ ହେଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – କାମ କରିବାକୁ ଯାଇ ପାଇସାର କଥା, ଅଭାବର କଥା ଭାବିବ ନାହିଁ। ଇଷ୍ଟଙ୍କର ପ୍ରୀତ୍ୟାର୍ଥେ କର୍ମ ମାତାଲ ଯେତେ ହେବ, ଅନ୍ତରରେ ଅଭାବ ବୋଧର ଜଞ୍ଜାଳ ଯେତେ ରହିବ ନାହିଁ, ସେତେ ହିଁ ଦେଖିବ ପ୍ରକୃତି ହିଁ ତୁମକୁ ଭରପୁର କରିଦେବ। ...ତୁମର ଠାକୁରଙ୍କ ପ୍ରତି ଟାଣରେ ତୁମର ମନ ଯଦି ଭରି ରହିଥାଏ, ପୁଣି ଅନ୍ୟର ମନ ଯଦି ତୁମର ସେବା, ସାହଚର୍ଯ୍ୟ ଓ କର୍ମ ଦେଇ ଭରିଦେଇପାର, ତାହେଲେ ତୁମର ପେଟ କେବେହେଲେ ମଧ୍ୟ ଖାଲି ରହିବ ନାହିଁ– ଏହା ଠିକ୍ ଜାଣିଥାଅ। ସ୍ୱଭାବ ଗୁଣରେ ଅଭାବ ନଷ୍ଟ – ଏହିକଥା ସବୁ ସମୟରେ ସ୍ମରଣ ରଖ। ନ କରି ଫାଙ୍କି-ଫୁଙ୍କି ଦେଇ ଯଦିବି କିଛି ପାଅ, ସେଥିରେ କିନ୍ତୁ ଅଭାବ ଘୁଞ୍ଚିବ ନାହିଁ। ସ୍ୱଭାବରେ ଦୈନ୍ୟ ରହିଲେ ଅଭାବବୋଧ କ୍ରମାଗତ ବଢ଼ିଚାଲିବ। ତେଣୁ ଯେତେ ପାଇଲେ ମଧ୍ୟ ଅଭାବ ଛାଡ଼ିବ ନାହିଁ। ପୁଣି ତୁମର ସ୍ୱଭାବ ଯଦି ସମୃଦ୍ଧ ହୋଇଉଠେ, ସେହି ସ୍ୱଭାବ ହିଁ ତୁମକୁ ସତ୍-କ୍ରିୟ ଓ ସୁଖୀ କରିଚୋଳିବ। ତୁମର ଚଳନ ହିଁ ଆର୍ଥିକ ଓ ମାନସିକ ସମ୍ପଦର ଜନ୍ମଦାତା ହୋଇଉଠିବ। ଅଭାବ-ଅଭିଯୋଗ କିଛି-କିଛି ରହିଲେ ମଧ୍ୟ ସେହି ଚିନ୍ତାରେ ମଗ୍ନ ହୋଇ ରହିବାର ଅବକାଶ ରହିବ ନାହିଁ। ପୁଣି ଆଦର୍ଶଙ୍କ ପାଇଁ, କୃଷ୍ଟି ପାଇଁ ଯଦି ତୁମକୁ କଷ୍ଟ ସହିବାକୁ ହୁଏ, ସେହି କଷ୍ଟ ମଧ୍ୟ ତୁମ ପାଖରେ କେତେ ସୁଖକର ମନେ ହେବ। ଯାହା କୁହ ମଣି ! ଭଲପାଇବାହିଁ ଏକମାତ୍ର ମାଲ, ଯାହା ମଣିଷକୁ ଖୁଆଏ, ପିନ୍ଧାଏ, ଉତ୍ସାହ-ଉଦ୍ଦୀପନାରେ ପାଗଳ କରି ରଖେ।

ଆ.ପ୍ର. ୨/୨୨.୧୨.୧୯୪୧

**ପ୍ର. – ଇଷ୍ଟଚିନ୍ତା ଓ ଇଷ୍ଟନାମ ଅଭ୍ୟାସ କରିବାକୁ ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଆମ ଦେଶରେ ଗୋଟିଏ କଥା ପ୍ରଚଳନ ଅଛି – 'ଜପ-ତପ ଯେତେହିଁ କର, ମରଣେ ହୁସିଆର।' ମୃତ୍ୟୁକାଳରେ ଯଦି ଇଷ୍ଟ ଚିନ୍ତା ଓ ଇଷ୍ଟନାମ ପ୍ରବଳ ନ ହୁଏ, ତେବେ ହଜାରେ ଜପ-ତପ କରିଲେ ମଧ୍ୟ ପରବର୍ତ୍ତୀ ଜୀବନ ଉନ୍ନତତର ନ ବି

ହୋଇପାରେ। ତେବେ ଅଭ୍ୟାସ ଓ ଅନୁଶୀଳନ କରିବା ଖୁବ୍ ହିଁ ଭଲ। ନାମ କରୁ କରୁ ନାମୀଙ୍କ ପ୍ରତି ଅହେତୁକ ଅନୁରାଗ ଯଦି ଥରେ ଜନ୍ମେ ତାହାହେଲେ ଆଉ ଚିନ୍ତା ନାହିଁ। ସେତେବେଳେ ଆମର ସତ୍ତାଟିହିଁ ନାମମୟ ହୋଇ ଉଠେ, ନାମୀମୟ ହୋଇ ଉଠେ। ଆମ୍ଭେମାନେ ଭଲପାଇବା ଓ ଅନୁଶୀଳନର ଭିତର ଦେଇ ଯାହା ହୋଇଉଠୁ, ତାହାହିଁ ଆମ୍ଭମାନଙ୍କର ପରମ ସମ୍ପଦ, ତାରହିଁ କ୍ରମାଗତି ଚାଲେ ଜନ୍ମ-ଜନ୍ମାନ୍ତର। ଏହି ହେବାଟା ହିଁ ପାଇବା। ଆଉ ଦେହଧାରଣ ଯଦି ନ ବି କରେ, ତେବେ ବିଦେହ ଅବସ୍ଥାରେ ମଧ୍ୟ ଏହି ନାମମୟତା ଓ ନାମୀମୟତା ଆମକୁ ପାଇବସିଥାଏ। ଯେଉଁଠାରେ ହିଁ ଥାଉ, ତାଙ୍କୁ ନେଇହିଁ ଥାଉ। ସତ୍ତାଟାହିଁ ଯେ ସେହିପରି ହୋଇଯାଏ। କର୍ମମୟ ଭଲପାଇବାରେ ଏହି ହେବାଟା ବେମାଲୁମ ହୋଇଉଠେ।

ଆ.ପ୍ର. ୨/୨୨.୧୨.୧୯୪୧

**ପ୍ର. – ଇଷ୍ଟଙ୍କ ପାଇଁହିଁ ଇଷ୍ଟଙ୍କୁ ଭଲ ପାଇବାକୁ ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଯାହା ନେଇ ଆମ୍ଭେମାନେ ବାସ୍ତବ ଭାବରେ ଯେତେ ଲିପ୍ତ ଥାଉ, ତାହା ଆମ୍ଭମାନଙ୍କର ସେତେ ନିଜର ହୋଇଉଠେ, ସତ୍ତାଗତ ହୋଇଉଠେ। ତେଣୁ କୌଣସି-କିଛି ପାଇଁ ଇଷ୍ଟଙ୍କୁ ଭଲପାଇବା ଉଚିତ ନୁହେଁ, ଇଷ୍ଟଙ୍କ ପାଇଁ ଇଷ୍ଟଙ୍କୁ ଯେତେବେଳେ ଭଲପାଇବ, ସେତେବେଳେ ହିଁ ଜୀବନର ରସ ପାଇବ – ଧର୍ମ, ଅର୍ଥ, କାମ, ମୋକ୍ଷ ଆମ୍ଭମାନଙ୍କର କରତଳଗତ ହୋଇଯିବ।

ଆ.ପ୍ର. ୨/୨୨.୧୨.୧୯୪୧

**ପ୍ର. – କେବଳ ଇଷ୍ଟଙ୍କ ଉପରେହିଁ ଲୋଭ କରିବାକୁ ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କ ବ୍ୟତୀତ ଛଡ଼ା ଅନ୍ୟ କିଛି ନେଇ ଯଦି ଆପଣ ଲିପ୍ତ ହୁଅନ୍ତି, ଆପଣ ଯେଉଁଥିରେ ଲିପ୍ତ ହୋଇଛନ୍ତି, ଖୁବ୍ ବେଶିରେ ଆପଣ ତାହାହିଁ ପାଇପାରନ୍ତି। ଯେଉଁଥିରେ ଆପଣ ଲିପ୍ତ ନୁହଁନ୍ତି, ଯାହା ଆପଣଙ୍କ ପାଖରେ ମୁଖ୍ୟ ନୁହେଁ, ଗୌଣ, ତା'ଠାରୁ ଆପଣଙ୍କର ସତ୍ତା ମଧ୍ୟ ସେତେ ପରିମାଣରେ ଦୂରରେ ରହିବ। ଯିଏ କେବଳ ମାତ୍ର ତମାଖୁ ଖାଇବାର ଲୋଭରେ ଘୁରି ଘୁରି ଆପଣଙ୍କ ଘରକୁ ଯାଏ, ସେ ଖୁବ୍ ବେଶିରେ ଆପଣଙ୍କ ତମାଖୁ ପାଇପାରେ, କିନ୍ତୁ ଆପଣଙ୍କୁ ପାଇବ କିପରି ? ଆପଣ ଯଦି ନିଜକୁ ତା ପାଖରେ ସମର୍ପି ବି ଦିଅନ୍ତି, ତାହେଲେ ମଧ୍ୟ ଆପଣଙ୍କୁ ପାଇବାର ଉପାୟ ତାର ନାହିଁ। କାରଣ, ତାର ତ ଆପଣଙ୍କ ଉପରେ କୌଣସି ଲୋଭ ନାହିଁ, ତେଣୁ ଆପଣ ନିଜକୁ ଦେବାକୁ ଚାହିଁଲେ ମଧ୍ୟ ସେ ଆପଣଙ୍କୁ ପାଏ ନାହିଁ, ଉପଭୋଗ ମଧ୍ୟ କରିପାରେ ନାହିଁ। ପୁଣି, ଆପଣ ବିରକ୍ତ ହୋଇ ଏପରି କ୍ଷେତ୍ରରେ ନିଜେ ତମାଖୁ ଦେବା ବନ୍ଦ କରିଦେଇ ପାରନ୍ତି। ତେଣୁ ଲୋଭ କରିବାକୁ ହେଲେ ତାଙ୍କ (ଇଷ୍ଟଙ୍କ) ଉପରେ ଲୋଭ କରିବା ହିଁ ଭଲ। ବୋକାମିରେ ଏଣୁ-ତେଣୁ ଚାହିଁବାକୁ ଯିବ କାହିଁକି ?

ଆ.ପ୍ର. ୨/୨୨.୧୨.୧୯୪୧



**ପ୍ର. – ଇଷ୍ଟସ୍ୱାର୍ଥପ୍ରତିଷ୍ଠାରେ ପ୍ରବୃତ୍ତିଗୁଡ଼ିକ ନିୟୋଜିତ ହେଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଆମ୍ର ପ୍ରବୃତ୍ତିଗୁଡ଼ିକ, ରିପୁଗୁଡ଼ିକ ଯେତେବେଳେ ଇଷ୍ଟସ୍ୱାର୍ଥ-ପ୍ରତିଷ୍ଠାରେ ନିୟୋଜିତ ହୁଏ, ସେତେବେଳେ ଆଉ ରିପୁ ରହେ ନାହିଁ, ରିପୁହିଁ ବନ୍ଧୁ ହୋଇଯାଏ। ରିପୁଗୁଡ଼ିକୁ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ କରି ତୋଳିବା ହିଁ ଜୀବନ୍ମୁକ୍ତ ହେବା।

ଆ.ପ୍ର. ୨/୨୨.୧୨.୧୯୪୧

**ପ୍ର. – ଇଷ୍ଟଚଳନ ଆଉ ପ୍ରବୃତ୍ତିଚଳନ କେଉଁଟାରେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ପ୍ରବୃତ୍ତି ଏକାଧାରରେ ଆମର ବନ୍ଧୁ, ଏକାଧାରରେ ଆମର ଶତ୍ରୁ। ପ୍ରବୃତ୍ତି ଯେତେବେଳେ ଇଷ୍ଟଙ୍କ ସେବାରେହିଁ ଲଗାଉ, ସେତେବେଳେ ସେଗୁଡ଼ିକ ହୁଏ ବନ୍ଧୁ, ପୁଣି ସେଗୁଡ଼ିକ ଯେତେବେଳେ ନିଜର ଖିଆଲ-ଖୁସିର ସେବାରେ ଲଗାଉ, ସେତେବେଳେହିଁ ହୁଏ ଶତ୍ରୁ। ଆମ୍ଭମାନଙ୍କ ପ୍ରବୃତ୍ତି ଯଦି ଆମ୍ଭମାନଙ୍କ ସହିତ ଶତ୍ରୁତା ନ କରେ, ବା ବାହାରର ଶତ୍ରୁ ସହିତ ସହଯୋଗିତା ନ କରେ, ତାହେଲେ କିନ୍ତୁ କ୍ଷତିର ସମ୍ଭାବନା ଆମ୍ଭମାନଙ୍କ ପାଇଁ କମ୍ହିଁ ଥାଏ। ବେଶି ଭାଗ କ୍ଷେତ୍ରରେ ଆମର ପ୍ରବୃତ୍ତି-ଚାଳନହିଁ କ୍ଷୟ, କ୍ଷତି ଓ ବିପଦ-ଆପଦକୁ ଆମନ୍ତ୍ରଣ କରିଆଣେ। ଇଷ୍ଟଚଳଣୀ ପୁଣି ସେହିପରି ବହୁ କ୍ଷୟ, କ୍ଷତି ଓ ବିପଦ-ଆପଦର ସମ୍ଭାବ୍ୟତାକୁ ନାକଚ କରିଦେଇ ଜୀବନର ପଥ କଣ୍ଟକମୁକ୍ତ କରି ତୋଳିଥାଏ। ସେଥିପାଇଁ କହନ୍ତି – 'କିଂ କୁର୍ବନ୍ତି ଗ୍ରହାଃ ସର୍ବେ ଯସ୍ୟ କେନ୍ଦ୍ରେ ବୃହସ୍ପତିଃ।'

ଆ.ପ୍ର. ୨/୨୨.୧୨.୧୯୪୧

**ପ୍ର. – ଇଷ୍ଟସର୍ବସ୍ୱ ହେବାକୁ ହେବ କହିଁକି ?**

**ଶ୍ରୀଶ୍ରୀଠାକୁର** – ସ୍ୱାର୍ଥବୁଦ୍ଧି ଛାଡ଼ି ଦିଅ, ପ୍ରତ୍ୟାଶାପରାୟଣତା ଛାଡ଼ି ଦିଅ, ଇଷ୍ଟୈକଶରଣ ହୁଅ, ନହେଲେ ବିଗତଜ୍ୱର ହୋଇପାରିବ ନାହିଁ। ଆଉ ଏହି ଜ୍ୱରର ଚାପରେ ଯାହାବି କର ନା, ତହା ସଫଳ ହେବ ନାହିଁ। ମୂଳରେ ହାତ ଦିଅ। ତାଙ୍କୁ (ଇଷ୍ଟଙ୍କୁ) ଭଲପାଅ, ଆଉ ଯାହା କରିବ ତାଙ୍କ (ଇଷ୍ଟଙ୍କ) ପାଇଁହିଁ କର। କ୍ଷୁଦ୍ର ସ୍ୱାର୍ଥ-ବୁଦ୍ଧିର ଲଙ୍ଗର ପକାଇ ଯେତେବି କାତ ମାରନା କାହିଁକି, ଆଗେଇ ପାରିବ ନାହିଁ। ତାହାଦ୍ୱାରା କାହା ଅନ୍ତରକୁ ସ୍ପର୍ଶ କରିପାରିବ ନାହିଁ। ତୁମେ ଯଦି ବାସ୍ତବରେ ସକ୍ରିୟ ଭାବରେ ଇଷ୍ଟସର୍ବସ୍ୱ ହୁଅ, ତାହା ହେଲେହିଁ ମଣିଷକୁ ସେପରି କରି ତୋଳିପାରିବ। ନିଜକୁ ଓ ଅନ୍ୟକୁ ଏହିପରି କରି ତୋଳିବାହିଁ, ସମସ୍ତେ ମିଶି ଏହିପରି ହୋଇ ଉଠିବାହିଁ ହେଲା କାର୍ଯ୍ୟ। ତାଛଡ଼ା ଆଉ ସବୁ ହେଲା ଫାଙ୍କିବାଜୀ। ଫାଙ୍କିବାଜୀରେ ତୁମର ମଧ୍ୟ କିଛି ହେବନାହିଁ, କାହାରି କିଛି ହେବନାହିଁ। ତୁମର ଫାଙ୍କି ମଣିଷ ପାଖରେ ଧରା ପଡ଼ିଯିବ। ଯିଏ ତୁମଠାରୁ କିଛି ପାଇଲା ନାହିଁ, ଯାହାକୁ ତୁମର ଚରିତ୍ର ଦେଇ କିଛି ଦେଇ ପାରିଲ ନାହଁ, ସେ ତୁମର ସମ୍ପଦ ହେବ କିପରି ? ମନେରଖ, –

ଯାଜନ ମାନେ, ତୋତାପକ୍ଷୀ ପରି କଥା କହିବା ନୁହେଁ। ଯାଜନ ମାନେ, ତୁମର ସୁକେନ୍ଦ୍ରିକ, ସୁଗଠିତ ଚରିତ୍ରଟିକୁ ମଣିଷର ସାମନାରେ ଟୋଳି ଧରି ସୁଯୁକ୍ତ, ସକ୍ରିୟ ସେବା-ସମ୍ପୋଷଣାରେ ଓ ନିୟନ୍ତ୍ରଣରେ ତାକୁ (ମଣିଷଟିକୁ) ସୁକେନ୍ଦ୍ରିକ ଓ ସୁଗଠିତ କରି ତୋଳିବା। ନିଜେ ହେବନାହିଁ, କଥାର ଯାଦୁରେ ବାଜୀମାତ୍ କରିବ, ପ୍ରକୃତିର ରାଜ୍ୟରେ ସେପରି ଅଘଟଣ ଘଟେ ନାହିଁ। ତୁମେ ଯେପରି ପ୍ରକୃତ ହେବ, ପ୍ରକୃତି ମଧ୍ୟ ତୁମକୁ ସେହିପରି ପୁରସ୍କୃତ କରିବ।

ଆ.ପ୍ର. ୨/୨୨.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣରେ କିପରି ଆଚରଣ, ବୁଦ୍ଧି ଆଉ ଚେଷ୍ଟା ରହିବା ଦରକାର?**

**ଶ୍ରୀଶ୍ରୀଠାକୁର –** ଝିଅ ହେଉ ବା ପୁଅ ହେଉ, ପ୍ରତ୍ୟେକେ ଯଦି ବିହିତ ଆଚରଣଶୀଳ ହୁଅନ୍ତି, ଏବଂ ଇଷ୍ଟଭାବରେ ଅନ୍ୟକୁ ଭାବିତ କରି ତୋଳିବାର ବୁଦ୍ଧି ଓ ଚେଷ୍ଟା ଯଦି ସର୍ବକ୍ଷଣ ଥାଏ, କିଏ ଯେ କ'ଣ କରିପାରେ, ଆଉ ନ ପାରେ, ତାର କୌଣସି ଲେଖାଯୋଖା ନାହିଁ। ତୁମର ଏହି ଖୋଲା କଥାରେ କେତେଜଣଙ୍କର ହୁଏତ ଚୈତନ୍ୟର ଉଦୟ ହୋଇ ଯାଇପାରେ। ସବୁ ସମୟରେ ଏହି ଧନ୍ଦାରେ ରହିବା ଦରକାର। ପରମପିତାଙ୍କ ଦୟାରୁ ତୁମ୍ଭେମାନେ କିନ୍ତୁ କେହିବି କମ୍ ନୁହଁ। ଆ.ପ୍ର. ୨/୨୨.୧୨.୧୯୪୧

**ପ୍ର. – ଜୀବନରେ ଇଷ୍ଟ ମୁଖ୍ୟ ହେବା ଉଚିତ କାହିଁକି?**

**ଶ୍ରୀଶ୍ରୀଠାକୁର –** ମଣିଷର ଜୀବନରେ ତାର ଇଷ୍ଟହିଁ ମୁଖ୍ୟ ହେବା ଉଚିତ, ତେବେହିଁ ତାର ମୁଣ୍ଡ ଠିକ୍ ରହେ, ଯାହା ପ୍ରତି ଯାହା କରଣୀୟ ଠିକ୍ ଭାବରେ କରିପାରେ।

ଆ.ପ୍ର. ୨/୨୩.୧୨.୧୯୪୧

**ପ୍ର. – ଇଷ୍ଟସ୍ୱାର୍ଥୀ ହେବାକୁ ହୁଏ କାହିଁକି?**

ଶ୍ରୀଶ୍ରୀଠାକୁର – ମଣିଷ ଏହି ସିଧାକଥାଟିକୁ ବୁଝେ ନାହିଁ ଯେ, ଇଷ୍ଟସ୍ୱାର୍ଥୀ ହେବାହିଁ ଆତ୍ମସ୍ୱାର୍ଥୀ ପରିପୂରଣର ଶ୍ରେଷ୍ଠ ପଥ। ଇଷ୍ଟଙ୍କର ସ୍ୱାର୍ଥ ଭିତରେ ସମସ୍ତଙ୍କର ସ୍ୱାର୍ଥହିଁ ନିହିତ ଅଛି। ତାଙ୍କର ସୁମହାନ ବିପୁଳ ସ୍ୱାର୍ଥକୁ ଯଦି ଆମର ସ୍ୱାର୍ଥ କରି ନେଉ ଏବଂ ତାହା ପୂରଣ କରିବା ପାଇଁ ଯଦି ଲାଭଜନକ ଭାବରେ ଖଟୁ, ତେବେ ଆମର ଭାତର ଅଭାବ କରିବ କିଏ? ଆପଣମାନେ ବଡ଼ ହୁଅନ୍ତୁ, ସୁଖସ୍ୱାଚ୍ଛନ୍ଦ୍ୟରେ ରୁହନ୍ତୁ, ଲୋଭନୀୟ ଦେବ-ଚରିତ୍ରର ଅଧିକାରୀ ହୋଇଉଠନ୍ତୁ – ଏହାହିଁ ମୋର ସ୍ୱାର୍ଥ,....। ଆ.ପ୍ର. ୨/୨୩.୧୨.୧୯୪୧

**ପ୍ର. – ଇଷ୍ଟଙ୍କ ଠାରୁ ମନ ବିଚ୍ୟୁତ ହେଲେ କ'ଣ ହୁଏ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କ ଠାରୁ ମନ ବିଚ୍ୟୁତ ହେଲେ, ସେତେବେଳେ ସିଏ ଅବସ୍ଥାର ଦାସ ହୁଏ, ସୁଖ-ଦୁଃଖ କୌଣସିଟିକୁ ସତ୍ତା-ପରିପୋଷଣୀ କରି ତୋଳିପାରେ ନାହିଁ।

ଆ.ପ୍ର. ୨/୨୩.୧୨.୧୯୪୧



**ପ୍ର. – ଜୀବନରେ ଇଷ୍ଟଙ୍କ ପ୍ରୟୋଜନ କାହିଁକି?**

**ଶ୍ରୀଶ୍ରୀଠାକୁର –** ଜନତା, ରାଷ୍ଟ୍ର, ଦେଶ, କୌଣସି ବାଦ୍ ବା ପଦ ମଣିଷ ବୁଝେ ନାହିଁ, ସେ ଚାହେଁ ଗୋଟିଏ ବିଶିଷ୍ଟ ବ୍ୟକ୍ତି, ଯାହାଙ୍କୁ ଖୁସି କରି ସେ ଖୁସି ହୋଇପାରେ। ସେଥିପାଇଁ ସମଗ୍ର ମଙ୍ଗଳର ମୂର୍ତ୍ତ ପ୍ରତୀକ ରକ୍ତ-ମାଂସ-ସଙ୍କୁଳ ଇଷ୍ଟ ବା ବାଞ୍ଛିତଙ୍କର ପ୍ରୟୋଜନ। ଆଉ ସେ ହିଁ ଆମ୍ଭମାନଙ୍କର ଇଷ୍ଟ ବା ବାଞ୍ଛିତ – ଯାହାଙ୍କ ଦ୍ୱାରା ଆମ୍ଭେମାନେ nurture (ପୋଷଣ) ପାଉ ଓ fulfilled (ପରିପୂରିତ) ହେଉ towards becoming (ବିବର୍ଦ୍ଧନର ଦିଗନ୍ତ)। ଇଷ୍ଟ ଥିଲେ ମଣିଷ ଆଉ ସେତେବେଳେ ପରିବେଶର ପୁତୁଳା ହୁଏ ନାହିଁ, ସେ ନିଜେ ଇଷ୍ଟଙ୍କ ଟାଣରେ ଚାଲି ସମସ୍ତଙ୍କୁ ସେହି ଟାଣରେ ତୋଳିଧରେ, Ideal, individual ଓ environment (ଇଷ୍ଟ, ଅହଂ ଓ ପରିବେଶ)-ର ମଧ୍ୟରେ concordance (ସଂହତି) ନେଇ ଆସେ। ପ୍ରତ୍ୟେକଟି individual (ବ୍ୟଷ୍ଟି) grow କରେ (ବଢ଼ିଉଠେ) according to his instincts in harmony with the environment (ତାର ସହଜାତ ସଂସ୍କାରାନୁପାତିକ ପରିବେଶର ସହିତ ସଙ୍ଗତି ନେଇ)। ...Individual (ବ୍ୟଷ୍ଟିଗତ) ଓ social evolution (ସମାଜଗତ ବିବର୍ତ୍ତନ)-ର ମୂଳ ଏହିଠାରେ। ଆ.ପ୍ର. ୨/୨୩.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣରେ ଚାଲିବାର ଭୁଲହିଁ କ'ଣ ଇଷ୍ଟବିରୋଧି ଚଳନ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କ ପ୍ରତି ଯଦି ଶ୍ରଦ୍ଧା ଓ ଆନୁଗତ୍ୟ ଠିକ୍ ଥାଏ, ଆଉ ତା ସହିତ ଚାଲିବାର ଯଦି ଭୁଲ ଥାଏ, ତେବେ ଏହି ଭୁଲ ଚଳନକୁ କିନ୍ତୁ ଇଷ୍ଟ ବିରୋଧି ଚଳନ କହିବା ଠିକ୍ ହେବ ନାହିଁ। ସେହି ଭୁଲ-ତ୍ରୁଟି ସମସ୍ତଙ୍କର ହିଁ ଅଛି। କୌଣସି ଗୋଟିଏ ଭୁଲକୁ ଯଦି ଭୁଲ ବୋଲି ମଧ୍ୟ କହିବାକୁ ହୁଏ, ତା ମଧ୍ୟ କହିବାର ଏପରି କାୟିଦା ଅଛି, ଯାହାଦ୍ୱାରା ମଣିଷଟିର ମହତ୍ତ୍ୱ ଯହୁରି ଫୁଟି ଉଠେ। ତାହା କେହି ଶିଖେଇ ଦିଏ ନାହିଁ, ଭିତରେ ଭାବ ରହିଲେ କଥା ଅପେ ଆଛାଏଁ ଫୁଟି ବାହାରେ। ...ଭଲ ପାଇବା ଥିଲେ ଯାହାଦ୍ୱାରା ଭଲ ହୁଏ, ତାହାହିଁ କରିବା ଓ କହିବା ଆସିଯାଏ। ଅବାନ୍ତର ସମାଲୋଚନାର ପ୍ରବଣତା ସେତେବେଳେ ରହେ ନାହିଁ। ଆ.ପ୍ର. ୨/୨୩.୧୨.୧୯୪୧

**ପ୍ର. ଇଷ୍ଟାନୁସରଣ ଇଷ୍ଟଙ୍କର ଚଳନରେ ନ-ହେବାର ମାନେ କ'ଣ?**

**ଶ୍ରୀଶ୍ରୀଠାକୁର –** ମୋର ଚଳନରେ ଯଦି ନ ଚାଲନ୍ତି – ଯାହାର ଯାହା ବୈଶିଷ୍ଟାନୁସାରେ – ତା ହେଲେ ମୁଁ ଆପଣମାନଙ୍କର କି ଠାକୁର? ମୋତେ ଯଦି ଏତେଟିକିଏ ଭଲ ପାଆନ୍ତି ତା ହେଲେ ତ ମୁଁ ଯେଉଁ ଚଳନରେ ଚାଲେ, ଚାଲିବାକୁ କହେ, ସେହିଭାବରେ ଚାଲିବାର ଚେଷ୍ଟା କରିବା ଉଚିତ। ଏହାହିଁ ତ ଶ୍ରଦ୍ଧା ଓ ଭଲ ପାଇବାର ଲକ୍ଷଣ। ଆପଣମାନେ ସଂକୀର୍ଣ୍ଣ

ସ୍ୱାର୍ଥପରତା ଛାଡ଼ିବେ ନାହିଁ, ସାର୍ଥକତାର ପଥରେ ଚାଲିବେ ନାହିଁ, ଅଥଚ ମୋତେ ଠାକୁର କହି ଭକ୍ତି ଦେଖାଇବେ, ସେ ଭକ୍ତିରେ ଆପଣମାନଙ୍କର ବା ଲାଭ କ'ଣ ? ମୋର ବା ତୃପ୍ତି କେଉଁଠି ? ମୋତେ ଭଲ ହିଁ ଯଦି ପାଉଥାନ୍ତି, ମୋ ପଥରେ ଚାଲି ନିଜର ଭଲପାଇବାର ମର୍ଯ୍ୟାଦା ରକ୍ଷା କରନ୍ତୁ। ଦେଖନ୍ତୁ ସେଥିରେ କ'ଣ ହୁଏ। କପଟତାରେ କିନ୍ତୁ କୌଣସି ଫାଇଦା ନାହିଁ।

ଆ.ପ୍ର. ୨/୨୪.୧୨.୧୯୪୧

**ପ୍ର. – ଇଷ୍ଟଙ୍କଠାରେ ଆତ୍ମସମର୍ପଣ କେତେବେଳେ ହୁଏ ?**

**ଶ୍ରୀଶ୍ରୀଠାକୁର** – ଆତ୍ମସମର୍ପଣ କଥାଟା ଆତ୍ମସମର୍ପଣର ଅନ୍ତରାୟ, ଆତ୍ମସମର୍ପଣ ସେତେବେଳେ ହିଁ, ହୁଏ ଯେତେବେଳେ ଆମ୍ଭେମାନେ with all our passions (ସମସ୍ତ ପ୍ରବୃତ୍ତି ନେଇ) ଇଷ୍ଟଙ୍କଠାରେ interested (ସ୍ୱାର୍ଥାନ୍ୱିତ) ହେଉ। ଇଷ୍ଟଙ୍କଠାରେ ଆପ୍ରାଣ ହେଲେ ମଣିଷ active evolving nature-ର ହୋଇ ପଡ଼େ, ଅର୍ଥାତ୍ ସକ୍ରିୟ ବିବର୍ତ୍ତନୀ ସ୍ୱଭାବ-ସମ୍ପନ୍ନ ହୋଇଉଠେ। ଆତ୍ମସମର୍ପଣ ଯେ କରେ, ସେ ଟେର ପାଏନାହିଁ ଯେ ସେ ଆତ୍ମସମର୍ପଣ କରିଛି। ସେହିଟି ହିଁ ତା ପାଖରେ ଏକମାତ୍ର ଜୀବନ ଯାହାର କଳ୍ପନା ସେ କରିପାରେ। ଅନ୍ୟ କୌଣସି ପ୍ରକାର ଜୀବନ ଯେ ସମ୍ଭବ ତାହାହିଁ ତା'ମୁଣ୍ଡରେ ଆସେ ନାହିଁ। ଇଷ୍ଟଙ୍କୁ ବାଦ ଦେଇ ତାର ବଞ୍ଚିବାଟାହିଁ ନିରର୍ଥକ ମନେ ହୁଏ। ଏହା ମଧ୍ୟରେ କୌଣସି ଚାତ୍ରିକତାର ବ୍ୟାପାର ନାହିଁ। ତାହାର ସତ୍ତାହିଁ ଏହି କଥା କହେ। ମାଛ ଯେପରି ବଞ୍ଚିବାକୁ ଗଲେ ଜଳରେ ହିଁ ବଞ୍ଚେ, ଭକ୍ତ ମଧ୍ୟ ସେହିପରି ବଞ୍ଚିବାକୁ ଗଲେ ଇଷ୍ଟଙ୍କଠାରେ ହିଁ ବଞ୍ଚେ, ଇଷ୍ଟଙ୍କପାଇଁ ହିଁ ବଞ୍ଚେ, ନ ହେଲେ ସେ ବଞ୍ଚିବ କ'ଣ ଦେଇ ? ବଞ୍ଚିବ କ'ଣ ନେଇ ?

ଆ.ପ୍ର. ୨/୨୫.୧୨.୧୯୪୧

**ପ୍ର. – ଇଷ୍ଟାନୁସରଣରେ ଇଷ୍ଟ କେତେବେଳେ ସହାୟ ହୁଅନ୍ତି ?**

**ଶ୍ରୀଶ୍ରୀଠାକୁର** – ନିଜେ ସହାୟ ରହିଲେ ସଦ୍‌ଗୁରୁ (ଇଷ୍ଟ) ସହାୟ ହୁଅନ୍ତି। ସଦ୍‌ଗୁରୁ (ଇଷ୍ଟ)-ଙ୍କ ପ୍ରତି ଟାଣରେ ଆସେ ତାଙ୍କର ପ୍ରୀତିଜନକ କର୍ମ – ସେହି କର୍ମପଥରେ ଯେତେ ଅନ୍ତରାୟ, ସେ ପରମ ତୃପ୍ତିର ସହ ଅତିକ୍ରମ କରେ – ଆତ୍ମପ୍ରସାଦ ତାର ମନର କୋଣ-କୋଣକୁ ଭର୍ତ୍ତି କରି ତୋଳେ – ଯେଉଁ କାମରେ ସେ ହାତ ମାରେ ସେଥିରେ ସେ ଜୟଯୁକ୍ତ ହୁଏ – କୃତକାର୍ଯ୍ୟତା ପ୍ରତି ପଦକ୍ଷେପରେ ତାକୁ ଅନୁସରଣ କରିଥାଏ, ମାଟି ମୁଠାଇଲେ ସୁନା ହୋଇଯାଏ – ଚାରିଦିଗରେ ଧନ୍ୟ-ଧନ୍ୟ ପଡ଼ିଯାଏ – ପାରିପାର୍ଶ୍ୱିକଙ୍କର ଇଷ୍ଟପ୍ରାଣ ସେବା ତାର ସ୍ୱଭାବସିଦ୍ଧ ହୋଇଯାଏ – ଦେଖୁ ଦେଖୁ ଅର୍ଥ, ମାନ, ଯଶ ଇତ୍ୟାଦି ତାକୁ ଘେରି ଧରେ – ଲୋକେ କହନ୍ତି ଅଦୃଷ୍ଟ – ତା କିନ୍ତୁ ସତ୍ୟ।

ଆ.ପ୍ର. ୨/୨୬.୧୨.୧୯୪୧



**ପ୍ର. – ଇଷ୍ଟାନୁସରଣରେ ଇଷ୍ଟମୂର୍ତ୍ତି ଧ୍ୟାନର ସାର୍ଥକତା କ'ଣ ?**

**ଶ୍ରୀଶ୍ରୀଠାକୁର** – ମଣିଷର ବାହ୍ୟିକ ଚେହେରାଟି ତାର ଭିତରର ହିଁ ପ୍ରତିଛବି। ଜ୍ଞାନମୟ, ଚିରଚେତନ ଯିଏ, ତାଙ୍କର ମୂର୍ତ୍ତି ଧ୍ୟାନ କରୁ କରୁ ତାଙ୍କର ଅନ୍ତରର ସମ୍ପଦ ମଧ୍ୟ ଆମ ପାଖରେ ଉଦ୍‌ଭାସିତ ହୋଇଉଠେ। ଆଉ ଧ୍ୟାନ ମାନେ କେବଳ ଇଷ୍ଟଙ୍କର ଚେହେରା ଚିନ୍ତା କରିବା ନୁହେଁ, ତାଙ୍କର ଚାଲି-ଚଳନ, ଆଚାର-ବ୍ୟବହାର, ଚାହିଦା, ପସନ୍ଦ ନିର୍ଦ୍ଦେଶ ସବୁ ସମ୍ବନ୍ଧରେହିଁ ଚିନ୍ତା କରିବା ଦରକାର, ଏବଂ ନିଜକୁ ସେହି ଭାବରେ ନିୟନ୍ତ୍ରିତ କରିବାକୁ ହୁଏ। ଏକ କଥାରେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାମୂଳକ ଚିନ୍ତା ହିଁ ଧ୍ୟାନ। ଆମ୍ଭମାନଙ୍କ ମଧ୍ୟରେ ଭଲମନ୍ଦ ଯାହା ବି ଥାଉ, ତାହା କିପରି ଇଷ୍ଟାନୁକୂଳ କରି ତୋଳିବି, ସେହି ଚିନ୍ତାହିଁ ଧ୍ୟାନ, କେବଳ ଚିନ୍ତା କରି କ୍ଷାନ୍ତ ହେଲେ ଚଳିବ ନାହିଁ, ବାସ୍ତବରେ ସେହି ଭାବରେ ଚାଲିବାକୁ ହେବ। ସେହିଥିରେ ହିଁ ଧ୍ୟାନର ସାର୍ଥକତା।

ଆ.ପ୍ର. ୨/୨୭.୧୨.୧୯୪୧

**ପ୍ର. – ଇଷ୍ଟ କିଏ ହୋଇପାରନ୍ତି ? ତାଙ୍କର ଅବର୍ତ୍ତମାନରେ ମଣିଷ କିପରି ଭାବରେ ସାଧନ-ଭଜନ କରିବ, କାହାଙ୍କ ଧ୍ୟାନ କରିବ ?**

**ଶ୍ରୀଶ୍ରୀଠାକୁର** – ପୁରୁଷୋତ୍ତମହିଁ ମଣିଷର ଇଷ୍ଟ। ପୁରୁଷୋତ୍ତମହିଁ ଧ୍ୟେୟ। ସେ ଚାଲିଗଲେ ପୁରୁଷୋତ୍ତମଙ୍କର ଅନୁଗାମୀ ଋତ୍ୱିକଙ୍କଠାରୁ ପୁରୁଷୋତ୍ତମ-ପ୍ରବର୍ତ୍ତିତ ଦୀକ୍ଷାରେ ଦୀକ୍ଷିତ ହୋଇ ଏହି ପୁରୁଷୋତ୍ତମଙ୍କରହିଁ ଅନୁସରଣ କରିବାକୁ ହେବ, ଏହି ପୁରୁଷୋତ୍ତମଙ୍କୁହିଁ ଧ୍ୟାନ କରିବ, ଯେତେଦିନ ପର୍ଯ୍ୟନ୍ତ ତାଙ୍କର ପୁନରାୟ ଆବିର୍ଭାବ ନ ହୋଇଛି। ପରବର୍ତ୍ତୀ ଆସିଲେ ପୁଣି ତାଙ୍କୁ ଗ୍ରହଣ କରିବ, କାରଣ, ସେ ପୂର୍ବବର୍ତ୍ତୀଙ୍କରହିଁ ନବ କଳେବର।

ଆ.ପ୍ର. ୨/୨୭.୧୨.୧୯୪୧

**ପ୍ର. – ଇଷ୍ଟାର୍ଥ ବିସର୍ଜନ ଦେଇ ଚାଲିବା ଆଉ ଅଚ୍ୟୁତ ଇଷ୍ଟନିଷ୍ଠ ହୋଇ ଚାଲିବା – କେଉଁଟାରେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟାର୍ଥ ବିସର୍ଜନ ଦେଇ ଯଦି ଆପଣ କେବଳ ମଣିଷକୁ ଖୁସି କରିବା ତାଳରେ ରହନ୍ତି, ତାକୁ କୁହାଯାଏ ଖୋସାମତି ଚଳନ। ଏହିପରି ଖୋସାମତି ଚଳନରେ କୌଣସି କାମ ହୁଏ ବୋଲି ମୋର ମନେ ହୁଏ ନାହିଁ। ଆଉ ଏକ ପ୍ରକାର ଅଛି ଇଷ୍ଟଙ୍କଠରେ fanatic (ଅଚ୍ୟୁତ) ରହି, ଇଷ୍ଟାର୍ଥରେ ଯେଉଁଠାରେ ଯେପରି ଚାଲିବା ଦରକାର, ସେହିପରି ଚାଲିବା। ଏହାକୁ କୁହାଯାଏ କୌଶଳୀ ଚଳନ, ଚତୁର ଚଳନ। ଏହିପରି ଚାଲିବାକୁ ଯିଏ ଜାଣେ, ତାକୁ ହିଁ ଧୁରନ୍ଧର କୁହାଯାଏ। ଯେପରି ଥିଲେ ଶ୍ରୀକୃଷ୍ଣ, ଚାଣକ୍ୟ। କୌଟିଲ୍ୟ ସିଦ୍ଧ ଜାଣେ, ତାକୁ ହିଁ ଧୂରନ୍ଧର କୁହାଯାଏ। ଯେପରି ଥିଲେ ଶ୍ରୀକୃଷ୍ଣ, ଚାଣକ୍ୟ। କୌଟିଲ୍ୟ ସିଦ୍ଧ ସରଳ ଚଳନହିଁ ଶ୍ରେୟ। ଯେଉଁଠାରେ ମଣିଷ ତାହା ପାରେ ନାହିଁ, ତା ମାନେ ତାର କୌଣସି

obsession (ଅଭିଭୂତି) ଅଛି। ଇଷ୍ଟାର୍ଥ ତା ପାଖରେ ବଡ଼ ନୁହେଁ। ଇଷ୍ଟାର୍ଥରେ ନିଜର ଜିଦ୍ ସେ ତ୍ୟାଗ କରିବାକୁ ପ୍ରସ୍ତୁତ ନୁହେଁ। ଯାହାର ଏହି ଅହଙ୍କାର ଭାଙ୍ଗି ନାହିଁ, ଧର୍ମ ତା ପାଖରୁ ବହୁତ ଦୂରରେ।

ଆ.ପ୍ର. ୩/୭.୧.୧୯୪୨

**ପ୍ର. – ଇଷ୍ଟଙ୍କ ପାଖରେ ଯେଉଁମାନେ ରହନ୍ତି ସେମାନେ କ'ଣ ତାଙ୍କୁ ଭଲ ପାଆନ୍ତି ବୋଲି ରହନ୍ତି ?**

**ଶ୍ରୀଶ୍ରୀଠାକୁର** – ଏଠାରେ ଯେଉଁମାନେ ଅଛନ୍ତି, ସମସ୍ତେ ଯେ ମୋତେ ଭଲ ପାଆନ୍ତି ବୋଲି ଅଛନ୍ତି, ତାହା ମନରେ ଭାବିବେ ନାହିଁ। ଏପରି ଲୋକର ଅଭାବ ନାହିଁ, ଯେଉଁମାନେ ମୋତେ ଭଗବାନ ବୋଲି ପ୍ରଚାର କରନ୍ତି, କିନ୍ତୁ ସ୍ୱାର୍ଥ ଓ ଅଭିମାନରେ ଆଘାତ ଲାଗିଲେ ତତ୍କ୍ଷଣାତ୍ ମୋର interest (ସ୍ୱାର୍ଥ) sacrifice (ତ୍ୟାଗ) କରିପାରନ୍ତି। ଯେଉଁମାନେ ପ୍ରବୃତ୍ତିର ଦାୟରେ ସର୍ବଦା ମୋର interest (ସ୍ୱାର୍ଥ) sacrifice (ତ୍ୟାଗ) କରନ୍ତି, ବୁଝିବାକୁ ହେବ ସେମାନେ ମୋତେ ମଧ୍ୟ ଯେ-କୌଣସି ମୁହୂର୍ତ୍ତରେ ଅସ୍ୱୀକାର କରିପାରନ୍ତି, ତ୍ୟାଗ କରିପାରନ୍ତି। ...ଘରର ପୋଷା ମଇନା ଉପରେ ମଣିଷର ଯେଉଁ ପ୍ରୀତି ଓ ମମତା ହୁଏ, ଆଜୀବନ ଯଜନ, ଯାଜନ, ଇଷ୍ଟଭୃତି କରି ମଧ୍ୟ ଅନେକଙ୍କର ଇଷ୍ଟଙ୍କ ଉପରେ ସେହି ପ୍ରୀତି ଓ ମମତା ଟିକକ ହୁଏନାହିଁ। ସେଥିପାଇଁ ସବୁ ଚଳନ ହିଁ କୃତ୍ରିମ ପରି ହୁଏ।

ଆ.ପ୍ର. ୩/୧୦.୧.୧୯୪୨

**ପ୍ର. – ଇଷ୍ଟାନୁସରଣର ମୂଳଧନ କ'ଣ ? ତାହା ଦ୍ୱାରା କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ମୁଁ ତୁମମାନଙ୍କୁ ଲକ୍ଷେ ଭଲପାଏନା କାହିଁକି, ତାହା କିନ୍ତୁ ତୁମ୍ଭମାନଙ୍କର ସମ୍ପଦ ନୁହେଁ। ତୁମମାନଙ୍କ ତରଫରୁ ଭଲପାଇବାହିଁ କିନ୍ତୁ ତୁମ୍ଭମାନଙ୍କର ମୂଳଧନ। ଏହି ଟିକକ ମୂଳଧନ ଖଟେଇ ତୁମ୍ଭେମାନେ ନିଜେ ତରି ପାର, ଲୋକଙ୍କୁ ତରାଇ ପାର। ପ୍ରତ୍ୟେକଙ୍କର ଆଖି-ମୁହଁ, ଚେହେରା, ଚାଲି-ଚଳନ, କାର୍ଯ୍ୟ-କର୍ମ ମଧ୍ୟରେ ମୁଁ ଲକ୍ଷ୍ୟ କରେ, ତା ମଧ୍ୟରେ କେତେଟିକିଏ ଭଲପାଇବା ଜାଗ୍ରତ ହେଲା। କାହା ମଧ୍ୟରେ ଯେତେବେଳେ ଦେଖେ, ଅକୃତ୍ରିମ ଅନୁରାଗର ଗୋଟିଏ ପାଖୁଡ଼ା ଖୋଲିଛି, ସେତେବେଳେ ହିଁ ଯେପରି ମୋର ଅନ୍ତର ରାଜ୍ୟରେ ଉତ୍ସବ ଲାଗିଯାଏ। ବାରମ୍ବାର ସେ ସ୍ମୃତିକୁ ରୋମାନ୍ଥନ କରେ। ମୋତେ କିଏ ଭଲପାଏ କି ନା, ତାର ପରଖ କିନ୍ତୁ ହେଲା ତାର ପରିବେଶ; ପରିବେଶର ସହିତ ଇଷ୍ଟାନୁଗ ସଙ୍ଗତି ନାହିଁ, ପରିବେଶ ପାଇଁ ସ୍ୱତଃ ଦାୟିତ୍ୱରେ ଦରଦ ସହିତ ଭାବିବା ନାହିଁ, କରିବା ନାହିଁ, ଅଥଚ ମୋତେ ଭଲପାଏ, ଏହା ହୋଇପାରେ ନାହିଁ। ଏହି ଭଲପାଇବା ମଣିଷର ସାମର୍ଥ୍ୟକୁ ବଢ଼ାଇଦିଏ, ସେ ଯେ କେତେ ଭାବରେ କେତେ ଜଣଙ୍କର ପୂରଣ କରିପାରେ, ତାର ଲେଖାଯୋଖା ନାହିଁ। ମଣିଷର ଉପାସ୍ୟ ହେଲେ ପୁରୁଷୋତ୍ତମ, ଅର୍ଥାତ୍ ସର୍ବୋତ୍ତମ ପୂରଣ ସ୍ୱଭାବ-ସମ୍ପନ୍ନ ମଣିଷ। ଯେତେବେଳେ ମଣିଷ ପୁରୁଷୋତ୍ତମଙ୍କ ପୂଜାରୀ ହୁଏ, ସେ ସେହି ସମୟରୁ ହିଁ ହୁଏ ପୂରଣବ୍ରତୀ, ସେବାବ୍ରତୀ, ସେତେବେଳେ ହିଁ ସେ ପୁରୁଷ ନାମର ଯୋଗ୍ୟ ହୁଏ। ତାର ପୂର୍ବ ପର୍ଯ୍ୟନ୍ତ ସେ କାପୁରୁଷ। କାପୁରୁଷର ଜଗତରେ ସ୍ଥାନ ନାହିଁ। ସେ ମଣିଷର ଗଳଗ୍ରହ ହୋଇପାରେ, କିନ୍ତୁ କାହାକୁ ଗଳାର ମାଳା କରି ବୋହିପାରେ ନାହିଁ।

ଆ.ପ୍ର. ୩/୧୬.୧.୧୯୪୨

**ପ୍ର. – ଇଷ୍ଟ ମୋର, ଯାହାଙ୍କୁ ଠାକୁର କହୁ, ସେ କେତେବେଳେ ଆମ୍ଭମାନଙ୍କର ଡାକ ଶୁଣି ପାରନ୍ତି ?**

**ଶ୍ରୀଶ୍ରୀଠାକୁର** – ତୁମମାନଙ୍କ ଅନ୍ତରର ଠାକୁର ଯେତେବେଳେ ଶୁଣିବାକୁ ପାଆନ୍ତି, ସେତେବେଳେ ହିଁ ମୋର ଶୁଣିବା ସହିତ ସମାନ ହୁଏ। ଠାକୁର ଆମ୍ଭମାନଙ୍କୁ କାହକୁ ଛାଡ଼ି ନାହାଁନ୍ତି, ସେ ସମସ୍ତଙ୍କ ସହିତ ହିଁ ଅଛନ୍ତି। ଫଳ କଥା, କେବଳ ମାତ୍ର ସେହିଁ ଅଛନ୍ତି ବହୁ ରୂପରେ, ବହୁ ଭାବରେ। ଆମ୍ଭେମାନେ ଯେଉଁଠାରେ ଯେତେଟା ତାଙ୍କ ପ୍ରତି ବିମୁଖ, ସେ ମଧ୍ୟ ସେଠାରେ ଆମ୍ଭମାନଙ୍କ ପାଖରେ ସେତେଟା ଅପ୍ରକଟ। ଜାଣତରେ, ଅଜାଣତରେ ତାଙ୍କ ସହିତହିଁ ଆମ୍ଭେମାନେ ଘର କରିଛୁ, ତାଙ୍କର ଦେବା ଯାହା କିଛି ସବୁହିଁ ଆମେ ଚାହୁଁ, କିନ୍ତୁ ଏପରି ହିଁ ଅକୃତଜ୍ଞ ଯେ, ତାଙ୍କୁ ଚାହୁଁନା, ତଥାପି ସେ ଆମ୍ଭମାନଙ୍କ ପ୍ରତି ବିମୁଖ ହୁଅନ୍ତି ନାହିଁ, ପ୍ରତୀକ୍ଷାର ସମୟ ଗଣନ୍ତି, କେବେ ତାଙ୍କୁ ଚାହିଁବୁ। ଯେଉଁଦିନ ପ୍ରକୃତରେ ତାଙ୍କୁ ଚାହୁଁ, ସେଦିନ ସବୁକିଛି ନେଇ, ସବୁ ଭରିଯାଇ, ସବୁ ଶୂନ୍ୟତାର ଆକାଶରେ ବ୍ୟାପ୍ତ ହୋଇ ସେ ହିଁ ଆମ୍ଭମାନଙ୍କ ପାଖରେ ଧରା ଦିଅନ୍ତି । ଠାକୁର ଆମ୍ଭମାନଙ୍କର କ'ଣ ସାଧାରଣ ଠାକୁର !

ଆ.ପ୍ର. ୩/୧୬.୧.୧୯୪୨

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ନିତ୍ୟ ବୈକୁଣ୍ଠରେ ବାସ କରିବା କେତେବେଳେ ସମ୍ଭବ ?**

**ଶ୍ରୀଶ୍ରୀଠାକୁର** – ଯେତେବେଳେ ଯାହା କରିବାର ତାହା ଯଦି ପୂର୍ଣ୍ଣ ଭାବରେ, ନିଖୁଣ ଭାବରେ କରିବାରେ ଅଭ୍ୟସ୍ତ ହେଉ, ତା ଭିତର ଦେଇହିଁ ଧିରେ ଧିରେ perfection (ପୂର୍ଣ୍ଣତାର) ପଥରେ ଆଗେଇ ପାରିବ, ନଚେତ୍ perfection (ପୂର୍ଣ୍ଣତା) ଗୋଟିଏ ଅବାସ୍ତବ ବ୍ୟାପାର। ମଣିଷ ଭାବେ କାର୍ଯ୍ୟକର୍ମ ଗୁଡ଼ିକ ସାଧନ ଜୀବନରେ ଗୌଣ ବ୍ୟାପାର। କିନ୍ତୁ ଇଷ୍ଟାର୍ଥପୂରଣୀ କୌଣସି କର୍ମ ହିଁ ଗୌଣ ଜିନିଷ ନୁହେଁ। ତେଣୁ ଅଧାପନ୍ତରା ଭାବରେ ତାହା କରିବା ଭଲ ନୁହେଁ, ଏହାଦ୍ୱାରା ନିଷ୍ଠା ଓ ଅନୁରାଗର ବ୍ୟତ୍ୟୟ ହୁଏ। ସବୁକାମରେ ଦୃଷ୍ଟିଟା ନେବ ମୋର, ମନଟା ନେବ ମୋର, ଚିନ୍ତାଟା ନେବ ମୋର, ଧନ୍ଦାଟା ନେବ ମୋର। ଏଗୁଡ଼ିକ

ତୁମ ମଧ୍ୟରେ ବସାଇ ନେଇ ଉଦ୍ଦେଶ୍ୟରେ ଅମୋଘଗତି ହୋଇ ତୁମର ଶକ୍ତି ପ୍ରୟୋଗ କରି କାର୍ଯ୍ୟ ହାସଲ କରି ଆସିବ। ଏହି ଭାବରେ ଚାଲି ଦେଖ – ଦେଖିବ ହଜାରେ ଅସୁବିଧାରେ ଥାଇ ମଧ୍ୟ ନିୟତ ବୈକୁଣ୍ଠରେ ବାସ କରୁଛ।

ଆ.ପ୍ର. ୩/୧୬.୧.୧୯୪୨

**ପ୍ର. – ଇଷ୍ଟାନୁସରଣରେ ମଣିଷ ପକ୍ଷରେ ଲାଭଜନକ ଓ ଲୋଭନୀୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ତଥାକଥିତ ସୁଖ, ଆରାମ ଇତ୍ୟାଦି ଜିନିଷ ମଣିଷ ପକ୍ଷରେ ଲାଭଜନକ ନୁହେଁ, ଲୋଭନୀୟ ମଧ୍ୟ ନୁହେଁ, ମଣିଷ ପକ୍ଷରେ ଲୋଭନୀୟ ଓ ଲାଭଜନକ ଜିନିଷ ହେଲା ତାର ଇଷ୍ଟାନୁଗ ଆତ୍ମନିୟନ୍ତ୍ରଣ।

ଆ.ପ୍ର. ୩/୧୬.୧.୧୯୪୨

**ପ୍ର. – ଇଷ୍ଟାନୁସରଣର ମୂଳ ବସ୍ତୁ କ'ଣ ?**

**ଶ୍ରୀଶ୍ରୀଠାକୁର** – ଜ୍ଞାନ ବିଦ୍ୟାର କଥା ଯାହା କୁହ, ସେସବୁ କିଛି ହିଁ କିଛି ନୁହେଁ। ମୂଳ ବସ୍ତୁ ହେଲା ତାଙ୍କଠାରେ ଟାଣ, ଖୋଲାଖୋଲି ଟାଣ, ତା ମଧ୍ୟରେ କିଛି କାରସାଦି ରହିବ ନାହିଁ, କୌଣସି ମତଲବ ରହିବ ନାହିଁ। ଇଷ୍ଟଙ୍କୁ ସୁଖୀ କରିବି, ତାଙ୍କୁ ଶାନ୍ତି ଦେବି, ଯାହାଦ୍ୱାରା ତାଙ୍କର ସନ୍ତୋଷ ହୁଏ, ତୃପ୍ତି ହୁଏ, ତାହାହିଁ କରିବି ମୋର ସାରା ଜୀବନ ଦେଇ, ଦୁନିଆଟା ଦେଇ। ଆତ୍ମନିୟନ୍ତ୍ରଣ ଇତ୍ୟାଦି କଥା ଶୁଣିବାକୁ କେତେ ବିରାଟ ମନେ ହୁଏ, କିନ୍ତୁ ମଣିଷ ଭଲପାଇବାର ଦାୟରେ ଛାଡ଼ି ପାରେନା, କରି ପାରେନା, ଧରି ପାରେନା ଏପରି କିଛି ହିଁ ନାହିଁ। ମୂହୁର୍ତ୍ତ ମଧ୍ୟରେ ମଣିଷର ରୂପ ବଦଳିଯାଏ, ଚଣ୍ଡାଶୋକ ପ୍ରିୟଦର୍ଶନ ହୁଏ, ରତ୍ନାକର ହୁଏ ବାଲ୍ମିକୀ।

ଆ.ପ୍ର. ୩/୧୭.୧.୧୯୪୨

**ପ୍ର. – ଇଷ୍ଟପ୍ରାଣତାର ଜ୍ୟୋତିଃ କିପରି ହେବା ଦରକାର ?**

**ଶ୍ରୀଶ୍ରୀଠାକୁର** – ଆମ୍ଭମାନଙ୍କର ମନ ଯେତେବେଳେ ଯେଉଁ ପ୍ରକାର ଭାବଭୂମିରେ ଥାଏ, ଚେହେରାର ମଧ୍ୟ ଦେଇ ତାହାର ଗୋଟିଏ aura (ଜ୍ୟୋତିଃ) ବାହାରେ, ଅନ୍ୟ ପାଖକୁ ଗଲେ ପରସ୍ପରର aura (ଜ୍ୟୋତିଃ)ର ମଧ୍ୟରେ interaction (ପାରସ୍ପରିକ କ୍ରିୟା-ପ୍ରତିକ୍ରିୟା) ହୁଏ। ପ୍ରବୃତ୍ତିମୁଖୀ ମଣିଷର aura (ଜ୍ୟୋତିଃ) ଅନ୍ୟକୁ ମଧ୍ୟ ପ୍ରବୃତ୍ତିର ଦିଗକୁ ଟାଣେ। ସେଥିପାଇଁ ତୁମମାନଙ୍କର ଇଷ୍ଟପ୍ରାଣତାର aura (ଜ୍ୟୋତିଃ) ଯେପରି ଏତେ ଶକ୍ତିମାନ ହୁଏ, ଗାଢ଼ ହୁଏ, ଯାହା ପାଖରେ ଲକ୍ଷେ ପ୍ରବୃତ୍ତିପରାୟଣତା ନିଷ୍ପ୍ରଭ ହୋଇଯାଏ। ଫିକା ହୋଇଯାଏ। ସେଥିପାଇଁ ଯାଜନ କରିବାକୁ ଗଲେ ଯଜନ ଖୁବ୍ ଭଲଭାବରେ କରିବା ଦରକାର, ତାଛଡ଼ା ଏକ ଘଣ୍ଟା ଯଜନ କଲି, ଏକ ଘଣ୍ଟା ଯାଜନ କଲି, ପାଞ୍ଚମିନିଟ୍ ଇଷ୍ଟଭୃତି କଲି, ଆଉ ବାକି ସମୟ ନିଜ ଚିନ୍ତାରେ, ଚଲା-ବୁଲାରେ ଇଷ୍ଟଙ୍କ ସହିତ କୌଣସି ସମ୍ପର୍କ ନାହିଁ, ଏହା ।ଦ୍ୱାରା କିନ୍ତୁ ଲଙ୍ଗର ପକାଇ କାତ ମାରିବା ସଦୃଶ ହେବ, ଚରିତ୍ର ସୁଧାରିବ ନାହିଁ।

ଆ.ପ୍ର. ୩/୧୭.୧.୧୯୪୨



**ପ୍ର. – ଇଷ୍ଟାନୁସରଣରେ ସର୍ବକ୍ଷଣ କିପରି ହୋଇ ଚାଲିବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – Wholetime (ସର୍ବକ୍ଷଣ) ଠାକୁରଙ୍କର ମଣିଷ ହୋଇ ଚାଲିବାକୁ ହେବ, ତାହା ଖାଇବାରେ, ଶୋଇବାରେ, ହସିବାରେ, ଚାଲିବାରେ, ବୁଲିବାରେ। ଯେତେବେଳେ ଅର୍ଥ ଉପାର୍ଜନ-କାର୍ଯ୍ୟରେ ବ୍ୟସ୍ତ ଥାଉ, ସେତେବେଳେ ଦେଖିବାକୁ ହେବ ତାହା ଭିତର ଦେଇ ଧର୍ମ ଉପାର୍ଜନ କେତେଟା ହେଉଛି, ସ୍ତ୍ରୀ-ସମ୍ଭୋଗରେ ରତ ଥାଉ ଯେତେବେଳେ, ସେତେବେଳେ ଦେଖିବାକୁ ହେବ ତା ଭିତର ଦେଇ ଇଷ୍ଟ-ସମ୍ଭୋଗ ଅର୍ଥାତ୍ ମଙ୍ଗଳ-ସମ୍ଭୋଗ କେତେ ପରିମାଣରେ ହେଉଛି। ଫଳକଥା, ଆମ ଜୀବନରେ ଯାବତୀୟ ଯାହା-କିଛି ଅବିଚ୍ଛିନ୍ନ ଭାବରେ ଇଷ୍ଟାର୍ଥେ ପରିଚାଳିତ ହେଉଛି କି ନାହିଁ ତା ବିଷୟରେ ସର୍ବକ୍ଷଣ ଖବର ରଖିବାକୁ ହେବ। ଏହିପରି ଏକମୁଖୀ ହୋଇ ଜୀବନ ଯାପନ ଫଳରେ ଚରିତ୍ର ମଧ୍ୟରେ integration (ସଂହତି) ଆସେ, ତା ଫଳରେ ବ୍ୟକ୍ତିତ୍ୱ ଗଜାଇ ଉଠେ, ସେହି ବ୍ୟକ୍ତିତ୍ୱ ଅନ୍ୟକୁ ପ୍ରଭାବିତ କରିପାରେ। ନ ହେଲେ ଯୁକ୍ତି-ବିଚାର ଦେଇ ମଣିଷକୁ ତୁମେ କେତେ ବା ବୁଝାଇ ପାରିବ ?

ଆ.ପ୍ର. ୩/୧୭.୧.୧୯୪୨

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ଶିଷ୍ୟ ଓ ସନ୍ତାନ ମାନେ କ'ଣ କରିବେ ?**

**ଶ୍ରୀଶ୍ରୀଠାକୁର** – ଶିଷ୍ୟ ଓ ସନ୍ତାନ – ବଡ଼ଖୋକାହିଁ ହେଉ, ମଣିହିଁ ହେଉ ବା କାଜଲହିଁ ହେଉ ବା ଆପଣମାନେହିଁ ହୁଅନ୍ତୁ – ଆପଣମାନଙ୍କର ପ୍ରତ୍ୟେକଙ୍କ ପାଖରୁହିଁ ମୁଁ ଆଶା କରୁଛି ଯେ ଆପଣମାନେ ନିଜର ଜୀବନରେ ଓ ଚରିତ୍ରରେ ମୋତେ ବହନ କରି ନେଇ ଘୂରିବେ ଏବଂ ଅନ୍ୟ ପାଖରେ ମଧ୍ୟ ମୋତେ ପହଞ୍ଚାଇ ଦେବେ – ଅବିକୃତ ଭାବରେ, ଅବଶ୍ୟ ପ୍ରତ୍ୟେକେ ନିଜର ବୈଶିଷ୍ଟ୍ୟ ଅନୁଯାୟୀ। ଆଉ ମୋତେ ବହନ କରିବା ଓ ପହଞ୍ଚାଇ ଦେବାର ମାନେ, ମୋର mission (ଆଦର୍ଶ ଓ ଉଦ୍ଦେଶ୍ୟ)-କୁ ବହନ କରିବା ଓ ପହଞ୍ଚାଇ ଦେବା, ଆଉ ଆମର mission (ଆଦର୍ଶ ଓ ଉଦ୍ଦେଶ୍ୟ)ମାନେ ସମସ୍ତଙ୍କର mission (ଆଦର୍ଶ ଓ ଉଦ୍ଦେଶ୍ୟ)। ଜୀବନୀୟ ପ୍ରତିଟି ଯାହା-କିଛିର ଇଷ୍ଟନୁଗ ସତ୍ତାସମ୍ବର୍ଦ୍ଧନାହିଁ ମୋର mission (ଆଦର୍ଶ ଓ ଉଦ୍ଦେଶ୍ୟ)।

ଆ.ପ୍ର. ୩/୧୭.୧.୧୯୪୨

**ପ୍ର. – ଇଷ୍ଟାନୁସରଣରେ କିପରି ଚେଷ୍ଟା ଓ ଚଳନ ରହିବା ଉଚିତ ?**

**ଶ୍ରୀଶ୍ରୀଠାକୁର** – ଭକ୍ତ ଯିଏ ସେ ଇଷ୍ଟଙ୍କର ଗୁଣରେ ନିଜକୁ ଗୁଣାନ୍ୱିତ କରି ତୋଳିବା ପାଇଁ ଚେଷ୍ଟା କରିବ, ଆଉ ଭାବିବ, କହିବ ଓ ସେହି ପଥରେ ମଧ୍ୟ ଚାଲିବ। ସେଥିପାଇଁ ମୁଁ ସ୍ୱତଃଅନୁଜ୍ଞା ଆବୃତ୍ତି ଓ ଅନୁଷ୍ଠାନର ବିଧାନ ସାଧନାର ଅଙ୍ଗ ହିସାବରେ ଯୁକ୍ତ କରି ଦେଇଛି। ଏହାର ବିପରିତ ରକମ ଭାବିବା, ବୋଲିବା ଓ ଚାଲିବା ଠିକ୍ ନୁହେଁ।

ଆ.ପ. ୩/୧୩.୨.୧୯୪୨

**ପ୍ର. – ଇଷ୍ଟଙ୍କୁ ଭଲପାଇବାକୁ ଆରମ୍ଭ କଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଯେଉଁ ମୁହୂର୍ତ୍ତଠାରୁ ମଣିଷ ଇଷ୍ଟଙ୍କୁ ଭଲପାଇବାକୁ ଆରମ୍ଭ କରେ, ସେହି ସମୟରୁହିଁ ତାର superiority complex (ଶ୍ରେଷ୍ଠମାନ୍ୟତା) ଓ inferiority complex (ହୀନମନ୍ୟତା) ଦୂର ହୋଇଯାଏ। ସେତେବେଳେ ତାର ଧନ୍ଦା ହୁଏ, କିପରି ଇଷ୍ଟଙ୍କର ଚାହିଦା ଓ ଇଚ୍ଛାଗୁଡ଼ିକ ପୂରଣ କରିବ। ତାହା ତାର ନ କରିଲେହିଁ ନୁହେଁ। ତେଣୁ ଏହି ସମ୍ପର୍କରେ ଯାହା କରଣୀୟ, ସେ ସମ୍ବନ୍ଧରେ କୌଣସି ଭଣ୍ଡାମି ନ କରି ତୀବ୍ର ସଂକଳ୍ପ ନେଇ କରିବାକୁ ଲାଗିଯାଏ। ସଫଳ ନ ହେଲେ ହିଁ ସେ ଛାଡ଼େ ନାହିଁ। ସେତେବେଳେ ମୁଁ ଦୁର୍ବଳ, ମୁଁ ପାପୀ, ମୋ ଦ୍ୱାରା ଏହା କ'ଣ ସମ୍ଭବ ଏହା ସେ ଭାବିବାକୁ ବସେ ନାହିଁ। ଏହି ସବୁ ପ୍ରଶ୍ନର ସେ କୌଣସି ଅବକାଶହିଁ ଦିଏ ନାହିଁ। ଆ.ପ୍ର. ୩/୧୩.୨.୧୯୪୨

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ କେତେବେଳେ ପ୍ରକୃତ ଧର୍ମର ଜାଗରଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ମୁଁ ଜନ୍ମ ହୋଇଛି ଏକ ଅନ୍ତହୀନ ଉତ୍ସାହ ନେଇ। ଉତ୍ସାହର ସହିତ ନିତ୍ୟ ନୂଆ-ନୂଆ ଜୀବନ-ବର୍ଦ୍ଧନୀ ସମ୍ଭାବନାମୟ ପ୍ରଚେଷ୍ଟାରେ ବାସ୍ତବ ଭାବରେ ରତ ରହିବା – ମୁଁ ବୁଝେ, ଏହାହିଁ ହେଲା ଜୀବନର ଆରାମ, ଏହାହିଁ ହେଲା ଜୀବନର ଉପଭୋଗ। ଇଷ୍ଟାର୍ଥେ ଏପରି କରି ଚାଲିବାହିଁ ଧର୍ମ। ସେଥିପାଇଁ ଧର୍ମର ସହିତ ଆଳସ୍ୟ ବା ଜଡ଼ତାର କୌଣସି ସମ୍ପର୍କ ନାହିଁ। ଅଥଚ ଆମ ଦେଶରେ କେମିତି କେଜାଣି ଧର୍ମ ମଧ୍ୟରେ ତାମସିକତା ଆସି ପଶିଯାଇଛି। ସେଥିପାଇଁ ମୁଁ କର୍ମ ଉପରେ ଏତେ ଜୋର ଦିଏ। ଆଉ ମୁଁ ବିଶ୍ୱାସ କରେ, ତୁମେମାନେ ଯଦି ସେହିପରି ହୁଅ, ତୁମ୍ଭମାନଙ୍କ ଭିତର ଦେଇ ସର୍ବତ୍ର ପ୍ରକୃତ ଧର୍ମର ଜାଗରଣ ହେବ। ଆ.ପ୍ର. ୩/୧୩.୨.୧୯୪୨

**ପ୍ର. – ଇଷ୍ଟମୁଖୀ ନ ହେଲେ ଅସୁବିଧା କ'ଣ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଯଦି ଇଷ୍ଟମୁଖୀ ନ ହୁଏ, ଉତ୍ସମୁଖୀ ନ ହୁଏ, ସତ୍ତାମୁଖୀ ନ ହୁଏ, କାରଣମୁଖୀ ନ ହୁଏ, ଈଶ୍ୱରମୁଖୀ ନ ହୁଏ, ତାହେଲେ ତାକୁ ପ୍ରବୃତ୍ତିମୁଖୀ ହେବାକୁହିଁ ହେବ। ଆଉ ଯେତେଦିନ ସେ ପ୍ରବୃତ୍ତି କବଳରେ ରହିବ, ସେତେଦିନ ସେ ନିଜରହିଁ ହେଉ ବା ଅନ୍ୟରହିଁ ହେଉ, ସତ୍ତାକୁ ପୁଷ୍ଟ କରି ତୋଳି ପାରିବ ନାହିଁ ଅର୍ଥାତ୍ ସତ୍ତାର ସେବାରେ ଲାଗି ପାରିବ ନାହିଁ। ଧର୍ମର କାରବାର ହେଲା ସତ୍ତାକୁ ନେଇ, ମଣିଷ ଆତ୍ମସତ୍ତାରେ ସ୍ଥିତିଲାଭ କରି ଅନ୍ୟର ସତ୍ତାକୁ ଯଦି ପୋଷଣ ଦେଇ ନ ପାରିଲା, ତାହେଲେ ସେ ଯେତେ ଯାହା କରୁ ନା କାହିଁକି ସେ କରିବାର ଦାମ୍ କ'ଣ ? ସେ ଯଦି ମହାଶକ୍ତିର ଆଧାର ମଧ୍ୟ ହୁଏ, ବିଶ୍ୱକର୍ମାଙ୍କ ଭଳି କର୍ମଠ ମଧ୍ୟ ହୁଏ, ତଥାପି ତାର ସେ କର୍ମର ସତ୍ତାଧାରୀ ମାନଙ୍କ ପାଇଁ କୌଣସି ସ୍ଥାୟୀ



ମୂଲ୍ୟ ନାହିଁ। ସେଥିପାଇଁ ମୁଁ କହେ, ସତ୍ତାରେ ସଂସ୍ଥିତ ହୋଇ ଓ ସତ୍ତାକୁ ପୁଷ୍ଟ କରିବା ପାଇଁ ଯାହାର ଯାହା ସହଜାତ କର୍ମ ଅଛି ତାହାହିଁ କର – ତେବେହିଁ ତାହା ହେବ ଧର୍ମ। ଆଉ ସତ୍ତାରେ ସଂସ୍ଥିତ ହେବା ମାନେ ଇଷ୍ଟଙ୍କଠାରେ ସଂସ୍ଥିତ ହେବା, ନଚେତ୍ ସତ୍ତାର ବୋଧ ଜାଗ୍ରତ ହୁଏ ନାହିଁ। ଆ.ପ୍ର. ୩/୧୩.୨.୧୯୪୨

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ କେତେବେଳେ ପ୍ରତ୍ୟେକଙ୍କର କର୍ମ ହିଁ ଧର୍ମ ହୁଏ ?**

**ଶ୍ରୀଶ୍ରୀଠାକୁର** – ଶିକ୍ଷକ, ଓକିଲ, ଡାକ୍ତର, ମୋକ୍ତାର, ଧୋବା, ବାରିକ, କମାର, କୁମ୍ଭାର, ଦୋକାନଦାର, ଚାକିରିଆ, କୃଷକ, ନେତା, ରାଜା, ମନ୍ତ୍ରୀ, ଶ୍ରମିକ ଯିଏ ଯାହା ହେଉନା କାହିଁକି – ପ୍ରତ୍ୟେକଙ୍କର କର୍ମହିଁ ଧର୍ମ ହୋଇପାରେ ଯଦି ତାହା ଇଷ୍ଟଙ୍କର ପ୍ରୀତି ଓ ଆରାଧନା ପାଇଁ ହୁଏ, ଇଷ୍ଟାର୍ଥୀ ଲୋକସେବା ପାଇଁ ହୁଏ। ଆ.ପ୍ର. ୩/୧୩.୨.୧୯୪୨

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ଧନ୍ଦାର ଧାର ନ ଧରିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଲକ୍ଷେ ଧନ୍ଦାରେ ଘୂରେ, କିନ୍ତୁ ଇଷ୍ଟ ଧନ୍ଦାର ଧାର ଧାରେ ନାହିଁ, ସେଥିରେ କିନ୍ତୁ ତାର ବ୍ୟକ୍ତିତ୍ୱ ବିଚ୍ଛିନ୍ନ ହୋଇ ପଡ଼େ। ଆଉ ବିଚ୍ଛିନ୍ନ ବ୍ୟକ୍ତିତ୍ୱ ବିପର୍ଯ୍ୟୟର ସମ୍ମୁଖୀନ ହୋଇ ଆହୁରି ବିପର୍ଯ୍ୟସ୍ତ ହୋଇପଡ଼େ। ବିପର୍ଯ୍ୟୟ ମଧ୍ୟରେ ବି କେଉଁଠି ତ୍ରାଣସୂତ୍ର ଲୁଚି ରହିଛି ତାହା ଆବିଷ୍କାର କରି ଏକାଗ୍ର ଭାବରେ ନିଜକୁ ସେହି ପଥରେ ପରିଚାଳିତ କରିପାରେ ନାହିଁ। ଆ.ପ୍ର. ୩/୨୦.୩.୧୯୪୨

**ପ୍ର. – ଇଷ୍ଟାନୁସରଣର ଅସଲ କଥା କ'ଣ ?**

**ଶ୍ରୀଶ୍ରୀଠାକୁର** – ଅସଲ କଥା ହେଲା ଇଷ୍ଟଙ୍କୁ ଖୁସି କରିବା, ସେଥିପାଇଁ ଦୁନିଆର ଲାଭ-କ୍ଷତି, ନିନ୍ଦା-ଗ୍ଳାନି ଯାହା ଆସୁ ନା କାହିଁକି, ତାକୁ ଭ୍ରୂକ୍ଷେପ ନ କରିବା। ଇଷ୍ଟଙ୍କ ଦିଗକୁ ନଜର ଗଲେ ସମସ୍ତଙ୍କର ମଙ୍ଗଳ କରିବାର ବୁଦ୍ଧି ହୁଏ। ସେତେବେଳେ ମଣିଷ ମଣିଷର ମୁହଁକୁ ଚାହିଁ ଚାଲେ ନାହିଁ। ଲକ୍ଷ୍ୟ ତାର ଠିକ୍ ଥାଏ। ସେବା, ପ୍ରୀତି ଓ ଶ୍ରଦ୍ଧାର ଭାବ ନେଇ ଚାଲିଲେ ମଧ୍ୟ ଯାହାଦ୍ୱାରା ମଣିଷର ଅମଙ୍ଗଳ ହୁଏ ତାକୁ ସେ ପ୍ରଶ୍ରୟ ଦିଏ ନାହିଁ। ତାର ବ୍ୟକ୍ତିତ୍ୱର ପ୍ରଭାବ ହିଁ ହୁଏ ଅସାଧାରଣ। ସେ ବଜ୍ର ଭଳି କଠୋର ହୋଇ ମଧ୍ୟ ମଣିଷର ଯେତେଟା ଶ୍ରଦ୍ଧା ଆକର୍ଷଣ କରେ, ଲକ୍ଷେ ମଧୁର ବ୍ୟବହାରରେ ମଧ୍ୟ ମଣିଷ ସେହି ଶ୍ରଦ୍ଧା ଆକର୍ଷଣ କରିପାରେ ନାହିଁ। ଆ.ପ୍ର. ୩/୨୦.୩.୧୯୪୨

**ପ୍ର. – ଇଷ୍ଟଙ୍କର ଯାଜନ ଯେଉଁମାନେ କରିବେ ସେମାନଙ୍କର ଚରିତ୍ର କିପରି ହେବା ଉଚିତ ?**

**ଶ୍ରୀଶ୍ରୀଠାକୁର** – ଯାଜନ ଯେଉଁମାନେ କରିବେ ସେମାନଙ୍କ ମଧ୍ୟରେ ପ୍ରୀତି ଜିନିଷଟି ରହିବା ଦରକାର। ନଚେତ୍ ମଣିଷକୁ ଆକୃଷ୍ଟ କରାଯାଏ ନାହିଁ। ଏହି ପ୍ରୀତିର ମୂଳ ଇଷ୍ଟଙ୍କଠାରେ ନିବଦ୍ଧ ଥିବା ଦରକାର, ସେହି ସୁନିଷ୍ଠ ପ୍ରୀତି ରହିଲେ ମଣିଷ ଯେତେବେଳେ ମଣିଷ ପାଖରେ ଇଷ୍ଟଙ୍କର କଥା କୁହେ, ସେତେବେଳେ ମଧ୍ୟ ତା ଭିତରେ ଏକ ରସଯୁକ୍ତ ନିଶା ପରି ଥାଏ, ଉପଦେଶ ଦେଉଛି ବା ନୀତି କଥା କହୁଛି ଏପରି ଭାବ ରହେ ନାହିଁ। ଏହାଦ୍ୱାରା ସେ ବି ଉପଭୋଗ କରେ ଓ ଅନ୍ୟମାନେ ବି ଉପଭୋଗ କରନ୍ତି। ଇଷ୍ଟଙ୍କଠାରେ ପ୍ରୀତି, ଇଷ୍ଟକଥାରେ, ଇଷ୍ଟକର୍ମରେ ପ୍ରୀତି, ଇଷ୍ଟ-ପ୍ରୀତ୍ୟାର୍ଥେ ଅନ୍ୟର ପ୍ରତି ପ୍ରୀତି – ଯାଜକ ଚରିତ୍ରରେ ଏହି ପ୍ରକାର ରହିବା ଦରକାର। ଇଷ୍ଟକଥା ମାନେ, ସମସ୍ତଙ୍କର ହିଁ ଜୀବନୀୟ କଥା, ଅସ୍ତିବୃଦ୍ଧିର କଥା, ଯାହା ଅନଚ ଅର୍ଥନାରେ ଇଷ୍ଟଙ୍କଠାରେ ମୂର୍ତ୍ତ ହୋଇ ଉଠିଛି। ଆଉ ପ୍ରୀତିପ୍ରଣୋଦିତ ନ ହେଲେ ସବୁଟାହିଁ କସରତ ପରି ମନେହୁଏ, ମଣିଷ ନିଜେ ସୁଖ ପାଏ ନାହିଁ ଓ ଅନ୍ୟକୁ ମଧ୍ୟ ସୁଖ ଦେଇପାରେ ନାହିଁ। ଆ.ପ୍ର. ୩/୨୮.୩.୧୯୪୨

**ପ୍ର. – ଇଷ୍ଟାନୁସରଣରେ ଅଭାବ ଥାଏ କେଉଁଠି ?**

**ଶ୍ରୀଶ୍ରୀଠାକୁର** – ଅଭାବ ଆଉ କେଉଁଠାରେ ନାହିଁ, ଅଭାବ ଅଛି ସ୍ୱୀକାର କରିବାରେ ଅର୍ଥାତ୍ ଆପଣାର କରି ନେବାରେ। ମୋର ଇଚ୍ଛାକୁ ଯଦି ଆପଣଙ୍କର ଇଚ୍ଛା କରି ନିଅନ୍ତି, ଏହାହିଁ ଯଦି ଆପଣଙ୍କର ଏକମାତ୍ର ଇଚ୍ଛା, ଚାହିଦା ଓ ବିଳାସ ହୁଏ, ତାହେଲେ ଦେଖିବେ, କେମିତି କରି କ'ଣ ହେବ ତା ବୁଝି ମଧ୍ୟ ପାରିବେ ନାହିଁ। ନିଜକୁ ଖାଲି କରି ଦିଅନ୍ତୁ, ନ ହେଲେ ଭଗବାନ ଆପଣଙ୍କୁ ଭରି ଦେବେ କିପରି ? ଆ.ପ୍ର. ୩/୨୯.୩.୧୯୪୨

**ପ୍ର. – ଇଷ୍ଟ ଜୀବନରେ ପ୍ରଥମ ନୁହଁନ୍ତି ଏହା କିପରି ବୁଝାଯାଏ ? ତାଦ୍ୱାରା କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଏହି ମୋରି ପାଇଁ ଯଦି ମା, ବାପା, ଭାଇ, ବନ୍ଧୁ, ସ୍ତ୍ରୀ, ପୁତ୍ର, ଧନ, ଜନ, ମାନ, ସମ୍ମାନ, ପ୍ରଭାବ-ପ୍ରତିପତ୍ତି, ସୁଖ-ସ୍ୱାର୍ଥ, ସ୍ୱାଦ-ଆହ୍ଲାଦ ସବୁକିଛି ଉପେକ୍ଷା କରି ନ ପାରନ୍ତି, ନିଜର ପ୍ରାଣ ଠାରୁ ମଧ୍ୟ ଯଦି ମୋତେ ପ୍ରିୟତର ବୋଲି ବୋଧ ନ କରନ୍ତି, ଆପଣଙ୍କର ସବୁକିଛି ହିଁ ଯଦି ମୋ ପାଇଁ ନ ହୁଏ, ଏବଂ ଯେ ପ୍ରବୃତ୍ତି ବା ଯେ ଆକର୍ଷଣ ମୋର କାର୍ଯ୍ୟରେ ଅନ୍ତରାୟ, ତାକୁ ଯଦି ମୁହୂର୍ତ୍ତ ମଧ୍ୟରେ ନିର୍ମମ ଭାବରେ ପରିହାର କରି ନ ପାରନ୍ତି ତେବେ ବୁଝିବେ, ମୁଁ ଆପଣଙ୍କ ପାଖରେ primary (ପ୍ରଥମ) ନୁହେଁ। ଆଉ, ଯିଏ ଆପଣଙ୍କ ଜୀବନରେ primary (ପ୍ରଥମ) ନୁହେଁ, ତାକୁ ଅନ୍ୟର ଜୀବନରେ primary (ପ୍ରଥମ) କରି ତୋଳିବାର ପ୍ରବୋଧନା ଆପଣ ଯୋଗାଇ ପାରିବେ ନାହିଁ। ଆ.ପ୍ର. ୩/୨୯.୩.୧୯୪୨



**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ମଣିଷ ଇଷ୍ଟସର୍ବସ୍ୱ ହେଲେ କିପରି ହୁଏ ?**

**ଶ୍ରୀଶ୍ରୀଠାକୁର** – ଗୋଟିଏ କଥାରେ ଇଷ୍ଟହିଁ ତା ପାଖରେ first and foremost (ପ୍ରଥମ ଓ ପ୍ରଧାନ), ଇଷ୍ଟଙ୍କ ପାଇଁ ସେ ସବୁକିଛି ହସ ହସ ମୁହଁରେ sacrifice (ତ୍ୟାଗ) କରିପାରେ ଏବଂ ଇଷ୍ଟସଙ୍ଗ ଓ ସାନ୍ନିଧ-ଲାଳସା, ଇଷ୍ଟସେବା, ଇଷ୍ଟଚିନ୍ତା, ଇଷ୍ଟକର୍ମ ଓ ଇଷ୍ଟକଥାରେ ଅଚ୍ୟୁତ ବ୍ୟାପୃତିହିଁ ତାର ଏକମାତ୍ର ଉପଭୋଗର ବିଷୟ, ତାହା ସେ ଇଷ୍ଟସାନ୍ନିଧ୍ୟରେ ହିଁ ଥାଉ ବା ଦୂରରେ ଥାଉ। ଆ.ପ୍ର. ୩/୨୯.୩.୧୯୪୨

**ପ୍ର. – ଇଷ୍ଟକର୍ମରେ କେଉଁମାନେ ଟେକି ରହିପାରନ୍ତି ନାହିଁ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟକର୍ମରେ ଯେଉଁମାନଙ୍କର ଅନ୍ତରର ନିଶା ନାହିଁ, ଅନ୍ୟ ମତଲବରେ ଯେଉଁମାନେ ଇଷ୍ଟକର୍ମ କରନ୍ତି, ସେମାନଙ୍କର ଟେକି ରହିବା ମୁସ୍କିଲ ହୁଏ। ଦୁଃଖ, କଷ୍ଟ, ନିପିଡ଼ନ, ନିର୍ଯ୍ୟାତନର ମଧ୍ୟରେ ପଡ଼ିଲେ ମଧ୍ୟ ଯେଉଁମାନେ ଛାଡ଼ି ଯାଆନ୍ତି ନାହିଁ, ସେହିମାନେହିଁ ଖାଣ୍ଟି ଲୋକ। ଆଉ ଏହି ଯେ ଛାଡ଼ି ଯାଏ ନାହିଁ, ତାହା ଅପାରଗତାର କାରଣରୁ ହେଲେ ହେବ ନାହିଁ, ମନର ନିଶାର କାରଣରୁ ହେବା ଦରକାର। ଆଉ ସେଇଥିପାଇଁ ଦେଖାଯାଏ, ପ୍ରକୃତ ଭକ୍ତ ଯିଏ, ସିଏ ତ୍ରିଲୋକର ଆଧିପତ୍ୟର ବିନିମୟରେ ମଧ୍ୟ ଇଷ୍ଟଙ୍କଠାରୁ ବିନ୍ଦୁମାତ୍ର ଘୁଞ୍ଚିଯାଏ ନାହିଁ। ଇଷ୍ଟଙ୍କ ଛଡ଼ା ଆଉ ସବୁକିଛି ତା ପାଖରେ ନଗଣ୍ୟ। ମୋକ୍ଷ ବା ମୁକ୍ତି କାମନା ପାଇଁ ମଧ୍ୟ ଯଦି କେହି ଇଷ୍ଟଙ୍କୁ ଭଲପାଏ, ସେ ମଧ୍ୟ ଅନେକ ନିରସ।

ଆ.ପ୍ର. ୩/୨୯.୩.୧୯୪୨

**ପ୍ର. – ଇଷ୍ଟଙ୍କୁ ଭଲପାଇବାର ଚରିତ୍ରଗତ ଲକ୍ଷଣ କ'ଣ ?**

**ଶ୍ରୀଶ୍ରୀଠାକୁର** – ମୋତେ ଯଦି କେହି ଭଲପାଏ, ତେବେ ମୁଁ ଯାହା ଭଲ ପାଏନା, ତାହା ସେ କରିପାରେ ନାହିଁ। ତାଛଡ଼ା ଠାକୁରଙ୍କୁ ଯିଏ ଭଲପାଏ, ସେ ବୋଧ କରେ, ମୋ ଠାକୁର ସମସ୍ତଙ୍କ ଭିତରେ ଅଛନ୍ତି। ସଦ୍‌ବ୍ୟବହାର ଦ୍ୱାରା ସେ ସମସ୍ତଙ୍କର ଅନ୍ତର୍ନିହିତ ତାହାର ଏହି ଠାକୁରଙ୍କୁ ନନ୍ଦିତ କରିବାକୁ ଚେଷ୍ଟା କରେ। ଏହା ତାର ଗୋଟିଏ ଚରିତ୍ରଗତ ଲକ୍ଷଣ ହୋଇଯାଏ। ଆ.ପ୍ର. ୩/୪.୪.୧୯୪୨

**ପ୍ର. – ଇଷ୍ଟାର୍ଥରେ ସବୁ କିଛି କରିବାକୁ ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଯାହା ପାଇଁ ଯାହା କରାଯାଉ, ସତ୍ତାକୁ ଲକ୍ଷ୍ୟ କରିହିଁ କରିବା ଦରକାର। ସତ୍ତାର ଯଦି ପୁଷ୍ଟିସାଧନ ନ ହୁଏ, ସେ ସେବା ସାର୍ଥକ ହୁଏନା। ସେଥିପାଇଁ ଦରକାର ମୂଳରେ ଇଷ୍ଟ, ଇଷ୍ଟଙ୍କୁ ଗ୍ରହଣ କଲେ ନିଜର ସତ୍ତା ସମ୍ବନ୍ଧରେ ଏକ ବୋଧ ଫୁଟିଉଠେ, ନିଜର ସତ୍ତା ସମ୍ବନ୍ଧରେ ଯେତେବେଳେ ଗୋଟିଏ ଅନୁଭୂତି ଜାଗ୍ରତ ହୁଏ, ସେତେବେଳେ ହିଁ ଆପଣ ଅନ୍ୟର

ସତ୍ତାକୁ ଅନୁଭବ କରି ପାରନ୍ତି । ତାର ଆଗ ପର୍ଯ୍ୟନ୍ତ ନୁହେଁ । ଇଷ୍ଟାର୍ଥେ ସେବା ଯେତେବେଳେ ହୁଏ, ଇଷ୍ଟାର୍ଥେ ଭଲପାଇବା ଯେତେବେଳେ ହୁଏ, ସେତେବେଳେ ସେବା ଓ ପ୍ରୀତିର circuit (ଆବର୍ତ୍ତନଟା) complete (ପୂର୍ଣ୍ଣ) ହୁଏ । ଆଉ ଭଲ କରି ଭାବି ଦେଖନ୍ତୁ ! ପୃଥିବୀରେ ଯାହାହିଁ ଇଷ୍ଟାର୍ଥେ ନୁହେଁ, ତାହା ଯେତେ ଭଲହିଁ ହେଉ, ଗୋଟିଏ ପର୍ଯ୍ୟାୟରେ ଆସି ତାହା ଅନାସୃଷ୍ଟିର ସୃଷ୍ଟି କରେ । ଦକ୍ଷଯଜ୍ଞର କଥା ତ ଜାଣନ୍ତି, ଶିବହୀନ ହେବା କାରଣରୁ ଦକ୍ଷଯଜ୍ଞ ଏତେ ପରିମାଣରେ ବିପର୍ଯ୍ୟୟ ସୃଷ୍ଟି କଲା । ଯେଉଁଥିରେ ଶେଷରକ୍ଷା ହୁଏ ନାହିଁ, ତା ମଧ୍ୟରେ ଗଳଚି ଅଛି ।

ଆ.ପ୍ର. ୩/୪.୪.୧୯୪୨

**ପ୍ର. – ଇଷ୍ଟାନୁସରଣରେ ସମଗ୍ର ସତ୍ତା ଦେଇ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେବାକୁ ହୁଏ କହିଁକି ?**

**ଶ୍ରୀଶ୍ରୀଠାକୁର –** ସମଗ୍ର ସତ୍ତା ଦେଇ ଯିଏ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହୋଇଉଠେ, ତାର ଜ୍ଞାନର ପରିଧିର ବିସ୍ତାର ହେବାକୁ ଡେରି ଲାଗେ ନାହିଁ । ଆମ୍ଭେମାନେ ଅନେକ ସମୟରେ ଚକ୍ଷୁ, କାନ ଖୋଲା ରଖୁ ନାହୁଁ, ଇଚ୍ଛା କରି ଉପେକ୍ଷା କରୁ, ନିଜର ଅନୁଭୂତି ନେଇ ଆବଦ୍ଧ ହୋଇ ରହୁ, ସେଥିପାଇଁ ଆମର ଜାଣିବାର ଅନେକ କିଛି ସୁଯୋଗ ନଷ୍ଟ ହୋଇଯାଏ । କିନ୍ତୁ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ବୁଦ୍ଧି ରହିଲେ ତାହା ହୋଇପାରେ ନାହିଁ । ଏକମାତ୍ର ସେହି ବୁଦ୍ଧିରୁହିଁ ସେ ଆହରଣ କରିଥାଏ ଓ ପ୍ରସ୍ତୁତ ହୋଇଥାଏ । ଏହି ପ୍ରକ୍ରିୟା ଯେତେବେଳେ ଭିତରେ ଓ ବାହାରେ ସକ୍ରିୟ ହୋଇଉଠେ – ସେତେବେଳେ ସେହିଟିହିଁ ଜ୍ଞାନର ବୀଜ ହୋଇଯାଏ ।

ଆ.ପ୍ର. ୩/୧୦.୪.୧୯୪୨

**ପ୍ର. – ଇଷ୍ଟାନୁସରଣ ପାଇଁ ଯେଉଁ ସାଧନା, ସେଥିରେ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର –** ସାଧନା ମାନେ ମୁଁ ବୁଝେ, ଇଷ୍ଟନିଷ୍ଠ ହୋଇ ସତ୍ତାସମ୍ବର୍ଦ୍ଧନୀ ଓ ଆତ୍ମନିୟନ୍ତ୍ରଣୀ ଶକ୍ତି ଲାଭ ଓ ତାର ଇଷ୍ଟାର୍ଥୀ ବିନିଯୋଗ । ଆପଣ ଯେଉଁ କାର୍ଯ୍ୟ ଜାଣନ୍ତି, ଯେଉଁ କାର୍ଯ୍ୟ କରନ୍ତି, ସେହି କାର୍ଯ୍ୟରେହିଁ ଆପଣଙ୍କର ଯୋଗ୍ୟତା ବଢ଼ାଇ ତୋଳନ୍ତୁ । ଆଉ, ସେହି ଯୋଗ୍ୟତା ଦେଇ ମଣିଷର ବଞ୍ଚିବା-ବଢ଼ିବାର ପଥକୁ ଆହୁରି ସୁଗମ କରି ଦିଅନ୍ତୁ – ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠାର ଦିଗରେ ଲକ୍ଷ୍ୟ ରଖି । ସେତେବେଳେ ବୁଝିପାରିବେ, କର୍ମର ଭିତର ଦେଇ କିପରି ଧର୍ମ ପ୍ରତିପାଳିତ ହୁଏ । ଏହି ବାସ୍ତବ କରିବା ବାଦ ଦେଇ କେବଳ କାନ୍ଦିଲେ ଧର୍ମ ହୁଏ ନାହିଁ । କର୍ମର ଭିତର ଛଡ଼ା ଆତ୍ମନିୟନ୍ତ୍ରଣ ହୁଏ ନାହିଁ । ସୁକେନ୍ଦ୍ରିକ କଠୋର କର୍ମୀ ହେବାକୁ ହେବ । ତାରି ଉପରେହିଁ ଗଢ଼ି ଉଠିବ ଚରିତ୍ରର ସୌଧ । ଖୁବ୍ ବଡ଼ ରକମର ତପସ୍ୟା ନ ଥିଲେ ଚରିତ୍ର ହୁଏ ନାହିଁ, ଆଉ ଚରିତ୍ର ନ ରହିଲେ କାଳର ବୁକୁରେ ଦାଗ କାଟିବା ସମ୍ଭବ



ନୁହେଁ । ସବୁ ଲିଭି ଯାଏ । ଯେଉଁମାନେ ଲକ୍ଷ ଲକ୍ଷ ମଣିଷର ଜୀବନରେ ଶୁଭ ପ୍ରଭାବ ବିସ୍ତାର କରିଛନ୍ତି, ସେମାନେ କେହିହିଁ କେବଳ କଥା ଦେଇ ତାହା କରି ପାରିନାହାଁନ୍ତି । ସେମାନଙ୍କର ଚରିତ୍ର, ଚଳନ, ଆଚାର, ବ୍ୟବହାରହିଁ ତାହା କରିଛି । ...ଇଷ୍ଟଙ୍କଠାରେ ଯଦି ଖୁବ୍ ଗଭୀର ଭାବରେ ସୁପ୍ରୋଥିତ ନ ହୁଅନ୍ତି, ତାହେଲେ କିନ୍ତୁ ଏହି ଉତ୍ସାହ ଆସିବ ନାହିଁ ।

ଆ.ପ୍ର. ୩/୧୦.୪.୧୯୪୨

**ପ୍ର. – ଇଷ୍ଟଙ୍କ ସହ ମଣିଷର ସମ୍ପର୍କ କେତେଟା ଗଭୀର ?**

**ଶ୍ରୀଶ୍ରୀଠାକୁର –** ସ୍ୱାମୀ ସହିତ ସ୍ତ୍ରୀର ଯେଉଁ ସମ୍ପର୍କ, ଇଷ୍ଟଙ୍କ ସହିତ ମଣିଷର ସମ୍ପର୍କ ତାଠାରୁ ଆହୁରି ଗଭୀର ।

ଆ.ପ୍ର. ୩/୧୪.୫.୧୯୪୨

**ପ୍ର. – ଇଷ୍ଟଙ୍କ ପାଖକୁ କେଉଁ ପ୍ରତ୍ୟାଶାରେ ଆସିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କ ପାଖକୁ ଆସିବାକୁ ହେଲେ ଇଷ୍ଟଙ୍କୁ ସେବା କରିବାର ପ୍ରତ୍ୟାଶା ଛଡ଼ା ଅନ୍ୟ କୌଣସି ପ୍ରତ୍ୟାଶା ରହିବ ନାହିଁ । ଅନ୍ୟ ପ୍ରତ୍ୟାଶା ରହିଲେହିଁ ଛିଟିକି ପଡ଼ିପାରେ ।

ଆ.ପ୍ର. ୩/୧୪.୫.୧୯୪୨

**ପ୍ର. – ଇଷ୍ଟଙ୍କ ଯାଜନ କେତେବେଳେ ସ୍ୱାଭାବିକ ହୋଇଉଠେ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କୁ ଭଲପାଇଲେ ସବୁ ବିଷୟରେହିଁ ସହଜ ଭାବରେ ଇଷ୍ଟଙ୍କର କଥା ଆସି ପଡ଼ିଥାଏ । ଇଷ୍ଟପ୍ରସଙ୍ଗହିଁ ଯାଜନ । ଲକ୍ଷ୍ୟ ରଖିବାକୁ ହୁଏ, ପରିବାର-ପରିବେଶର ପ୍ରତ୍ୟେକହିଁ ଯେପରି ଇଷ୍ଟଙ୍କୁ ଜୀବନରେ ମୁଖ୍ୟ କରି ନିଜର କର୍ମନିଃସୃତ ଫଳ ଦେଇ ତାଙ୍କୁ ତୁଷ୍ଟ, ତୃପ୍ତ ଓ ନନ୍ଦିତ କରି ତୋଳିବାକୁ ଚେଷ୍ଟା କରେ । ଏହି active urge (ସକ୍ରିୟ ଆକୂତି) ହିଁ ହେଲା ଆନନ୍ଦ ଓ ଉପଭୋଗର ପ୍ରାଣ । ସବୁ ସମୟରେହିଁ ନିଜେ ଏହି ଉଦଗ୍ର ଆଗ୍ରହ ନେଇ ଚାଲିବାକୁ ହୁଏ ଓ ପରିବେଶକୁ ମଧ୍ୟ ସେହି ଭାବରେ ଭାବିତ କରି ତୋଳିବାକୁ ହୁଏ । ନିଜକୁ ସନ୍ଦୀପ୍ତ ରଖିବାପାଇଁହିଁ ଯାଜନ ପ୍ରୟୋଜନ । ସବୁକିଛିର ଭିତର ଦେଇ ଯଦି ତାଙ୍କୁ ନେଇ ବ୍ୟାପୃତ ନ ରହୁ, ତେବେ ଜୀବନଟା କଟେଇବୁ କ'ଣ ନେଇ ? ତାଙ୍କଠାରୁ ବିଚ୍ଛିନ୍ନ ହେଲେହିଁ ଅଶାନ୍ତି, ଜ୍ୱାଳା-ଯନ୍ତ୍ରଣା । ମୁଁ ସେଥିପାଇଁ କୁହେ – ତୁମେମାନେ ଘର-ସଂସାର ସବୁ କର, କିନ୍ତୁ ତାଙ୍କୁ ନେଇ, ତାଙ୍କରି ପାଇଁ । ତାଙ୍କରି ପାଇଁ ଜୀବନ, ତାଙ୍କରି ପାଇଁ ସଂସାର, ତାଙ୍କରି ପାଇଁ ସମାଜ ହେଲେ ଯାଜନ ସ୍ୱାଭାବିକ ହୋଇଉଠେ । ଅନୁରାଗ ରହିଲେ ଯାଜନ ମୁଖରଟା ଫୁଟି ଉଠିବହିଁ ।

ଆ.ପ୍ର. ୩/୬.୬.୧୯୪୨

**ପ୍ର. – ଇଷ୍ଟଙ୍କର ଆଶୀର୍ବାଦ କେତେବେଳେ ଲାଭ କରାଯାଏ ?**

**ଶ୍ରୀଶ୍ରୀଠାକୁର –** ଯିଏ କାର୍ଯ୍ୟ କରେ, ତା ସହିତ ମୋର ଆଶୀର୍ବାଦ ଘୁରି ବୁଲୁଥାଏ ।

...ମୁଁ ତ କେବଳ ବାହନ ଖୋଜେ, ଭାବେ, କିଏ ମୋତେ ଟିକେ କାନ୍ଧରେ ନେଇ ବୁଲିବ। କିନ୍ତୁ ଯେଉଁଠାରେ ନିର୍ଭୟରେ ଆଶ୍ରୟ କରିପାରେ, ସେପରି କାନ୍ଧ ଖୋଜି ପାଏ ନାହିଁ। ମଣିଷ ବୋହ୍, ପିଲାପିଲିଙ୍କ ବୋଝ, ଖିଆଲର ବୋଝ ଅକ୍ଲେଶରେ ବୋହି ପାରେ, କିନ୍ତୁ ମୋର ବୋଝରେ ଅଳ୍ପକରେହିଁ କାତର ହୋଇ ପଡ଼େ। ...ଭାବେ, ଠକିଯିବ।

ଆ.ପ୍ର. ୩/୮.୬.୧୯୪୨

**ପ୍ର. – ଇଷ୍ଟଙ୍କର ସ୍ୱାର୍ଥ ବଜାଇ ରଖିବାକୁ ହେବ କାହିଁକି ?**

**ଶ୍ରୀଶ୍ରୀଠାକୁର** – ସବୁ କଥାର ସାର ହେଲା – ଜନ୍ମଗତ ବୈଶିଷ୍ଟ୍ୟକୁ ଅକ୍ଷୁର୍ଣ୍ଣ ରଖି ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହୋଇ ଯଜନ, ଯାଜନ, ଇଷ୍ଟଭୃତି ସ୍ୱସ୍ତ୍ୟୟନୀ କରିଚାଲିବା। ଏହାଦ୍ୱାରା ଆଜି ଯିଏ କୃଷକ ଅଛି, କାଲି ହୁଏତ ସେ ଦେଶର ଗୋଟିଏ leader (ନେତା) ହୋଇଉଠିବ, ପ୍ରତ୍ୟେକଙ୍କ ଭିତରେ ଯାହା ଅଛି, ସବୁଗୁଡ଼ିକ integrated (ସଂହତ) ହୋଇ ଫୁଟି ବାହାରିବ। Beyond oneself (ଜଣକର ବାହାରେ) ଯଦି ଗୋଟିଏ standard (ମାପ) ନ ଥାଏ, ତେବେ ମଣିଷ ନିଜର ସ୍ୱାର୍ଥ ଦେଖିବାକୁ ଯାଇ ବୃତ୍ତିର ମୋହରେ ପଡ଼ିଯାଏ। ସେଥିପାଇଁ ନିଜର ସ୍ୱାର୍ଥ ବଜାଇ ରଖିବାକୁ ଗଲେହିଁ ଇଷ୍ଟଙ୍କର ସ୍ୱାର୍ଥ ବଜାଇ ରଖିବାକୁ ହେବ।

ଆ.ପ୍ର. ୩/୮.୬.୧୯୪୨

**ପ୍ର. – ଇଷ୍ଟାନୁସରଣରେ ମଣିଷର ପ୍ରଧାନ କାର୍ଯ୍ୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ପ୍ରଧାନ କାର୍ଯ୍ୟ ହେଲା, ନିଜେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେବା ଓ ଅନ୍ୟକୁ ମଧ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ କରି ତୋଳିବା। ଇଷ୍ଟଙ୍କର ସ୍ୱାର୍ଥ ଛଡ଼ା ଆଉ ନିଜର ସ୍ୱାର୍ଥ ବୋଲି କିଛି ରହିବ ନାହିଁ, ଇଷ୍ଟଙ୍କର ପ୍ରତିଷ୍ଠା ଛଡ଼ା ନିଜର ପ୍ରତିଷ୍ଠା ବୋଲି କିଛି ରହିବ ନାହିଁ। ଏହାହିଁ ଯାହା ଭିତରେ ଯେତିକି ପ୍ରତିଷ୍ଠା ଲାଭ କରିବ, ସେ ପରିବେଶର ସେତେଟା ଜୀବନ-ବୃଦ୍ଧିର ହୋତା ହୋଇ ଉଠିବ। ମଣିଷ ତା ପ୍ରତି ସେତେ ଆକୃଷ୍ଟ ହୋଇଉଠିବ, ପ୍ରତିଷ୍ଠା ମଧ ତାର ସେହିପରି ହେବ। ଅବଶ୍ୟ କାର୍ଯ୍ୟର ଭିତର ଦେଇ ଏହି ରକମଟା ପ୍ରତିଫଳିତ ହେବା ଦରକାର।

ଆ.ପ୍ର. ୩/୨୨.୭.୧୯୪୨

**ପ୍ର. – ଇଷ୍ଟଙ୍କୁ ଭଲପାଇଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କୁ ଭଲପାଇଲେ ଆତ୍ମନିୟନ୍ତ୍ରଣ ସ୍ୱାଭାବିକ ହୋଇଉଠେ, ସେ ଯାହା ପସନ୍ଦ କରନ୍ତି ନାହିଁ, ପ୍ରବୃତ୍ତିର ଝୋଙ୍କ ସେ ଦିଗକୁ ଯେତେବି ରହୁ ନା କାହିଁକି ତାହା କରିବାକୁ ଇଚ୍ଛା କରେ ନାହିଁ। ପୁଣି ଯେତେ କଷ୍ଟ ହେଉ ପଛେ, ସେ ଯାହା ପସନ୍ଦ କରନ୍ତି, ତାହା ନ କରିହିଁ ରହି ହୁଏ ନାହିଁ। ମଣିଷ ଏହି ବାସ୍ତବ ଆତ୍ମନିୟନ୍ତ୍ରଣର ଦୃଷ୍ଟାନ୍ତ ଯେପରି ତୁମମାନଙ୍କ ଭିତରେ ପ୍ରତି ମୁହୂର୍ତ୍ତରେ ଦେଖିବାକୁ ପାଏ, ଏହାଦ୍ୱାରା ଲୋକଙ୍କର ଯେଉଁ ଉପକାର ହେବ, ତାର ତୁଳନା ହୁଏ ନାହିଁ। ମୁହଁରେ ଲକ୍ଷେ କଥା କହିବା ଠାରୁ ଏହି ଚଳନର ଦାମ୍ ଅନେକ ବେଶି।



ଆ.ପ୍ର. ୩/୨୨.୭.୧୯୪୨

**ପ୍ର. – ଇଷ୍ଟସ୍ୱାର୍ଥର ସହିତ ଯଦି ନିଜର ସ୍ୱାର୍ଥ ପୂରଣର ଧନ୍ଦା ଥାଏ ?**

**ଶ୍ରୀଶ୍ରୀଠାକୁର** – ନିଜର ସ୍ୱାର୍ଥ ଯଦି ଇଷ୍ଟାର୍ଥେ ହୁଏ, ତାହେଲେ ଦୋଷ ହୁଏ ନାହିଁ। କିନ୍ତୁ ଇଷ୍ଟସ୍ୱାର୍ଥର ବିନିମୟରେ ଯଦି କେହି ନିଜର ସ୍ୱାର୍ଥର ପୂରଣ ଚାହେଁ, ତାହେଲେ ତାକୁ ସନ୍ଦେହ କର।

ଆ.ପ୍ର. ୩/୨୨.୭.୧୯୪୨

**ପ୍ର. – ଇଷ୍ଟାନୁସରଣରେ ନିଃସ୍ୱାର୍ଥ ହେଲେ ସଂସାର ଚାଲିବ କିପରି ?**

**ଶ୍ରୀଶ୍ରୀଠାକୁର** – ମୋର ସଂସାର ଯଦି ଠିକ୍ ରଖ, ତେବେ ଦୁଃଖ କଷ୍ଟର ଭିତର ଦେଇ ମଧ ନିଜର ସଂସାର ଠିକ୍ ରହିବ। କିନ୍ତୁ suffer (କଷ୍ଟ) କରିବାକୁହିଁ ପଡ଼ିବ। ଆଉ ତା ନ କରି ନିଜର ସଂସାର ଯଦି ଠିକ୍ ରଖିବାକୁ ଚାହଁ, ତେବେ ସେ ସଂସାରର ମୂଳଦୁଆ ଶୂନ୍ୟ ହୋଇଯିବ।

ଆ.ପ୍ର. ୩/୨୩.୭.୧୯୪୨

**ପ୍ର. – ଇଷ୍ଟଙ୍କଠାରେ କନ୍‌ଭିକ୍‌ସନ ରହିବା ମାନେ କ'ଣ ?**

**ଶ୍ରୀଶ୍ରୀଠାକୁର** – Conviction ମାନେ ପ୍ରତ୍ୟୟ, with all our passions (ସମସ୍ତ ପ୍ରବୃତ୍ତି ନେଇ) ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେବା। ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେଲେ ଅର୍ଥାତ୍ ଇଷ୍ଟଙ୍କଠାରେ libido (ସୁରତ) perfectly set (ସୁଷ୍ଠୁଭାବରେ ନ୍ୟସ୍ତ) ହେଲେ ବାଧାବିଘ୍ନକୁ ତୃଣବତ୍ ମନେ ହୁଏ। ଇଷ୍ଟଙ୍କର ଇଚ୍ଛା ପୂରଣ କରୁ କରୁ, ଇଷ୍ଟଙ୍କର ଆଦେଶ ପାଳନ କରୁ କରୁ, ତାଙ୍କର ମଣିଷକୁ ଚାଳନା କରିବାର ଶକ୍ତି ଆସି ହାଜର ହୁଏ – ଐଶ୍ୱର୍ଯ୍ୟ, ଈଶତ୍ୱ, ଆଧିପତ୍ୟ ସେମାନଙ୍କର ଆସିବହିଁ, ସେମାନେ କେବେବି ଛୋଟ ହୋଇ ରହନ୍ତି ନାହିଁ। ଏଇମାନଙ୍କୁହିଁ କୁହାଯାଏ ଈଶ୍ୱରକୋଟି ପୁରୁଷ, ଏମାନଙ୍କର ଥାଏ grim determination (କଠୋର ସଂକଳ୍ପ) – 'କରିବି ହିଁ' – ଏହି ପଣ। ଆଉ ପାଇବା ମାନେହିଁ ଭଲପାଇବା, ତାଙ୍କର ଭଲରେ ଅହରହ ଲାଗି ରହିବା। କୌଣସି ପ୍ରତ୍ୟାଶା ନେଇ ସେମାନେ ଏହା କରନ୍ତି ନାହିଁ, ତାଙ୍କର ସ୍ୱାର୍ଥପ୍ରତିଷ୍ଠା ଦେଖିବାହିଁ ସେମାନଙ୍କର ସ୍ୱଭାବ, ଇଷ୍ଟଙ୍କ ଛଡ଼ା ସେମାନେ କିଛି ବି ଜାଣନ୍ତି ନାହିଁ, ସେମାନଙ୍କର ସମଗ୍ର ସତ୍ତାଟିହିଁ ସେଇଠାରେ ପଡ଼ିଥାଏ। ଯେପରି ରାମଚନ୍ଦ୍ରଙ୍କୁ ପାଇ ହନୁମାନଙ୍କର ହୋଇଥିଲା।

ଆ.ପ୍ର. ୪/୭.୯.୧୯୪୨

**ପ୍ର. – ଇଷ୍ଟଙ୍କୁ ସବୁ ସାଥିରେ ଗୁଁଥି ନ ନେଲେ କ'ଣ ହୁଏ ? ସେଥିପାଇଁ କ'ଣ ଦରକାର ?**

**ଶ୍ରୀଶ୍ରୀଠାକୁର** – ରାମକୃଷ୍ଣଦେବ କହିଛନ୍ତି – ପକ୍ଷୀ ଏମିତିରେ କୃଷ୍ଣ କଥା କହେ, କିନ୍ତୁ ଯେତେବେଳେ ବିଲେଇ ଆସି ଧରେ, ସେତେବେଳେ ଚେଁ ଚେଁ କରେ। ଆମର ମଧ୍ୟ ଏହି ଦଶା ହେବ ଯଦି ଇଷ୍ଟଙ୍କୁ ସତ୍ତା ସହ ଗୁଁଥି ନ ନେଉ। ଏପରି ହେବା ଉଚିତ ଯେ, ଇଷ୍ଟଙ୍କର ସ୍ୱାର୍ଥପ୍ରତିଷ୍ଠା ପାଇଁ ମୋର ସ୍ତ୍ରୀ, ପୁତ୍ର, ଧନ, ଜନ, ବିଷୟ, ସମ୍ପତ୍ତି, ମାନ, ପ୍ରତିଷ୍ଠା, ଏପରିକି ନିଜର ପ୍ରିୟ ପ୍ରାଣ ପର୍ଯ୍ୟନ୍ତ ହେଳାରେ ବିସର୍ଜନ ଦେଇପାରେ। ସଂକୀର୍ଣ୍ଣ ସ୍ୱାର୍ଥବୁଦ୍ଧିର ଲେଶ ମାତ୍ର ରହିଲେ ହେବ ନାହିଁ। ସ୍ୱାର୍ଥହିଁ ହେବେ ଇଷ୍ଟ। ସିଦ୍ଧପୁରୁଷ କହିଲେ ମୁଁ ବୁଝେ ଏହିପରି। ସେମାନଙ୍କ ଚକ୍ଷୁ-ମୁଖରେ ଏକ ନୂତନ ଜ୍ୟୋତିଃ ଫୁଟି ଉଠେ। ସେ ଚେହେରା ଦେଖିଲେହିଁ ମଣିଷର ସବୁ ରିପୁ ସ୍ତମ୍ଭିତ ହୋଇଉଠେ, ନତଜାନୁ ହୋଇ ତାକୁ ପ୍ରଣତି ଜଣାଏ। ଶଇତାନକୁ କବଜା କରିବାକୁ ଗଲେ ହିଁ ଏହିପରି ଚରିତ୍ର ଦରକାର। ସେ ହୁଏ ଖୋଳପା ବିହୀନ ତରବାରୀ ପରି, ଏମିତି ଦୟାମାୟାର ଅଭାବ ନାହିଁ, ପୁଣି ପ୍ରୟୋଜନ ଅନୁଯାୟୀ ମୁହୂର୍ତ୍ତକରେ ଭୟାଳରୂପ ଧରିପାରେ। ଏପରି ସହଜ-ସରଳ, ଅଥଚ ମହାଚତୁର। ଆ.ପ୍ର. ୪/୮.୯.୧୯୪୨

**ପ୍ର. – ଇଷ୍ଟାନୁସରଣରେ ନ୍ୟାୟ-ଅନ୍ୟାୟ, ଧର୍ମାଧର୍ମ, ପାପପୂଣ୍ୟର ମାପକାଠି କ'ଣ?**

**ଶ୍ରୀଶ୍ରୀଠାକୁର** – କୌଣସି ଭଲ ହିଁ ଭଲ ନୁହେଁ, ଯଦି ତାହା ଇଷ୍ଟାର୍ଥୀ ନ ହୁଏ। ଧର ଜଣେ ବିଶ୍ୱାସଘାତକ ତୁମ ପାଖରେ ଆଶ୍ରୟ ନେଇଛି, ସେ ହୁଏତ ବହୁଲୋକଙ୍କର ଅନିଷ୍ଟ କରି ଫେରିଛି। ଆଶ୍ରିତ-ରକ୍ଷାର ବାହାନାରେ ଯଦି ତୁମେ ତାକୁ ଧରାଇ ନ ଦିଅ ଏବଂ ସଂଶୋଧନ ମଧ୍ୟ କରି ନ ପାର, ତାଦ୍ୱାରା କିନ୍ତୁ ତା'ର ଓ ପରିବେଶର କ୍ଷତିହିଁ କରାହେବ, ଏପରିକି ସେ ତୁମ ଉପରେ ଯେ କୌଣସି ସମୟରେ ଚୋଟ ମାରି ପାରେ। ସେଥିପାଇଁ ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠାର ମାପକାଠିରେ ନ୍ୟାୟ-ଅନ୍ୟାୟ, ଧର୍ମାଧର୍ମ, ପାପପୂଣ୍ୟ ବିଚାର କରିବାକୁ ହୁଏ।

ଆ.ପ୍ର. ୪/୮.୯.୧୯୪୨

**ପ୍ର. – ଇଷ୍ଟାନୁସରଣରେ କିପରି କଥା ଶୁଣିବାକୁ ହୁଏ?**

**ଶ୍ରୀଶ୍ରୀଠାକୁର** – ଯିଏବି ହେଉ, ଯିଏ ଯାହା କହୁ – ଦେଖିବ, ତାହା ଇଷ୍ଟାନୁକୂଳ କି ନୁହେଁ। ଯଦି ଇଷ୍ଟାନୁକୂଳ ହୁଏ, ସେ କଥା ଶୁଣିବାରେ ବାଧା କ'ଣ? ସେଇଥିପାଇଁ କାହାକୁ ଅବଜ୍ଞା କରିବା ଠିକ୍ ନୁହେଁ, କାହାକୁ ଛୋଟ ଭାବିବା ଠିକ୍ ନୁହେଁ। ମୋର ତ ମନେହୁଏ, କ୍ଷୁଦ୍ର କୀଟ-ପତଙ୍ଗ ପର୍ଯ୍ୟନ୍ତ ବି ମଣିଷର ପୂଜା ପାଇବାର ଯୋଗ୍ୟ। ଇଷ୍ଟନିଷ୍ଠ ଯେଉଁମାନେ, ଶ୍ରଦ୍ଧାବାନ ଯେଉଁମାନେ ସେମାନଙ୍କର ସ୍ୱାଭାବିକ ପ୍ରବୃତ୍ତିହିଁ ଏହିପରି ହୁଏ।

ଆ.ପ୍ର. ୪/୧୪.୯.୧୯୪୨



**ପ୍ର. – ମଣିଷ ଜୀବନରେ ଇଷ୍ଟ ଯଦି ନଥାନ୍ତି?**

**ଶ୍ରୀଶ୍ରୀଠାକୁର** – ଇଷ୍ଟ ନ ରହିଲେ ମଣିଷର ଇନ୍ଦ୍ରିୟଗୁଡ଼ିକ week (ଦୁର୍ବଳ) ଓ sub-normal (ସ୍ୱାଭାବିକ ଅପେକ୍ଷା ନ୍ୟୂନ) ହୋଇପଡ଼େ, ସେଥିପାଇଁ ଖାଇବା ପିଇବାହିଁ ହେଉ ବା sexual life (ଯୌନଜୀବନ) ହିଁ ହେଉ – କୌଣସିଟାହିଁ properly (ଯଥା-ଯଥ ଭାବରେ) enjoy (ଉପଭୋଗ) କରିପାରେ ନାହିଁ। ସେଥିପାଇଁ ସେ ଦିଗରୁ ସେ ବଞ୍ଚିତ ହୁଏ। ଯହାର self control (ଆତ୍ମ ସଂଯମ) ନାହିଁ, ସେ ଭୋଗର ବସ୍ତୁ ପାଇ ନିଜକୁ ତା ମଧ୍ୟରେ ହିଜେଇ ଦିଏ। ଯାହାର ନିଜତ୍ୱ ନାହିଁ, ସେ ନିଜେ ହିଁ 'ନାହିଁ' ହୋଇଯାଇଛି, ସେ ପୁଣି ଭୋଗ କରିବ କ'ଣ? ଆ.ପ୍ର. ୪/୧୪.୯.୧୯୪୨

**ପ୍ର. – ଇଷ୍ଟହୀନ ଜୀବନର ପରିଣତି କିପରି ହୁଏ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟହୀନ ଜୀବନ ପ୍ରେତ ଜୀବନ ପରି, ତଫାତ୍ ଏହା, ପ୍ରେତଲୋକରେ କାହାର ଉନ୍ନତି ହୁଏ ନାହିଁ, ଅବନତି ମଧ୍ୟ ହୁଏ ନାହିଁ, କିନ୍ତୁ ଇହଲୋକରେ ଯେଉଁମାନେ ଇଷ୍ଟହୀନ ଜୀବନ ଯାପନ କରନ୍ତି, ସେମାନଙ୍କର କେବଳ ଅବନତି ହିଁ ହୁଏ, ଆଉ ଉନ୍ନତି ହୁଏନାହିଁ, ଉନ୍ନତି ବୋଲି ଯାହା ଦେଖାଯାଏ, ତା ମଧ୍ୟ ଅବନତିର କାରଣ ହୋଇଥାଏ। ଚୁଚୁମା ନେଇ ଭୁଲି ଯାଇଥାଏ, ମା'ଦୁଧର କଥା ଆଉ ମନେପଡ଼େ ନାହିଁ, ଫଳରେ ଅସଲ ସୁଖ, ଅସଲ ପୁଷ୍ଟିଠାରୁ ବଞ୍ଚିତ ହୁଏ। ଆ.ପ୍ର. ୪/୧୪.୯.୧୯୪୨

**ପ୍ର. – କ'ଣ କଲେ ଇଷ୍ଟଙ୍କ ପ୍ରତି ଶୀଘ୍ର ଶୀଘ୍ର ଟାଣ ବଢ଼େ?**

**ଶ୍ରୀଶ୍ରୀଠାକୁର** – କିଛି ନୁହେଁ, ଖୁବ୍ ସହଜ ବ୍ୟାପାର। କହିବାକୁ ହୁଏ, ଠାକୁର! ତୁମ ଛଡ଼ା ମୁଁ କିଛି ଜାଣେନା। ଆଉ ତାଙ୍କରି ପାଇଁ ଯାହା କିଛି କରିବାକୁ ହୁଏ। ତାଙ୍କୁ ଦିଆ-ଥୁଆ କରିବାକୁ ହୁଏ। ସେ ଯେଉଁଥିରେ ଖୁସି ହୁଅନ୍ତି, ସେ ସବୁ କାମ କରିବାକୁ ହୁଏ। ସେ ଯାହା ପସନ୍ଦ କରନ୍ତି ନାହିଁ, ସେପରି ଚଳଣୀର ପାଖ ମାଡ଼ିବା ଉଚିତ ନୁହେଁ। ଏହିସବୁ କରୁ କରୁ ଟାଣ ବଢ଼ିଯାଏ। ଆ.ପ୍ର. ୪/୧୪.୯.୧୯୪୨

**ପ୍ର. – ଇଷ୍ଟଙ୍କ ପ୍ରତି ଟାଣ ବା ଭକ୍ତି ମୂଳରେ କ'ଣ ଅଛି?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କ ପ୍ରତି ଟାଣ ବା ଭକ୍ତି ହେଲେ ତାହା ପ୍ରସାର ଲାଭ କରିବାକୁ ଲାଗେ। ଇଷ୍ଟଙ୍କ ସହ ଯେଉଁମାନେ ଜଡ଼ିତ, ସେମାନଙ୍କ ସମସ୍ତଙ୍କ ଉପରେ ଟାଣ ବଢ଼ିଥାଏ। ....ମୋତେ ଭଲପାଇଲେ ମୋର କୁକୁରଟାକୁ ମଧ୍ୟ ଆପଣ ଭଲପାଇବାକୁ ଇଚ୍ଛା କରିବେ। କିନ୍ତୁ ଏହି ଭଲପାଇବାର ବିସ୍ତାର ଯେତେବି ହେଉନା କାହିଁକି, ତାର ମୂଳରେ କିନ୍ତୁ ଥାଏ ନିଷ୍ଠା। ମୋର ଯଥା ସର୍ବସ୍ୱ ଯିଏ, ତାଙ୍କୁ ବାଦ ଦେଇ କିନ୍ତୁ କେହି ନୁହେଁ, କିଛି ନୁହେଁ। କାହା

ସହିତ ମୋର ଭାବ କେତେଟା ହେବ, ତାର ମାପକାଠି କିନ୍ତୁ ହେଲା – ମୋର ବାଞ୍ଛିତଙ୍କର ସହ ତାର ସମ୍ପର୍କ କିପରି। ଯିଏ ମୋତେ ଭଲପାଏ, ମୋ ପାଇଁ ଯିଏ ବହୁତ କରେ, ଯାହାକୁ ପାଇଲେ ମୁଁ ଖୁସି ହୁଏ, ସେହିପରି କେହି ଯଦି ରାଗି ଆପଣଙ୍କ କାନ ମୋଡ଼ି ମଧ୍ୟ ଦିଏ, ତାହେଲେ ମଧ୍ୟ ଆପଣ ତା ସହିତ ସମ୍ପର୍କ ତ୍ୟାଗ କରିବାକୁ ଚାହିଁବେ ନାହିଁ, ଯଦି ଆପଣ ମୋତେ ଭଲ ପାଉଥିବେ। କାରଣ, ଆପଣ ସେତେବେଳେ ଭାବିବେ – ମୋର କାନ ମୋଡ଼ି ଦେଲେ ମଧ୍ୟ ସେ କିନ୍ତୁ ମୋର ଠାକୁରଙ୍କ ସୁଖ-ଶାନ୍ତି ପାଇଁ ଯଥେଷ୍ଟ କରେ। ...ଆପଣଙ୍କର କିଛି ସୁଖ ସୁବିଧା ତାଦ୍ୱାରା ହୁଏ ନାହିଁ, ବରଂ ସେ ଆପଣଙ୍କର ଅସୁବିଧାର କାରଣ ହୁଏ, କିନ୍ତୁ ଠାକୁର ହିଁ ଯଦି ଆପଣଙ୍କର ସ୍ୱାର୍ଥ ବୋଲି ବୋଧ ଥାଏ, ତାହେଲେ ଠାକୁରଙ୍କ ପାଇଁ ତାର କରିବାର ଭିତର ଦେଇ ଆପଣ ନିଜକୁ ହିଁ ଲାଭବାନ ମନେ କରିବେ। ଏହିପରି ହୁଏ। ତାର କାନ ମୋଡ଼ାଟା ଯେ ସମର୍ଥନ ଯୋଗ୍ୟ ବ୍ୟବହାର, ତା ମୁଁ କହୁନାହିଁ। କିନ୍ତୁ ଏହି ବିଷୟରେ ଆପଣଙ୍କର ଯେଉଁ attitude (ମନୋଭାବ) ହେବ, ଆପଣ ଯେଉଁ ଭାବରେ ନିଜକୁ adjust (ନିୟନ୍ତ୍ରଣ) କରିପାରିବେ, ସେହି କଥାହିଁ ଏଠାରେ କହୁଛି। ଭଲପାଇବାରେ ସହ୍ୟ, ଧୈର୍ଯ୍ୟ, ସଂଯମ ସବୁ କିଛି ହିଁ ବଢ଼ିଯାଏ।

ଆ.ପ୍ର. ୪/୧୪.୯.୧୯୪୨

**ପ୍ର. – ଇଷ୍ଟଙ୍କୁ ଗଭୀର ଭାବରେ ଭଲପାଇଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କୁ ଯିଏ ଗଭୀର ଭାବରେ ଭଲପାଏ, ତା ପାଖରେ ନାନା ଭାବରେ ଇଷ୍ଟଙ୍କର ସ୍ଫୁରଣ ହୋଇଥାଏ। ଆପଣ ହୁଏତ ଖବର କାଗଜ ପଢୁଛନ୍ତି। ସେଥିରେ ଗୋଟିଏ ନୂତନ ଧରଣର ଇଞ୍ଜିନର ବିଜ୍ଞାପନ ବାହାରିଛି। ଦେଖିବା ମାତ୍ରେହିଁ ଆପଣଙ୍କର ମନେହେଲା – ଠାକୁରଙ୍କୁ ଏହା ଗୋଟିଏ ଯୋଗାଡ଼ କରିଦେଇ ପାରିଲେ ଭଲ ହୁଅନ୍ତା। ଆରମ୍ଭ ହେଲା ଆପଣଙ୍କର ଧ୍ୟାନ ଓ ଚେଷ୍ଟା। କେଉଁଠି କେଉଁଠି ଗଲେ, କାହା କାହା ପାଖରେ କ'ଣ କହିଲେ, ଟଙ୍କା ଯୋଗାଡ଼ କଲେ। କମ୍ପାନୀକୁ କହି ବୋଲି କିଛି ଦାମ୍ ମଧ୍ୟ କମାଇଲେ। ତାପରେ ଜିନିଷଟି ଆଣି ମୋତେ ଦେଲେ। ସ୍ଫୁରଣର ମଧ୍ୟରେ ଏତେଗୁଡ଼ିଏ ବାସ୍ତବ କାରଣ (ବା' ।ବରେ କରିବା) ଅଛି। ନହେଲେ ଗଛ ଅଡ଼କୁ ଚାହିଁଛି, ଗଛ ଦେଖି ପାରୁନାହିଁ, ଗଛ ଭିତରେ ଠାକୁରଙ୍କୁ ଦେଖିବାକୁ ପାଉଛି, – ଏପରି କିନ୍ତୁ ହୁଏନାହିଁ। ବାସ୍ତବତାର ବୋଧ ସହିତ ଗୋଟିଏ ଇଷ୍ଟସ୍ୱାର୍ଥପ୍ରତିଷ୍ଠା ମୂଳକ ଚିନ୍ତା ଓ ଚେଷ୍ଟା ଲାଗି ରହିଥାଏ। ଆଉ ପ୍ରତ୍ୟେକଟି ବିଶେଷର ମଧ୍ୟରେ ହିଁ ନିର୍ବିଶେଷ ବିଶେଷକୁ ବୋଧ କରିବାର ଗୋଟିଏ ଝୁଙ୍କ ହୁଏ।

ଆ.ପ୍ର. ୪/୧୪.୯.୧୯୪୨

**ପ୍ର. – ଇଷ୍ଟ ମୂଳତଃ ଓ ତତ୍ତ୍ୱତଃ ଯାହା, ତାହା କିପରି ଭାବରେ ବୁଝାଯିବ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟ ହେଲେ ନିର୍ବିଶେଷ ବିଶେଷ, ସେ ବିଶେଷ ବ୍ୟକ୍ତି ହୋଇ ମଧ୍ୟ



ସବୁ ବିଶେଷତ୍ୱର ଊର୍ଦ୍ଧ୍ୱରେ। ଅର୍ଥାତ୍ ବହୁତ ଅପାତ-ବିରୁଦ୍ଧ ଗୁଣ ଓ ବୈଶିଷ୍ଟ୍ୟର ସାର୍ଥକ ସମାବେଶ ତାଙ୍କ ମଧ୍ୟରେ ଘଟିଥାଏ। ସେ ମୂଳତଃ ଯାହା, 'ତତ୍ତ୍ୱତଃ ଯାହା, ତାହା ବୁଝିବାକୁ ଗଲେ, ନରବପୁ ରୂପେ ତାଙ୍କର ଯେଉଁ ବିଶିଷ୍ଟ ଆବିର୍ଭାବ, ତାଙ୍କୁ ବାଦ ଦେଲେ ଚଳିବ ନାହିଁ। ଚୈତନ୍ୟ-ଚରିତାମୃତରେ ଅଛି –

''କୃଷ୍ଣଙ୍କର ଯେତେକ ଲୀଳା ସର୍ବୋତ୍ତମ ନରଲୀଳା  
ନରବପୁ ତାଙ୍କରି ସ୍ୱରୂପ।  
ଗୋପବେଶ ବେଣୁକର ନବକିଶୋର ନଟବର  
ନରଲୀଳାର ହୁଏ ଅନୁରୂପ।''

ତାଙ୍କରି ଏହି ମାନୁଷୀ ଲୀଳା ମଧ୍ୟରେ ଅନୁରାଗ ମୁଖର ଅନୁପ୍ରବେଶ ନ ଘଟିଲେ ସର୍ବସଙ୍ଗତି-ସମ୍ପନ୍ନ ଜ୍ଞାନ ଓ ବୋଧର ଉନ୍ମେଷ ହୁଏନାହିଁ। ଅନେକ ଫାଙ୍କ ରହିଯାଏ। ଆଉ ପ୍ରକୃତ ରସାନୁଭୂତି ମଧ୍ୟ ହୁଏ ନାହିଁ। ବୋଧଟା ବୁଦ୍ଧିଗତ ରହିଯାଏ, ସତ୍ତାଗତ ହୁଏ ନାହିଁ। ପୁଣି କେବଳ ତାଙ୍କୁ ନେଇ ଅଛି, ପରିବେଶର ଧାର ଧାରେନା, ସେଥିରେ କିନ୍ତୁ ତାଙ୍କୁ ଅନୁଭବ କରିପାରିବ ନାହିଁ। ସେହି ନିର୍ବିଶେଷ ବିଶେଷ ପ୍ରତିଟି ବିଶେଷ ମଧ୍ୟରେ ବିଶେଷ ରକମରେ ଅଛନ୍ତି। ସେଥିପାଇଁ ପ୍ରତ୍ୟେକ ବୈଶିଷ୍ଟ୍ୟରେ ତାଙ୍କୁ ଯଦି ବିଶିଷ୍ଟ ରକମରେ ଅନୁଭବ କରି ନ ପାରୁ, ତାହେଲେ କିନ୍ତୁ ଆମର ବୋଧଟା ପକ୍କା ହେବ ନାହିଁ। ....ବୋଧଗୁଡ଼ିକ ଖଣ୍ଡ ଖଣ୍ଡ ହୋଇଯିବ। ସେଥିପଇଁ ପ୍ରତିଟି ଯାହା କିଛିକୁ ଏହି ଭାବରେ ଦେଖିବା ଦରକାର। ଇଷ୍ଟସ୍ୱାର୍ଥପ୍ରତିଷ୍ଠାମୂଳକ ଭାବିବା, କହିବା, କରିବା, ନିୟନ୍ତ୍ରଣ, ସାମଞ୍ଜସ୍ୟ ଓ ସମାଧାନର ଭିତର ଦେଇହିଁ ଏହା ଜୀବନରେ ସହଜ ହୋଇ ଆସିଥାଏ। ଖୁବ କରିବାକୁ ହୁଏ। ନହେଲେ ସହଜ ହୁଏ ନାହିଁ।

ଆ.ପ୍ର. ୪/୧୪.୯.୧୯୪୨

**ପ୍ର. – ଇଷ୍ଟ କର୍ମ ପ୍ରତି ତୀବ୍ର ଝୁଙ୍କ ହେଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟ କର୍ମ ପ୍ରତି ଅର୍ଥାତ୍ ଲୋକମଙ୍ଗଳ କର୍ମ ପ୍ରତି ମଣିଷର ଯେତେବେଳେ ଗୋଟିଏ ତୀବ୍ର ଝୁଙ୍କ ସୃଷ୍ଟି ହୁଏ, ସେତେବେଳେ ପ୍ରବୃତ୍ତି ତାଡ଼ିତ ଅନର୍ଥପ୍ରସୂ କର୍ମ ତାର କମି ଯିବାକୁ ଲାଗିଥାଏ। ଏବଂ ଏହା ଅତ୍ୟନ୍ତ ସ୍ୱାଭାବିକ ବ୍ୟାପାର। କାରଣ, ସେ ଦିଗକୁ ନଜର ଦେବାର ଫୁରସତ ତାର କେଉଁଠି ?

ଆ.ପ୍ର. ୪/୧୪.୯.୧୯୪୨

**ପ୍ର. – ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠାର ମଧ୍ୟରେ ସାମଞ୍ଜସ୍ୟ ଦରକାର କ'ଣ ପାଇଁ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠା ଏହି ଦୁଇଟିର ସାମଞ୍ଜସ୍ୟ ଦରକାର, ନହେଲେ ଗୋଳମାଳ ହୋଇଯାଏ। ଆପଣମାନଙ୍କର ପ୍ରତ୍ୟେକଙ୍କର ସୁସ୍ଥ, ସୁଦୀର୍ଘ ଜୀବନ ମୋରହିଁ

ସ୍ୱାର୍ଥ। ମୋର ସ୍ୱାର୍ଥ ବିବେଚନାରେ ତା ଯଦି ସଂରକ୍ଷଣ ନ କରନ୍ତି; ତାହେଲେ କିନ୍ତୁ ଇଷ୍ଟ ସ୍ୱାର୍ଥରହିଁ ହାନି ହୁଏ। ଆଉ ଇଷ୍ଟସ୍ୱାର୍ଥ ହନନ କଲେ ଇଷ୍ଟପ୍ରତିଷ୍ଠା ମଧ ବେଶିଦିନ କରିହୁଏ ନାହିଁ। କାର୍ଯ୍ୟର ବାହାନାରେ... ସ୍ୱାସ୍ଥ୍ୟବିଧି ଲଙ୍ଘନ କରିବା ପଛରେ imbalance (ଅବ୍ୟବସ୍ଥା) ଥାଏ, martyr (ଧର୍ମାର୍ଥେ ଆତ୍ମଉତ୍ସର୍ଗକାରୀ) ସାଜିବାର complex (ପ୍ରବୃତ୍ତି) ଥାଏ। ତା ଭିତରେ ଇଷ୍ଟପ୍ରତିଷ୍ଠାର ବୁଦ୍ଧି ଠାରୁ ଆତ୍ମପ୍ରତିଷ୍ଠାର ବୁଦ୍ଧି ପ୍ରବଳ ଥାଏ।

ଆ.ପ୍ର. ୪/୨୪.୯.୧୯୪୨

**ପ୍ର. – ଇଷ୍ଟସ୍ୱାର୍ଥ ପ୍ରତିଷ୍ଠାପନ୍ନ ନ ହେଲେ ଅସୁବିଧା କ'ଣ ?**

**ଶ୍ରୀଶ୍ରୀଠାକୁର** – Thoroughly (ସମ୍ୟକଭାବରେ) ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ନ ହେଲେ ଠିକ୍ ଭାବରେ କଥାହିଁ କହିପାରେ ନାହିଁ। ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନତାର ନାମରେ ଆତ୍ମସ୍ୱାର୍ଥପ୍ରତିଷ୍ଠାପନ୍ନତା ଯେଉଁଠାରେ active (ସକ୍ରିୟ) ହୋଇଚାଲେ, ସେଠାରେ libido(ସୁରତ) ଅନେକଟା distortion ମୁଖୀ (ବିକୃତିମୁଖୀ) ହୋଇଥାଏ। ଏ ପ୍ରକାର କପଟତା ରହିଲେ କଥାହିଁ ଖୋଲେ ନାହିଁ। କଥା ପରି କଥା କହି ପାରିଲେ ମଣିଷକୁ ମାତ୍ କରି ଦିଆଯାଏ ନାହିଁକି ? ସକ୍ରିୟ ଇଷ୍ଟ-ମୁଗ୍ଧତା ଓ ଇଷ୍ଟ-ପ୍ରୀତ୍ୟର୍ଥେ ଲୋକ କଲ୍ୟାଣ ତତ୍ପରତା ଯାହାଭିତରେ ସଜାଗ ଓ ଉଦଗ୍ର ହୋଇଥାଏ ତାର କଥାର ଭିତରେ ମଧ ଏହି spark (ଝଲକ) ଥାଏ। କେହିକେହି ଗୋଟିଏ ପୁରା ନାଟକ ଏକକ ଅଭିନୟ କରନ୍ତି, ଦେଖି ନାହାଁନ୍ତି କି? ବିଚିତ୍ର ଭାବ ଓ ରସର ଅଭିବ୍ୟକ୍ତି ସେ ଏକାହିଁ ଦେଖାଇଯାଏ। ତନ୍ମୟ ହୋଇ ଯିଏ ଯାଜନ କରେ, ତା ଭିତରେ ମଧ ସେହିପରି କେତେ ଭାବ ଓ ରସର ସ୍ଫୁରଣ ଯେ ହୁଏ ତାର ଇୟତ୍ତା ନାହିଁ। ପ୍ରକୃତ ଯାଜକ ଯିଏ, ସେ ଯାଜନ କରୁ କରୁ ପ୍ରଭୁଙ୍କର ବିଶ୍ୱରୂପ ଦେଖେ, ଆଉ ସଶ୍ରଦ୍ଧ, ଶୁଶ୍ରୂଷୁ ଶ୍ରୋତା ଯିଏ, ସେ ମଧ ତା ଭିତର ଦେଇ ସେହି ପ୍ରଭୁଙ୍କୁ ହିଁ ବିଚିତ୍ର ରୂପରେ ଉପଲବ୍ଧି କରେ। ବିଶ୍ୱରୂପ ଦେଖିବା ମାନେ ନାନାପ୍ରକାର ମୂର୍ତ୍ତି ଦେଖିବା ନୁହେଁ, ଇଷ୍ଟଙ୍କର ଚରିତ୍ରରେ ଯେ ଅଫୁରନ୍ତ, ଅନନ୍ତ ଗୁଣ ଅଛି, ବିଶ୍ୱତୋ-ମୁଖୀ ବୈଭବ ଅଛି, ଯାଜନ କରୁ କରୁ ତାହା ନିତ୍ୟ ନୂତନ ଭାବରେ ଉଦ୍ଭାସିତ ହୋଇ ଉଠିଥାଏ। ଆ.ପ୍ର. ୪/୨୪.୯.୧୯୪୨

**ପ୍ର. – ଇଷ୍ଟସେବା ଠିକ୍-ଠିକ୍ ଭାବରେ କରିପାରିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟସେବା ଯଦି ଠିକ୍-ଠିକ୍ ଭାବରେ କରାଯାଏ, ତେବେ ତା ଭିତର ଦେଇ ସମସ୍ତଙ୍କର ସବୁ ଋଣ ଶୁଝି ଯାଏ। କାରଣ, ଇଷ୍ଟସେବା ମାନେ ମୂର୍ତ୍ତ ଲୋକମଙ୍ଗଳର ସେବା ଅର୍ଥାତ୍ ବାସ୍ତବ ଲୋକ ମଙ୍ଗଳର ସେବା, କାରଣ ତାଙ୍କର ପ୍ରେରଣାରେହିଁ ମଣିଷ ମଧରେ ଲୋକମଙ୍ଗଳ ପ୍ରବୃତ୍ତି ଜାଗିଉଠେ। ଆଉ ଏପରି ଲୋକ ନାହିଁ, ଯିଏ କି ସେହି ଲୋକ



ମଙ୍ଗଳ ମଧରେ ନାହିଁ। ତୁମେ ଯଦି ମଣିଷ ପାଇଁ ସତ୍ୟରେ ହିଁ ମଙ୍ଗଳକର କିଛି କରିପାର, ଆଉ ସେହି ମଙ୍ଗଳକର କିଛି କରିବାର ଯୋଗ୍ୟତା ଲାଭର ମୂଳରେ ଯଦି ତୁମର କେହି ଥାଆନ୍ତି, ତେବେ ସେ ଯେ ତା ଫଳରେ ପରମପିତାଙ୍କର ବିଶେଷ କରୁଣା ଲାଭ କରିବେ, ସେଥିରେ କୌଣସି ସନ୍ଦେହ ନାହିଁ। ଶାସ୍ତ୍ରରେ କୁହାଯାଇଛି, ସଦ୍‌ଗୁରୁ ଲାଭ କରିଲେ ତ୍ରିକୋଟି କୁଳଉଦ୍ଧାର ହୁଏ। ସଦ୍‌ଗୁରୁ ଲାଭ ମାନେ କେବଳ ଦୀକ୍ଷା ନେବା ନୁହେଁ, ସଦ୍‌ଗୁରୁ ତୁମକୁ ପାଇ ବସିବେ, ଯେପରି ମଣିଷକୁ ଭୂତ ଧରିଥାଏ। ଆ.ପ୍ର. ୪/୧୯.୧୦.୧୯୪୨

**ପ୍ର. – ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠାର ଏତେ ଗୁରୁତ୍ୱ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଭବସମୁଦ୍ରର compass (ଦିଗନିର୍ଣ୍ଣୟ ଯନ୍ତ୍ର) ହେଲା ଇଷ୍ଟସ୍ୱାର୍ଥ, ଇଷ୍ଟପ୍ରତିଷ୍ଠା)। ସେହି କଣ୍ଟା ଠିକ୍ ରହିଲେ ମଣିଷ ବିପଥରେ ଯାଏନାହିଁ, ପରିବେଶ ମଧ ଠିକ୍ ଥାଏ। କୁଶଳକୌଶଳୀ ଚଳନ ମାନେ, ଇଷ୍ଟସ୍ୱାର୍ଥପ୍ରତିଷ୍ଠାମୁଖର ଚଳନ। ସେଥିରେ ମଣିଷ ବୈଚିତ୍ର୍ୟହୀନ ହୁଏ ନାହିଁ, ଯେଉଁଠାରେ ଯେତେବେଳେ ଯେପରି ଶୋଭନୀୟ, ତାହାହିଁ କରିଥାଏ – ମୂଳକୁ ଠିକ୍ ରଖି। ତାର ବୁଦ୍ଧି ଥାଏ ବିପତ୍ତିକୁ ଏଡ଼ାଇ ନିଜର ଓ ଅପରର ମଙ୍ଗଳ ସାଧନ। ଆଉ ଏହି ଚଳଣି ମଧରେ egoistic rigidity (ଅହଂକୃତ ଅନମନୀୟତା) କମ୍ ହିଁ ଥାଏ। ଯେଉଁଠାରେ ଯେପରି ପ୍ରୟୋଜନ, ସେହି ଅନୁସାରେ ସେ କଠୋର ମଧ ହୋଇପାରେ, କୋମଳ ମଧ ହୋଇପାରେ। ଆଉ ସବୁଟିର ପଛରେ ଉଦ୍ଦେଶ୍ୟ ଥାଏ, ଇଷ୍ଟପୁରୁଷ ଯିଏ, ମୂର୍ତ୍ତ ମଙ୍ଗଳ-ବିଗ୍ରହ ଯିଏ ତାଙ୍କରି ପ୍ରୀତି, ତାଙ୍କରି ପ୍ରତିଷ୍ଠା, ତାଙ୍କର ପୋଷଣ। ସେଥିପାଇଁ ତାର କୌଣସି ଅହଂକାର ଥାଏ ନାହିଁ, ସେ ହୁଏ ସହଜ, ସରଳ ଅଥଚ ମହାବୁଦ୍ଧିମାନ। ତା ଭିତରେ କୃତ୍ରିମତା ପଶିବାର ତ ଦୂରର କଥା, ତାର ଗତି-ଭଙ୍ଗିମା ହୁଏ ଅବାଧ, ଉନ୍ମୁକ୍ତ, ସାବଲୀଳ। ଗୋଟିଏ କଥାରେ ତାର personality (ବ୍ୟକ୍ତିତ୍ୱ) charming (ମନୋମୁଗ୍ଧକର) ହୁଏ। ତାର ଚାଲିଚଳନ ଦେଖି ମନେ ହୁଏ ଫଟୋ ଉଠାଇ ରଖିବାକୁ, କଥାବାର୍ତ୍ତା ଶୁଣି ମନେ ହୁଏ gramphone record (ଗ୍ରାମଫୋନ୍ ରେକର୍ଡ଼) କରି ରଖିବାକୁ। ତା ଚରିତ୍ରରେ art (ଶିଳ୍ପ) ଓ science (ବିଜ୍ଞାନ) ଦୁଇଟିହିଁ blend କରିଯାଏ (ମିଶି ଯାଏ)।

ଆ.ପ୍ର. ୪/୨୧.୧୦.୧୯୪୨

**ପ୍ର. – ଇଷ୍ଟାନୁସରଣର ମଧ ଦେଇ କିପରି ମଣିଷ ହେବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – ଦୁର୍ବଳ ଭଲମଣିଷ ହେଲେ ଚଳିବ ନାହିଁ। ଭଲମଣିଷ ହେବାକୁ ହେଲେ କଲ୍ୟାଣ ବୁଦ୍ଧି ଦ୍ୱାରା ପ୍ରବୁଦ୍ଧ ହୋଇ ଶକ୍ତିମାନ ହେବାକୁ ହେବ, ସୁକୌଶଳୀ ହେବାକୁ ହେବ, ଦକ୍ଷ ଓ ଯୋଗ୍ୟ ହେବାକୁ ହେବ, ପରାକ୍ରମୀ ହେବାକୁ ହେବ, ଯେପରି ବିରୁଦ୍ଧ ଶକ୍ତି ପାଖରେ

ପରାଭୂତ ହେବାକୁ ନହୁଏ । ଆଉ ସେଇଥିପାଇଁ ତ ମୁଁ ହିସାବ କରି ଚାଲିବାର କଥା କୁହେ। ଜଗତଟା ଜଟିଳ, ଏହାର ସ୍ତର ସ୍ତରରେ ଚୁରାବାଲି ପରି ଅନେକ ବିପଦର ସମ୍ଭାବନା ଲୁଚି ରହିଛି। ସେଗୁଡ଼ିକ ଏଡ଼ାଇ ଚାଲିବା, ନିୟନ୍ତ୍ରଣ କରିବା ଓ ପ୍ରତିରୋଧ କରିବା ପାଇଁ ବଳ, ବୁଦ୍ଧି ଓ କୌଶଳ ଯଦି ନ ଥାଏ, ପ୍ରସ୍ତୁତି ଯଦି ନ ଥାଏ, ତାହେଲେ ଆମ୍ଭେମାନେ ଯେ ତାର ଶିକାର ହୋଇ ପଡ଼ିବୁ, ସେଥିରେ କ'ଣ ଆଉ କିଛି ସନ୍ଦେହ ଅଛି ? ଆଉ, ସବୁ ସମୟରେ ଏହା ତୁମେ ଏକାକି କରିପାରିବ ନାହିଁ। ଜଗତରେ evil force (ଅସତ୍ ଶକ୍ତି) organised (ସଂଘବଦ୍ଧ) ହୋଇଅଛି। ଢାଲ ନାହିଁ, ତରୁୟାଲ ନାହିଁ, ନିଧିରାମ ସର୍ଦ୍ଦାର ପରି ଯଦି ତୁମେ ଏକାକି ତା ବିରୁଦ୍ଧରେ ଲଢ଼ିବାକୁ ଯାଅ, ତାହେଲେ ତୁମକୁ ଆଉ ଖୋଜି ପାଇବା ସମ୍ଭବ ହେବନାହିଁ। ସେଥିପାଇଁ ଯଜନ, ଯାଜନ ଓ ଇଷ୍ଟଭୃତିର ଭିତର ଦେଇ ଇଷ୍ଟାର୍ଥୀ ଜନବଳ, ଧନବଳ ଓ ସତ୍-ସଂହତି ଗଢ଼ି ତୋଳିବାକୁ ହେବ । ସତ୍‌କୁ ଯେପରି ପୋଷଣ ଦେବାକୁ ହେବ, ଅସତ୍‌କୁ ସେହିପରି ନିରୋଧ କରିବାକୁ ହେବ। ...ମଣିଷର ଭଲ କରିବାକୁ ଗଲେ, ତାର ଗୋଟିଏ ରୀତି ଅଛି, ସେହି ରୀତି ଅନୁସାରେ ଯଦି ଚାଲିବା ନ ହୁଏ, ତେବେ ହିତେ ବିପରୀତ ହୁଏ, ଭଲ କରିବାଟା ହିଁ ମନ୍ଦର କାରଣ ହୋଇ ଛିଡ଼ା ହୁଏ ।

ଆ.ପ୍ର. ୪/୨୧.୧୦.୧୯୪୨

**ପ୍ର. – ଇଷ୍ଟାନୁସରଣର ସୁବିଧା ପାଇଁ ଆଗେ କ'ଣ ଅନ୍ୟକୁ ଠିକ୍ କରି ନେବା ଭଲ ନୁହେଁ ?**

**ଶ୍ରୀଶ୍ରୀଠାକୁର –** ପ୍ରଥମେ ଅନ୍ୟକୁ ଠିକ୍ କରି ନେବାର କଥା ଭାବିବେ ନାହିଁ, ପ୍ରଥମେ ନିଜକୁ ଠିକ୍ କରି ନେବାର କଥା ଭାବିବାକୁ ହୁଏ। ନିଜକୁ ଠିକ୍ କରିବା ମାନେ ଇଷ୍ଟାନୁଗ ଆତ୍ମ-ନିୟନ୍ତ୍ରଣ, ଆତ୍ମ-ନିୟନ୍ତ୍ରଣର ସହିତ ପରିବେଶକୁ ନିୟନ୍ତ୍ରିତ କରି ଚାଲିବାକୁ ହୁଏ। ପ୍ରଥମଟା ହେଲା ଯଜନ ଓ ଦ୍ୱିତୀୟଟା ହେଲା ଯାଜନ। ଆଉ ଇଷ୍ଟଙ୍କ ସହିତ ଏକ ଆତ୍ମିୟତାର ସମ୍ପର୍କ ସୃଷ୍ଟି କରିବାକୁ ହୁଏ। ନିଜର ସକ୍ରିୟ ସ୍ମୃତି ଓ ବୋଧ ଭୂମିରେ ତାଙ୍କୁ ସବୁଠାରୁ ନିଜର କରି ନେବାକୁ ହୁଏ। ଏକଥା କହିବାର ଗୋଟିଏ ତାତ୍ପର୍ଯ୍ୟ ଅଛି। ଇଷ୍ଟ ପୁରୁଷ ଯିଏ, ତାଙ୍କ ପାଖରେ ସମସ୍ତେ ତାଙ୍କର ଆପଣାର। ଆଉ ସେ ସେହି ଭାବରେ ସମସ୍ତଙ୍କ ପାଇଁ ଭାବନ୍ତି, କହନ୍ତି ଓ କରନ୍ତି। କିନ୍ତୁ ଆମର ଯଦି ତାଙ୍କ ପାଇଁ ଭାବିବା, କହିବା ଓ କରିବାରେ ଫାଙ୍କି ଥାଏ, ତାହେଲେ ଆମର ସକ୍ରିୟ ସ୍ମୃତି ଓ ବୋଧ ଭୂମିରେ ସେ ଯେ ପ୍ରଥମ ଓ ପ୍ରଧାନ ଏହି ଭାବଟା ଜାଗ୍ରତ ରହେନାହିଁ। ଏହି ବୋଧଟା ଫୁଟାଇ ତୋଳିବା ପାଇଁ ଯଜନ-ଯାଜନ ସହିତ ନିଷ୍ଠାର ସହ ଇଷ୍ଟଭୃତି କରି ଦିନଯାତ୍ରା ଆରମ୍ଭ କରିବା ଦରକାର। ଅନ୍ନ ଜଳ ଗ୍ରହଣ କରିବା ପୂର୍ବରୁ ଯେଉଁ ଇଷ୍ଟଭୃତି ନିବେଦନ କରିବାର ବିଧାନ ଅଛି, ତାର କାରଣ ହେଉଛି, ମୋର କ୍ଷୁଧା



ନିବୃତ୍ତିର ପ୍ରୟୋଜନ ଠାରୁ ତାଙ୍କର ତର୍ପଣ-ନନ୍ଦନାକୁ ବଡ଼ କରି ଦେଖିବା, ସେହିଟିକୁହିଁ ପ୍ରାଧାନ୍ୟ ଦେବା । ସେଥିପାଇଁ ଯଜନ, ଯାଜନ, ଇଷ୍ଟଭୃତି ଆବେଗର ସହିତ, ନିଷ୍ଠା ସହକାରେ ପାଳନ କରୁ କରୁ ଆତ୍ମପ୍ରୀତି ଠାରୁ ଇଷ୍ଟପ୍ରୀତିହିଁ ପ୍ରବଳ ହୋଇଉଠେ। ଇଷ୍ଟପ୍ରୀତି ସହିତ ଆସେ . ପରିବେଶର ପ୍ରତି ପ୍ରୀତି। ଏହି ଭାବରେ ମଣିଷ ଭିତରେ ସତ୍ତାପୋଷଣୀ ଗୁଣାବଳୀର ବିକାଶ ହୁଏ। ଏହି ଗୁଣ ଗୁଡ଼ିକହିଁ ମଣିଷକୁ ଟେକି ରଖେ, ବଞ୍ଚାଇ ରଖେ। ସତ୍‌ସଂହତି, ପାରସ୍ପରିକ ଶ୍ରଦ୍ଧା ଓ ସେବା ଏବଂ ଅସତ୍-ନିରୋଧୀ ପ୍ରଚେଷ୍ଟା ସେତେବେଳେ ସହଜ ହୋଇଉଠେ।

ଆ.ପ୍ର. ୪/୨୧.୧୦.୧୯୪୨

**ପ୍ର. – ଇଷ୍ଟାନୁସରଣରେ ମଣିଷର ସବୁଠାରୁ ବଡ଼ ଶିକ୍ଷକ ଓ ଅନୁଶାସକ କିଏ ? ତାହା ନ ରହିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର –** ଗୋଟିଏ ବଦ୍‌ରାଗି ଲୋକ ଯଦି ଇଷ୍ଟଙ୍କୁ ଭଲପାଇ ବସେ, ଇଷ୍ଟଙ୍କଠାରେ interested (ସ୍ୱାର୍ଥାନ୍ୱିତ) ହୋଇଉଠେ, ତାହେଲେ ସେତେବେଳେ କିନ୍ତୁ ସେ ରାଗ ପାଖରେ ଏପରି ଆତ୍ମସମର୍ପଣ କରିବ ନାହିଁ, ଯାହାଦ୍ୱାରା ଇଷ୍ଟଙ୍କର interest (ସ୍ୱାର୍ଥ) affected (ବ୍ୟାହତ) ହୁଏ। ଏହି ଯେ consideration for the Superior Beloved (ପ୍ରେଷ୍ଟଙ୍କ ପାଇଁ ବିବେଚନା) – ଏହାହିଁ ହେଲା ମଣିଷର ସବୁଠାରୁ ବଡ଼ ଶିକ୍ଷକ ଓ ଅନୁଶାସକ। ଏହି ଜିନିଷଟି ନାହିଁ ଅଥଚ ସଦ୍‌ଗୁଣ ଅଛି, ସେହି ସଦ୍‌ଗୁଣ କିନ୍ତୁ ବେଓ୍ୱାରିସ ମାଲ। ଏହି ସଦ୍‌ଗୁଣ ଯେ ନିଜର ବା ଅପରର କାହାରି କୌଣସି ବଦ୍-ମତଲବର ଇନ୍ଧନ ହେବ ତାର କ'ଣ କୌଣସି ଠିକଣା ଅଛି ? ଇଷ୍ଟଙ୍କର ପୂଜାରେ ଯାହା ଲାଗେ ନାହିଁ, ତାହାହିଁ ସାଧାରଣତଃ ଅନିଷ୍ଟର କାରଣ ହୋଇଥାଏ, ଆଉ ତାହାହିଁ ସ୍ୱାଭାବିକ। ରୂପ-ଯୌବନ-ସମ୍ପନ୍ନା ନାରୀର ଯଦି ସତୀତ୍ୱ ବା ସ୍ୱାମୀନିଷ୍ଠା ନ ଥାଏ, ତାହେଲେ ତାର ଯେ ଦୁର୍ଗତି ହୁଏ, ଇଷ୍ଟନିଷ୍ଠାହୀନ ତଥାକଥିତ ସଦ୍‌ଗୁଣ ସମ୍ପନ୍ନ ମଣିଷର ମଧ୍ୟ ସେହିପରି ଦୁର୍ଗତି ଅବଶ୍ୟମ୍ଭାବୀ। ଏହି କାଳ ବିଧ୍ୱସ୍ତ ଜଗତରେ ଯଦି କୌଣସି ଜିନିଷର କାର୍ଯ୍ୟକାରୀ ମୂଲ୍ୟ ଥାଏ, ତାହେଲା କାଳାଧୀଶ ଯିଏ ତାଙ୍କ ପ୍ରତି ଅନୁରାଗ ଓ ଆନୁଗତ୍ୟ। ଆଉ କିଛିହିଁ କାଳର କବଳ ଠାରୁ ମଣିଷକୁ ବଞ୍ଚାଇ ପାରେ ନାହିଁ।

ଆ.ପ୍ର. ୪/୨୧.୧୦.୧୯୪୨

**ପ୍ର. – ଇଷ୍ଟଙ୍କୁ ଭଲ ନ ପାଇବାର, ତାଙ୍କ ସହ ଯୁକ୍ତ ନ ରହିବାର ଲକ୍ଷଣ କ'ଣ ? ମଣିଷର ପ୍ରକୃତି ଗତ ଝୁଙ୍କ କିପରି ଭାବରେ ତାକୁ ସହଜ ମଣିଷ କରିତୋଳେ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟ ବା ଭଗବାନଙ୍କୁ ଭଲପାଏ ଅଥଚ ତାଙ୍କ ପାଇଁ କିଛି କରେ ନାହିଁ, କିମ୍ବା କ'ଣ କରିବାକୁ ହୁଏ ତା ବୁଝେ ନାହିଁ, ସେ ଜ୍ଞାନ ମୋର ନାହିଁ ତାର ମାନେ, ମୁଁ ତାଙ୍କ

ଭଲପାଏ ନାହିଁ, ତାଙ୍କ ସହିତ ମୁଁ ଯୁକ୍ତ ନୁହେଁ। ମୁଁ ଯୁକ୍ତ ମୋର ପ୍ରବୃତ୍ତି ସହିତ। ତେବେ ଜଣ ଜଣଙ୍କର approach (ଅଭିଗମନ) ଏକ ଏକ ରକମ। କାହାର ହୁଏତ କାମର ଦିଗକୁ ଝୁଙ୍କ ବେଶୀ, ସେ କାର୍ଯ୍ୟ ହିଁ ପସନ୍ଦ କରେ ଏବଂ ତାହା ମଧ୍ୟ କରେ, କାହାର ହୁଏତ emotion (ଭବାବେଗ) ବେଶୀ, emotional upheaving (ଭାବସ୍ଫୀତି) ଯେଉଁଥିରେ ହୁଏ, ସେଥିପାଇଁ ସେ ନାମ-ଗୁଣ-କୀର୍ତ୍ତନ ଇତ୍ୟାଦି ବେଶୀ କରି କରେ, କେହି ହୁଏତ intellectual-minded (ବୁଦ୍ଧି-ପ୍ରଧାନ), ସେ ହୁଏତ ideological understanding (ଭାବଧାରା ସମ୍ବନ୍ଧେ ବୋଧ) ପରିପକ୍ୱ କରି ତୋଳିବାକୁ ପ୍ରୟାସ କରେ। ଏହିସବୁ ନାନା ରକମର ଥାଏ। କିନ୍ତୁ ଏହି ପ୍ରକୃତିଗତ ଝୁଙ୍କଗୁଡ଼ିକ ଯଦି ଇଷ୍ଟାର୍ଥେ ବିନ୍ୟସ୍ତ ହୁଏ, ତେବେ ଗଡ଼ପଡ଼ତାରେ ଗୋଟିଏ ଜାଗାରେ ଆସି ଛିଡ଼ା ହୁଏ। ଇଷ୍ଟ ହିଁ ତାଙ୍କ ପାଖରେ ଧୀରେ ଧୀରେ prominent (ପ୍ରଧାନ) ହୋଇ ଉଠିଥାନ୍ତି ଏବଂ ସେ ଦେଖେ ଯେ କୌଣସିଟା ହିଁ ignore (ଉପେକ୍ଷା) କରିବାର ନୁହେଁ। କର୍ମ ପ୍ରଧାନ ଯିଏ, ସେ ଦେଖେ ଆବେଗ ନ ରହିଲେ, ବୋଧ ନ ରହିଲେ କର୍ମ ନିରସ ଓ ନିଷ୍ଫଳ ହୋଇ ଉଠେ, ପୁଣି ଆବେଗ ପ୍ରଧାନ ଯିଏ, ସେ ଦେଖେ ଇଷ୍ଟାର୍ଥ-ପୂରଣୀ କର୍ମ ଓ ଜ୍ଞାନ ନ ରହିଲେ ତା' ଦେଇ ଇଷ୍ଟଙ୍କର କୌଣସି ସୁଖ ସୁବିଧା ହୁଏ ନାହିଁ, ପୁଣି ଜ୍ଞାନ ତପସ୍ୱୀ ଯିଏ ସେ ଦେଖେ, ଇଷ୍ଟଙ୍କ ପାଇଁ ଆବେଗ ଓ କର୍ମ-ପ୍ରଚେଷ୍ଟା ନ ରହିଲେ ସବୁ ଜ୍ଞାନ ମିଥ୍ୟା ହୋଇଯାଏ। ଏହି ଭାବରେ ପ୍ରତ୍ୟେକଙ୍କର ଜଡ଼ତ୍ୱ ଭାଙ୍ଗିଯାଏ। ଭକ୍ତି, କର୍ମ, ଜ୍ଞାନର ସମନ୍ୱୟରେ ସହଜ ମଣିଷ ହୋଇଉଠେ, ଅବଶ୍ୟ ଯଦି ସେ ଅକପଟ ହୁଏ। ...ଭକ୍ତି, କର୍ମ, ଜ୍ଞାନ କୌଣସିଟିହିଁ କୌଣସିଟିର ବିରୋଧି ନୁହେଁ ବରଂ ପରସ୍ପର ପରସ୍ପରର ପରିପୂରକ।

ଆ.ପ୍ର. ୪/୨୨.୧୦.୧୯୪୨

**ପ୍ର. – ଇଷ୍ଟାନୁସରଣରେ ଚାଲିବାକୁ ବାପା-ମା' ଯଦି ବାଧା ଦିଅନ୍ତି ସେତେବେଳେ କ'ଣ କରଣୀୟ ?**

**ଶ୍ରୀଶ୍ରୀଠାକୁର** – ତୁମର ମଙ୍ଗଳ ଯେଉଁମାନେ ଚାହାଁନ୍ତି, ତୁମର ହିତାକାଙ୍କ୍ଷୀ ଯେଉଁମାନେ, ସେମାନେ କେତେବେଳେ ବି ତୁମକୁ ମଙ୍ଗଳର ରାସ୍ତାରେ ଚାଲିବାକୁ ବାଧା ଦେଇ ପାରିବେ ନାହିଁ। ତେବେ ତୁମ ନିଜର ଆଚରଣ ଦ୍ୱାରା ପ୍ରମାଣ କରିବାକୁ ହେବ ଯେ ତୁମେ ପ୍ରକୃତ ମଙ୍ଗଳର ପଥରେ ଚାଲିଛ। ତାର ପ୍ରଥମ ପାହାଚ ହେଲା ପିତାମାତାଙ୍କ ପ୍ରତି ଆହୁରି ସଶ୍ରଦ୍ଧ ଓ ସେବା-ପରାୟଣ ହେବା। ତୁମର ଠାକୁର ଧରିବା ଫଳରେ ନଗଦାନଗଦି ଏହି ଶୁଭ ପରିବର୍ତ୍ତନଟା ଯଦି ସେମାନେ ଦେଖନ୍ତି, ତାହେଲେ ତୁମ ସହିତ ଲଢେଇ କରିବାକୁ ଯିବେ କେଉଁ ଦୁଃଖରେ? ସେବା ଖୁବ୍ ଦେବାକୁ ହୁଏ, ମାନ୍ୟ ଖୁବ୍ କରିବାକୁ ହୁଏ, କିନ୍ତୁ ଇଷ୍ଟଙ୍କ ବ୍ୟାପାରରେ ଖୁବ୍ fanatic (ଆବେଗ ଉତ୍ସାହପୂର୍ଣ୍ଣ) ରହିବାକୁ ହୁଏ। ଧରାଯାଉ,



ତୁମର ହୁଏତ ନିରାମିଷ ଖାଇବାର କଥା। ତୁମର ମା'-ବାପା ହୁଏତ ନିରାମିଷ ଆହାରର ତାତ୍ପର୍ଯ୍ୟ ବୁଝନ୍ତି ନାହିଁ। ବର୍ତ୍ତମାନ ତାଙ୍କୁ ଖୁସି କରିବାପାଇଁ ତୁମେ ଯଦି ପୂର୍ବବତ ମାଛ-ମାଂସ ଖାଇବାକୁ ଲାଗ, ତାହେଲେ କିନ୍ତୁ ତୁମେ ଗଲ। ତୁମର ନିଜର ମଧ୍ୟ ତାଦ୍ୱାରା ଭଲ ହେବନାହିଁ। ଭବିଷ୍ୟତରେ ସେମାନଙ୍କର ମଧ୍ୟ ଭଲ କରିପାରିବ ନାହିଁ। ସମସ୍ତଙ୍କ ପ୍ରତି ସଶ୍ରଦ୍ଧ ଓ ସେବାପରାୟଣ ରହି ମଧ୍ୟ ତୁମେ ଯଦି ଆଦର୍ଶାନୁସରଣ-ତତ୍ପର ହୁଅ, ତା ସତ୍ତ୍ୱେ ମଧ୍ୟ conflict (ସଂଘାତ) ଆସି ପାରେ। କିନ୍ତୁ ସେଠାରେ ଅପର ପାଖରେ yield (ଆତ୍ମସମର୍ପଣ) କରିବା ଭିତର ଦେଇ ତାର solution (ସମାଧାନ) ନାହିଁ। Solution (ସମାଧାନ) ଅଛି unyielding zeal (ଅନମନୀୟ ଉତ୍ସାହ) ନେଇ ଆଦର୍ଶାନୁସରଣ କରିବାରେ। କାରଣ, ଆଦର୍ଶଙ୍କ ମଧ୍ୟରେ ସମସ୍ତଙ୍କର ସତ୍ତାର ରସଦ ଅଛି। ତାଙ୍କୁ ଯଦି ଅଟୁଟ ନିଷ୍ଠାରେ ଧରିଥାଅ, ତୁମେ ତ ବଞ୍ଚିବ, ଅନ୍ୟକୁ ମଧ୍ୟ ବଞ୍ଚାଇପାରିବ। ସେଥିପାଇଁ ବାପା ମା'ଙ୍କୁ ଭଲପାଇଲେ ବାପା ମା'ଙ୍କ କଲ୍ୟାଣ ପାଇଁ ହିଁ ଆହୁରି ବେଶି କରି ଆଦର୍ଶ-ପରାୟଣ ହେବା ଦରକାର। ସମସ୍ତଙ୍କ ସମ୍ପର୍କରେ ହିଁ ଏହି କଥା ପ୍ରଯୁଜ୍ୟ। ...ପ୍ରଥମରେ ଯେତେବି ବିରୋଧର ସୃଷ୍ଟି ହେଉନା କାହିଁକି, ସୁନିଷ୍ଠ ଚଳନ ଯଦି ଥାଏ ତାହେଲେ ପିତାମାତା, ଗୁରୁଜନ ବା ପ୍ରିୟଜନ ଯେଉଁମାନେ ଅଛନ୍ତି କ୍ରମେ କ୍ରମେ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ହିଁ adjust (ନିୟନ୍ତ୍ରଣ) କରାଯାଇପାରେ, ବିଶେଷତଃ ଯେଉଁମାନେ ଶୁଭ-ସଂସ୍କାର-ସମ୍ପନ୍ନ। ତେବେ ଏକଥା ମଧ୍ୟ ଠିକ୍ ଯେ – ପିତାମାତାଙ୍କର ଶୁଭ ସଂସ୍କାର ନ ରହିଲେ ତୁମେ ଏଠାକୁ ଆସି ପାରନ୍ତ ନାହିଁ। ତୁମର ଦୀକ୍ଷିତ ହେବାର ଭିତର ଦେଇ ବୁଝାଯାଏ – ତୁମର ବାପା ମା'ଙ୍କ ଭିତରେ ମଧ୍ୟ ସଦ୍‌ଗୁରୁ ଗ୍ରହଣର ପ୍ରବଣତା ଅନୁସ୍ୟୂତ ଅଛି ହିଁ। ସେମାନେ ଦୀକ୍ଷା ନିଅନ୍ତୁ ବା ନ ନିଅନ୍ତୁ, ତୁମର ଚଳନ ଯଦି ସେମାନଙ୍କୁ ବିକ୍ଷୁବ୍ଧ ନ କରେ ତେବେ ସେମାନେ ଦୀର୍ଘଦିନ ତୁମ ପ୍ରତି ସତ୍‌ସଙ୍ଗୀ ହେବା କାରଣରୁ ବିରକ୍ତ ହୋଇ ରହିପାରିବେ ନାହିଁ। ତୁମ ବାପା ମା'ଙ୍କ ପାଖରେ ପ୍ରଥମେ ଯଦି ତୁମର ଦାମ୍ ନ ବଢ଼େ, ତେବେ ମୋର ଦାମ୍ ବଢ଼ିବ ନାହିଁ। ତୁମର ଦାମ ବଢ଼ିବା ମାନେ, ତୁମର ଚାଲିଚଳନ ଫଳରେ ତୁମ ପ୍ରତି ସେମାନଙ୍କର ଗୋଟିଏ ସ୍ନେହଳ ଶ୍ରଦ୍ଧା ସୃଷ୍ଟିହେବା। ସେଠାରେ ଏହାହିଁ ହେଲା ଯାଜନ। ତା ନ କରି ଯଦି ମୁହଁରେ କେବଳ ଠାକୁର ଠାକୁର କର, ତାର ମାନେ, ତୁମର ଠାକୁରଙ୍କୁ ତୁମେ ଅଶ୍ରଦ୍ଧା କରିବାକୁ କହୁଛ। ତାହାକୁ ଯାଜନ କହନ୍ତି ନାହିଁ, କହନ୍ତି ଗାଜନ।

ଆ.ପ୍ର. ୪/୨୨.୧୦.୧୯୪୨

**ପ୍ର. – ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠାର ବ୍ୟତିକ୍ରମ ଏଡ଼ାଇବାକୁ କ'ଣ କରିବା ଦରକାର ?**

**ଶ୍ରୀଶ୍ରୀଠାକୁର** – ସବୁ ସମୟରେ ହୁସିଆର ରହିବା ଦରକାର ଯାହାଦ୍ୱାରା ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠା ସମ୍ବନ୍ଧରେ ବିନ୍ଦୁମାତ୍ର ମଧ୍ୟ deviation (ବ୍ୟତିକ୍ରମ) ନ ହୁଏ। ବେହୁସ୍ ହେଲେ

ହିଁ କ୍ଷତିରେ ପଡ଼ିବାକୁ ହେବ। ... ସେଇଥିପାଇଁ ହିଁ ଖୁବ୍ ନାମ କରିବାକୁ ହୁଏ। ଆସନ କରି ବସି ଯେପରି ନାମ କରିବାକୁ ହୁଏ, ଚାଲିବା-ବୁଲିବା, କାର୍ଯ୍ୟ-କର୍ମର ଭିତରେ ମଧ୍ୟ ସେହିପରି ନାମ କରିବାକୁ ହୁଏ। ନାମରେ ସତ୍ତା ଖୁବ୍ ସଜାଗ ରହେ। ଆଉ ଇଷ୍ଟଙ୍କୁ ହିଁ ଏକମାତ୍ର ସ୍ୱାର୍ଥ କରି ନେବାକୁ ହୁଏ। ଯାହା ବି କର, ଭାବି ଦେଖିବ ସେଥିରେ ମୋ ଠାକୁରଙ୍କର କ'ଣ ସୁବିଧା ହେଲା, ଠାକୁର ତା ମଧ୍ୟରେ କେତେଟିକିଏ ରହିଲେ। ମୁଁ ଯଦି ଦୁନିଆର ମାଲିକ ମଧ୍ୟ ହୁଏ ଆଉ ତାଦ୍ୱାରା ଯଦି ମୋର ଠାକୁରଙ୍କର ସୁଖ-ସୁବିଧା ନ ହୁଏ, ପ୍ରତିଷ୍ଠା ନ ହୁଏ, ତାହେଲେ ଜାଣିବ, ମୁଁ କିଛିବି ପାଇଲି ନାହିଁ, ଭୂତର ବେଗାରି ଖଟିଲି, କେବଳ ବଞ୍ଚିତ ହେଲି। ଆଉ ମୋର ଲକ୍ଷେ କଷ୍ଟର ଭିତର ଦେଇ ମଧ୍ୟ, ତଥାକଥିତ ଲକ୍ଷେ ଲୋକ୍ସାନ (କ୍ଷତି) ଭିତରେ ମଧ୍ୟ ମୋର ଠାକୁର ଯଦି ଟିକିଏ ବି ତୁଷ୍ଟ-ତୃପ୍ତ ହୁଅନ୍ତି, ଟିକିଏ ସ୍ୱସ୍ତି ବୋଧ କରନ୍ତି, ମୁଁ ମନେ କରିବି, ମୁଁ ସ୍ୱଳ୍ପ ମୂଲ୍ୟରେ ବିରାଟ ଲାଭର ଅଧିକାରୀ ହୋଇଛି।

ଆ.ପ୍ର. ୪/୨୩.୧୦.୧୯୪୨

**ପ୍ର. – ଇଷ୍ଟଙ୍କ ପ୍ରକୃତ ଭକ୍ତର ପ୍ରକୃତି କିପରି ହୁଏ ?**

**ଶ୍ରୀଶ୍ରୀଠାକୁର** – The absolute devotee has no ego (ପରିପୂର୍ଣ୍ଣ ଭକ୍ତର କୌଣସି ଅହଂ ନାହିଁ)। ଅହଂ ନାହିଁ ମାନେ କ'ଣ ? ଇଷ୍ଟଙ୍କର ଅହଂକୁ ହିଁ ସେ ନିଜର ଅହଂ କରି ନେଇଛି। ସେହି ଅହଂର ହିଁ ଯନ୍ତ୍ର ସେ। ତାଙ୍କର ଇଚ୍ଛା ଓ ଚାହିଦା ପୂରଣ ପାଇଁ ସେ ସଦା ଜାଗ୍ରତ। ପୁଣି ତା ମଧ୍ୟରେ କିନ୍ତୁ ନିଷ୍କ୍ରିୟତାର ନାମ ଗନ୍ଧ ହିଁ ନାହିଁ। ଇଷ୍ଟଙ୍କର will (ଇଚ୍ଛା) fulfil (ପରିପୂରଣ) କରିବାକୁ ସେ ଯେପରି tremendous (ପ୍ରଚଣ୍ଡ) ହୋଇ ଉଠିଥାଏ, ମଣିଷ ଉଦଗ୍ର ପ୍ରବୃତ୍ତିର ଝୁଙ୍କ ପରିପୂରଣ ପାଇଁ ମଧ୍ୟ ସେତେଟା active (ସକ୍ରିୟ) ହୋଇ ଉଠିପାରେ ନାହିଁ। ପ୍ରବୃତ୍ତି ବା ଖିଆଲ-ପୂରଣର ନିଶା ମଣିଷର ଯେତେ ଶକ୍ତିମାନ, ତାଠାରୁ ଢେର ବେଶି ଶକ୍ତିମାନ ଇଷ୍ଟାର୍ଥ-ପୂରଣୀ ଆଗ୍ରହ। ...ଯାହା ତାହାର ଇଷ୍ଟଙ୍କ ସେବାରେ ନ ଲାଗେ, ତାହାକୁ ଭକ୍ତ କୌଣସି ମୂଲ୍ୟ ଦିଏ ନାହିଁ। ତା ପାଖରେ ଏକମାତ୍ର ମୂଲ୍ୟବାନ ହୁଏ ଇଷ୍ଟଙ୍କର ପ୍ରୀତି, ଇଷ୍ଟଙ୍କର ସ୍ୱାର୍ଥ, ଇଷ୍ଟଙ୍କର ପ୍ରତିଷ୍ଠା। ଏହି ମାନଦଣ୍ଡରେ ମାପି ମାପି ସେ ଯାହା କିଛିର ମୂଲ୍ୟ ନିର୍ଦ୍ଧାରଣ କରେ। ଅନ୍ୟ କୌଣସି ଲୋଭ ବା ମୋହ ତାହାର ନ ଥାଏ। ସେ ସ୍ୱତଃହିଁ ହୁଏ ମୁକ୍ତ ପୁରୁଷ। ସେଥିପାଇଁ କୁହାଯାଏ, ମୁକ୍ତି ଭକ୍ତିର ଦାସୀ।

ଆ.ପ୍ର. ୪/୨୩.୧୦.୧୯୪୨

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ମଣିଷ କେତେବେଳେ ମୁକ୍ତି ପାଏ ?**

**ଶ୍ରୀଶ୍ରୀଠାକୁର** – ମୁକ୍ତି ଅର୍ଥାତ୍ ଯୋଗଛଡ଼ା ମୁକ୍ତି ମିଳେ ନାହିଁ। ଇଷ୍ଟଙ୍କ ଠାରେ ଯେ ଯେତେଟା ପ୍ରାଣର ଟାଣ ନେଇ ଯୁକ୍ତ ହୁଏ, ପ୍ରବୃତ୍ତିର ବନ୍ଧନ ତାର ସେତେଟା ଖୋଲେ, ଦୋଷ-



ଦୁର୍ବଳତାର ନାଗଫାଶ କ୍ରମେ କ୍ରମେ ଶିଥିଳ ହେବାକୁ ଲାଗିଥାଏ। ତେଣୁ ସାଧ୍ୟ ଅର୍ଥାତ୍ ସାଧନୀୟ ଯଦି କିଛି ଥାଏ ତେବେ ତାହାହେଲା ଇଷ୍ଟାନୁରାଗ। ଏହାକୁ ହିଁ କୁହାଯାଏ ଭକ୍ତି। ଭକ୍ତି ଇତିମୂଳକ। ଭକ୍ତ ଦେଖେ ଯେ ଭଗବାନଙ୍କର ଯାହାକିଛି କରଣୀୟ, ସବୁ ହିଁ ତାର କରଣୀୟ। ଭଗବାନଙ୍କ ସହିତ ଯୁକ୍ତ ହେବାକୁ ଯାଇ ସେ ସମସ୍ତଙ୍କ ସହ ଯୁକ୍ତ ହୁଏ ଅର୍ଥାତ୍ ପ୍ରତ୍ୟେକଙ୍କର being and becoming (ସତ୍ତା ସମ୍ବର୍ଦ୍ଧନା) ପାଇଁ actively interested (ସକ୍ରିୟ ଭାବରେ ଅନ୍ତରାସୀ) ହୋଇଉଠେ। ଏଠାରେ କେବଳ ହିଁ ଜୀବନ। ଆଉ ଏହି ଜୀବନ ମଧ୍ୟରେ ହିଁ ଅଛି ମୁକ୍ତି – ପ୍ରବୃତ୍ତି ପରାୟଣତା ଠାରୁ ମୁକ୍ତି, ସଂକୀର୍ଣ୍ଣ ସ୍ୱାର୍ଥପରତା ଠାରୁ ମୁକ୍ତି, ଅପ୍ରେମ ଠାରୁ ମୁକ୍ତି, ଅପାରଗତା ଠାରୁ ମୁକ୍ତି, ଅସାଫଲ୍ୟ ଠାରୁ ମୁକ୍ତି, ଭୀରୁତା ଠାରୁ ମୁକ୍ତି – କେଉଁ ଦିଗରୁ ମୁକ୍ତି ନାହିଁ ? କିନ୍ତୁ ଭକ୍ତି ଛଡ଼ା, ଏହି ସର୍ବତୋମୁଖୀ ମୁକ୍ତି କାହାରି କୌଣସି କାଳରେ ହୋଇଛି ବୋଲି ମୋର ଜଣା ନାହିଁ। ଆ.ପ୍ର. ୪/୨୩.୧୦.୧୯୪୨

**ପ୍ର. – ଇଷ୍ଟାନୁସରଣରେ ଜନ୍ମଗତ ସ୍ୱଭାବ ଯଦି ବାଧା ସୃଷ୍ଟି କରେ ?**

**ଶ୍ରୀଶ୍ରୀଠାକୁର** – ତୁମର ସ୍ୱଭାବ ଯେପରି ହେଉନା କାହିଁକି, ତୁମେ ତାହା ନେଇ ହିଁ ଇଷ୍ଟନିଷ୍ଠ ହୁଅ, ଆଉ ସେହି ନିଷ୍ଠା ଯେପରି ଅଚ୍ୟୁତ ହୁଏ। ଆଉ ସବୁ ସମୟରେ ଉଦ୍ଦିପ୍ତ ଅନ୍ତଃକରଣରେ ଏହି ତୁମର ସ୍ୱଭାବ – ତାହା ଖରାପହିଁ ହେଉ ଆଉ ଭଲହିଁ ହେଉ – ତାହା ଦେଇ ଯେପରି ତୁମର ଇଷ୍ଟଙ୍କୁ ସୁଦୀପ୍ତ କରି ରଖିପାର, ସୁତୃପ୍ତ କରି ରଖିପାର, ତାହା କରିବାକୁ ଟିକିଏ ବି ପଛଘୁଞ୍ଚା ଦିଅ ନାହିଁ, ତା ତୁମର ସଭାବ-ସମ୍ପଦ ଯାହା ବି ଥାଉ ନା କାହିଁକି। ତୁମର ମନ୍ଦ ଯାହା କିଛି ଅଛି ତାହା ଦେଇ ମଧ୍ୟ ତାଙ୍କର ଭଲ କରିବାକୁ ଚେଷ୍ଟା କର, ତୁମର ଭଲ ଯାହା ଅଛି ତାହା ଦେଇ ମଧ୍ୟ ତାଙ୍କୁ ନନ୍ଦିତ କରିବାକୁ ଚେଷ୍ଟାକର। ଏକ କଥାରେ ତୁମେ ତୁମର ଯାହାକିଛି ସବୁ ଦେଇ ଯାହାଦ୍ୱାରା ଇଷ୍ଟତୃପ୍ତିକୃତ୍ ଓ ଇଷ୍ଟକର୍ମକୃତ୍ ହୋଇ ଚାଲିପାର, ତାହାହିଁ କର। ଏହି ତପସ୍ୟାରେ ଆଳସ୍ୟ ଓ ତନ୍ଦ୍ରାର ପ୍ରଶ୍ରୟ ଦିଅନାହିଁ। ତା ସହିତ ସମସ୍ତେ ଯାହାଦ୍ୱାରା ତୃପ୍ତ ହୋଇଉଠନ୍ତି, ସେ ଦିଗକୁ ମଧ୍ୟ ନଜର ରଖ। ଇଷ୍ଟଭୃତି ଓ ମନ୍ତ୍ର ଜପାଦି ଅର୍ଥାତ୍ ନାମଧ୍ୟାନ ଆଦି ନିରୋଳାରେ ହିଁ ହେଉ ଆଉ ତୁମର କର୍ମ ଭିତର୍ ଦେଇ ହିଁ ହେଉ – ତାହା କରିବ ହିଁ କରିବ। ଆଉ ଇଷ୍ଟଭରଣ ଓ ଇଷ୍ଟକରଣକୁ ତୁମର ମୂଳ ଜୀବନଦଣ୍ଡ ସ୍ୱରୂପ କରି ନିଅ। ଯଦି ଏପରି କରି ଚାଲ, କିଛି ଦିନ ଚାଲୁ ଚାଲୁ ଦେଖିବ – ଦୋଷ ଗୁଡ଼ିକର ନିରସନ ହୋଇ ଗୁଣ-ସମୃଦ୍ଧିହିଁ ତୁମର ଚରିତ୍ରଗତ ହୋଇଉଠିଛି, ତୁମର ଏହି ଦେବଦ୍ୟୋତନା କେତେ ହୃଦୟକୁ ଯେ ଉଚ୍ଛଳ କରି ତୋଳିଛି ତାର ଇୟତ୍ତା ନାହିଁ। ଏହି ଉର୍ଜ୍ଜୀ ଦୀପନା ତୁମର ହୃଦୟକୁ ଉଚ୍ଛଳ କରି କୃତି-ଚଳନ-ବିଭୂତି ନେଇ ଇଷ୍ଟାର୍ଥେ ବିନ୍ୟସ୍ତ ହୋଇଉଠୁ, ସ୍ୱଭାବ ତୁମର ସ୍ୱର୍ଗ-ସୁରଭିରେ ଭରି ଉଠୁ।

ଆ.ପ୍ର. ୪/୨୩.୧୦.୧୯୪୨

**ପ୍ର. – ଇଷ୍ଟଙ୍କ ପାଇଁ କରଣୀୟଗୁଡ଼ିକ ସଂସାରିକ କାର୍ଯ୍ୟକର୍ମର ଭିତରେ ମଧ୍ୟ କିପରି ଭାବରେ ଖିଆଲ ରଖିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ସଂସାରିକ କାର୍ଯ୍ୟକର୍ମ ଆପଣମାନେ ଯେତେବେଳେ କରିବେ ତା ଭିତରେ ମଧ୍ୟ ଲକ୍ଷ୍ୟ ରଖିବେ, ତା ଭିତର ଦେଇ ଆପଣଙ୍କର ଇଷ୍ଟାର୍ଥୀ କରଣୀୟଗୁଡ଼ିକ କେତେଟା ସହଜ କରିନେଇ ପାରନ୍ତି। ହୁଏତ ଘର ପାଇଁ କୋଇଲା ଗୋଦାମରୁ କୋଇଲା କିଣିବାକୁ ଯାଇଛନ୍ତି, ଦୋକାନଦାର ସହିତ ଭାବସାବ କରି ଏପରିଭାବରେ ତାକୁ ହୁଏତ ଉଦ୍‌ବୁଦ୍ଧ ଓ ଅନୁପ୍ରାଣୀତ କରିଲେ ଯେ, ତା ମାଧ୍ୟମରେ ହିଁ ଆଶ୍ରମ ପାଇଁ ଅଜସ୍ର କୋଇଲା ସଂଗ୍ରହର ଗୋଟିଏ ରାସ୍ତା କରି ପକାଇଲେ। କେବଳ କୋଇଲା ସଂଗ୍ରହ କରି କ୍ଷାନ୍ତ ହେଲେ ନାହିଁ, ଲୋକଟିର ଯାହାଦ୍ୱାରା ପ୍ରକୃତରେ ଉପକାର ହୁଏ, ସେଥିପାଇଁ ତାକୁ ଇଷ୍ଟପଥ ଅର୍ଥାତ୍ ମଙ୍ଗଳର ପଥ ଧରାଇ ଦେଲେ। ଖିଆଲ ରହିଲେ ଏପରି କୌଣସି କାମ ନାହିଁ ଯାହା ଭିତର ଦେଇ ଇଷ୍ଟସ୍ୱାର୍ଥପ୍ରତିଷ୍ଠା କରାଯାଇ ନ ପାରେ। ସବୁ ସମୟରେ ଏହି planeରେ (ଭାବଭୂମିରେ) ରହିବା ଦରକାର। ଆ.ପ୍ର. ୪/୨୩.୧୦.୧୯୪୨

**ପ୍ର. – ଇଷ୍ଟାନୁସରଣରେ ଶରୀର ଯଦି ବାଧା ହୋଇ ଛିଡ଼ା ହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କ ପ୍ରତି ନିଶା ହେଲେ, ଅବାଧ ଅନୁରାଗ ହେଲେ, ଶରୀର ସେତେବେଳେ ଆପେ ଆପେ ରାସ୍ତାକୁ ଆସେ। ସେତେବେଳେ ଏପରି ଗୋଟିଏ vital flowର (ଜୀବନୀ ପ୍ରବାହର) outburst (ଆବିର୍ଭାବ) ହୁଏ ଯେ, ଦୁର୍ବଳ ଶରୀରରେ ଯେପରି ହଜାର ହାତୀର ବଳ ଦେଖାଦିଏ। Unending energy (ଅଫୁରନ୍ତ ଶକ୍ତି)ର ଯୋଗାଣ ସେ ପାଏ। କିନ୍ତୁ ସମସ୍ତଙ୍କର ତ ଏପରି ହୁଏନାହିଁ। ତା ନ ହେଲେ ମଧ୍ୟ, ଇଷ୍ଟ ଓ ଇଷ୍ଟକର୍ମ ଯାହାର ପ୍ରିୟ, ସେ ଇଷ୍ଟାର୍ଥେ ତାର ଶରୀର ଧୀରେ ଧୀରେ ସୁସ୍ଥ ଓ ସହନପଟୁ କରି ତୋଳିବାକୁ ଚେଷ୍ଟା କରେ। ଯାହାଦ୍ୱାରା ଶରୀର ଅସୁସ୍ଥ ହୋଇ ପଡ଼ିବାର ସମ୍ଭାବନା ଥାଏ, ସେପରି ଆହାର, ବିହାର, ଚିନ୍ତା, ଚଳନ ସେ କରେ ନାହିଁ। ଆ.ପ୍ର. ୪/୨୩.୧୦.୧୯୪୨

**ପ୍ର. – ଇଷ୍ଟଙ୍କଠାରେ ବା ଭଗବାନଙ୍କ ଠାରେ ନିର୍ଭରତା କେତେବେଳେ ନିଖୁଣ ହୁଏ ? ଏପରି ଗୋଟିଏ ଧାରଣା ଅଛି ଯେ, କାହାରି ଉପରେ ନିର୍ଭର କରିବାମାନେ କିଛି ନ କରି ନିଶ୍ଚିନ୍ତ ରହିବା। ତା' କ'ଣ ଠିକ୍ ?**

**ଶ୍ରୀଶ୍ରୀଠାକୁର** – ଭଗବାନଙ୍କ ...ଗୋଟିଏ ନାମ ବିଧି। ବିଧିକୁ ଆମେ ଯେତେଟା ଭରଣ କରୁ, ପୂରଣ କରୁ, ପାଳନ କରୁ, ପୋଷଣ କରୁ – ଗୋଟିଏ କଥାରେ ଅମ୍ଭେମାନେ ଯେତେଟା ବିଧିମାଫିକ୍ ଚାଲୁ, ସେତେହିଁ ଆମ୍ଭମାନଙ୍କର ନିର୍ଭରତା ନିଖୁଣ ହୁଏ, ଏବଂ ସେତେବେଳେ



ଆମ୍ଭେମାନେ ବିହିତ ଫଳ ସମ୍ବନ୍ଧରେ ନିଶ୍ଚିତ ବା ନିଶ୍ଚିନ୍ତ ହୋଇପାରୁ। ଏହା ମଧ୍ୟରେ ଆଳସ୍ୟ ବା ନ କରିବର ସ୍ଥାନ କେଉଁଠି ତାହା ତ ବୁଝିପାରେ ନାହିଁ। ପରମପିତାଙ୍କ ଦୟାରୁ ଜଗତ ବିଧୃତ ହୋଇଅଛି, କିନ୍ତୁ ଏହି ଧୃତି ପଛରେ ଅଛି ବିହିତ କୃତି ବା କରଣ। ସେଥିପାଇଁ କରଣ ଛଡ଼ା ଧାରଣ ବା ଧର୍ମ ନାହିଁ। ଧର୍ମ ରାଜ୍ୟରେ ଆଳସ୍ୟର ଆସର ନାହିଁ, ଫାଙ୍କିବାଜିର କାରବାର ନାହିଁ। ଅଛି continued, responsible, regulated, enthusiastic, active tenor (ଅବିରାମ, ଦାୟିତ୍ୱପୂର୍ଣ୍ଣ, ନିୟନ୍ତ୍ରିତ, ଉତ୍‌ସାହଦୀପ୍ତ, ବିହିତ କର୍ମ ମୁଖରତା), and that to feed and fulfil the Superior Beloved (ଏବଂ ତାହା ପ୍ରେଷ୍ଠଙ୍କର ଭରଣ ଓ ପୂରଣାର୍ଥେ)। ଆ.ପ୍ର. ୪/୨୩.୧୦.୧୯୪୨

**ପ୍ର. – ଇଷ୍ଟଙ୍କର ବାଣୀ ଓ ଉପଦେଶ କେତେବେଳେ ଠିକ୍ ଠିକ୍ ଭାବରେ ପ୍ରଚାର ହୁଏ ?**

**ଶ୍ରୀଶ୍ରୀଠାକୁର** – ବାଣୀ ଓ ଉପଦେଶ ଗୁଡ଼ିକ ମୁହଁରେ ଆବୃତ୍ତି କରି ବୁଲିଲେ ତ ଆଉ ସେଗୁଡ଼ିକ ପ୍ରଚାର ହୁଏ ନାହିଁ। ସେଗୁଡ଼ିକ ଅଭ୍ୟାସ, ବ୍ୟବହାର ଓ ଚରିତ୍ରଗତ କରି ପକାଇବାକୁ ହୁଏ, ଏହି ସୂତ୍ର ଧରିହିଁ ସେଗୁଡ଼ିକ ବଞ୍ଚି ରହିଥାଏ ଓ ବିସ୍ତାର ଲାଭ କରିଥାଏ। କେବଳ ମୁହଁର କଥାରେ ବା ପୋଥିର ପୃଷ୍ଠାରେ ସେଗୁଡ଼ିକର ଅସ୍ତିତ୍ୱ ଜୀବନ୍ତ ହୋଇ ଉଠେ ନାହିଁ।
ଆ.ପ୍ର. ୪/୨୪.୧୦.୧୯୪୨

**ପ୍ର. – ଇଷ୍ଟଙ୍କର କଥା ଯେଉଁମାନେ ଜାଣନ୍ତି ନାହିଁ ତାଙ୍କର ଯାଜନ କ'ଣ କେବଳ ସେହିମାନଙ୍କ ପାଖରେ କରିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ଯେଉଁମାନେ ଜାଣନ୍ତି ସେମାନଙ୍କ ପରସ୍ପର ଭିତରେ ମଧ୍ୟ ଆଳାପ-ଆଲୋଚନା ଯେତେ ବେଶୀ ହୁଏ, ସେତେ ହିଁ ଭଲ। ଜାଣିବାର ଶେଷ ନାହିଁ, ଯେତେ ଆଳାପ ଆଲୋଚନା କରାଯାଏ, ସେତେ ହିଁ fine points (ସୂକ୍ଷ୍ମ ବିଷୟ) ବାହାରୁଥାଏ। ଆଉ ତାହା ହୋଇଉଠେ ଗୋଟିଏ ଉପଭୋଗ୍ୟ ବିଷୟ। ତାଛଡ଼ା ଇଷ୍ଟପ୍ରାଣ ଯିଏ, ସେ ପରିବେଶର ପାଖରେ କେବେବି passive (ନିଷ୍କ୍ରିୟ) ହୋଇ ରହିବ ନାହିଁ। ...ନିଜକୁ ଓ ପରିବେଶକୁ ପ୍ରତିନିୟତ adjust (ନିୟନ୍ତ୍ରଣ) କରିବାର ଚେଷ୍ଟାରେ ରହିବାକୁ ହେବ। ନିଜର କାହାରି ଭିତରେ କୌଣସି undesirable knot (ଅବାଞ୍ଛନୀୟ ଗଣ୍ଠି) ଦେଖିବା ସତ୍ତ୍ୱେ ମଧ୍ୟ ଯଦି ଚୁପ୍ କରି ରୁହନ୍ତି, ସ୍ଥାନକାଳପାତ୍ର-ଅନୁଯାୟୀ ତାର ନିରସନରେ ଯାହା କରଣୀୟ ତା ଯଦି ନ କରନ୍ତି, କିମ୍ବା ତଥାକଥିତ ଭଲମଣିଷ ପରି ପ୍ରଶୟ ଦିଅନ୍ତି, ତାହେଲେ କିନ୍ତୁ ଆପଣ ନିଜେ ହିଁ ନିଜର କ୍ଷତି କରିଲେ। ଦିନେ ଦେଖିବେ, ସେହି knot (ଗଣ୍ଠି) ଆପଣଙ୍କର ଅଜାଣତରେ

ଆପଣଙ୍କୁ ହିଁ କାବୁ କରି ବସିବ। ପଣି ଯାହାର knot (ଗଣ୍ଠି)ଟା ଖୋଲି ଦେଲେ ନାହିଁ, ସେ ତ କଷ୍ଟ ପାଇବ ହିଁ, ଏବଂ ସେ ମଧ୍ୟ ପୁଣି ତାର ପରିବେଶକୁ infect (ସଂକ୍ରମିତ) କରିବାକୁ ଲାଗିବ। ଏହି ଭାବରେ ସମାଜରେ evil (ଦୋଷ ବା ଅସତ୍) spread (ବିସ୍ତାରଲାଭ) କରି ଚାଲିବ। ତାହା ହେଲେ ହିଁ ଦେଖନ୍ତୁ, ନିଜ ନିଜ ଭିତରେ ମଧ୍ୟ ପ୍ରତିନିୟତ ସଜାଗ ଯାଜନର କେତେଟା ପ୍ରୟୋଜନ।

ଆ.ପ୍ର. ୪/୨୪.୧୦.୧୯୪୨

**ପ୍ର. – ଇଷ୍ଟାନୁସରଣରେ ମୁଷ୍ଟିମେୟ ଦୁଇ ଚାରି ଜଣ ଲୋକ ଯଦି ପ୍ରକୃତରେ ଚାଲନ୍ତି, ତା' ଦ୍ୱାରା କ'ଣ ପ୍ରବଳ ବିରୁଦ୍ଧ ପରିବେଶର କୌଣସି କଲ୍ୟାଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ସତ୍-ଚରିତ୍ରର ଦୃଷ୍ଟାନ୍ତରେ ମଣିଷର କଲ୍ୟାଣ ହୁଏ ହିଁ। ତେବେ ସତ୍ ଲୋକ ଯେତେ ଶକ୍ତିମାନ ଓ କୃତି ହୁଏ ସେତେହିଁ ଭଲ। ମଣିଷ ଚାହେଁ ଜୀବନ, ଜୟ, ଯଶ, ଐଶ୍ୱର୍ଯ୍ୟ, ଗୌରବ। ଯଦି ଦେଖେ, ସତ୍‌ପଥରେ ରହି ଲୋକମାନେ ଏହିଗୁଡ଼ିକର ଅଧିକାରୀ ହେଉଛନ୍ତି, ତା' ହେଲେ ତାକୁ ମୂଲ୍ୟ ଦିଏ। ପୁଣି ଯଦି ଦେଖେ କୌଣସି ମଣିଷ ଇଷ୍ଟଙ୍କୁ ନେଇ ଆନନ୍ଦରେ ବିଭୋର ହୋଇଅଛି, ଜାଗତିକ ଲାଭକ୍ଷତିର କୌଣସି ହିସାବ ହିଁ କରେ ନାହିଁ, ତା ହେଲେ ତାକୁ ମଧ୍ୟ ମନେମନେ ଶ୍ରଦ୍ଧା କରେ। କିନ୍ତୁ ଯଦି କାହାକୁ ଦେଖେ ଯେ, ସତ୍‌ପଥରେ ଚାଲିଛି ଅଥଚ ଜୀବନରେ କୃତକାର୍ଯ୍ୟ ନୁହେଁ, ଏବଂ ସେହି ଅକୃତକାର୍ଯ୍ୟତା ପାଇଁ ମନେ ମନେ ଅବଶୋଷ, ତା' ହେଲେ ତାଦ୍ୱାରା କିନ୍ତୁ ମଣିଷ ଉଦ୍‌ବୁଦ୍ଧ ଓ ଅନୁପ୍ରାଣୀତ ହୁଏନାହିଁ। ...ତେବେ ଇଷ୍ଟାନୁରାଗୀ ଯିଏ, ତାଦ୍ୱାରା ଲୋକଙ୍କର କଲ୍ୟାଣ ହୁଏହିଁ। କାରଣ, ସେ ଜାଣେ କିପରି ମଣିଷକୁ ସତ୍‌ରେ ଆକୃଷ୍ଟ କରିବାକୁ ହୁଏ। ଇଷ୍ଟ ଯାହାର ଆନନ୍ଦର ବସ୍ତୁ, ରସର ବସ୍ତୁ, ଜୀବନ ଯାହାର ସତ୍ ଉଦ୍ଦୀପନାରେ ଉଦ୍ଦାମ, ମଣିଷ ନିଜେ ହିଁ ତା ପାଖକୁ ଯାଏ ସ୍ଫୁର୍ତ୍ତିର ଆଶାରେ, ତାର ପ୍ରାଣଢୋଳା ସ୍ପର୍ଶରେ ପ୍ରବୁଦ୍ଧ ହେବାର ଆଶାରେ। ଏହି ଲୋଭ ସମସ୍ତଙ୍କର ଅଛି। ଆଉ ଏହି ମିଳାମିଶାର ଭିତର ଦେଇ ଯେତେହିଁ ମଣିଷର ତାଙ୍କ ଉପରେ ଶ୍ରଦ୍ଧା ବଢ଼ିଯାଏ, ସେତେହିଁ ତାଙ୍କ ପଥରେ ପଥିକ ହୁଏ। ଅନେକେ ଅଛନ୍ତି ଦୁଷ୍ଟ ପ୍ରକୃତିର, ସେମାନେ ଯେତେବେଳେ ହିଁ ବୁଝନ୍ତି ଯେ – କାହାପାଖକୁ ଗଲେ ନିଜର ପ୍ରବୃତ୍ତି ଦେହରେ ହାତ ମାରିବାକୁ ହେବ, ତତ୍‌କ୍ଷଣାତ୍ ଅପସରି ଯାଆନ୍ତି। ସେମାନେ ଦରକାର ମୁତାବକ ସତ୍‌ଲୋକଙ୍କୁ utilise (ବ୍ୟବହାର) କରିବାକୁ ଚେଷ୍ଟା କରନ୍ତି। ଉପାୟ ନ ପାଇଲେ ସେମାନେ ଆତ୍ମନିୟନ୍ତ୍ରଣର କଥା ଭାବନ୍ତି ନାହିଁ। ସେ ଯାହାହେଉ ଇଷ୍ଟାନୁରାଗୀ ଯେଉଁମାନେ, ସତ୍ ଯେଉଁମାନେ, ସେମାନଙ୍କର ସଂହତି ଯେତେ ବଢ଼ିବ ସେତେହିଁ ମଣିଷ ଇଷ୍ଟୀଚଳଣୀର କଲ୍ୟାଣକର ପ୍ରଭାବ ସମ୍ବନ୍ଧରେ ସଚେତନ ହେବେ। ...ତୁମେ ବିଚ୍ଛିନ୍ନ ହୋଇ ରୁହନାହିଁ, ପ୍ରତ୍ୟେକ ପ୍ରତ୍ୟେକଙ୍କର ହୋଇଉଠ, ପ୍ରତ୍ୟେକେ ପ୍ରତ୍ୟେକଙ୍କ ପାଇଁ କର, ତୁମର ଏହି ଜମାଟ ବାନ୍ଧା ରକମଟା ଦେଖିଲେ ମଣିଷ ଭରସା ପାଇବ। ଜଗତ ମଧ୍ୟରେ ଈଶ୍ୱରଙ୍କର ସକ୍ରିୟ ଅସ୍ତିତ୍ୱ ବେଶୀ କରି ଅନୁଭବ କରିବ।



ଆ.ପ୍ର. ୪/୨୪.୧୦.୧୯୪୨

**ପ୍ର. – ଇଷ୍ଟାନୁସରଣର ମଧ୍ୟଦେଇ ମଣିଷର ଭଲ କରାଯାଏ କେତେବେଳେ ?**

**ଶ୍ରୀଶ୍ରୀଠାକୁର** – ମଣିଷର ଭଲ କରିବାକୁ ଗଲେ ଦରକାର ଇଷ୍ଟଙ୍କ ଠାରେ ଅଟୁଟ ନିଷ୍ଠାସମ୍ପନ୍ନ ହେବା ଓ ମଣିଷକୁ ମଧ୍ୟ ସେହିପରି କରିତୋଳିବା। ଇଷ୍ଟଙ୍କଠାରେ ଯିଏ ଅଟୁଟ ନିଷ୍ଠାସମ୍ପନ୍ନ ନୁହେଁ, ଯାହାର ଆତ୍ମନିୟନ୍ତ୍ରଣ ନାହିଁ, ବ୍ୟକ୍ତିତ୍ୱ ଯାହାର ଗଢ଼ିଉଠି ନାହିଁ, ତାହାଦ୍ୱାରା ମଣିଷର କୌଣସି ମହତ କଲ୍ୟାଣ ହୋଇପାରେ ବୋଲି ମୋର ମନେହୁଏ ନାହିଁ। କାରଣ, ଯିଏ ନିଜର ପ୍ରବୃତ୍ତି ଦେହରେ ହାତ ଲଗାଇ ନାହିଁ, ସେ ଅନ୍ୟର ପ୍ରବୃତ୍ତି ଦେହରେ ହାତ ଲଗାଇ ପାରିବ ନାହିଁ।

ଆ.ପ୍ର. ୪/୨୪.୧୦.୧୯୪୨

**ପ୍ର. – ଇଷ୍ଟଙ୍କ ପ୍ରତି କାହାର ନିଷ୍ଠା ଅଛି କି ନାହିଁ କିପରି ବୁଝାଯାଏ ?**

**ଶ୍ରୀଶ୍ରୀଠାକୁର** – ନିଷ୍ଠା ବହୁତ ବଡ଼ ଜିନିଷ। ଇଷ୍ଟଙ୍କର ପ୍ରୟୋଜନରେ ଦୁଃଖକଷ୍ଟ କେତେଟା ହସି ହସି ସହି ପାରେ, ସେଥିରେ ପୁଣି ମନଟା କେତେ ପରିମାଣରେ ଅକ୍ଷତ ରହେ, ତାହା ହିଁ ହେଲା ନିଷ୍ଠାର ଗୋଟିଏ ମସ୍ତବଡ଼ ପରଖ। ଅହଂକାର, ଅଭିମାନରେ ଆଘାତ ଲାଗିବ, ସୁଖ ସ୍ୱାଚ୍ଛନ୍ଦରେ ବ୍ୟାଘାତ ହେବ, ପିଲାପିଲିଙ୍କୁ ନେଇ କ୍ଷୁଧା-ତୃଷ୍ଣାର ଜ୍ୱାଳା ସହ୍ୟ କରିବାକୁ ହେବ, ଚତୁର୍ଦ୍ଦିଗରୁ ନିର୍ଯ୍ୟାତନ ଚାଲିବ, ଘରର ଲୋକମାନେ ଅନୁଯୋଗ, ଅଭିଯୋଗ କରିବେ, ତଥାପି ଅଚଳ, ଅଟଳ ରହିବାକୁ ହେବ।

ଆ.ପ୍ର. ୪/୧୨.୧୨.୧୯୪୨

**ପ୍ର. ଇଷ୍ଟାନୁସରଣର ମଧ୍ୟ ଦେଇ ମଣିଷ କେତେବେଳେ ଠିକ୍-ଠିକ୍ ଭାବରେ ମଣିଷକୁ ଭଲପାଇପାରେ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଖୁବ୍ ଇଷ୍ଟନିଷ୍ଠ ନ ହେଲେ ମଣିଷକୁ ସକ୍ରିୟ ଭାବରେ ଭଲ ମଧ୍ୟ ପାଇପାରେ ନାହିଁ, ତାର ଭଲ ମଧ୍ୟ କରିପାରେ ନାହିଁ। ହୁଏତ ବୃତ୍ତିରେ ତେଲ ମାଲିସ୍ କରି ଚାଲେ, ନ ହେଲେ ଦମ୍ଭ, ଦର୍ପ, ଅଭିମାନରେ ମଣିଷକୁ କ୍ଷୁବ୍ଧ ଓ କ୍ଷୁର୍ଣ୍ଣ କରି ତୋଳେ, କିନ୍ତୁ sweet (ମିଠା) ଅଥଚ uncompromising (ଆପୋଷରଫା ହୀନ) ହୋଇ ନିଜର ଚରିତ୍ର ପ୍ରଭାବରେ ତାକୁ benignly enchant (ହିତପ୍ରସୁଭାବରେ ମୁଗ୍ଧ) କରି ରଖିପାରେ ନାହିଁ। ଯେପରି ଧର, ତୁମର ସେବା, ସହାନୁଭୂତି ଓ ସଦ୍‌ବ୍ୟବହାରରେ ଜଣେ ମଣିଷ ତୁମ ପ୍ରତି ମୁଗ୍ଧ ହୋଇରହିଲା, କିନ୍ତୁ ଏହି ମୁଗ୍ଧତା ଯଦି ସେଠାରେ ହିଁ ଲୟ ହୁଏ, ତୁମେ ଯଦି ତାକ

ଶ୍ରେୟପ୍ରସୂ କରିତୋଳି ନ ପାର, ଊର୍ଦ୍ଧ୍ୱଗାମୀ କରି ତୋଳି ନ ପାର – ତୁମର ଶ୍ରେୟମୁଖିନତା ଓ ଊର୍ଦ୍ଧ୍ୱଗାମୀତାର ଭିତର ଦେଇ – ତାହେଲେ ତାହା ଅକଲ୍ୟାଣର ମଧ୍ୟ କାରଣ ହୋଇପାରେ। କାରଣ, ସେ ହୁଏତ ଏହି ମୁଗ୍ଧତାର ଫଳରେ ତୁମର defect (ଦୋଷ) ଗୁଡ଼ିକ ମଧ୍ୟ imbibe (ଅନୁସରଣ) କରିବ। କିନ୍ତୁ ତୁମେ ଯଦି ସର୍ବଦା ଆଦର୍ଶାନୁଗ ଆତ୍ମନିୟନ୍ତ୍ରଣରେ ବ୍ୟାପୃତ ଥାଅ ଏବଂ ତାରି ଭିତରେ ମଧ୍ୟ ସେହି ପ୍ରବୋଧନା ଯୋଗାଅ, ତାହା ହେଲେ ହିଁ ସେ ବାସ୍ତବ ମଙ୍ଗଳର ଅଧିକାରୀ ହୋଇପାରେ। ଆଉ ତୁମେ ଯେତେହିଁ ତାର ଶ୍ରଦ୍ଧାକୁ ତୁମଠାରେ ଆବଦ୍ଧ ରଖିବାକୁ ନ ଦେଇ ଇଷ୍ଟାଭିଗମନରେ ପରିଚାଳିତ କରିଦେବ, ସେତେହିଁ ଦେଖିବ, ତାର ଶ୍ରଦ୍ଧା ମଧ୍ୟ ତୁମଠାରେ ଉତ୍ତାଳ ହୋଇ ଉଠିବାକୁ ଲାଗିବ। ଅନ୍ୟର ଶ୍ରଦ୍ଧା ଲାଭ କରି ଯେଉଁମାନେ ସେହି ଶ୍ରଦ୍ଧାକୁ promote (ଉନ୍ନୀତ) କରିପାରନ୍ତି ନାହିଁ, transfer (ସ୍ଥାନାନ୍ତରିତ) କରିପାରନ୍ତି ନାହିଁ, ସେମାନେ କିନ୍ତୁ ନିଜେହିଁ ନିଜର କବର ଖୋଳନ୍ତି। ମଣିଷର becoming (ବିବର୍ଦ୍ଧନ)ର ଚାହିଦା inherent (ସ୍ୱାଭାବିକ)। ତୁମ ପ୍ରତି ଶ୍ରଦ୍ଧା ନ୍ୟସ୍ତ କରି, ତୁମକୁ sincerely (ଅକପଟ) ଭାବରେ ଅନୁସରଣ କରି ମଧ୍ୟ ଯଦି କେହି ଦେଖେ ଯେ ତାର କୌଣସି ବିକାଶ ହେଉନାହିଁ, ସେ କିନ୍ତୁ ସେତେବେଳେ ରାଗି ଉଠିବ, ତୁମର ଦୋଷ-ଦର୍ଶନ ଓ ନିନ୍ଦା କରିବା ଆରମ୍ଭ କରି ଦେବ। ଯିଏ ତୁମର ଅନୁଗତ ଥିଲା, ସେ ହିଁ ତୁମର ଶତ୍ରୁ ହେଇଉଠିବ। ସେଥିପାଇଁ ହୁସିୟାର ହୋଇ ଚାଲିବାକୁ ହୁଏ।

ଆ.ପ୍ର. ୪/୧୨.୧୨.୧୯୪୨

**ପ୍ର. – ଇଷ୍ଟାନୁସରଣର ସ୍ୱାର୍ଥ ପାଇଁ ଝଗଡ଼ା ଓ ଶତ୍ରୁତା ଏଡ଼ାଇ କିପରି ଭାବରେ ଅସତ୍‌-ନିରୋଧ କରିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ଅସତ୍ ବା ଅନ୍ୟାୟର ନିରୋଧ ଓ ନିୟନ୍ତ୍ରଣର ନାନା ପ୍ରକାର କୌଶଳ ଅଛି। ସବୁ ସମୟରେ ଯେ ରୁଦ୍ରମୂର୍ତ୍ତି ଧରିବାକୁ ହେବ, ତାର କୌଣସି ମାନେ ନାହିଁ। କିନ୍ତୁ ଯେଉଁଠାରେ ପ୍ରୟୋଜନ, ସେଠାରେ ଯଦି ତୁମେ ରୁଦ୍ରମୂର୍ତ୍ତି ଧରି ନ ପାର, ତାହେଲେ ତାହା କିନ୍ତୁ ତୁମର ଦୁର୍ବଳତା। ପଛରେ ଲୋକେ କିଛି କହିବେ ଏହି ଭୟରେ ତୁମେ ଯଦି ପଛେଇ ଯାଅ, ତେବେ ତୁମେ ଲୋକନିନ୍ଦା ଓ ଆତ୍ମଗ୍ଲାନି କୌଣସିଟି ଠାରୁ ରିହାତି ପାଇବ ନାହିଁ। ...ନିଜକୁ ନ ହରାଇ, ତେଜବୀର୍ଯ୍ୟ ନେଇ ଦୃଢ଼ତାର ସହିତ ଇଷ୍ଟାର୍ଥେ ଯଦି ପ୍ରତିରୋଧ କରାଯାଏ, ସେଠାରେ ଝଗଡ଼ା ହେବ କାହିଁକି ? ଝଗଡ଼ା କରିବାକୁ ଦୁଇପକ୍ଷ ଦରକାର, ତୁମେ ଝଗଡ଼ା କରିବାକୁ ଯାଇନାହଁ, ତୁମେ ଯାଇଛ ମଙ୍ଗଳଲିପ୍ସୁ ହୋଇ। କିନ୍ତୁ ତାର ଝଗଡ଼ାର ସଂଘାତରେ ଉତ୍ତେଜିତ ହୋଇ ନିଜର ଉଦ୍ଦେଶ୍ୟ ଭୁଲିଯାଇ ତୁମେ ଯଦି ପ୍ରତିକ୍ରିୟାଶୀଳତାରେ ଅବାନ୍ତର ଉପରାସ୍ତାରେ ବିଭ୍ରାନ୍ତ ହୁଅ, ତାହେଲେ ସେଠାରେ ତ ତୁମେ ହାରିଗଲ। ଇତରତା



ସୁଧାରିବାକୁ ଯାଇ ତୁମେ ଯଦି ନିଜେହିଁ ଇତରତାର କବଳରେ ପଡ଼ିଯାଅ, ତାହେଲେ ଇତରତାରହିଁ ତ ଜୟ-ଜୟକାର ହେବ। ତୁମର କୃତିତ୍ୱ ସେଠାରେ କେଉଁଠି ? ସେଥିପାଇଁ ଅସତ୍-ନିରୋଧ କରିବାକୁ ଗଲେ selfcontrol (ଆତ୍ମସଂଯମ) ଦରକାର। ତେଜ ଓ କ୍ରୋଧ କିନ୍ତୁ ଏକ ଜିନିଷ ନୁହେଁ।

ଆ.ପ୍ର. ୪/୨୯.୧୨.୧୯୪୨

**ପ୍ର. – ଇଷ୍ଟଙ୍କର ଦୀକ୍ଷା କୌଣସି ପ୍ରତ୍ୟାଶା-ପୂରଣର ଆଶାରେ ଯଦି କେହି ନିଏ ବା କୌଣସି ପ୍ରତ୍ୟାଶା-ପୂରଣର ପ୍ରଲୋଭନ ଦେଖାଇ ଯଦି କାହାକୁ ଦୀକ୍ଷା ଦିଆଯାଏ, ତେବେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ପ୍ରକୃତ ଦୀକ୍ଷାରେ ମଣିଷ ଭିତରେ ଦକ୍ଷତାର ସଞ୍ଚାର ହୁଏ, ଅବଶ୍ୟ ଯଦି ଠିକ୍ ଭାବରେ ଅନୁଶୀଳନ କରେ। ଆମ ଦେଶରେ ଧର୍ମ ନାମରେ ନ କରି ପାଇବାର ବୁଦ୍ଧିଟା ପ୍ରବଳ। ନ କରି ଅଲୌକିକ ଭାବରେ ପ୍ରତ୍ୟାଶା-ପୂରଣର ଧନ୍ଦାରେ ପଡ଼ି ଯଦି ମଣିଷ ଦୀକ୍ଷା ନିଏ, ତାହେଲେ କିନ୍ତୁ କିଛି ବି ହୁଏ ନାହିଁ। ତାଦ୍ୱାରା ମଣିଷ ଆହୁରି ଅକର୍ମଣ୍ୟ ଓ ଅଳସୁଆ ହୋଇପଡ଼େ। ତାଛଡ଼ା, ପ୍ରତ୍ୟାଶାରେ ଇଷ୍ଟଙ୍କୁ ଧରିଲେ, ପ୍ରତ୍ୟାଶା ହୋଇଥାଏ ମୁଖ୍ୟ, ଇଷ୍ଟ ହୁଅନ୍ତି ଗୌଣ। ଇଷ୍ଟ ଯଦି ଗୌଣ ହୁଅନ୍ତି, ତାଙ୍କୁ ଅନୁସରଣ କରିବାର ବୁଦ୍ଧି ହୁଏନାହିଁ। ସେଥିପାଇଁ ମଣିଷର becoming (ବୃଦ୍ଧି) ମଧ୍ୟ ହୁଏ ନାହିଁ। ତେଣୁ ଦୀକ୍ଷା ସମୟରେ ବିଶେଷ କରି ମଣିଷର ମୁଣ୍ଡରେ ଢୁକାଇ ଦେବକୁ ହୁଏ ଯେପରି ଇଷ୍ଟଙ୍କର ଅନୁସରଣ ଓ ଅନୁପୂରଣକୁ ହିଁ ମୁଖ୍ୟ କରି ଧରେ। ତା ନହେଲେ କିନ୍ତୁ ମଙ୍ଗଳ ହୁଏନାହିଁ।

ଆ.ପ୍ର. ୪/୨୯.୧୨.୧୯୪୨

**ପ୍ର. – ଇଷ୍ଟଙ୍କ ଠାରେ ଅହେତୁକୀ ଅନୁରାଗ ମାନେ କ'ଣ ?**

**ଶ୍ରୀଶ୍ରୀଠାକୁର** – ଅହେତୁକୀ ଅନୁରାଗ ମାନେ, ମୁଁ ତାଙ୍କୁ ଭଲପାଏ କିନ୍ତୁ କ'ଣ ପାଇଁ ଭଲପାଏ ତା ଜାଣେ ନାହିଁ। ଭଲ ନ ପାଇ ରହିପାରେ ନାହିଁ, ସେଥିପାଇଁ ଭଲପାଏ। ଆଉ କୌଣସି ଉଦ୍ଦେଶ୍ୟ ନାହିଁ। 'ମୋର ସ୍ୱଭାବ ଏହା – ତୁମ ଛଡ଼ା କିଛି ଜାଣେ ନାହିଁ।' ଇଷ୍ଟଙ୍କ ଠାରେ ଏହି ଅହେତୁକୀ ଭକ୍ତି ବା ଅନୁରାଗଠାରୁ ବଡ଼ ଜିନିଷ ମଣିଷ ଜୀବନରେ କିଛି ହିଁ ନାହିଁ। ଏହା ଯାହାର ହୁଏ, ତାର ଆପେ ହୋଇଯାଏ।

ଆ.ପ୍ର. ୪/୨୯.୧୨.୧୯୪୨

**ପ୍ର. – ଇଷ୍ଟାର୍ଥହିଁ ହେଉ ବା ନିଜ ପାଇଁ ହେଉ, କାହାର କୌଣସି ଦାନ, ସାହାଯ୍ୟ ବା ଦୟାର କ୍ଷେତ୍ରରେ କ'ଣ ଲକ୍ଷ୍ୟ ରଖିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ସବୁ ସମୟରେ ଲକ୍ଷ୍ୟ ରଖିବାକୁ ହୁଏ, କାହାର କୌଣସି ଦାନ, ସାହାଯ୍ୟ ବା ଦୟା ପାଇଁ ତାକୁ କୃତଜ୍ଞତା ଦେଖାଇବାକୁ ଯାଇ ଇଷ୍ଟଙ୍କର ବ୍ୟାପାରରେ ଯେପରି

ଆପୋଷରଫା କରିବାକୁ ନ ହୁଏ। ଭୀଷ୍ମ ଯେଉଁ ଦୁର୍ଯ୍ୟୋଧନର ଅନ୍ନଗ୍ରହଣ କରୁଥିଲେ ବୋଲି ଯୁଦ୍ଧରେ କୌରବ ପକ୍ଷରେ ଯୋଗଦାନ କଲେ, ଶ୍ରୀକୃଷ୍ଣଙ୍କ ପାଖକୁ ଆସି ମଧ୍ୟ ପାଣ୍ଡବଙ୍କ ପକ୍ଷରେ ଛିଡ଼ାହୋଇ ପାରିଲେ ନାହିଁ, ଏହା ଲୋକଧର୍ମର ଦିଗରୁ ସମର୍ଥନୀୟ ହେଲେ ମଧ୍ୟ ଶାଶ୍ୱତ ଧର୍ମାଦର୍ଶର ଦିଗରୁ ଅନୁମୋଦନ ଯୋଗ୍ୟ ନୁହେଁ। ସବୁ ବ୍ୟାପାରରେ ଏଦିଗକୁ ତୀକ୍ଷ୍ଣ ଦୃଷ୍ଟି ରଖି ଚାଲିବା ଦରକାର।

ଆ.ପ୍ର. ୪/୨୯.୧୨.୧୯୪୨

**ପ୍ର. – ଇଷ୍ଟଙ୍କ ଚରଣ-ପୂଜାର ତାତ୍ପର୍ଯ୍ୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଚରଣ-ପୂଜା ମାନେ ଚଳନ-ପୂଜା। ଇଷ୍ଟଙ୍କର ଚଳନକୁ ନିଜର ଜୀବନରେ ଆୟତ୍ତ କରି ସେହି ଚଳନର ପ୍ରସାରଣ ଓ ସମ୍ବର୍ଦ୍ଧନା ଯଦି ବାସ୍ତବରେ ନ ଘଟାଉ, ତାହେଲେ କିନ୍ତୁ ତାର ଚରଣ ପୂଜା ସାର୍ଥକ ହୁଏ ନାହିଁ। ...ଆମ୍ଭେମାନେ ଫାଙ୍କି ଦେଇ କାମ ହାସଲ କରିବାକୁ ଚାହୁଁ, କିନ୍ତୁ ବିଧି ବଡ଼ କଠିନ ପ୍ରହରୀ, କୌଣସି ଚାଲାକି ତା ପାଖରେ ଚାଲେ ନାହିଁ।

ଆ.ପ୍ର. ୪/୨୯.୧୨.୧୯୪୨

**ପ୍ର. – ଇଷ୍ଟଙ୍କ ପ୍ରସନ୍ନତା ପାଇବା ପାଇଁ କ'ଣ କରିବା ଉଚିତ ?**

**ଶ୍ରୀଶ୍ରୀଠାକୁର** – ପିତାମାତା ବା ତତ୍ତୁଲ୍ୟ ଯେଉଁମାନେ, ସେମାନେ ହେଲେ ଜୀବନ୍ତ ଗୃହଦେବତା। ଏହି ଜୀବନ୍ତ ଦେବତାର ପୂଜାରେ ଯଦି ତ୍ରୁଟି ହୁଏ, ତାହେଲେ ଅନ୍ୟ ଦେବତାଙ୍କ ପ୍ରସାଦ ଲାଭ କରାଯାଏ ନାହିଁ। ଇଷ୍ଟଙ୍କ ପ୍ରସନ୍ନତା ଯିଏ ଉତ୍ପାଦନ କରିବାକୁ ଚାହେଁ, ତାର ଉଚିତ – ଇଷ୍ଟାନୁଗ ସେବା ଓ ସଦ୍‌ବ୍ୟବହାରରେ ପିତାମାତାଙ୍କୁ ମଧ୍ୟ ପ୍ରସନ୍ନ କରିବାକୁ ଚେଷ୍ଟା କରିବା।

ଆ.ପ୍ର. ୪/୧.୧.୧୯୪୩

**ପ୍ର. – ଇଷ୍ଟଙ୍କଠାରେ ସକ୍ରିୟଭାବରେ ମୁଗ୍ଧ ରହିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଯେତେ Ideal-ରେ (ଇଷ୍ଟଙ୍କଠାରେ) actively enchanted (ସକ୍ରିୟଭାବରେ ମୁଗ୍ଧ) ରହେ, with all alert inquisitiveness to serve the environment (ପରିବେଶକୁ ସେବା କରିବାର ଚକିତ ସନ୍ଧିତ୍ସା ନେଇ), ତାର ଚଳନ ହୁଏ ସେତେ balanced ଓ resourceful (ସାମ୍ୟସଙ୍ଗତ ଓ ଉଦ୍ଭାବନ ମୁଖର) ତା'ର ଆଳାପ-ଆଲୋଚନା, ସେବାଚର୍ଯ୍ୟା, ଲୋକବ୍ୟବହାର ପରିସ୍ଥିତି ଓ ପରିବେଶର ପ୍ରୟୋଜନ-ଅନୁଯାୟୀ ନିତ୍ୟନୂତନ ଭଙ୍ଗିରେ ଆତ୍ମପ୍ରକାଶ କରି ଇଷ୍ଟସ୍ୱାର୍ଥପ୍ରତିଷ୍ଠାରେ ଅଗ୍ରସର ହୁଏ। ଆଉ, ଲୋକମାନେ ତାହା ଯେତେ ଦେଖନ୍ତି, ସେତେହିଁ ମୁଗ୍ଧ ହୋଇଯାଆନ୍ତି। ଭାବନ୍ତି – ଏହା ଭିତରେ ଐଶ୍ୱର୍ଯ୍ୟ ତ ଅଫୁରନ୍ତ, ଅଥଚ ଏତେ ନିରହଙ୍କାର ଓ ନିରଭିମାନ। ଏହା ଦେଖି ସତ୍ତାସମ୍ବର୍ଦ୍ଧନାର ରସଦ ପାଇବାର ଆଶାରେ ମଣିଷ ତା ପାଖକୁ ଭିଡ଼ିଯାଏ। ସତ୍ତାସମ୍ବର୍ଦ୍ଧନାର ରସଦଦାର



ଯଦି ହୋଇପାର, ଗଛ ତଳେ ବସି ରହିଲେ ମଧ୍ୟ ଲୋକମାନେ ଆସି ତୁମ୍ଭମାନଙ୍କୁ ଘେରି ଧରିବେ। ପ୍ରକୃତ ଯଦି ହୁଅ, ପ୍ରକୃତି ହିଁ ତୁମ୍ଭମାନଙ୍କର ଜୟଗାନ କରିବ। ଭାବିବାର କିଛି ନାହିଁ। knock and it will open (ଧକ୍‌କା ଦିଅ ଖୋଲିଯିବ)। ...ଭକ୍ତି, ବିଶ୍ୱାସ ଓ ଚରିତ୍ରର ସମ୍ପଦ ରହିଲେ ସାଧାରଣ ମାନେହିଁ ଅସାଧାରଣ ହୋଇଉଠନ୍ତି।

ଆ.ପ୍ର. ୫/୯.୧.୧୯୪୩

**ପ୍ର. – ଇଷ୍ଟାନୁସରଣରେ ପରିବେଶର ସେବା କରିବା ଅପରିହାର୍ଯ୍ୟ, କିନ୍ତୁ ଜଣକର ସାମର୍ଥ୍ୟରେ ତାହା କ'ଣ ସବୁ ସମୟରେ କରିବା ସମ୍ଭବ ?**

**ଶ୍ରୀଶ୍ରୀଠାକୁର** – ପୃଥିବୀରେ କୌଣସି ମଣିଷହିଁ ଏକ ନୁହେଁ। ତୁମର ହାତ, ଗୋଡ଼ ଚାରିଦିଗକୁ ମେଲାଇ ହୋଇରହିଛି। ଭଲପାଇ, ସେବା ଦେଇ ଯେତେ ଲୋକଙ୍କୁ ନିଜର କରିନେଇ ପାରିବ, ସେମାନଙ୍କର ପ୍ରତ୍ୟେକଙ୍କୁ ଦେଇ ପୁଣି ପରସ୍ପରର ସେବା କରାଯାଇପାରିବ। ଏହି କାରବାରରେ ଫେଲ ହେବାର ଭୟ କେତେବେଳେ ବି ନାହିଁ। ତୁମ୍ଭମାନଙ୍କର ପୁଞ୍ଜି ଅଫୁରନ୍ତ। ତେବେ, ସେ ପୁଞ୍ଜିକୁ ପରିଶ୍ରମ କରି ହାତକୁ ଆଣିବାକୁ ହେବ। ଅଳସୁଆ ବା ସ୍ୱାର୍ଥପର ହେଲେ ଆଉ ପାରିବ ନାହିଁ – ଇଷ୍ଟାର୍ଥୀ ଓ ଅନଳସକର୍ମୀ ହେଲେ ସବୁ ଦରଜା ତୁମପାଇଁ ଖୋଲା। ପରମପିତା ତୁମ୍ଭମାନଙ୍କୁ ପୂରଣ କରିବା ପାଇଁ, ଯୋଗାଣ ଦେବା ପାଇଁ ଉନ୍ମୁଖ ହୋଇ ରହିଛନ୍ତି, ହାତ ବଢ଼ାଇ ଗ୍ରହଣ ନ କଲେ ସେ କ'ଣ କରିବେ ?

ଆ.ପ୍ର. ୫/୨୭.୩.୧୯୪୩

**ପ୍ର. – ଇଷ୍ଟାନୁସରଣରେ ସବୁ ପ୍ରକାରର ସ୍ୱାର୍ଥପରତାହିଁ କ'ଣ ଦୋଷର ?**

**ଶ୍ରୀଶ୍ରୀଠାକୁର** – ଯେଉଁ ସ୍ୱାର୍ଥପରତା ମଧ୍ୟରେ ଇଷ୍ଟସ୍ୱାର୍ଥ ଓ ବୃହତ୍ତର ପରିବେଶର ସ୍ୱାର୍ଥର ସ୍ଥାନ ନାହିଁ, ଯେଉଁ ସ୍ୱାର୍ଥର ସହିତ ଇଷ୍ଟାର୍ଥ ଓ ସାମଗ୍ରିକ ସ୍ୱାର୍ଥର ଯୋଗ-ସଂଗତି ନାହିଁ, ଯେଉଁ-ସ୍ୱାର୍ଥ ବିଚ୍ଛିନ୍ନ ଓ ସ୍ୱତନ୍ତ୍ର ରକମରେ ଚଳିବାକୁ ଚାହେଁ, ଅନ୍ୟର ସ୍ୱାର୍ଥକୁ କ୍ଷୁନ୍ନ କରି, ସେହି ସ୍ୱାର୍ଥପରତା ବା ସ୍ୱାର୍ଥ ହିଁ ଦୋଷଦୁଷ୍ଟ। ଇଷ୍ଟାର୍ଥୀ ନ ହେଲେ ମଣିଷର ସ୍ୱାର୍ଥ-ସମ୍ବନ୍ଧରେ ବୋଧହିଁ ଗଜାଏ ନାହିଁ। ଇଷ୍ଟାର୍ଥୀ ହେଲେ ମଣିଷର ବୁଦ୍ଧି ହୁଏ ଇଷ୍ଟଙ୍କର ଇଚ୍ଛାକୁ ପୂରଣ କରିବା, ନିଜର ଓ ସମସ୍ତଙ୍କର ସତ୍ତାର ମଙ୍ଗଳ ଯାହାଦ୍ୱାରା ହୁଏ ତାହାହିଁ କରିବା। ତାହାଦ୍ୱାରା ମଣିଷ ପାଖରେ ସ୍ୱାର୍ଥ ପରମାର୍ଥରେ ରୂପାନ୍ତରିତ ହୁଏ, ଅନ୍ୟକଥାରେ ପରମାର୍ଥ ହିଁ ସ୍ୱାର୍ଥ ହୋଇ ଛିଡ଼ା ହୁଏ। 'ମୁଁ'ମାନେ ସମସ୍ତେ, ସମସ୍ତେ ମାନେ ମୁଁ, – ପ୍ରକୃତ ସ୍ୱାର୍ଥର ମୂଳକଥା ଏହିଠାରେ। ଏହା କେବଳ ମାତ୍ର ତତ୍ତ୍ୱ ନୁହେଁ, ସବୁଠାରୁ ବଡ଼ ବାସ୍ତବତା ହେଲା ଏହା ହିଁ।

ଆ.ପ୍ର. ୫/୨୭.୩.୧୯୪୩

**ପ୍ର. – ଇଷ୍ଟାନୁସରଣରେ ଯିଏ ଚାଲିବ ତାର ବଞ୍ଚିବାର ଉପାୟ ବା କ'ଣ ହେବ ଆଉ ସେ ବଞ୍ଚିବାର ଉଦ୍ଦେଶ୍ୟ ବା କ'ଣ ହେବା ଉଚିତ ?**

**ଶ୍ରୀଶ୍ରୀଠାକୁର** – ସବୁ ସମୟରେ ମନେ ରଖିବାକୁ ହେବ ଯେ ଇଷ୍ଟାର୍ଥୀ ସେବାହିଁ ଆମ୍ଭମାନଙ୍କର ଏକାଧାରରେ ବଞ୍ଚିବାର ଉପାୟ ବି, ଉଦ୍ଦେଶ୍ୟ ବି। ଜୀବନଟା ନିଜର ଭୋଗ ସୁଖ ପାଇଁ ନୁହେଁ, ଜୀବନଟା ହେଲା ତାଙ୍କର ଇଚ୍ଛା ଅନୁସାରେ ନିଜର ବୈଶିଷ୍ଟ୍ୟ ସମ୍ମତ ପଥରେ ବୃହତ୍ତର ପାରିପାର୍ଶ୍ୱିକର ସେବାରେ ସାର୍ଥକ ହୋଇ ଉଠିବା ପାଇଁ। ଏହା ଭିତର ଦେଇ ହିଁ ହୁଏ ମଣିଷର ଆତ୍ମନିୟନ୍ତ୍ରଣ, ଆତ୍ମଉପଲବ୍ଧି, ବ୍ୟାପ୍ତି ଓ ବୃଦ୍ଧି। କେନ୍ଦ୍ରାୟିତ ଅତନ୍ଦ୍ର କର୍ମର ଭିତର ଦେଇ ଯିବା ଛଡ଼ା ମଣିଷର ଜ୍ଞାନ ହୁଏ ନାହିଁ। ଭାବିବା, କହିବା ଓ ବାସ୍ତବଭାବରେ କରିବା ତିନୋଟିହିଁ ଏହାର ଅପରିହାର୍ଯ୍ୟ ଅଙ୍ଗ। ଗୋଟିଏକୁ ବାଦଦେଇ ଆଉ ଗୋଟିଏ ହୁଏ ନାହିଁ। ସେଥିପାଇଁ ମୁଁ ଯଜନ, ଯାଜନ, ଇଷ୍ଟଭୃତିର କଥା କୁହେ। ଫଳକଥା, ଆମ୍ଭମାନଙ୍କର ବଞ୍ଚିବାଟା ହେବ ଇଷ୍ଟାର୍ଥେ, ନଚେତ୍ କେବଳ ବଞ୍ଚିରହିବା ମଧ୍ୟରେ ସାର୍ଥକତା କେଉଁଠି ? ମଣିଷର ଜୀବନ ଯଦି ଇଷ୍ଟାର୍ଥେ ଉତ୍ସର୍ଗୀକୃତ ନ ହୁଏ, ତେବେ ପଶୁଜୀବନର ସହିତ ତାର ବ୍ୟବଧାନ କେଉଁଠି ? ମଣିଷ ଯେତେ ହିଁ ଗଣ୍ୟମାନ୍ୟ ହେଉ, ସେ ଯଦି ଭକ୍ତିମାନ ନ ହୁଏ, ଉତ୍ସକେନ୍ଦ୍ରିକ ନ ହୁଏ, ତେବେ ତାର ଜୀବନ ମରୁଭୂମି ପରି। ଆ.ପ୍ର. ୫/୨୭.୩.୧୯୪୩

**ପ୍ର. – ଇଷ୍ଟଙ୍କର ନାମଧ୍ୟାନ ନେଇ ହିଁ ଯଦି କେହି ରହିବାକୁ ଚାହେଁ ? କିଛି ହିଁ କର୍ମ ଯଦି ନ କରେ ?**

**ଶ୍ରୀଶ୍ରୀଠାକୁର** – ପ୍ରଧାନ କଥା ହେଲା ନାମୀଙ୍କ (ଇଷ୍ଟଙ୍କ) ପ୍ରତି ଉର୍ଜ୍ଜୀ ଆନତି ଓ ଅନୁରାଗ। ସେହି ଆନତି ଓ ଅନୁରାଗ ରହିଲେ ତାଙ୍କର ପ୍ରୀତି-କଥା ଓ ପ୍ରୀତି-କର୍ମ ପ୍ରତି ଝୁଙ୍କ ଗଜାଏ। ନିଜର ସବୁ ଶକ୍ତି ଦେଇହିଁ ତାଙ୍କୁ ତୁଷ୍ଟ, ପୁଷ୍ଟ କରିବାର ବୁଦ୍ଧି ହୁଏ – ଚଳନ, ଚରିତ୍ର ତଦନୁଗ କରିବାକୁ ଇଚ୍ଛା ହୁଏ – ଯେପରି ସେ ନନ୍ଦିତ ହୁଅନ୍ତି। ଆହୁରି ମନେହୁଏ, ସମସ୍ତଙ୍କୁ ତଦ୍ଭାବରେ ଭାବିତ କରି ତୋଳନ୍ତି, ତଦାକାରାକାରିତ କରି ତୋଳନ୍ତି – ପ୍ରତ୍ୟେକଙ୍କୁ ତାର ବୈଶିଷ୍ଟ୍ୟ ଅନୁଯାୟୀ। ସେଥିପାଇଁ, ନାମଧ୍ୟାନ ଠିକ୍ ଠିକ୍ ହେଲେ ଏହି ନାମଧ୍ୟାନହିଁ ମଣିଷକୁ କରିବା ଓ କହିବାର ଦିଗକୁ ଠେଲିଦିଏ। ପୁଣି, କରିବା ଓ କହିବା ବାଦଦେଇ ନାମଧ୍ୟାନ ମଧ୍ୟ ଠିକ୍ ଭାବରେ ହୁଏ କି ନାହିଁ ସେ ବିଷୟରେ ମୋର ସନ୍ଦେହ ଅଛି। ...ଏହାଦ୍ୱାରା ମଣିଷ unbalanced (ସାମ୍ୟହରା) ହୋଇପଡ଼େ। ...ଆମ୍ଭମାନଙ୍କ ମଧ୍ୟରେ କେତେଗୁଡ଼ିଏ ବିକୃତ ଓ ସଙ୍ଗତିହୀନ ଧାରଣାର ଉଦ୍ଭବ ହୋଇଅଛି। ସ୍ତ୍ରୀ ଓ ପୁତ୍ରକୁ ଭଲପାଇବାକୁ ଯାଇ ଆମେ କିନ୍ତୁ କେବେ ବି ଏକଥା ଭାବୁନାହିଁ ଯେ କେବଳ ମାତ୍ର ସେମାନଙ୍କ କଥା ଭାବିବୁ, ସେମାନଙ୍କ ପାଇଁ ବାସ୍ତବରେ କିଛି କରିବୁ ନାହିଁ। ସେମାନଙ୍କ କ୍ଷେତ୍ରରେ ତାହା ଯଦି ପ୍ରଯୁଜ୍ୟ ନ ହୁଏ, ଭଗବାନଙ୍କୁ ତଥା ଇଷ୍ଟଙ୍କୁ ଭଲପାଇବା କ୍ଷେତ୍ରରେ ତାହା ପ୍ରଯୁଜ୍ୟ ହେବ କାହିଁକି ? ଭଲପାଉଥିବା ବ୍ୟକ୍ତିଙ୍କ ପାଇଁ ମଣିଷର କରିବାର ଅନ୍ତ ନାହିଁ। ଯେତେ କରାଯାଏ, ସେତେ ଦେଖାଯାଏ ଆହୁରି ବହୁତ



କିଛି କରିବାକୁ ଅଛି। ଆଉ ଭଗବାନଙ୍କୁ ଭଲ ପାଇଲେ ତାଙ୍କ ଖାତିରରେ ପ୍ରତ୍ୟେକଟି ସତ୍ତାକୁ ଭଲପାଇବାକୁ ହୁଏ, ପ୍ରତ୍ୟେକଙ୍କର ସୁଖ-ସ୍ୱାଚ୍ଛନ୍ଦ୍ୟ ଓ ସାର୍ଥକତା ପାଇଁ ପ୍ରାଣ ଦେଇ ପରିଶ୍ରମ କରିବାକୁ ହୁଏ। କେହି ଯଦି ବାପାମା'ଙ୍କୁ ଭଲପାଏ, ତାହେଲେ କ'ଣ ସେ କେତେବେଳେ ଭାଇ-ଭଉଣୀ ମାନଙ୍କ କ୍ଷେତ୍ରରେ ଉଦାସୀନ ରହିପାରେ ? ଭକ୍ତର କରଣୀୟର କଣ କୌଣସି ଲେଖାଜୋଖା ଅଛି ? ଏହି କର୍ମ କିନ୍ତୁ ତାର ସେବାଯଜ୍ଞ, ପୂଜା-ପରିକ୍ରମା, ସାଧନଭଜନର ଅବିଚ୍ଛେଦ୍ୟ ଅଙ୍ଗ। ନାମଧ୍ୟାନ ଓ ତାର କର୍ମ ଓତଃପ୍ରୋତ ଭାବରେ ଜଡ଼ିତ। ଆଉ, ସବୁ କିଛିହିଁ ତାର ଇଷ୍ଟଙ୍କ ପାଇଁ। ଆ.ପ୍ର. ୫/୨୭.୩.୧୯୪୩

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ନାମଧ୍ୟାନ ଉପରେ ବେଶି ଗୁରୁତ୍ୱ ନଦେଇ ପରିବେଶର ସେବାକୁ ପ୍ରାଧାନ୍ୟ ଦେଇ ଚାଲିଲେ କ'ଣ ମଣିଷର କଲ୍ୟାଣ ହୋଇପାରେ ନାହିଁ ?**

**ଶ୍ରୀଶ୍ରୀଠାକୁର** – ପରିବେଶର ସେବା ଯେତେ ହିଁ ମହତ କାମ ହେଉ, – ତହା ଯଦି ଇଷ୍ଟାର୍ଥେ ନ ହୁଏ, ତାହା ଏକ unsolved complex (ଅସମାହିତ ଗ୍ରନ୍ଥି) ପରି ରହିଯାଇପାରେ, ଏବଂ ତାହାଦ୍ୱାରା ମଧ୍ୟ ମଣିଷର ଅକଲ୍ୟାଣ ହେଇ ପାରେ। କାରଣ ମଣିଷର ଯଦି ଏପରି କୌଣସି ଇଚ୍ଛା ଥାଏ ଯାହା ଇଷ୍ଟଙ୍କର ସହିତ ଅଯୁକ୍ତ, ତେବେ ସେହି ଇଚ୍ଛାର ପ୍ରରୋଚନାରେ ସେ ଇଷ୍ଟଙ୍କର ପରିପନ୍ଥୀ ଚଳନରେ ମଧ୍ୟ ଚାଲିପାରେ। ଏକକଥାରେ, ଇଷ୍ଟ ଯେପରି ତାର master (ପ୍ରଭୁ), ଏହି ଇଚ୍ଛାହିଁ ସେହିପରି ତାର master (ପ୍ରଭୁ) ହୋଇଥାଏ। ଦୁଇଟି master (ପ୍ରଭୁ)ଙ୍କୁ serve (ସେବା) କରିବାକୁ ଯାଇ ତା ଭିତରେ ଏକ bifurcation (ଦ୍ୱିଭାଗ) ଆସିଯାଏ। ଜୀବନର କୌଣସି ଭାଗରେ ଇଷ୍ଟଙ୍କର ଆଧିପତ୍ୟ ନ ରହିଲେ, ସଦ୍‌ଇଚ୍ଛା ଥିବା ସତ୍ତ୍ୱେ ମଧ୍ୟ ଏହି ଫାଟ ଭିତର ଦେଇ ପ୍ରବୃତ୍ତି-ପରାୟଣତାହିଁ ପ୍ରାଧାନ୍ୟ ଲାଭ କରିପାରେ। ଭଲକାମ କରୁକରୁ ମଧ୍ୟ ସେ କେତେବେଳେ ପ୍ରବୃତ୍ତିର କବଳରେ ପଡ଼ିଯାଏ, ତାହା ହୁଏତ ସେ ଜାଣିପାରେ ନାହିଁ। ଆଉ, ପ୍ରବୃତ୍ତି-ପରାୟଣ କର୍ମ କେତେବେଳେ ମଧ୍ୟ ମଣିଷକୁ ଇଷ୍ଟାର୍ଥପରାୟଣ ତଥା ସତ୍ତାପରାୟଣ କରି ତୋଳିବାକୁ ସହାଯ୍ୟ କରେ ନାହିଁ – ତାହା ନିଜ ବେଳକୁ ହେଉ ବା ଅନ୍ୟ ବେଳକୁ ହେଉ। ସେଥିପାଇଁ, ସବୁ ଆୟୋଜନ ସତ୍ତ୍ୱେ ମଧ୍ୟ ଶେଷ ପର୍ଯ୍ୟନ୍ତ ସ୍ଥାୟୀ ସୁଫଳ କମ୍ ହିଁ ହୁଏ। ଆ.ପ୍ର. ୫/୨୭.୩.୧୯୪୩

**ପ୍ର. ଇଷ୍ଟାନୁରାଗର ପ୍ରଧାନ ପରଖ କ'ଣ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କ ପାଇଁ କିଏ କେତେଟା କଷ୍ଟ ହସ ହସ ମୁହଁରେ ଖୁସି ମନରେ ସହ୍ୟ କରିପାରେ; କେତେ ମାତ୍ରାରେ ପ୍ରବୃତ୍ତିର ପ୍ରଲୋଭନ ଓ ଉତ୍ତେଜନା ଏଡ଼ାଇ ଚାଲିପାରେ;

କେତେ ମାତ୍ରାରେ ଖିଆଲ-ଖୁସି ବିସର୍ଜନ ଦେଇପାରେ; ତାଙ୍କୁ ଦେବାକୁ, ତାଙ୍କପାଇଁ କରିବାକୁ କାହାକୁ କିପରି ଭଲଲାଗେ; ତାଙ୍କରି ସନ୍ତୁଷ୍ଟି ପାଇଁ ଆତ୍ମନିୟନ୍ତ୍ରଣ କିଏ କେତେଟା କରିପାରେ; ଅହଂକାର, ଅଭିମାନ, ସ୍ୱାର୍ଥ, ଦ୍ୱେଷ, ହିଂସା ଓ ବୈରୀଭାବ କେତେଟା ତ୍ୟାଗ କରିପାରେ – ତାହାହିଁ ଦେଖିବାକୁ ହେବ। ମୁଁ ଯଦି ତୁମକୁ ଅତ୍ୟନ୍ତ ଅନାଦର କରେ ଏବଂ ଠିକ୍ ସେହି ସମୟରେ ତୁମେ ଯାହା ପ୍ରତି ବିରୂପ ଏହିପରି କାହାକୁ ଯଦି ଖୁବ୍ ସମାଦର କରେ, ଦିଆଥୁଆ କରେ, ଏବଂ ସେଥିପାଇଁ ଯଦି ତୁମ ମନରେ ଏତେ ଟିକିଏ ଈର୍ଷାର ସଞ୍ଚାର ନ ହୋଇ ଆନନ୍ଦର ସଞ୍ଚାର ହୁଏ, ତାହେଲେ ବୁଝାଯିବ, ତୁମ ଅନ୍ତରରେ ଅନୁରାଗର ଜାଗରଣ ହୋଇଛି। ପୁଣି, ତୁମେ ଯଦି ମୋତେ ଭଲପାଅ ଏବଂ କାହାକୁ ଯଦି ଦେଖ – ତୁମ ପ୍ରତି ବନ୍ଧୁଭାବାପନ୍ନ ଅଥଚ ମୋ ପ୍ରତି ବିରୂପ, ତାହେଲେ କିନ୍ତୁ ତାର ଲକ୍ଷେ ବନ୍ଧୁତ୍ୱ ମଧ୍ୟ ତୁମ ପାଖରେ ପ୍ରୀତିକର ଲାଗିବ ନାହିଁ। ଆ.ପ୍ର. ୫/୫.୪.୧୯୪୩

**ପ୍ର. – ଇଷ୍ଟଙ୍କ ପ୍ରତି ମଣିଷକୁ ଶୀଘ୍ର interested (ଆଗ୍ରହୀ) କରିବାର ଉପାୟ କ'ଣ?**

**ଶ୍ରୀଶ୍ରୀଠାକୁର** – ଆପଣଙ୍କ ପ୍ରତି ଯଦି interested (ଅନ୍ତରାସୀ ବା ଆଗ୍ରହୀ) ନ ହୁଏ, ତାହେଲେ କିନ୍ତୁ ଆପଣଙ୍କ ଇଷ୍ଟଙ୍କ ପ୍ରତି interested (ଆଗ୍ରହୀ) ହେବ ନାହିଁ। ଇଷ୍ଟଙ୍କ ପ୍ରତି ଆପଣଙ୍କର interest (ଆଗ୍ରହ) ଯଦି ଆପଣଙ୍କୁ ପରିବେଶ ପ୍ରତି interested (ଆଗ୍ରହୀ) କରିତୋଳେ, ଏବଂ ଇଷ୍ଟ-ବିଧୃତ ଏହି interest (ଆଗ୍ରହ) ଯଦି expositionରେ (ଅଭିବ୍ୟକ୍ତିରେ) glow କରେ (ଉଦ୍‌ଭାସିତ ହୁଏ) ଗୋଟିଏ magnetic pullର (ଆକର୍ଷଣୀ ଟାଣ ବା ଚୁମ୍ବକ ଭଳି ଟାଣର) ସୃଷ୍ଟି କରେ, ତେବେ ସମସ୍ତେ ସହଜରେ ଆକୃଷ୍ଟ ହୁଅନ୍ତି। ଏହି ଭାବଟାକୁ ସ୍ୱାଭାବିକ କରିନେବାକୁ ହୁଏ। ସେତେବେଳେ ଗୋଟିଏ ଜାଗା ଦେଇ ଚାଲିଗଲେ ମଧ୍ୟ ମଣିଷ ମୁଗ୍ଧ ହୋଇ ଆପଣଙ୍କ ଦିଗକୁ ଚାହିଁ ରହିବ। ଆପଣଙ୍କର ଯାବତୀୟ ଯାହାକିଛିହିଁ ମଣିଷକୁ ସାତ୍ତ୍ୱିକ ତୋଷଣ, ପୋଷଣ ଯୋଗାଇବ, କେବଳ ମାତ୍ର ମଣିଷକୁ କାହିଁକି – ଜୀବଜନ୍ତୁ ଗଛପତ୍ର ପର୍ଯ୍ୟନ୍ତ ସମସ୍ତଙ୍କୁ। ଆ.ପ୍ର. ୫/୫.୪.୧୯୪୩

**ପ୍ର. – ଇଷ୍ଟାନୁସରଣରେ ଯେଉଁ ଭାବ ନେଇ ଚାଲିଲେ ଇଷ୍ଟଙ୍କ ପ୍ରତି ଆଗ୍ରହରେ ମଣିଷ ତାର ପରିବେଶ ପ୍ରତି ମଧ୍ୟ ଆଗ୍ରହୀ ହୋଇଉଠେ ଏବଂ ତାହା ଅଭିବ୍ୟକ୍ତିର ମଧ୍ୟ ଦେଇ ଫୁଟି ଉଠେ ତାର ଚରିତ୍ରରେ ଚୁମ୍ବକ ପରି ଏକ ଟାଣ ସୃଷ୍ଟି କରେ – ସେହି ଭାବଟା ସ୍ୱାଭାବିକ ହୁଏ କିପରି?**

**ଶ୍ରୀଶ୍ରୀଠାକୁର** – ଚିନ୍ତାରେ, ବାକ୍ୟରେ, କର୍ମରେ, ସବୁକିଛିର ଭିତରେ ଅନୁଶୀଳନ



କରିବାକୁ ହୁଏ – ଯାହାଦ୍ୱାରା ଏହି ଭାବରେ ସବୁ ସମୟ ଅଭିଷିକ୍ତ ରୁହାଯାଏ। ଆଉ, ଚଲା-ବୁଲା, କାର୍ଯ୍ୟକର୍ମର ଭିତରେ ମଧ୍ୟ ନାମଟା କରିବା ଦରକାର। ଏହି mood (ଭାବଟା) ବଜାୟ ରୁହେ ଏହିପରି ଭାବରେ ଗୁଣୁଗୁଣୁ କରି ଗାଇବାକୁ ହୁଏ। ତାହାର ପରିପୋଷକ ଆଳାପ-ଆଲୋଚନା ଓ ସଙ୍ଗ କରିବାକୁ ହୁଏ। ଭଲ-ଭଲ ବହି ପଢ଼ିବାକୁ ହୁଏ। ମଝିରେ-ମଝିରେ ନିରୋଳାରେ ବସି ନାମଧ୍ୟାନ କରିବାକୁ ହୁଏ। ବିଚାର ବିଶ୍ଳେଷଣ କରିବାକୁ ହୁଏ। ଆଉ ପ୍ରତି ପଦକ୍ଷେପରେ ମାପି-ମାପି ଚାଲିବାକୁ ହୁଏ – ମୋର ଚାଲିବାର ଭିତର ଦେଇ ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠା କେତେଟା ଅକ୍ଷୁର୍ଣ୍ଣ ରହୁଛି। ଚାଲୁଚାଲୁ ମଣିଷର ଗୋଟିଏ ନିଶା ପରି ଆସିଯାଏ; ସେତେବେଳେ ଏହିଭାବରେ ମତ୍ତ ନ ରହିପାରିଲେ କୌଣସିଥିରେ ଯେପରି ଭଲଲାଗେ ନାହିଁ, ମନଟା ହୁ ହୁ କରେ। ସବୁ ସମୟରେ ଏହିଭାବରେ ଆତ୍ମସ୍ଥ ରହିବାର ବୁଦ୍ଧି ହୁଏ। କାର୍ଯ୍ୟକର୍ମଠାରୁ ଅବସର ଗ୍ରହଣ କରି (ଅର୍ଥାତ୍ କାର୍ଯ୍ୟକର୍ମ ବାଦଦେଇ) କେବଳ ଚିନ୍ତାବିଳାସିତା ନେଇ ରହିଲେ କିନ୍ତୁ ଭାବଟା ପକ୍କା ହୁଏ ନାହିଁ। କଠୋର କର୍ମ, ସଂଗ୍ରାମ ଓ ସଂଘାତର ଭିତରେ ମଧ୍ୟ ଇଷ୍ଟଙ୍କର ଭାବରେ ଭରପୂର ରହିବାର ଅଭ୍ୟାସରେ ଅଭ୍ୟସ୍ତ ହେବାକୁ ହେବ, ନହେଲେ ଭାବଟା ମଜ୍ଜାଗତ ହେବନାହିଁ – ବାହାର ଜଗତର ବିକ୍ଷେପରେ ଭାବଟା ଭାଙ୍ଗିଯିବ। ଚିନ୍ତା ଓ କର୍ମର ସମତା ଦରକାର। ତା ନହେଲେ ଚରିତ୍ର ଅନୁରଞ୍ଜିତ ହେବନାହିଁ। ନିରନ୍ତର ଇଷ୍ଟ ମନନ ଓ ଅତନ୍ଦ୍ର ଇଷ୍ଟକର୍ମ – ଏହି ଦୁଇଟି ନେଇ ଚାଲିବା ଦରକାର। ଏହାର ମଝିରେ-ମଝିରେ ଅଲଗା ହୋଇ ନାମଧ୍ୟାନ-ଭଜନରେ ଡୁବ ଦେବାକୁ ହେବ। ମନଟା ଇଷ୍ଟଙ୍କ ପାଖରେ ପଡ଼ିରହିବା ଦରକାର। 'ସେ ମୁଖ କାହିଁକି ସବୁ ସମୟରେ ମନେପଡ଼େ।' କାର୍ଯ୍ୟର ମଝିରେ ମଧ୍ୟ ସବୁ ସମୟରେ ବୋଧ କରିବା ଦରକାର ଯେ ତାଙ୍କର ତୃପ୍ତି ଓ ତୁଷ୍ଟିର ପାଇଁ ହିଁ ଯାହାକିଛି କରୁଛି। ସେତେବେଳେ, ଯେତେବେଳେ ଯେଉଁ ଭାବରେ ରହୁ – ତାଙ୍କଠାରେହିଁ ରହୁ, ସେ ହିଁ ସମଗ୍ର ମନଟିକୁ ଅଧିକାର କରି ରହିଥାନ୍ତି। ଯାହାଙ୍କୁ ଅନ୍ତର ଦେଇ ଭଲପାଉ, ତାଙ୍କର ସ୍ମୃତି-ଚେତନା ମନରେ ଲାଗିହିଁ ରହିଥାଏ। ସେହିଟିହିଁ ହୁଏ ମନନସୂତ୍ର। ଏହା ଫଳରେ, ଚଳନ-ଚରିତ୍ର ମଧ୍ୟ ଇଷ୍ଟଙ୍କର ଗୁଣାବଳୀରେ ଅଭିଷିକ୍ତ ହୋଇଉଠେ। ଏସବୁ ନୂଆ କିଛି ନୁହେଁ। ସ୍ତ୍ରୀ କୁ ଭଲପାଇଲେ କିପରି ହୁଏ ତା' ବୁଝନ୍ତି ତ? ସେହି ଏକହିଁ ବ୍ୟାପାର। ଆମ୍ଭମାନଙ୍କର ମନ ତ କେତେ ଜାଗାରେ ମଜ୍ଜିଥାଏ। ଇଷ୍ଟଙ୍କଠାରେ ମଜ୍ଜାଇ ପାରିଲେ ହିଁ ହେଲା – ତାହା ଯେପରି କରିହିଁ ହେଉ। ଆନ୍ତରିକ ଇଚ୍ଛା ନେଇ ଅଭିନୟ କରୁ କରୁ ମଧ୍ୟ ମନ ତାଙ୍କଠାରେ ମଜ୍ଜିଯାଇ ପାରେ। ଆ.ପ୍ର. ୬/୫.୪.୧୯୪୩

**ପ୍ର – ଇଷ୍ଟାନୁସରଣରେ ଅବ୍ୟଭିଚାରୀ ଭକ୍ତି କ'ଣ? ବ୍ୟଭିଚାରୀ ଭକ୍ତି ବା କାହାକୁ କହନ୍ତି?**

**ଶ୍ରୀଶ୍ରୀଠାକୁର** – ଯେତେଦିନ ଯାଏ ମଣିଷ ଇଷ୍ଟଙ୍କୁ କାୟମନୋବାକ୍ୟରେ ଭଲପାଇ ନ ପାରେ, ଜୀବନରେ ଯେତେ ଯାହାବି କରୁନା କାହିଁକି, କୌଣସିଟିରେହିଁ ସାର୍ଥକତା ଲାଭ କରେ ନାହିଁ। ଭଲପାଇବାର ଝୁଙ୍କରେ ଚାଲୁ ଚାଲୁ ଭଲପାଇବାଟା ସ୍ୱତଃ ହୋଇଉଠେ। ସେହି ବୁଦ୍ଧି ହିଁ ସାର ବୁଦ୍ଧି – ଯେଉଁ ବୁଦ୍ଧି ମଣିଷକୁ ଇଷ୍ଟଙ୍କଠାରେ ଏକାନ୍ତ କରି ତୋଳେ। ଏହାକୁହିଁ କହନ୍ତି ଅବ୍ୟଭିଚାରୀ ଭକ୍ତି। ଇଷ୍ଟଙ୍କୁ ଯଦି ଆମର ସୁଖ-ସୁବିଧା ପାଇଁ ଡାକୁ, ଆମର ସୁଖ-ସୁବିଧା ପାଇଁ ଭଲପାଉ, ତାହେଲେ ସେହିଟି ହେଲା ବ୍ୟଭିଚାରୀ ଭକ୍ତି। ତାଙ୍କ ପାଇଁ ତାଙ୍କୁ ଯିଏ ଭଲପାଏ, ସେ ଧନ୍ୟ ହୋଇଯାଏ, ପବିତ୍ର ହୋଇଯାଏ। ତା ଭିତରେ ଆଉ କୌଣସି କଳୁଷ ବା କାଳିମା ରହେ ନାହିଁ। ସେଥିପାଇଁ ଗୀତାରେ ଅଛି,

'ଅପିଚେତ୍ ସୁଦୁରାଚାରୋ' ଭଜତେ ମାମନନ୍ୟଭାକ୍,
ସାଧୁରେବ ସ ମନ୍ତବ୍ୟଃ ସମ୍ୟକ୍ ବ୍ୟବସିତୋ ହି ସଃ।'

ଅନନ୍ୟଭାକ୍ କହିଲେ ମୁଁ ବୁଝେ – ଏକମାତ୍ର ତାଙ୍କୁ ହିଁ ଯିଏ ଭଜନା କରେ ଏବଂ ସେ କେବଳ ତାଙ୍କରି ପାଇଁ। ତାଙ୍କ ପାଇଁ ଯାହାର ପ୍ରାଣ କାନ୍ଦିଉଠେ, ସେ ହିଁ ଏହା ପାରେ। କେତେ ସାଧୁ ପୁରୁଷ ପାରନ୍ତି ନାହିଁ, ପୁଣି ହୁଏତ ପାପୀ-ତାପୀ ଆଖିପିଚୁଳାକେ ପାରିଯା'ନ୍ତି। ଯିଏ ପାରେ ସେ ହିଁ ଭାଗ୍ୟବାନ। ଆ.ପ୍ର. ୫/୫.୪.୧୯୪୩

**ପ୍ର. – ଇଷ୍ଟନୁସରଣରେ ମନର ଘଣାରେ ଘୁରିବା ବ୍ୟାପାରଟା କ'ଣ ? ତା' ଠାରୁ ରିହାଇ ପାଇବାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ନିଜର ମନଗଢ଼ା ଖିଆଲ-ଖୁସି ଓ ଭଲମନ୍ଦର ଧାରଣା ନେଇ ମଣିଷ ଯେତେଦିନ ଚାଲେ, – ଇଷ୍ଟଙ୍କର ଇଚ୍ଛା ଓ ଖୁସିକୁ ଯେତେଦିନ ଗୁରୁତ୍ୱ ଦିଏ ନାହିଁ, ସେତେଦିନ ମନର ଘଣାରେ ଘୁରି ହୁଏ। ସେ ଯାହା କହନ୍ତି, ଭଲ ଲାଗୁ ବା ନ ଲାଗୁ ଜୋର କରି ତାହା କରିବାକୁ ହୁଏ। ସେ ଏପରି ଭାବରେ ଚାଲିବାକୁ କହନ୍ତି, ଯାହାଦ୍ୱାରା ଆମର ବୃତ୍ତିର ସହିତ ଠୋକ୍କର ଲାଗିଯାଏ। ସେଥିପାଇଁ, ତାଙ୍କୁ ଠାକୁର କୁହାଯାଏ। ଏହିସବୁ ଠୋକ୍କର ନ ଖାଇଲେ ମଣିଷର ଜ୍ଞାନ-ଚୈତନ୍ୟ ଖୋଲେ ନାହିଁ। ...ମନର ଘଣାରେ ଘୁରିବା ହାତରୁ ରକ୍ଷା ପାଇବାର ସିଧା ରାସ୍ତା ହେଲା, ସଦ୍‌ଗୁରୁଙ୍କୁ ଜାବୁଡ଼ି ଧରିବା ଓ ନିର୍ବିଚାରରେ ତାଙ୍କର ଆଦେଶ ପାଳନ କରିଚାଲିବା। 'ଆତ୍ମେନ୍ଦ୍ରିୟ ପ୍ରୀତି-ଇଚ୍ଛା ତାରେ ବଲେ କାମ, କୃଷ୍ଣେନ୍ଦ୍ରିୟ ପ୍ରୀତି ଇଚ୍ଛା ଧରେ ପ୍ରେମ ନାମ।' ଆତ୍ମେନ୍ଦ୍ରିୟ ପ୍ରୀତି-ଇଚ୍ଛାରେ ମଣିଷ ଯାହା କରେ, ତାହାଦ୍ୱାରା ମନର ଘଣାରେ ଘୁରା ହୁଏ। ଆଉ, କୃଷ୍ଣେନ୍ଦ୍ରିୟ ପ୍ରୀତି-ଇଚ୍ଛାରେ ଯାହା କରେ, ତାହା ଦ୍ୱାରା ସେହି ବନ୍ଧନରୁ ମୁକ୍ତି ହୁଏ। ଏହା ହେଲା ସିଧା କଥା। ଆ.ପ୍ର. ୫/୨୧.୫.୧୯୪୩



**ପ୍ର. – ଇଷ୍ଟାନୁସରଣରେ ବୃତ୍ତି ଗୁଡ଼ିକୁ ଦମନକରିହିଁ କ'ଣ ଆଗେଇବାକୁ ହେବ ?**

**ଶ୍ରୀଶ୍ରୀ ଠାକୁର** – Complex (ବୃତ୍ତି)କୁ suppress (ନିରୁଦ୍ଧ ବା ଦମନ) କରିଲେ ତାର solution (ସମାଧାନ) ହୁଏ ନାହିଁ। ବରଂ ସବୁ କିଛିକୁ ନେଇ ଇଷ୍ଟଙ୍କୁ ଭଲପାଇବାକୁ ହୁଏ ଏବଂ ତାଙ୍କୁ ନେଇ କାର୍ଯ୍ୟକର୍ମରେ ମାତି ରହିବାକୁ ହୁଏ। ଯେଉଁ-ଯେଉଁ ବୃତ୍ତି ତାଙ୍କର ସେବାରେ ଯେତେଟିକିଏ ଲାଗେ, ସେତେଟା ନିସଂକୋଚରେ ଲଗାଇବାକୁ ହୁଏ। ଆଉ ଯେଉଁଠି ସେଥିରେ ବ୍ୟାଘାତ ଜନ୍ମେ ସେଠରେ ଉପେକ୍ଷା କରିବାକୁ ହୁଏ। ସେମାନଙ୍କ ଇଙ୍ଗିତରେ ନାଚିବାକୁ ହୁଏ ନାହିଁ। ଇଷ୍ଟସ୍ୱାର୍ଥପ୍ରତିଷ୍ଠାମୂଳକ ପ୍ରୀତିଜନକ କୌଣସି କାର୍ଯ୍ୟରେ ନିଯୁକ୍ତ ରହିବାକୁ ହୁଏ। ପୁଣି, ଭଲପାଇବାର ବସ୍ତୁ ଯଦି ଇଷ୍ଟ ହୁଅନ୍ତି, ଆଉ ନାନାଭାବରେ ତାଙ୍କୁ ନେଇ ବ୍ୟାପ୍ତ ଓ ବ୍ୟାପୃତ ରହିବାର ଅଭ୍ୟାସ ଯଦି ମୁଁ କରି ନେଇପାରେ, ତାହେଲେ ମୋତେ ଆଉ ପାଏ କିଏ ? ମଣିଷ ରସଗୋଲାର ସ୍ୱାଦ ଯଦି ଥରେ ପାଏ, ତାହେଲେ ତାର ଲୋଭ କ'ଣ ଆଉ ଚିଟାଗୁଡ଼ ପ୍ରତି ରହେ ? ଆ.ପ୍ର. ୫/୨୧.୫.୧୯୪୩

**ପ୍ର. – ଇଷ୍ଟାନୁସରଣରେ ସଂସାର କେତେବେଳେ ଆଉ ବାଧା ହୋଇ ଛିଡ଼ା ହୁଏନାହିଁ ?**

**ଶ୍ରୀଶ୍ରୀଠାକୁର** – ଯେଉଁ training (ଶିକ୍ଷା) ନେଇ ଗାର୍ହସ୍ଥାଶ୍ରମରେ ପ୍ରବେଶ କରିବାକୁ ହୁଏ, ସେ training (ଶିକ୍ଷା) ହିଁ ଯେ ଆମମାନଙ୍କର ନିଆ ହୁଏ ନାହିଁ। ମଣିଷ ଗୁରୁ ଗ୍ରହଣ ନ କରିଲେ, ନିଷ୍ଠା ସହକାରେ ଗୁରୁସେବା ନ କରିଲେ, ଇନ୍ଦ୍ରିୟଗୁଡ଼ିକ ଆୟତ୍ତକୁ ଆସେ ନାହିଁ। ସେହି ଅବସ୍ଥାରେ ବିବାହ କରିଲେ, ସ୍ତ୍ରୀ-ମୁଖୀ ହୋଇପଡ଼େ। ସ୍ୱାମୀ ଯେଉଁଠି ସ୍ତ୍ରୀ-ମୁଖୀ, ସ୍ତ୍ରୀ ସେଠାରେ ସ୍ୱାମୀ-ମୁଖୀ ହେବାର ଦରକାର ବୋଧ କରେ ନାହିଁ, – ବରଂ ଖିଆଲମୁଖୀ ହୁଏ ଏବଂ ସ୍ୱାମୀଙ୍କୁ ମଧ୍ୟ ନିଜ ଖିଆଲର ଇନ୍ଧନ କରିନିଏ। ତାହାଦ୍ୱାରା ସଂସାରରେ ସୁଖ ହୁଏ ନାହିଁ, ପିଲା ମାନେ ମଧ୍ୟ ଭଲ ହୁଅନ୍ତି ନାହିଁ। ସଂସାର ଭଲ କରିବା ପାଇଁ ହିଁ ପୁରୁଷମାନଙ୍କର ପ୍ରବୃତ୍ତି-ଝୁଙ୍କଠାରୁ ଇଷ୍ଟଝୁଙ୍କା ବେଶି ହେବା ଦରକାର। କୌଣସି ଜିନିଷର above (ଊର୍ଦ୍ଧ୍ୱ)ରେ ନ ରହିଲେ ତାହା control (ନିୟନ୍ତ୍ରଣ) ବା enjoy (ଉପଭୋଗ) କରଯାଏ ନାହିଁ। ...ଇଷ୍ଟଙ୍କୁ ଜାବୁଡ଼ିଧରି ତୁମେ ଯେତେଟା ପ୍ରବୃତ୍ତିର ଊର୍ଦ୍ଧ୍ୱରେ ରହିପାରିବ, ସେତେହିଁ ସଂସାର ତୁମ ଅଧୀନରେ ରହିବ, ଆଉ ତୁମେ ସଂସାରରେ ରହି ମଧ୍ୟ ବେଶ କିଛିଟା ତାର ଊର୍ଦ୍ଧ୍ୱରେ ରହିପାରିବ। ସଂସାର ନେଇ ସେତେବେଳେ ତୁମେ ବିବ୍ରତ ହେବନାହିଁ, ଅଥଚ ଯାହା କରଣୀୟ ତାହା କରିବାରେ କୌଣସି ବ୍ୟାଘାତ ହେବନାହିଁ। ଆ.ପ୍ର. ୫/୨୧.୫.୧୯୪୩

**ପ୍ର. – ମଣିଷ ଜୀବନରେ ଇଷ୍ଟଙ୍କର ସ୍ଥାନ କେଉଁଠି ହେବ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କୁ ଜୀବନରେ ସର୍ବପ୍ରଥମ ଓ ପ୍ରଧାନ କରି ରଖିବାକୁ ହେବ।

ଆଉ ଯାହା-କିଛିର ସ୍ଥାନ ରହିବ ତାଙ୍କ ପରେ। ସେତେବେଳେ ଯାହା-କିଛି ହିଁ ହେବ ଇଷ୍ଟାର୍ଥେ। ସଂସାର କରିବାକୁ ଯାଇ ମଧ୍ୟ ଲକ୍ଷ୍ୟ ରହିବ – ତା' ଭିତରଦେଇ ଇଷ୍ଟାର୍ଥ କେତେଟା ପରିପୂରିତ ହେଉଛି – ତାହା (ସଂସାର) କେତେଟା ଇଷ୍ଟଙ୍କର ହୋଇଉଠିଛି। ସଂସାରର ଭିତର ଦେଇ ଯଦି ଇଷ୍ଟାର୍ଥ-ସାଧନ ନ ହୁଏ, ତାହେଲେ ସେ ସଂସାର କରିବା ତ ଭୂତର ବେଗାରି ଖଟିବା ସହ ସମାନ। ଜୀବନହିଁ କୁହ, ସଂସାରହିଁ କୁହ, ସବୁ-କିଛିର ସ୍ୱାର୍ଥ ମଧ୍ୟ ଇଷ୍ଟ, ପରମାର୍ଥ ମଧ୍ୟ ଇଷ୍ଟ। ଆମ୍ଭେମାନେ ଜାଣୁ ବା ନ ଜାଣୁ, ବୁଝୁ ବା ନ ବୁଝୁ ଏହାହେଲା fact (ବାସ୍ତବ ତଥ୍ୟ)। ଏହା ମୁଣ୍ଡରେ ରହିଲେ ଆଉ କୌଣସି ଭାବନା ନାହିଁ। ଆ.ପ୍ର. ୫/୨୧.୫.୧୯୪୩

**ପ୍ର. – ଇଷ୍ଟାନୁସରଣରେ ତ୍ୟାଗ-ବୈରାଗ୍ୟର କ'ଣ କିଛି ପ୍ରୟୋଜନ ହୁଏ ନାହିଁ?**

**ଶ୍ରୀଶ୍ରୀଠାକୁର** – ପ୍ରଧାନ କଥା ହେଉଛି - ଆମ୍ଭମାନଙ୍କର କାମ୍ୟଟା ଯଦି ନିର୍ଦ୍ଧାରଣ ହୁଏ, ତାହେଲେ ତ୍ୟାଗ-ବୈରାଗ୍ୟର ବିଷୟ କେଉଁଟା ତାହା ବୁଝିବାକୁ ଆଉ କଷ୍ଟ ହେବ ନାହିଁ। ଆମ୍ଭମାନଙ୍କର କାମ୍ୟ ହେଉଛି ବଞ୍ଚିବା-ବଢ଼ିବା, ଆଉ ତାହା ପରିବେଶକୁ ନେଇ, ଆହୁରି ଆହୁରି କରି, ଅମୃତ ଉପଭୋଗ ପଥରେ, ଆଉ ତାହା ଈଶ୍ୱର ପରାୟଣତା ନେଇ, ଇଷ୍ଟାନୁରାଗର ଭିତର ଦେଇ। ତାଙ୍କୁ ଯେତେ ଅନୁରାଗର ସହିତ ଅନୁସରଣ କରାଯାଏ, ସେତେହିଁ ଏହି ସସୀମର ଭିତରେହିଁ ଅସୀମର ଅନୁଭୂତି ଜାଗ୍ରତ ହୋଇଉଠେ। ଏହିପରି କରିହିଁ ସଚ୍ଚିଦାନନ୍ଦମୟ ସତ୍ତାକୁ ଉପଲବ୍ଧି ଓ ଉପଭୋଗ କରାଯାଏ। ମୁଁ ଯଦି ଭୋଗର କଥା କହେ, ତେବେ ତାହା ଏହି ଭୋଗ। ଏହି ଉପଭୋଗ ଯଦି ନ ଥାଏ, ତାହେଲେ ବିବର୍ତ୍ତନ ବା ଭାଗବତ ଲୀଳା ବୋଲି ବି କୌଣସି କଥା ରହେ ନାହିଁ। ସବୁହିଁ ଗୋଟିଏ ଶୂନ୍ୟତାରେ ପର୍ଯ୍ୟବସିତ ହୁଏ। ଆଉ ତ୍ୟାଗ, ବୈରାଗ୍ୟ ଅବଲମ୍ବନ କରିବାକୁ ହେବ ସେହି ବିଷୟ-ସମ୍ବନ୍ଧରେ ଯାହା ଏଥିରେ ବ୍ୟାଘାତ ସୃଷ୍ଟି କରେ। ଗୀତାରେ ଅଛି ଯୁକ୍ତାହାର-ବିହାରର କଥା। ଏହି କଥାଟି ପୁରାପୁରି ମାପର କଥା। ଆମକୁ ସେହିପରି ଭାବରେ ଆହାର ବିହାର କରିବାକୁ ହେବ, ଯାହାଦ୍ୱାରା ଇଷ୍ଟଙ୍କ ସାଥିରେ ଆମର ଯୋଗ ଅବଚ୍ଛିନ୍ନ ରହେ। ଇଷ୍ଟ ହେଲେ ସତ୍ତାର ପ୍ରତୀକ।

ଆ.ପ୍ର. ୫/୨୧.୫.୧୯୪୩

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ଆଧ୍ୟାତ୍ମିକ ବିକାଶ ପାଇଁ ପାରିପାର୍ଶ୍ୱିକଙ୍କର ଉପଯୋଗିତା କେତେ ଟିକିଏ ?**

**ଶ୍ରୀଶ୍ରୀଠାକୁର** – ଅମ୍ଭେମାନେ ପରିପାର୍ଶ୍ୱିକର ସଂଘାତ ଭିତର ଦେଇ ଚେତନ ଥାଉ। ପାରିପାର୍ଶ୍ୱିକ ଆମ୍ଭମାନଙ୍କୁ ଯେପରି ପ୍ରେରଣା ଦିଏ, ସେହିପରି ଭାବରେ ଆମ୍ଭମାନଙ୍କର ଚେତନା ମଧ୍ୟ ସାଧାରଣତଃ ସକ୍ରିୟ ହୋଇଉଠେ। ପାରିପାର୍ଶ୍ୱିକକୁ ଯଦି ଉନ୍ନତ ପ୍ରେରଣାରେ ଉଦ୍‌ବୁଦ୍ଧ



କରି ତୋଳୁ ଏବଂ ପାରିପର୍ଶ୍ୱିକ ମଧ୍ୟ ଯଦି ଆମ୍ଭମାନଙ୍କୁ ଉନ୍ନତ ପ୍ରେରଣାରେ ଉଦ୍‌ବୁଦ୍ଧ କରେ, ତାହେଲେ ଚେତନା ଉଚ୍ଚସ୍ତରରେ ହିଁ ବିରାଜ କରେ। ଏହା ଭିତର ଦେଇହିଁ ସତ୍ତା ଆନନ୍ଦ ପାଏ ଅର୍ଥାତ୍ ବୃଦ୍ଧିର ଆଡ଼କୁ ଚାଲେ। ଆଧ୍ୟାତ୍ମିକ ଚଳନ ହେଲା ସେହି ସୁକେନ୍ଦ୍ରିକ ଚଳନ, ଯାହାର ଭିତର ଦେଇ ମଣିଷ ବୃଦ୍ଧିର ଦିଗକୁ ନିରନ୍ତର ଗତିଶୀଳ ହୋଇଉଠେ। ତେଣୁ, ତା'ପାଇଁ ସତ୍-ପାରିପାର୍ଶ୍ୱିକର ଉପଯୋଗିତା କେତେଟା, ସେ ବିଷୟରେ କ'ଣ କିଛି ସନ୍ଦେହ ଅଛି ? ସେଥିପାଇଁ ତ ଶାସ୍ତ୍ରରେ ଏତେ କରି ସାଧୁସଙ୍ଗର କଥା କୁହାଯାଇଛି। ସାଧୁସଙ୍ଗର ମାହାତ୍ମ୍ୟ ଅପାର। ପରିବେଶକୁ ବାଦ ଦେଇ ଯେତେବେଳେ ଚାଲିବା ସମ୍ଭବ ନୁହେଁ, ସେତେବେଳେ ପରିବେଶକୁ ଉପେକ୍ଷା କରିବା ଚଳେ ନାହିଁ। ସେଥିପାଇଁ, ପରିବେଶ ଯଦି ସତ୍ ନ ହୁଏ, ତେବେ ନିଜର ଆଚରଣ ଓ ଯାଜନର ସାହାଯ୍ୟରେ ପରିବେଶକୁ ସତ୍ କରି ତୋଳିବାକୁ ଚେଷ୍ଟା କରିବାକୁ ହେବ। ଏହି ଚେଷ୍ଟା ନେଇ ଯଦି ରୁହାଯାଏ, ତାଦ୍ୱାରା ମଧ୍ୟ ମଣିଷ ବୃଦ୍ଧିର ଦିଗକୁ ଚାଲେ। ତାର ଜ୍ଞାନ, ଅଭିଜ୍ଞତା, ଇଚ୍ଛାଶକ୍ତି ଓ ଇଷ୍ଟାନୁରାଗ ସବୁହିଁ ବଢ଼ିଚାଲେ। ସେଥିପାଇଁ, ମଣିଷ ଯଦି ଇଷ୍ଟପ୍ରାଣ ଓ ଯାଜନମୁଖର ହୁଏ, ଏବଂ ପରିବେଶ ଯଦି ଖରାପ ମଧ୍ୟ ହୁଏ, ସେଥିରେ ମଧ୍ୟ ସେ ଆଧ୍ୟାତ୍ମିକ ବିକାଶର ଦିଗକୁ ଆଗେଇ ଯାଇପାରେ। କିନ୍ତୁ ପରିବେଶର ଭଲମନ୍ଦର କୌଣସି ସଂଘାତ ଯଦି ନ ଥାଏ, ତେବେ ତାର ଚେତନା ଧୀରେ ଧୀରେ ସଂକୀର୍ଣ୍ଣ ଓ ସ୍ତିମିତ ହେବାକୁ ଲାଗେ, ମନର ଅବାନ୍ତର ମଳିନତା ମଧ୍ୟ ଅନେକ ସମୟରେ ବୃଦ୍ଧି ପାଏ। ପାରସ୍ପରିକ ଆଦାନ-ପ୍ରଦାନର ଭିତରେ ଦେଇ ଯେଉଁ ସ୍ଫୁରଣ ଓ ବିକାଶ ହେବା କଥା ତାହା ମଧ୍ୟ ହୁଏ ନାହିଁ। ଆଉ ପାରିପାର୍ଶ୍ୱିକ କହିଲେ ଗୁରୁ ବା ଇଷ୍ଟ ମଧ୍ୟ ତ ଜଣେ ପାରିପାର୍ଶ୍ୱିକ। ଇଷ୍ଟରୂପ ପାରିପାର୍ଶ୍ୱିକ ଓ ଇଷ୍ଟଙ୍କୁ ବାଦ ଦେଇ ଅନ୍ୟ ଯେଉଁ ବୃହତ୍ତର ପାରିପାର୍ଶ୍ୱିକ – ଏହି ଦୁଇଟିର ସହିତ ଯେଗାଯୋଗ ରହିବା ଦରକାର। ଇଷ୍ଟଙ୍କ ପାଖରୁ ଯେଉଁ ପ୍ରେରଣା ଆମ୍ଭେମାନେ ପାଉ, ତାହା କେତେଟା ଆତ୍ମସ୍ଥ କରିଲୁ, ତାର ପରୀକ୍ଷା ପରିବେଶରେ ଚାଲେ। ଏହି ଭାବରେ ବାସ୍ତବ ସଂଘର୍ଷ ଓ ସଂଘାତର ଭିତର ଦେଇ ଇଷ୍ଟାନୁଗ ଚଳନ ଆୟତ୍ତ ହୁଏ। ସେଥିପାଇଁ, ଆଧ୍ୟାତ୍ମିକ ଉନ୍ନତି ପାଇଁ ମଧ୍ୟ ପରିବେଶ ସହିତ ଯୋଗାଯୋଗ ଅପରିହାର୍ଯ୍ୟ ପ୍ରୟୋଜନ। ଘାତ-ପ୍ରତିଘାତର ଭିତର ଦେଇ କିଏ କେତେଟା ଭଲ ରହିପାରେ, ସେହିଟିହିଁ ତ ଭଲତ୍ୱର ଅସଲ ପରଖ। ଅବଶ୍ୟ ସମୟ ସମୟରେ ସାମୟିକ ଭାବରେ କାହା କାହାର ନିର୍ଜ୍ଜନରେ ରହିବା ପ୍ରୟୋଜନ ହୋଇପାରେ, କିନ୍ତୁ ନିର୍ଜ୍ଜନ ବାସ ପରେ ପୁଣି ଲୋକାଳୟକୁ ଫେରି ଆସିବାକୁ ହୁଏ। ଆ.ପ୍ର. ୫/୨୧.୫.୧୯୪୩

**ପ୍ର. – ଇଷ୍ଟନୁସରଣରେ ସମସ୍ତେ ଆଗ୍ରହଶୀଳ ହୁଅନ୍ତି ନାହିଁ କାହିଁକି ? ତାହା କିପରି କରାଯାଇ ପାରେ ?**

**ଶ୍ରୀଶ୍ରୀଠାକୁର** – ସମସ୍ତେ ଯେ ଆଗ୍ରହଶୀଳ ହୁଅନ୍ତି, ତାହା ହୁଏ ନାହିଁ। Instinct (ସଂସ୍କାର) ନ ରହିଲେ ତୁମେ ଲକ୍ଷେ ବୁଝାଅ, କୌଣସି ପ୍ରକରେ ବୁଝିବେ ନାହିଁ। ତେବେ ଯାହାକୁ ନେଇ ଏହି କାର୍ଯ୍ୟ କରିବାକୁ ଚାହଁ, ତା' ପାଖରେ ଏହା ଉପଭୋଗ୍ୟ ହେବା ଦରକାର। ଏ ସମ୍ବନ୍ଧରେ ତାର ଏକ ପ୍ରକୃତିଗତ ଚାହିଦା ରହିବା ଦରକର। ଅନ୍ୟ କୌଣସି ଲୋଭରେ ପଡ଼ି ଯଦି ଏହି କାର୍ଯ୍ୟ ଅରମ୍ଭ କରେ, ତାହେଲେ ଟିକ୍ଷ ରହିପାରେ ନାହିଁ। ରହିଲେ ମଧ୍ୟ ଆପ୍ରାଣତା ଥାଏ ନାହିଁ, ଆଉ ଆପ୍ରାଣତା ନ ରହିଲେ ମଣିଷକୁ ମଧ୍ୟ ମଜାଇ ପାରେ ନାହିଁ।

ଆ.ପ୍ର. ୫/୧୭.୭.୧୯୪୩

**ପ୍ର. – ଇଷ୍ଟଙ୍କ ପାଖରେ କାହାରି ପାଇଁ କୌଣସି ସକାମ ପ୍ରାର୍ଥନା କ'ଣ ଇଷ୍ଟନିଷ୍ଠାର ପରିପନ୍ଥୀ ?**

**ଶ୍ରୀଶ୍ରୀଠାକୁର** – କାହାରି ମଙ୍ଗଳ ଯେଉଁଥିରେ ହୁଏ, ତାହା କରିବା ବା ସେପରି ଆବେଦନ-ନିବେଦନ ଭଗବାନଙ୍କ ପାଖରେ କରିବାରେ କୌଣସି ଦୋଷ ନାହିଁ। ...ପ୍ରିୟଜନଙ୍କର ମଙ୍ଗଳ ଭାବିବା, ମଙ୍ଗଳ ଚାହିଁବା ଓ ମଙ୍ଗଳ କରିବାର ଅଭ୍ୟାସ ଯଦି ମଣିଷର ହୁଏ, ତାହା କେତେବେଳେବି ଇଷ୍ଟନିଷ୍ଠାର ପରିପନ୍ଥୀ ହୁଏ ନାହିଁ – ଯେତେ ସମୟ ଇଷ୍ଟ ଓ ପରିବେଶର ସ୍ୱାର୍ଥ ସହିତ ସାମଞ୍ଜସ୍ୟ ରଖି ତାହା କରାଯାଏ। ଅବଶ୍ୟ ଏହି ସାମଞ୍ଜସ୍ୟ ନଷ୍ଟ କରି କାହାରି ପ୍ରକୃତ ମଙ୍ଗଳ କେବେବି କରାଯାଏ ନାହିଁ। ...ପୁତ୍ର, କନ୍ୟା, ଆତ୍ମିୟପରିଜନ ଠାରୁ ଆରମ୍ଭ କରି ପରିବେଶ, ସମାଜ, ଦେଶ –ସମସ୍ତଙ୍କର ସତ୍ତାକୁହିଁ ମଣିଷ ପାଳନ ପୋଷଣରେ ପ୍ରତୁଳ କରି ତୋଳିବାକୁ ଅଭ୍ୟସ୍ତ ହେଉ – ଏବଂ ତାହା ଇଷ୍ଟାର୍ଥେ। ଏହାହିଁ ହେଲା ସହଜ ଧର୍ମ। ମମତାର ବିନାଶ ନ କରି ବିସ୍ତାର କରିବାକୁ ହେବ। ମଣିଷର କାମନା ତ ଏକାଥରକେ ଯାଏନାହିଁ – ତେଣୁ, କାମନା ରଖିବାକୁ ହୁଏ – ଯାହାଦ୍ୱାରା ଇଷ୍ଟ ଭଲରେ ରହନ୍ତି, ପରିବେଶର ପ୍ରତ୍ୟେକେ ଭଲରେ ରହନ୍ତି। ଆଉ ଏହି କାମନା ପୂରଣ ପାଇଁ ଯାହା-ଯାହା କରିବାର କଥା ତା ମଧ୍ୟ କରିବାକୁ ହୁଏ। ପିଲାପିଲି କିମ୍ବା ନିଜର ଲୋକମାନେ ଏହା ଭିତରୁ ବାଦ ପଡ଼ନ୍ତି ନାହିଁ। ଇଷ୍ଟଙ୍କୁ ମୁଖ୍ୟ କରି ଧରିଲେ ସମସ୍ତଙ୍କୁହିଁ ଧରାହୁଏ। ପୁଣି କୌଣସି ଗୋଟିଏ ମଣିଷର ସର୍ବାଙ୍ଗୀନ ମଙ୍ଗଳ କରିବାକୁ ଗଲେ ହିଁ, ଇଷ୍ଟ ଓ ଜଗତ -ସଂସାର ସହ ସବୁ ଆସିଯାଏ। ଭଲପାଇବାକୁ ଯିଏ ଜାଣେ, ଅନ୍ୟର ଭଲରେ ବାସ କରିବାକୁ ଯିଏ ଅଭ୍ୟସ୍ତ, ତାର ପଥ ସବୁବେଳେ ଖୋଲା। ତେବେ, ନାମର ଅପାର ମହିମା। ନାମର ରସ ପାଇଗଲେ ମଣିଷ ଦେଖେ ଯେ ଜୀବନରେ ଇଷ୍ଟହିଁ ତ ମୁଖ୍ୟ! ସେଥିପାଇଁ ଛଳେ, ବଳେ, କୌଶଳେ ମଣିଷକୁ ନାମର ତରଙ୍ଗର ମଝିରେ ପକାଇ ଦେବାକୁ ହୁଏ।

ଆ.ପ୍ର. ୫/୧୭.୭.୧୯୪୩



**ପ୍ର. – କେବଳ ଇଷ୍ଟଙ୍କୁହିଁ ଭଲପାଇବାକୁ ହେବ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କୁ ମନପ୍ରାଣ ଦେଇ ଭଲ ପାଇବାକୁ ହୁଏ। ଇଷ୍ଟ ମାନେ ମୂର୍ତ୍ତ ମଙ୍ଗଳ। He is a man of solved complex (ସେ ସମାହିତ-ବୃତ୍ତି), ତାଙ୍କୁ ଭଲପାଇଲେ ଆମର complex (ବୃତ୍ତି) ଗୁଡ଼ିକ ମଧ୍ୟ solution (ସମାଧାନ)ର ପଥରେ ଚାଲେ।

ଆ.ପ୍ର. ୫/୧୮.୭.୧୯୪୩

**ପ୍ର. – ଇଷ୍ଟପ୍ରୀତି କାହାର ଅଛି କି ନାହିଁ କିପରି ବୁଝାଯିବ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟପ୍ରୀତିର ଗୋଟିଏ ଲକ୍ଷଣ ହେଲା, ପରିବେଶର ଭଲ ପାଇଁ ଏକ maddenning urge (ପାଗଳ ପରି ଆଗ୍ରହ-ଆକୂତି)। ଏହି urge (ଆକୂତି) ତାର ଶକ୍ତିକୁ ଆହୁରି ବଢ଼ାଇ ଦିଏ। ...ଆଉ, ଏହି ଯେ ପରିବେଶର ସେବାରେ ଉଦ୍ଦାମ ହୋଇଉଠେ, ତାର ପ୍ରଧାନ ଉଦ୍ଦେଶ୍ୟ ଥାଏ ଇଷ୍ଟଙ୍କର ତୃପ୍ତି-ଉତ୍ପାଦନ। ସେଥିପାଇଁ, ସେବାର ଅହଂକାର ବା ଆତ୍ମପ୍ରତିଷ୍ଠାର ବୁଦ୍ଧି ତାକୁ କମ୍ ହିଁ ଅଭିଭୂତ କରିପାରେ। ଏହାକୁ ହିଁ କହନ୍ତି ଯୋଗସ୍ଥ ହୋଇ କର୍ମ କରିବା। ଏହାରି ଭିତର ଦେଇହିଁ ଜୀବନରେ ଅର୍ଥ ଓ ପରମାର୍ଥର ସମନ୍ୱୟ ହୁଏ।

ଆ.ପ୍ର. ୫/୧୫.୯.୧୯୪୩

**ପ୍ର. – ଇଷ୍ଟାନୁସରଣ ମାଧ୍ୟମରେ ଅର୍ଥ ଆଉ ପରମାର୍ଥର ସମନ୍ୱୟ କିପରି ଭାବରେ ହୁଏ ?**

**ଶ୍ରୀଶ୍ରୀଠାକୁର** – ଆପଣ ଯଦି ପ୍ରକୃତ ସେବାପରାୟଣ ହୁଅନ୍ତି, ଆପଣଙ୍କ ଦ୍ୱାରା ଯଦି ବହୁ ଲୋକ ବାସ୍ତବରେ ଉପକୃତ ହୁଅନ୍ତି, ତାହେଲେ ପ୍ରାକୃତିକ ନିୟମରେ ଆପଣଙ୍କର ଆର୍ଥିକ ସମସ୍ୟାର ସମାଧାନ ସ୍ୱତଃହିଁ ହେବାର କଥା। କାରଣ, ସେବା ଓ ପ୍ରୟୋଜନ ପୂରଣର ଭିତର ଦେଇ ଅର୍ଥ ଆସେ। ପୁଣି, ସେହି ସେବାର ପଛରେ ଆତ୍ମସ୍ୱାର୍ଥ ଓ ଆତ୍ମପ୍ରତିଷ୍ଠାର ବୁଦ୍ଧି ନ ରହି ଯଦି ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠାର ବୁଦ୍ଧିହିଁ ପ୍ରବଳ ହୁଏ, ତେବେ ତା ଭିତର ଦେଇହିଁ ଆସେ ପରମାର୍ଥ ଅର୍ଥାତ୍ ଇହଜୀବନର ସାର୍ଥକତା। ପ୍ରବୃତ୍ତି-ପରାମୃଷ୍ଟ ସ୍ୱାର୍ଥପର ସଂକୀର୍ଣ୍ଣ ଜୀବନ ଇଷ୍ଟସ୍ୱାର୍ଥକତାର ମଧ୍ୟ ଦେଇ ଭୂମାୟିତ ପରିବ୍ୟାପ୍ତି ଲାଭ କରେ। ଜୀବନ ସଫଳ ହୋଇଯାଏ, ଆଉ ତାହାହିଁ ତ ପରମାର୍ଥ।

ଆ.ପ୍ର. ୫/୧୫.୧୦.୧୯୪୩

**ପ୍ର. – ଇଷ୍ଟାନୁସରଣରେ ମଝିରେ ମଝିରେ ତ ମନର ବାଧାହିଁ ବିରାଟ ବାଧା ହୋଇ ଛିଡ଼ା ହୁଏ, ତା'ଠାରୁ ବଞ୍ଚିବାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ସବୁକିଛିକୁ ଉପେକ୍ଷା କରି ଇଷ୍ଟଙ୍କୁ ଅନୁସରଣ କରି ଚାଲିବାକୁ ହୁଏ। ମନ ଯେ କେତେ ରକମ ଚାହେଁ, ତାର କ'ଣ କିଛି ଠିକ୍ ଅଛି ? ମନର କଥା ଶୁଣି ବିଭ୍ରାନ୍ତ

ହେଲେ ଚଳିବ ନାହିଁ। ଯେତେ କଷ୍ଟହିଁ ହେଉ, ଇଷ୍ଟଙ୍କର ନିର୍ଦ୍ଦେଶ ନିଖୁଣ ଭାବରେ ପାଳନ କରି ଚାଲିବାକୁ ହୁଏ। ଏହି କଷ୍ଟର ଭିତର ଦେଇ ବହୁକଷ୍ଟର ହାତରୁ ନିଷ୍କୃତି ମିଳେ।

ଆ.ପ୍ର. ୫/୧୫.୧୦.୧୯୪୩

**ପ୍ର. – ଇଷ୍ଟଙ୍କ ପ୍ରତି ଠିକ୍-ଠିକ୍ ଭକ୍ତି ହେବାହିଁ କ'ଣ ସବୁଠାରୁ କଠିନ ବ୍ୟାପର ନୁହେଁ?**

**ଶ୍ରୀଶ୍ରୀଠାକୁର** – ଖୁବ୍ କଠିନ, ପୁଣି ଖୁବ୍ ସହଜ। ଭକ୍ତି ରହିଲେ ଯେପରି କରେ, ଯେପରି କହେ, ଯେପରି ଭାବେ, ସଂକଳ୍ପ ନେଇ ସେପରି କରିବାକୁ ଲାଗିଲେ, କହିବାକୁ ଲାଗିଲେ, ଭାବିବାକୁ ଲାଗିଲେ, ଧୀରେ-ଧୀରେ ଭିତରେ ଭକ୍ତି ଜାଗ୍ରତ ହୋଇଉଠେ। ଗୁରୁଭକ୍ତି ଲାଭ କରିବାକୁ ଗଲେ ଗୁରୁଙ୍କର ଯେପରି ସଙ୍ଗ କରିବାକୁ ହୁଏ, ଗୁରୁଙ୍କର ଆଦେଶ ଯେପରି ପାଳନ କରିବାକୁ ହୁଏ, ସେହିପରି ପ୍ରକୃତ ଗୁରୁଭକ୍ତ ଯିଏ, ତାର ସଙ୍ଗ ମଧ୍ୟ କରିବାକୁ ହୁଏ। ଭକ୍ତର ଗୋଟିଏ ଭାବ ଅଛି, ଭକ୍ତର ଗୋଟିଏ ଶୁଦ୍ଧ ଦୃଷ୍ଟି ଅଛି ଯାହା ଦୁର୍ଲଭ। ସେଥିପାଇଁ ପ୍ରକୃତ ଭକ୍ତ ଯିଏ, ତାର ସଂସ୍ପର୍ଶରେ ମଣିଷର କଲ୍ୟାଣ ହୁଏ। ସେ କେବେହେଲେ ବି ମଣିଷକୁ ନିଜ ଆଡ଼କୁ ଆକୃଷ୍ଟ କରିବାକୁ ଚାହେଁ ନା – ସେ ଚାହେଁ ସମସ୍ତେ ଯେପରି ତାର ପ୍ରେଷ୍ଟଙ୍କୁ ଭଲପାଆନ୍ତୁ। ଆଉ, ପିଲାଦିନରୁ ମଣିଷକୁ ଭକ୍ତିଭାବରେ ଭାବିତ କରି ତୋଳିବାକୁ ହୁଏ। ମାତୃଭକ୍ତି, ପିତୃଭକ୍ତି, ଗୁରୁଭକ୍ତି ଯାହାଦ୍ୱାରା ପୋଷଣ ପାଏ, ସେହିପରି ବ୍ୟବସ୍ଥା କରିବାକୁ ହୁଏ। ଶିକ୍ଷାକୁ ଶ୍ରଦ୍ଧାଭିତ୍ତିକ କରିତୋଳିବା ଦରକାର – ତାହା ପରିବାରରେ, ସ୍କୁଲରେ ଓ କଲେଜରେ।

ଆ.ପ୍ର. ୫/୧୫.୧୦.୧୯୪୩

**ପ୍ର. – ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ବିରୋଧି ଯଦି କେହି ହୁଏ, ସେତେବେଳେ କରଣୀୟ କ'ଣ?**

**ଶ୍ରୀଶ୍ରୀଠାକୁର** – କାହାକୁ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ବିରୋଧି ବୋଲି ଧରି ନେବା ଭଲ ନୁହେଁ। ଯାହାର ଯେଉଁ ବ୍ୟାପାରରେ ଭୁଲ ଥାଏ, ସେହି ଭୁଲଟା ଧରାଇ ଦେବାକୁ ହୁଏ। ଆପଣ ଯେ ତାର ମଧ୍ୟ ଭଲ ଚାହାଁନ୍ତି, ତାହାହିଁ ତାର ବୋଧ କରିବା ଦରକାର। କାହାର ସ୍ୱାର୍ଥରେ ସ୍ୱାର୍ଥାନ୍ୱିତ ହେଲେ ଏପରି କଥା ବାହାରେ ଯେ, ସେ ତାହା ବୋଧ କରିପାରେ। ଯେତେଟା ସମ୍ଭବ କାହାକୁ ବାଦ ଦେବେ ନାହିଁ, ପ୍ରତ୍ୟେକଙ୍କୁ ନିଜର asset (ସମ୍ପଦ) କରି ତୋଳିବାକୁ ହେବ, ଏହି କଥାଟି ଯେପରି ମନେ ରହେ। ପରିବେଶ ମଧ୍ୟରେ ଯେତେଗୁଡ଼ିଏ ମଣିଷ unadjusted (ଅନିୟନ୍ତ୍ରିତ) ଥାଆନ୍ତି, ଆପଣଙ୍କର ବଞ୍ଚିବା ବଢ଼ିବାର ଅଭିଯାନ ମଧ୍ୟ ସେତେ ଦୁର୍ବଳ ହୋଇଥାଏ, ଏହି କଥାଟି ମର୍ମେ ମର୍ମେ ଅନୁଧାବନ କରିବା ଦରକର। ତେଣୁ, ନିଜର ସ୍ୱାର୍ଥରେହିଁ ମଣିଷକୁ adjust (ନିୟନ୍ତ୍ରଣ) କରି କରି ଚାଲିବାକୁ ହେବ। ହତାଶ, ନିରାଶ ବା ବିରକ୍ତ



ହେଲେ ଚଳିବ ନାହିଁ। ଯାହା ଅଛି ତାହା ତ ଅଛି, ଅକ୍ଳାନ୍ତ ଭାବରେ ତାହାହିଁ କରିଚାଲିବାକୁ ହେବ, ଯାହାଦ୍ୱାରା ପ୍ରତିକାର ହୁଏ। ଅପରିସୀମ ଧୈର୍ଯ୍ୟ ଦରକାର, ନ ହେଲେ ହେବ ନାହିଁ। ମଣିଷର ଚରିତ୍ର-ନିୟନ୍ତ୍ରଣ ସବୁଠାରୁ କଠିନ କାର୍ଯ୍ୟ। ଆଉ, ଖୁବ୍ ଶୀଘ୍ର ଏହାର ଫଳ କିଛି ବୁଝାଯାଏ ନାହିଁ। ମଣିଷ ଭିତରେ ଯେ କେତେ ରକମର ଦୁର୍ବଳତା ଥାଏ, ଏବଂ ପରିସ୍ଥିତିର ସଂଘାତର ଭିତରେ ପଡ଼ି କେତେ ଭାବରେ ଯେ ତାହା ଆତ୍ମପ୍ରକାଶ କରେ, ତା'ର କୌଣସି ଲେଖାଜୋଖା ନାହିଁ। ଏହା ଏକ ଅନ୍ତହୀନ ସଂଗ୍ରାମର ବ୍ୟାପାର। ତେବେ, ଯେଉଁମାନଙ୍କ ଭିତରେ ଅଚ୍ଛେଦ୍ୟ ଇଷ୍ଟାନୁରାଗ ଜାଗି ଉଠେ, ସେମାନଙ୍କର ଆଉ ଭୟ ନାହିଁ। ଦୋଷ ଦୁର୍ବଳତା ସେମାନଙ୍କୁ ଅଟକାଇ ରଖିପାରେ ନାହିଁ, ସେମାନେ ଧୀରେ-ଧୀରେ ସେଗୁଡ଼ିକୁ କାଟି ଉଠିବାକୁ ଲାଗନ୍ତି। ତେବେ, ଜନ୍ମଟା ଭଲ ହେବା ଦରକାର।

ଆ.ପ୍ର. ୫/୨୯.୧୨.୧୯୪୩

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ଆମ୍ଭମାନଙ୍କର ଭଲ ହେଉ ଏହା ଚାହିଁଲେ ମଧ୍ୟ ଅଜ୍ଞତାର କାରଣରୁ ଆମେ ଏପରି ଭାବରେ ଚାଲୁ ଯେ ଯାହାଦ୍ୱାରା ଖରାପଟା ହିଁ ଆସିଯାଏ! ଆମ୍ଭମାନଙ୍କର ଏହି ଅଜ୍ଞତା କିପରି ଭାବରେ ଯିବ?**

**ଶ୍ରୀଶ୍ରୀଠାକୁର** – ଆମ୍ଭେମାନେ ଯେତେ ଉତ୍ସମୁଖୀ ହେବୁ, ଇଷ୍ଟନିଷ୍ଠ ହେବୁ – ସକ୍ରିୟ ଚତ୍ପରତାରେ, ସେତେହିଁ ଅଜ୍ଞତା ବିଦାୟ ନେବ। ତାଙ୍କ ପ୍ରତି ଭକ୍ତି, ଭଲପାଇବା ଯେତେ ବଢ଼ିବ, ସେତେହିଁ ତାହା ସବୁକିଛି ଉପରେ ବ୍ୟାପିଯିବ। ପୋକଟିକୁ ମଧ୍ୟ ପରମ ଆତ୍ମୀୟ ପରି ମନେହେବ। ପ୍ରତିଟି ସତ୍ତାର ଯାହାଦ୍ୱାରା ସୁଖ ହୁଏ, ସନ୍ତୋଷ ହୁଏ, ସଂବୃଦ୍ଧି ହୁଏ, ତା ପାଇଁ ମନ-ପ୍ରାଣ ଦେଇ କରିବାକୁ ଇଚ୍ଛା ହେବ। ଏହି ଯେ ଇଷ୍ଟାନୁଗ ଆଗ୍ରହ-ବିଧୁର ସେବାସନ୍ଦିପନୀ ନନ୍ଦନମୁଖର ଚଳଣୀ – ତାହା ନିଜର ସ୍ୱାର୍ଥ ମଧ୍ୟରେ ସମସ୍ତଙ୍କର ସ୍ୱାର୍ଥ ଏବଂ ସମସ୍ତଙ୍କର ସ୍ୱାର୍ଥ ମଧ୍ୟରେ ନିଜର ସ୍ୱାର୍ଥର ସମାବେଶ ଦେଖିବାକୁ ପାଏ। ଏହି ଦୃଷ୍ଟି ହେଲା ପ୍ରେମର ଦୃଷ୍ଟି। ଆଉ, ପ୍ରେମର ଦୃଷ୍ଟି ଯେଉଁଠାରେ, ଜ୍ଞାନର ଦୃଷ୍ଟି ମଧ୍ୟ ସେହିଠାରେ। ...ତେବେ, ଏହା କେବଳ ମାତ୍ର philosophically (ଦାର୍ଶନିକ ଭାବରେ) ଓ intellectually (ବୁଦ୍ଧିଗତ ଭାବରେ) ବୁଝିଲେ ହେବ ନାହିଁ। ଦୈନନ୍ଦିନ ଚଳନର ଭିତରେ ଏହି ବୋଧର ପରିଚୟ ଯଥାସମ୍ଭବ ଦେବାକୁ ହେବ। ଇଷ୍ଟଙ୍କର ପ୍ରୀତ୍ୟାର୍ଥେ ପ୍ରତ୍ୟେକଙ୍କର ଅନ୍ତର୍ନିହିତ ଇଷ୍ଟପୁରୁଷଙ୍କୁ ସେବା-ପୂଜାରେ ପରିତୃପ୍ତ କରିବାର ଆକୂଳ ଧନ୍ଦା ନେଇ ବାସ୍ତବରେ ଚାଲିବାକୁ ହେବ। ଏହାଦ୍ୱାରା ଇଷ୍ଟାନୁରାଗ ଓ ଲୋକପ୍ରୀତି ଦୁଇଟିହିଁ ଫଣ-ଫଣ କରି ବଢ଼ି ଉଠିବ। ଟିକିଏ କର ସୋନା! ଟିକିଏ କର। ନିଜକୁ କରିବାର ସ୍ରୋତରେ ପକାଇ ଦେଲେ ଦେଖିବାକୁ ପାଇବ – ଏହି ପଥ ଦେଇ ପରମପିତାଙ୍କର ଦୟା ବନ୍ୟା ପରି ମାଡ଼ି ଆସୁଛି।

ଆ.ପ୍ର. ୫/୧.୧.୧୯୪୪

**ପ୍ର. – ଇଷ୍ଟାନୁସରଣରେ ସବୁକିଛିର ଭିତରେ ରହି ମଧ୍ୟ uncoloured (ରଙ୍ଗୀନ୍ ନହୋଇ) ରହି ହେବ କେତେବେଳେ ?**

**ଶ୍ରୀଶ୍ରୀଠାକୁର** – ଯେତେଟା ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେବେ, ସେତେଟା uncoloured (ଅରଙ୍ଗିନ୍) ରହି ପାରିବେ। ନହେଲେ, ବାସ୍ତବଟାକୁ ନ ଦେଖି ନିଜର ଧାରଣା ଅନୁଯାୟୀ ଯାହାକିଛିକୁ ଦେଖିବାର ଦାୟ ଠାରୁ ମୁକ୍ତି ପାଇବେ ନାହିଁ। ଆଉ, ବାସ୍ତବରେ ଯିଏ ବା ଯାହା ଯେମିତି ବି ହେଉ ନା କାହିଁକି, ତାକୁ ସତ୍ତାସମ୍ବର୍ଦ୍ଧନୀ କରିତୋଳିବାକୁ ଗଲେହିଁ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେବା ଦରକାର। ସମସ୍ୟା ସମ୍ବନ୍ଧରେ କେବଳ ସଚେତନ ହେଲେ ଚଳିବ ନାହିଁ, ତାର ସମାଧାନ ମଧ୍ୟ ସଙ୍ଗେ-ସଙ୍ଗେ କରିବାକୁ ହେବ। ଦୋଷ ବା ଗଲତିର କଥା ନେଇ ଯେତେବି ସମାଲୋଚନା କରନ୍ତୁନା କାହିଁକି, ତା' ଦ୍ୱାର କିଛି ଫାଇଦା ହେବ ନାହିଁ। ଅବସ୍ଥା ଆହୁରି ଜଟିଳ ହେବ। ଜୀବନର ଖୋରାକ୍ ତା'ଠାରୁ ପାଇବ ନାହିଁ। ସେଗୁଡ଼ିକ ଠାରୁ ରକ୍ଷା ପାଇବାର ପନ୍ଥା ଆବିଷ୍କାର କରିବାକୁ ହେବ। ଆଉ ସେହି ରକ୍ଷାପାଇବାର ପନ୍ଥା ହେଲା – ସକ୍ରିୟ ଭାବରେ ଇଷ୍ଟନିର୍ଦ୍ଦେଶ ପାଳନ କରି ଚାଲିବା, ବହନ କରି ଚାଲିବା, ମୂର୍ତ୍ତ କରି ତୋଳିବା। ଯାହାଦ୍ୱାରା ସବୁ ଭିତରେ ଏହି ପ୍ରବଣତା ଜାଗ୍ରତ ହୁଏ, ତାପାଇଁ ଖୁବ୍ ଜବରଦସ୍ତ ଭାବରେ ଲାଗିବାକୁ ହେବ।

ଆ.ପ୍ର. ୫/୩.୧.୧୯୪୪

**ପ୍ର. – ଇଷ୍ଟାନୁସରଣରେ ଚାଲିବାହିଁ କ'ଣ ମୋକ୍ଷପନ୍ଥୀ ହେବା ? ମୋକ୍ଷ ମାନେ କ'ଣ ?**

**ଶ୍ରୀଶ୍ରୀଠାକୁର** – ମୁଁ ମୋକ୍ଷପନ୍ଥୀ ବୋଲି କିଛି ବୁଝେ ନାହିଁ। ମୁଁ ବୁଝେ ଇଷ୍ଟପନ୍ଥୀ ହେବାର କଥା। ମଣିଷ ଯଦି ବୈଶିଷ୍ଟ୍ୟପାଳୀ ଆପୂରୟମାଣ ଇଷ୍ଟଙ୍କୁ ପାଏ ଓ ସକ୍ରିୟ ନିଷ୍ଠାରେ ତାଙ୍କୁ ଅନୁସରଣ କରି ଚାଲେ, ତେବେ ଧର୍ମ, ଅର୍ଥ, କାମ, ମୋକ୍ଷ ସବୁହିଁ ତାର ଜୀବନରେ ସହଜଲଭ୍ୟ ହୋଇ ଉଠେ। ମୋକ୍ଷ ମାନେ, ପ୍ରବୃତ୍ତିର ଅଭିଭୂତି ଓ ବନ୍ଧନରୁ ମୁକ୍ତି। ମଣିଷର ଇଷ୍ଟାନୁରାଗ ଯେଉଁ ପରିମାଣରେ ବୃଦ୍ଧିପାଏ, ତାର ମୋକ୍ଷ ମଧ୍ୟ ଲାଭ ହୁଏ ତଦନୁପାତିକ। ମୋକ୍ଷମାନେ ଯଦି କେହି ବୁଝେ ଇହବିମୁଖତା, ତା କିନ୍ତୁ ଠିକ୍ ନୁହେଁ। ବରଂ ଆମର ଘର, ସଂସାର, ସମାଜ ଓ ପରିବେଶକୁ ଏପରିକରି ନିୟନ୍ତ୍ରିତ କରିବାକୁ ହେବ, ଯାହାଦ୍ୱାରା ତାହା ଇଷ୍ଟଙ୍କରହିଁ ଲୀଳାକ୍ଷେତ୍ର ହୋଇଉଠେ। ମୁଁ ଯାହା ବୁଝେ ତାହା ଏହିପରି।

ଆ.ପ୍ର. ୫/୫.୧.୧୯୪୪

**ପ୍ର. – ସାଂସାରିକ ଜୀବନରେ ଇଷ୍ଟାନୁରାଗର ପ୍ରୟୋଜନ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଆମର ଶାସ୍ତ୍ର ଏପରି କିଛି କଥା କହିନାହିଁ ଯେ ଯେପରି-ସେପରି କରି ସଂସାର କରିଲେହିଁ ହେଲା। ପ୍ରଥମେ ଦରକାର ଇଷ୍ଟାନୁରାଗ। ଇଷ୍ଟାନୁରାଗ-ଅଧ୍ୟୁଷିତ ସୁଗଠିତ, ସଂଯତ, ବଳିଷ୍ଠ, ଚରିତ୍ର ଯଦି ନ ଥାଏ, ତାହେଲେ ବିବାହ କରି, ଘର-ସଂସାର ନେଇ ମଣିଷର ଯେ କି ଅବସ୍ଥା ହୁଏ, ତାହା ତ ଆଖିଆଗରେ ଦେଖିବାକୁ ପାଉଛୁ। ଏହାକୁ କିନ୍ତୁ ସଂସାର କରିବା କୁହାଯାଏ ନାହିଁ। ... ସେଥିପାଇଁ, ଯାହାବି କରିବାକୁ ଯାଅନା କାହିଁକି, ପ୍ରଥମ ଲକ୍ଷ୍ୟ ହେଲା ଇଷ୍ଟାନୁରାଗ। ଏହି ସମ୍ବଳକୁ ଅଣ୍ଟାରେ ବାନ୍ଧି ଭବସମୁଦ୍ର ମଧ୍ୟରେ ଯେଉଁଠାରେହିଁ ପଡ଼-ନା-କାହିଁକି, ତରିଯିବାର ସମ୍ଭବନାହିଁ ବେଶି।

ଆ.ପ୍ର. ୫/୫.୧.୧୯୪୪

**ପ୍ର. – ଇଷ୍ଟାନୁସରଣରେ 'ପରମପିତାଙ୍କରଦୟା' କେତେବେଳେ ଅନୁଭତ୍ ହଏ ?**

**ଶ୍ରୀଶ୍ରୀଠାକୁର** – ଆମ୍ଭମାନଙ୍କର ପ୍ରତ୍ୟେକଙ୍କର ଅନ୍ତରରେ ପରମପିତାଙ୍କର ଅଧିଷ୍ଠାନ ଅଛି। ସେହି ଅନ୍ତରସ୍ଥ  ପରମପିତା ପୀତ ଓ ନନ୍ଦତ ହଅନ୍ତ – ଯେତେବେଳେ ଆମ୍ଭେମାନେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାମୁଖର ହୋଇ କଲ୍ୟାଣ-ଚିନ୍ତା, କଲ୍ୟାଣ-କଥା ଓ କଲ୍ୟାଣ-କର୍ମରେ ବାସ୍ତବ ଭାବରେ ନିଯୁକ୍ତ ହେଉ। ଏହିପରି କାର୍ଯର ସହିତ ପରମପିତାଙ୍କର  ଦୟା ଓତପ୍ରୋତ ଭାବରେ ନିବଦ୍ଧ ଥାଏ।

ଆ.ପ୍ର. ୫/୨.୪.୧୯୪୪

**ପ୍ର. – ଇଷ୍ଟଗ୍ରହଣ ନ କରି ମଧ୍ୟ ଯଦି ସମସ୍ତଙ୍କର କଲ୍ୟାଣ ଯାହାଦ୍ୱାରା ହୁଏ ସେହିପରି ଚିନ୍ତା, ବାକ୍ୟ ଓ କର୍ମ ନେଇ ରୁହାଯାଏ, ତାଦ୍ୱାରା କ'ଣ ପରମପିତା ତୃପ୍ତ ହୁଅନ୍ତି ନାହିଁ ?**

**ଶ୍ରୀଶ୍ରୀଠାକୁର** – ସତ୍ତା-ସଂରକ୍ଷଣୀ ଓ ସତ୍ତା-ସମ୍ବର୍ଦ୍ଧନୀ ଚିନ୍ତା,ଚଳନ ଓ ବାକ୍ୟ ହେଲେହିଁ ସେ ତୃପ୍ତ ହୁଅନ୍ତି। କିନ୍ତୁ ମଣିଷ ଇଷ୍ଟସ୍ୱାର୍ଥପ୍ରତିଷ୍ଠାମୁଖର ନହେଲେ ପ୍ରବୃତ୍ତିର କବଳରେ ପଡ଼ିଯାଏ। ପ୍ରବୃତ୍ତିର କବଳରେ ରହି ସତ୍ତା-ସଂରକ୍ଷଣୀ ଓ ସତ୍ତା-ସମ୍ବର୍ଦ୍ଧନୀ କାର୍ଯ୍ୟ କରିବାକୁ ଗଲେ, ତା ଭିତରେ ଅନେକ ରକମର ଭେଜାଲ ଆସିଯାଏ। ଭଲ କରିବାକୁ ଯାଇ ମଧ୍ୟ ଅନେକ ମନ୍ଦର ଆମଦାନୀ କରି ପକାଏ। ଆଉ, ସେହି ମନ୍ଦର ଶୁଭ ବିନ୍ୟାସ କମ୍‌ହିଁ କରିପାରେ। କାରଣ, ଶୁଭରେ ବିନ୍ୟାସ କରିବାକୁ ଦରକାର ଜୀବନ୍ତ ଶୁଭ ଅର୍ଥାତ୍ ଇଷ୍ଟ, ଯିଏ ହେଲେ balance imparting agent (ସମତା-ସଞ୍ଚାରୀ ହୋତା)। ତେଣୁ, sincerely (ଆନ୍ତରିକ ଭାବରେ) କେହି ଯଦି ମଣିଷର ଭଲ କରିବାକୁ ଚାହେଁ,ସେ ଇଷ୍ଟଗ୍ରହଣ କରେ ହିଁ। ମଣିଷର ଭଲ ଚାହେଁ, ଅଥଚ ଇଷ୍ଟଗ୍ରହଣ କରିବାକୁ ଚାହେଁ ନାହିଁ ବା ଇଷ୍ଟ ଗ୍ରହଣ କରିବାର ପ୍ରୟୋଜନ ବୋଧ କରେ ନାହିଁ, ତାର ମାନେ ପ୍ରକୃତ ଭଲ କ'ଣ, ସେ-ସମ୍ବନ୍ଧରେ ତାର ଧାରଣା ନାହିଁ, କିମ୍ବା ଏହି ଭଲ କରିବାର ଚାହିଦା ପଛରେ କୌଣସି ପ୍ରବୃତ୍ତିର ପ୍ରରୋଚନା ଅଛି – ଯେପରି ଅର୍ଥ, ମାନ, ଯଶ, ପ୍ରତିପତ୍ତି, ନାରୀ ଇତ୍ୟାଦିର ଉପରେ ଲୋଭ। ...ସିଧା

କଥା, ମଣିଷ ଅବଲମ୍ବନ-ହୀନ ହୋଇ ଝୁଲି ରହିପାରେ ନାହିଁ। ସେ ଇଷ୍ଟସ୍ୱାର୍ଥୀ ବି ହେବ ନାହିଁ, ପ୍ରବୃତ୍ତିସ୍ୱାର୍ଥୀ ବି ହେବ ନାହିଁ, ଏପରି ହୋଇପାରେ ନାହିଁ। ଗୋଟିଏ ଦିଗକୁ ଝୁଙ୍କ ନ ରହିଲେ, ଅନ୍ୟ ଦିଗକୁ ଝୁଙ୍କ ରହିବହିଁ।

ଆ.ପ୍ର. ୫/୨.୪.୧୯୪୪

**ପ୍ର. – ଇଷ୍ଟଙ୍କୁ ଗ୍ରହଣ କରିବା ମାନେହିଁ କ'ଣ ତାଙ୍କୁ ପାଇବା ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କୁ କେବଳ ନାମକାୱାସ୍ତେ ଗ୍ରହଣ କଲେହିଁ ଇଷ୍ଟଙ୍କୁ ପାଇବା ହୁଏ ନାହିଁ। ଇଷ୍ଟଙ୍କୁ ଯିଏ ପାଏ, ଧିରେ-ଧିରେ ଇଷ୍ଟଙ୍କର ସ୍ୱଭାବ ତାକୁ ଅଳ୍ପ ବହୁତ ପାଇ ବସେ। ସେ ମଧ ଦରଦୀ ହୁଏ, ସେବା ପ୍ରାଣ ହୁଏ, ପରିବେଶର ସ୍ୱାର୍ଥରେ ସ୍ୱାର୍ଥାନ୍ୱିତ ହୋଇଉଠେ। କ୍ଳେଶସୁଖପ୍ରିୟ ଇଷ୍ଟଦରଦ ନେଇ ପରିବେଶର ପରିପାଳନ,ପରିପୋଷଣ ଓ ପରିପୂରଣର ଚେଷ୍ଟା ନାହିଁ, ସେଥିପାଇଁ ମନ ମଧରେ କୌଣସି ଛଟପଟ ଭାବ ନାହିଁ, ଅଥଚ ଇଷ୍ଟଙ୍କୁ ଖୁବ୍ ଭଲପାଏ, ସେହି ଭଲପାଇବା ପ୍ରାୟହିଁ ସଂକୀର୍ଣ୍ଣ ସ୍ୱାର୍ଥଦୁଷ୍ଟ। ନିଜର ସ୍ୱାର୍ଥ ପାଇଁ ଇଷ୍ଟଙ୍କୁ ଭଲପାଇବା – ଭଲପାଇବାର ଲକ୍ଷଣ ନୁହେଁ। ଇଷ୍ଟଙ୍କୁ ଯିଏ ଭଲପାଏ ସେ ଇଷ୍ଟସ୍ୱାର୍ଥକୁହିଁ ନିଜର ସ୍ୱାର୍ଥ କରିନିଏ, ଏବଂ ତାର ପରିପୂରଣ ଯାହାଦ୍ୱାରା ହୁଏ, ତାହାହିଁ କରି ଚାଲେ। ସେଥିପାଇଁ, ପରିବେଶର ମଙ୍ଗଳ ସାଧନରେ ସେ କେତେବେଳେ ମଧ ନିଶ୍ଚେଷ୍ଟ ରହିପାରେ ନାହିଁ। କାରଣ, ସେ ଜାଣେ, ଏହି ନିଶ୍ଚେଷ୍ଟତାରେ ଇଷ୍ଟାର୍ଥହିଁ ବ୍ୟାହତ ହୁଏ।

ଆ.ପ୍ର. ୫/୨.୪.୧୯୪୪

**ପ୍ର. – ଇଷ୍ଟାନୁସରଣରେ କିପରି ଭାବରେ ଚାଲିଲେ ମଣିଷର ଉନ୍ନତି ହେବହିଁ ?**

**ଶ୍ରୀଶ୍ରୀଠାକୁର –** ମଣିଷ ଯଦି ଇଷ୍ଟପ୍ରାଣ ହୁଏ, ସୁନିୟନ୍ତ୍ରିତ ହୁଏ, ଅନୁସନ୍ଧିତ୍ସୁ ସେବାପରାୟଣ ହୁଏ, ତେବେ ସେ ସମାଜର ଏକ ବଡ଼ asset (ସମ୍ପଦ) ହୋଇଉଠେ। ସେ ଯେଉଁଠି ରହେ, ତାକୁ ଦେଇହିଁ ଲୋକଙ୍କର ଉପକାର ହୁଏ। ତୁମ୍ଭମାନଙ୍କର ଚରିତ୍ର, ଅଭ୍ୟାସ, ବ୍ୟବହାର ଏପରି ହେବା ଦରକାର, ଯାହା ମଣିଷକୁ ଦେବତ୍ୱ ଅଭିମୁଖୀ କରି ତୋଳେ। ସତ୍ତାପୋଷଣୀ କୁଳାଚାର ଓ ଐତିହ୍ୟ ଯାହାର ଯାହା ଅଛି, ସେଗୁଡ଼ିକ ଯେପରି ପରିପାଳିତ ହୁଏ, ସେ ଦିଗକୁ ଲକ୍ଷ୍ୟ ରଖିବ। ପ୍ରକୃତ ଯଜନ, ଯାଜନ, ଇଷ୍ଟଭୃତି ଯେପରି ପ୍ରତ୍ୟେକଙ୍କର ମଜ୍ଜାଗତ ହୋଇଯାଏ, ତାହା କରିବ ହିଁ କରିବ। ଆଉ ପ୍ରତ୍ୟେକେହିଁ ଯେପରି ଗୁରୁଭାଇ ଓ ବୃହତ୍ତର ପରିବେଶର ସାଧ ଅନୁଯାୟୀ ସେବା କରନ୍ତି, ତାହା କରିବାହିଁ ଦରକାର। କେବଳ ମୁହଁରେ କହିଲେ ହେବନାହିଁ, ଏଗୁଡ଼ିକ ନିଜକୁ କରିବାକୁ ହେବ, ଅନ୍ୟକୁ ଦେଇ କରାଇବାକୁ ହେବ। ଏହା ଛଡ଼ା ନିସ୍ତାର ନାହିଁ। ଆଉ ବିଭିନ୍ନ ବିଷୟରେ ମୋର ଯାହା କୁହାଅଛି,ସେଗୁଡ଼ିକ ଯେପରି ସମସ୍ତଙ୍କ ମଧରେ ସଞ୍ଚାରିତ ହୋଇଯାଏ, ତାର ବ୍ୟବସ୍ଥା କରିବାକୁ ହୁଏ।



ବହିପତ୍ରଗୁଡ଼ିକ ନିଜେ ଭଲକରି ପଢ଼ିବାକୁ ହୁଏ, ଅନ୍ୟକୁ ଦେଇ ମଧ ପଢ଼ାଇବାକୁ ହୁଏ। ସଙ୍ଗେ-ସଙ୍ଗେ ଆଲୋଚନା କରିବାକୁ ହୁଏ ଏବଂ ଯେଉଁ-ଯେଉଁ ବିଷୟରେ ବର୍ତ୍ତମାନହିଁ ଯାହା-ଯାହା କରିବା ସମ୍ଭବ ତାହା କରିବା ଆରମ୍ଭ କରିଦେବାକୁ ହୁଏ। ଶହ-ଶହ ଲୋକ ବଙ୍ଗଳା ଓ ଅନ୍ୟାନ୍ୟ ପ୍ରଦେଶର ସହର ଓ ଗ୍ରାମ ଗୁଡ଼ିକୁ ଯାଇ ଯଦି ଏଗୁଡ଼ିକ କରି ଚାଲନ୍ତି,ତାହେଲେ ଉନ୍ନତି ପାଇଁ ମୁଣ୍ଡ ଖେଳାଇବାକୁ ହେବ ନାହିଁ। ସେତେବେଳେ ପ୍ରତ୍ୟେକଟି ମଣିଷ ହେବେ ପ୍ରତ୍ୟେକଟି ମଣିଷ ପାଇଁ, ପ୍ରତ୍ୟେକଟି ସହର ଓ ଗ୍ରାମ ହେବ ପ୍ରତ୍ୟେକଟି ସହର ଓ ଗ୍ରାମ ପାଇଁ, ପ୍ରତ୍ୟେକଟି ଜିଲ୍ଲା ହେବ ପ୍ରତ୍ୟେକଟି ଜିଲ୍ଲା ପାଇଁ, ପ୍ରତ୍ୟେକଟି ପ୍ରଦେଶ ହେବ ପ୍ରତ୍ୟେକଟି ପ୍ରଦେଶ ପାଇଁ, ପ୍ରତ୍ୟେକଟି ସମ୍ପ୍ରଦାୟ ହେବ ପ୍ରତ୍ୟେକଟି ସମ୍ପ୍ରଦାୟ ପାଇଁ, ପ୍ରତ୍ୟେକଟି ସମାଜ ହେବ ପ୍ରତ୍ୟେକଟି ସମାଜ ପାଇଁ।

ଆ.ପ୍ର. ୫/୩.୪.୧୯୪୪

**ପ୍ର. – ଇଷ୍ଟାନୁସରଣରେ ଦୋଷ ଦେଖି ଦୁଷ୍ଟ ହେବା ଉଚିତ ନୁହେଁ, କିନ୍ତୁ ପାରିପାର୍ଶ୍ୱିକଙ୍କର ଦୁଷ୍ଟ ବ୍ୟବହାରର ପ୍ରତିକ୍ରିୟାରେ ତ ଦୁଷ୍ଟ ନ ହୋଇ ରହି ହୁଏ ନାହିଁ। ଏହାର ପ୍ରତିକାର କ'ଣ ?**

**ଶ୍ରୀଶ୍ରୀଠାକୁର –** ଅନ୍ୟର ଦୋଷର ପ୍ରତିକ୍ରିୟାରେ ତୁମେ ଯଦି ନିଜକୁ ଦୁଷ୍ଟ ହେବାକୁ ଦିଅ, ତାହେଲେ ତୁମେ ନିଜର ବା ପରିବେଶର ପରିଶୁଦ୍ଧିର ବ୍ୟବସ୍ଥା କରିପାରିବ ନାହିଁ। ତୁମ ଦେଇ ଦୋଷର ନିରସନ ହେବ ନାହିଁ, ଦୋଷ ଗୁଣିତ ହୋଇହିଁ ଚାଲିବ। ତୁମେ ନିଜେ ଗୋଟିଏ ପଙ୍କକୁଣ୍ଡ ହୋଇଉଠିବ। ସେଥିପାଇଁ ଅନ୍ୟର ଦୋଷରେ ଦୁଷ୍ଟ ନ ହୋଇ ଯେଉଁଠାରେ ଯେପରି ଶୋଭନୀୟ ଓ ସମୀଚିନ ସେହିପରି ଭାବରେ ତୁମର ଆଦର୍ଶ ସମ୍ମତ କର୍ମ, ବାକ୍ୟ ଓ ଆଚରଣ ନେଇ ଚାଲିବ। ସବୁ ସମୟରେ ଭାବିବ – ମୋର ଠାକୁର ଏହି ଅବସ୍ଥାରେ କ'ଣ କରିବାକୁ କହନ୍ତି, ଆଉ ସେହି ଭାବରେ ଚାଲିବ। ପାରିପାର୍ଶ୍ୱିକ ତ ତୁମର ଆଦର୍ଶ ନୁହଁନ୍ତି ଯେ ସେମାନଙ୍କର ଆଚରଣ ଅନୁସରଣ କରି ଚଳିବ। ତୁମର ଅନୁସରଣୀୟ ଯିଏ, ତାଙ୍କୁ ଅନୁସରଣ କରିହିଁ ଚାଲିବ ଏବଂ ତାହା ପ୍ରତି ପଦକ୍ଷେପରେ। ଏହି ଚଳଣରେ ଯଦି ଚାଲ ତାହେଲେ ନିଜେ ମଧ ବଞ୍ଚିବ ଓ ଅନ୍ୟକୁ ମଧ ବଞ୍ଚାଇ ପାରିବ। ତେବେ ଅନ୍ୟାୟ ବା ଅସତ୍‌ର ନିରୋଧରେ ବୁଦ୍ଧି, ବିବେଚନା ଓ ବୀର୍ଯ୍ୟ-ସହକାରେ ଯେଉଁଠାରେ ଯାହା କରଣୀୟ ତା' କିନ୍ତୁ କରିବାକୁହିଁ ହେବ। ଆଉ ସତ୍‌ର ସଂହତି ଯେପରି ବଢ଼େ, ସେଥିପାଇଁ ମଧ ଚେଷ୍ଟା କରିବାକୁ ହେବ।

ଆ.ପ୍ର. ୫/୩.୪.୧୯୪୪

**ପ୍ର. – ଇଷ୍ଟାନୁସରଣର ପଥରେ ଯେଉଁମାନଙ୍କର ଆଚରଣ ବନ୍ଧୁ ପରି ନୁହେଁ, ସେମାନଙ୍କ ସହିତ କିପରି ଆଚରଣ କରବାକୁ ହେବ ?**

**ଶ୍ରୀଶ୍ରୀଠାକୁର –** ଅନ୍ୟମାନେ ତୁମ ସହ ବନ୍ଧୁ ପରି ଆଚରଣ କରନ୍ତୁ ବା ନ କରନ୍ତୁ,

ତୁମେ ଯଦି ସେମାନଙ୍କ ସହ ବନ୍ଧୁ ପରି ଆଚରଣ କରିବାକୁ ଲାଗ, ତାହେଲେ ଟା ଭିତର ଦେଇ ପାରସ୍ପରିକ ବାନ୍ଧବତାର ସୂତ୍ରପାତ ହୋଇପାରେ। ଏହା ନିଶ୍ଚିତ ଭାବରେ ଧରି ରଖିବାକୁ ହେବ ଯେ ତୁମେ ବନ୍ଧୁ ପରି ଆଚରଣ କରିଲେ ମଧ୍ୟ ଅନେକେ ତୁମ ସହ ତାହା କରିବେ ନାହିଁ। ଟା ସତ୍ତ୍ୱେ ମଧ୍ୟ ତୁମକୁ କିନ୍ତୁ ତାହା ଚଳାଇ ରଖିବାକୁ ହେବ। ସେଥିପାଇଁ ନିଜର ଅନେକଟା କ୍ଷମତା ଥିବା ଦରକାର, ଯାହାଦ୍ୱାରା ସ୍ୱାର୍ଥ-ପ୍ରତ୍ୟାଶା ବାଦ ଦେଇ ନିଜ ଅସ୍ତିତ୍ୱ ଅକ୍ଷୁର୍ଣ୍ଣ ରଖି ଅପରର ଭଲ କରିପାର। ତେବେ ମଣିଷ ସହିତ deal (ବ୍ୟବହାର) କରିବାକୁ ଯାଇ କାହାର instinct (ସଂସ୍କାର) କିପରି, ତାହା ବୁଝିବା ଦରକାର। ଏପରି ମଣିଷ ଅଛନ୍ତି ଯେଉଁମାନଙ୍କର ଭଲ କରିବାକୁ ଯାଇ ତୁମେ ନିଜେ ବିପନ୍ନ ହୋଇଯାଇପାର। ସେମାନଙ୍କ ପାଇଁ ଶହେ କଲେ ମଧ୍ୟ ତୁମେ ତ ତାଙ୍କର ଭଲ କରିପାରିବ ନାହିଁ, ବରଂ ସେମାନେ ତୁମକୁ ଡୁବାଇ ଦେବାକୁ ଚେଷ୍ଟା କରିବେ। ସେଥିପାଇଁ ବୁଝି-ଶୁଝି ହିସାବ କରି ଚାଲିବା ଦରକାର। କିନ୍ତୁ ବାକ୍ୟାଳାପ ଓ ବ୍ୟବହାର ପ୍ରତ୍ୟେକଙ୍କ ସହିତ ଏପରି ଭାବରେ କରିବା ଭଲ, ଯାହାଦ୍ୱାରା ସେ ସୁଖି ହୁଏ ଏବଂ ଟା ଭିତରେ ଭଲ ଯାହା ଅଛି ତାହା ସନ୍ଦିପ୍ତ ହୋଇଉଠେ। ସେଥିପାଇଁ ପାରସ୍ପରିକ ବାନ୍ଧବତା ଓ ମଣିଷ-ସମ୍ପଦ ବଢ଼େଇବାକୁ ଗଲେ ତାର ଭିତ୍ତି ଇଷ୍ଟସ୍ୱାର୍ଥପ୍ରତିଷ୍ଠା ହେବା ଦରକାର। ଏ ଦିଗରେ ଯଦି ଲୋକଙ୍କୁ interested (ଆଗ୍ରହୀ) ନ କରାଯାଏ, ତେବେ ଫୁଟା କଳସରେ ଜଳ ଢାଳିବା ପରି ସବୁ service (ସେବା) ହିଁ ନିରର୍ଥକ ହୋଇଯାଏ।

ଆ.ପ୍ର. ୫/୧୪.୪.୧୯୪୪

**ପ୍ର. – ଇଷ୍ଟାନୁସରଣରେ ସର୍ବାବସ୍ଥାରେ ମନର ଭାବର କୌଣସି ବ୍ୟତିକ୍ରମ ହେବନାହିଁ, ସମାନ ଭାବରେ ଚାଲିବ – ଏପରି ଅବସ୍ଥା କିପରି ଆସିପାରେ ?**

**ଶ୍ରୀଶ୍ରୀଠାକୁର** – ସ୍ୱାଭାବିକ ନିୟମ ଏବଂ ଅବସ୍ଥା ଓ ପରିସ୍ଥିତିର ଚାପରେ ମନ ମଧ୍ୟରେ ନାନାପ୍ରକାର ଭାବର ଖେଳ ଚାଲିଥାଏ, ତରଙ୍ଗ ପରି କେତେବେଳେ ଉଠେ, କେତେବେଳେ ପଡ଼େ। କିନ୍ତୁ ଏଗୁଡ଼ିକ ଦ୍ୱାରା ବେଶି ଉଲ୍ଲସିତ ବି ହେବ ନାହିଁ ବା ଖୁବ୍ ଘାବରି ବି ଯିବନାହିଁ। ଭାବିବାକୁ ହେବ ଯେତେବେଳେ ଯେଉଁ ଅବସ୍ଥାବି ଆସୁ ନା କାହିଁକି, ଟା ଭିତର ଦେଇ ଇଷ୍ଟାନୁକୂଳ କ'ଣ କେତେଟା କରାଯାଇପାରେ, ଆଉ ସେହି ଦିଗକୁ ମନ ନିବେଶ କରିବାକୁ ହୁଏ। ଇଷ୍ଟମୁଖୀ ଚଳନର ଏହି କ୍ରମାଗତି ଯଦି ଅବ୍ୟାହତ ଥାଏ, ତାହେଲେ ମନର ଉଠା ପଡ଼ା ବା ସୁଖ ଦୁଃଖର ଦ୍ୱନ୍ଦ, ବିଶେଷ କୌଣସି କ୍ଷତି କରିପାରେ ନାହିଁ। ଏଗୁଡ଼ିକ ଆସେ-ଯାଏ କିନ୍ତୁ becoming (ବିବର୍ଦ୍ଧନ)କୁ ସ୍ତବ୍ଧ କରିପାରେ ନାହିଁ। କେବଳ ସାବଧାନ ରହିବ – ଇଷ୍ଟାଭିମୁଖୀ ଚଳନ ଓ କରଣ ଯେପରି କୌଣସି ପ୍ରକାରେହିଁ ଥମି ନ ଯାଏ। ଏହି ଗତି କେତେବେଳେ ଟିକିଏ ମନ୍ଥର ବା କେତେବେଳେ ଟିକିଏ ତୀବ୍ର ହୋଇପାରେ, ସେଥିରେ କିଛି



କ୍ଷତି ନାହିଁ। ତହା ଶେଷ ପର୍ଯ୍ୟନ୍ତ ପୋଷାଇ ଯାଏ। ଯେତେବେଳେ ଭାବୁଛନ୍ତି, କିଛି ଆଗେଇ ପାରୁ ନାହାନ୍ତି ସେତେବେଳେ ହୁଏତ ଅଜ୍ଞାତରେ ଅନେକଟା ଆଗେଇ ଯିବାର ଶକ୍ତି ସଂଗ୍ରହ କରିଛନ୍ତି। ତେବେ ସୁଖ-ଦୁଃଖ, ଆନନ୍ଦ-ନିରାନନ୍ଦ, ସ୍ତୁତି-ନିନ୍ଦା, ଉପେକ୍ଷା କରି ଇଷ୍ଟଚଳନ ବଜାୟ ରଖି ଚାଲିବା ହିଁ ଦରକାର।

ଆ.ପ୍ର. ୫/୮.୭.୧୯୪୪

**ପ୍ର. – ଇଷ୍ଟାନୁସରଣ ନ କରି ମଧ୍ୟ କ'ଣ ମଣିଷର ବଞ୍ଚିବା ବଢ଼ିବାରେ ସାହାଯ୍ୟ କରଯାଏ ନାହିଁ ?**

**ଶ୍ରୀଶ୍ରୀଠାକୁର** – ଗୋଟିଏ ମଣିଷକୁ କେବଳ ବଞ୍ଚିବାରେ ସାହାଯ୍ୟ କଲେହିଁ ହେବନାହିଁ। ସେ ଯେପରି ସପରିବେଶ ସତ୍, ଚତ୍ ଓ ଆନନ୍ଦର ପଥରେ ଆଗେଇ ଯାଇପାରେ ଟା'ର ବ୍ୟବସ୍ଥା କରିବାକୁ ହେବ। ତୁମେ ମଣିଷକୁ ସେବା ଦେଉଛ ଅଥଚ ତାର ସତ୍ତାବିଧ୍ୱଂସୀ complex (ପ୍ରବୃତ୍ତି) ଗୁଡ଼ିକୁ ନିୟନ୍ତ୍ରିତ କରିବାକୁ ଚେଷ୍ଟା କରୁ ନାହଁ, ତାଦ୍ୱାରା ଶେଷ ପର୍ଯ୍ୟନ୍ତ ତୁମର ସେବାରେ ଦେଶର, ଦଶର ଉପକାର ହେବ କି ଅପକାର ହେବ – କହିବା ସନ୍ଦେହ। ଧରାଯାଉ, ଗୋଟିଏ ଲୋକ treacherous (ବିଶ୍ୱାସଘାତକ), ତାର ପ୍ରକୃତି ତୁମେ ଜାଣିନାହଁ, ବା ତାକୁ ନିୟନ୍ତ୍ରିତ କରିବାର କୌଶଳ ମଧ୍ୟ ତୁମ ଆୟତ୍ତରେ ନାହିଁ, ଅଥଚ ସରଳ ପ୍ରାଣରେ ତାକୁ ସବୁ ବିଷୟରେ ସୁଯୋଗ-ସୁବିଧା କରିଦେଉଛ। ପରେ ହୁଏତ ଦେଖାଗଲା, ତୁମର ସୁବିଧା-ସୁଯୋଗ ନେଇ ସେ ଅନାୟାସରେ ଅନେକଙ୍କର ସର୍ବନାଶ କରି ପକାଇଲା। ... ମୁଁ କହେ – ସେବା ଦିଅ ଆଉ ଯାହା କର, 'ଯୋଗଃ କର୍ମସୁ କୌଶଳମ୍' – ଇଷ୍ଟଙ୍କଠାରେ ଯୁକ୍ତ ହୋଇ କର, ଆଉ ସବୁ କିଛିର ଭିତର ଦେଇ ମଣିଷକୁ ଇଷ୍ଟଙ୍କଠାରେ ଯୁକ୍ତ କରିବାକୁ ଚେଷ୍ଟା କର। ଟା' ନହେଲେ ତାର adjustment (ନିୟନ୍ତ୍ରଣ) ହେବ ନାହିଁ। ଚେଷ୍ଟା କରିଲେହିଁ ଯେ ପ୍ରତ୍ୟେକେ attached (ଯୁକ୍ତ) ଓ adjusted (ନିୟନ୍ତ୍ରିତ) ହେବେ, ତାର କୌଣସି ମାନେ ନାହିଁ। ତଥାପି ଏହା ଭିତର ଦେଇ ଜଣାଯାଏ – କିଏ କିପରି ଓଜନର ମଣିଷ ଏବଂ କାହା ସହିତ କିପରି ଭାବରେ ଚାଲିବା ଦରକାର। ଗୋଟିଏ ଲୋକ ଏଠାରେ ଦୀକ୍ଷା ନେଉ ବା ନ ନେଉ, ତାହା ବଡ଼ କଥା ନୁହେଁ, ଦେଖିବାକୁ ହୁଏ – କିଏ କେତେଟା ଶ୍ରେୟ-ଶ୍ରଦ୍ଧାପରାୟଣ, ନିଷ୍ଠାପରାୟଣ ଏବଂ ଏହି ଶ୍ରଦ୍ଧା ଓ ନିଷ୍ଠାରେ ସେ କେତେଟା ପ୍ରବୃତ୍ତିର ପ୍ରଲୋଭନକୁ ଉପେକ୍ଷା କରି ଚାଲିପାରେ। ମଣିଷ ହେବାକୁ ହେବ, ମଣିଷ ଗଢ଼ିବାକୁ ହେବ – ଆଉ ଏହାର ଅନ୍ତରାୟ ଯାହାକିଛି ତାହା ଚଡ଼ି ଦେବାକୁ ହେବ – ଏହାହିଁ ଆମ୍ଭମାନଙ୍କର movement (ଆନ୍ଦୋଳନ)।

ଆ.ପ୍ର. ୫/୯.୭.୧୯୪୪

**ପ୍ର. – ଇଷ୍ଟାନୁସରଣର ପଥରେ ପାରିପାର୍ଶ୍ୱିକ ଅବସ୍ଥା ଅନୁକୂଳ ନ ହେବା କାରଣରୁ**

**ବହୁ ମଣିଷ ଦୁଇଟା ଖାଇ-ପିନ୍ଧି ବଞ୍ଚିରହିବା ପାଇଁ ଇଷ୍ଟାଦର୍ଶଙ୍କୁ ବିସର୍ଜନ ଦେବାକୁ ବାଧ୍ୟ ହୁଅନ୍ତି । ସେ ସମ୍ବନ୍ଧରେ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର –** ପାରିପାର୍ଶ୍ୱିକ ଅବସ୍ଥା ପ୍ରତ୍ୟେକଙ୍କ ପକ୍ଷରେହିଁ ଅନୁକୂଳ ହୁଏ, ଯଦି ସେ ଅନୁକୂଳ କରିନେବାକୁ ଜାଣେ ଓ ଚାହେଁ । ଆଉ ଏଥିପାଇଁହିଁ ପ୍ରୟୋଜନ ଆଦର୍ଶ (ଇଷ୍ଟ) । ଆଦର୍ଶରେ (ଇଷ୍ଟଙ୍କଠାରେ) ପ୍ରବଳ ନିଶା ରହିଲେ ପାରିପାର୍ଶ୍ୱିକଙ୍କ ଦ୍ୱାରା otherwise influenced (ଅନ୍ୟଭାବେ ପ୍ରଭାବିତ) ନ ହୋଇ, ପାରିପାର୍ଶ୍ୱିକଙ୍କୁ towards Ideal (ଆଦର୍ଶାଭିମୁଖେ) influence (ପ୍ରଭାବିତ) କରିପାରେ । ଆଉ, ପେଟ ପାଇଁ ଯିଏ ଆଦର୍ଶଙ୍କୁ ବିସର୍ଜନ ଦିଏ, ତା ପାଖରେ ଆଦର୍ଶଙ୍କଠାରୁ ଯେ ପେଟ ବଡ଼, ସେ ବିଷୟରେ କି କ'ଣ ସନ୍ଦେହ ଅଛି ? ଆଦର୍ଶଙ୍କଠାରୁ ଆଉ କିଛି ବଡ଼ ହୋଇ ରହିଲେ, ଆଦର୍ଶଙ୍କୁ ବଜାୟ ରଖି ଚାଲିବା କଠିନ ହୋଇପଡ଼େ । ଆଦର୍ଶଙ୍କ ଠାରୁ ଆଉ କିଛି ବଡ଼ ରହିବ ନାହିଁ । ତାକୁହିଁ କହନ୍ତି ଆଦର୍ଶ ପ୍ରାଣତା ।
ଆ.ପ୍ର. ୫/୯.୭.୧୯୪୪

**ପ୍ର. – ଇଷ୍ଟାନୁସରଣରେ ଚାଲିବାକୁ ଗଲେ ନିଜେହିଁ ନିଜର, ନିଜ ପରିବାରର, ଦଶର ଓ ଦେଶର ବର୍ତ୍ତମାନ ଓ ଭବିଷ୍ୟତ ପାଇଁ ଦାୟୀ – ଏପରି ଗୋଟିଏ ଭାବ ନେଇ ଚାଲିବାକୁ ହୁଏ । କିନ୍ତୁ ଗୋଟିଏ ମଣିଷ ସମସ୍ତଙ୍କ ପାଇଁ କାହିଁକି ଓ କିପରି ଦାୟୀ ହେବ ?**

**ଶ୍ରୀଶ୍ରୀଠାକୁର –** ଗୋଟିଏ ଜଳାଶ୍ରୟର ଏକ କୋଣରେ ତୁମେ ଯଦି ଗୋଟିଏ ତରଙ୍ଗ ସୃଷ୍ଟି କର, ସେହି ତରଙ୍ଗ ସମଗ୍ର ଜଳାଶ୍ରୟର ପ୍ରତି ବିନ୍ଦୁ ଜଳରେ ବିସ୍ତୃତ ହୋଇଯିବ । ସେହିପରି ତୁମର ପ୍ରତ୍ୟେକଟି କର୍ମ ସଞ୍ଚାରିତ ହୋଇ ସମଗ୍ର ପାରିପାର୍ଶ୍ୱିକକୁ ବିସ୍ତୃତ ହୋଇ ପ୍ରତି ମୁହୂର୍ତ୍ତରେ ପ୍ରଭାବାନ୍ୱିତ କରୁଛି । ସେଥିପାଇଁ, ପାରିପାର୍ଶ୍ୱିକ ଯାହା ହୋଇଅଛି, ତା'ପାଇଁ ତୁମେ ଯେ ଆଂଶିକ ଭାବରେ ଦାୟୀ, ସେ ବିଷୟରେ କୌଣସି ସନ୍ଦେହ ନାହିଁ । ଏ ତ ଗଲା ଗୋଟିଏ ଦିଗର କଥା । ତା'ଛଡ଼ା ବ୍ୟଷ୍ଟି ଯେତେବେଳେ ପରିବେଶ ପ୍ରତି କରଣୀୟର ସମ୍ବନ୍ଧରେ ସଜାଗ, ସଚେତନ ଓ ସକ୍ରିୟ ହୁଏ, ସେତେବେଳେହିଁ ସାମାଜିକ ବା ଜାତୀୟ ସମସ୍ୟାର ସମାଧାନ ହେବା ସମ୍ଭବ । କାରଣ, ବ୍ୟଷ୍ଟିକୁ ନେଇ ହିଁ ସମଷ୍ଟି ଏବଂ ପ୍ରତି ବ୍ୟଷ୍ଟିହିଁ ପ୍ରତି ବ୍ୟଷ୍ଟିର ପରିବେଶ । ବୀରେନ୍‌ଦାର ତୁମ ପ୍ରତି କ'ଣ କରଣୀୟ ସେ ସମ୍ବନ୍ଧରେ ବୀରେନ୍‌ଦା ସହିତ ଝଗଡ଼ା ନ କରି ଯଦି ତୁମେ ବୀରେନ୍‌ଦାଙ୍କ ପ୍ରତି ତୁମର ଯାହା କରଣୀୟ ତାହା କରିଚାଲ, ତା'ହେଲେ ଉପକୃତ ହେବହିଁ ଏବଂ ତୁମର ଦୃଷ୍ଟାନ୍ତ ଦେଖି ବୀରେନ୍‌ଦା ମଧ୍ୟ ଉପକୃତ ହେବେ ବୋଲି ଆଶା କରାଯାଏ । ତୁମେ ସାଧ୍ୟମତେ କରିବା ସତ୍ତ୍ୱେ ମଧ୍ୟ ବୀରେନ୍‌ଦା ଯଦି ତୁମ ପାଇଁ କିଛି ନ କରନ୍ତି, ତା'ହେଲେ କିନ୍ତୁ କୌଣସି ଅନୁଯୋଗ କର ନାହିଁ, ସେ ଦିଗରୁ କୌଣସି ପ୍ରତ୍ୟାଶାହିଁ ରଖ ନାହିଁ, ତା'ହେଲେ ଠକି ଯିବ । କିନ୍ତୁ ବୀରେନ୍‌ଦା ଯଦି ଅନ୍ୟ କାହାରି ପ୍ରତି ତାର କରଣୀୟ ନ କରନ୍ତି, ସେ



ସ୍ଥଳରେ କିନ୍ତୁ ବୀରେନ୍‌ଦାଙ୍କୁ ସଜାଗ କରି ଦେବାକୁ ସଚେଷ୍ଟ ହୁଅ । ଏହି ଭାବରେ ତୁମର ପାଖାପାଖି ଯେତେ ଲୋକଙ୍କୁ ପାଅ, ସେତେ ଲୋକଙ୍କୁ ନେଇ ଆହୁରି-ଆହୁରି କର୍ତ୍ତବ୍ୟ-ପରାୟଣ ହେବାକୁ ଚେଷ୍ଟା କର, କୌଣସି ପ୍ରକାରେ ଥମି ଯାଅନାହିଁ, ଦେଖିବାକୁ ପାଇବ – Ideal (ଆଦର୍ଶ ବା ଇଷ୍ଟ)ଙ୍କୁ centre (କେନ୍ଦ୍ର) କରି ସାରାଜଗତଟାହିଁ ତୁମର circumference (ପରିଧି) ହୋଇ ଉଠୁଛି । ଆଉ ଏହି ଦାୟ ତୁମରହିଁ, ତୁମରହିଁ ବଞ୍ଚିବା-ବଢ଼ିବା ପାଇଁ ଏତେଟା ପ୍ରୟୋଜନ । ଏଥିରୁ ଯେତେଟା ଊଣା ରହିବ, ତୁମର ବଞ୍ଚିବା ବଢ଼ିବା ମଧ୍ୟ ସେତେଟା ଊଣାରେ ଚାଲିବ ।
ଆ.ପ୍ର. ୫/୯.୭.୧୯୪୪

**ପ୍ର. – ଇଷ୍ଟାଙ୍କ ଠାରେ ଭକ୍ତି ରହିବାର ଲକ୍ଷଣ କ'ଣ ?**

**ଶ୍ରୀଶ୍ରୀଠାକୁର –** ଭକ୍ତିର ଲକ୍ଷଣ ହେଲା ସର୍ବଦା ଯୁକ୍ତ ରହିବା । ଇଷ୍ଟଙ୍କୁ ବାଦଦେଇ ଭକ୍ତର ଗୋଟିଏ ମୁହୂର୍ତ୍ତ ମଧ୍ୟ ଭଲ ଲାଗେ ନାହିଁ । ସେ ହଗିବା, ମୁତିବା, ଖାଇବା, ଶୋଇବା ଯାହା ବି ନେଇ ଥାଉନା କାହିଁକି, ତାହାରି ଭିତରେ ମଧ୍ୟ ସେ ଇଷ୍ଟଙ୍କୁ ନେଇ ଚାଲେ । ଇଷ୍ଟ-ବିସ୍ମୃତି ହେଲେ ତାର ପ୍ରାଣ ହାହାକାର କରି ଉଠେ । ସେଥିପାଇଁ ଇଷ୍ଟମନନ ଓ ଇଷ୍ଟକର୍ମ ସେ ଛାଡ଼ିବାକୁହିଁ ଚାହେଁ ନାହିଁ । ଏହାହିଁ ତାର ବଞ୍ଚିବାର ସୂତ୍ର । ଆ.ପ୍ର. ୫/୧୦.୭.୧୯୪୪

**ପ୍ର. – ଇଷ୍ଟାନୁସରଣର ପଥରେ ନିଷ୍କାମ ହେବା କାହାକୁ କହନ୍ତି ?**

ଶ୍ରୀଶ୍ରୀଠାକୁର – ନିଷ୍କାମ ହେବା କହିଲେ ମୁଁ ବୁଝେ ଇଷ୍ଟପ୍ରୀତିକାମ ହେବା । ଇଷ୍ଟ ଯାହାଦ୍ୱାରା ଖୁସି ହୁଅନ୍ତି, ଏକମାତ୍ର ସେହି କାମନା ନେଇ ଚାଲିବା, ଅନ୍ୟ କାମନାର ଧାର ନ ଧରିବା । ଏକମାତ୍ର ତାଙ୍କରି ଖୁସିରେହିଁ ଖୁସି ରହିବାକୁ ହେବ । ଯେ ଯଦି ତୁମକୁ ଅନାଦର କରନ୍ତି ଏବଂ ତୁମେ ଯାହା ପ୍ରତି ବିରୂପ ତାକୁ ଆଦର କରି ଓ ଦେଇ ଥୋଇ ଖୁସି ରହନ୍ତି, ସେଥିରେ ମଧ୍ୟ ତୁମର ଖୁସିର ବ୍ୟତ୍ୟୟ ହେଲେ ଚଳିବ ନାହିଁ । ସେ ଯଦି ଅନ୍ୟକୁ ସ୍ୱାଚ୍ଛନ୍ଦ୍ୟ ମଧ୍ୟରେ ରଖି ତୁମକୁ ଦୂରାବସ୍ଥା ମଧ୍ୟରେ ରଖି ଖୁସି ରହନ୍ତି, ସେଥିରେହିଁ ତୁମକୁ ଖୁସି ରହିବାକୁ ହେବ । Beloved (ପ୍ରେଷ୍ଠ) ତୁମକୁ କେତେ ଟିକିଏ ଭଲପାଆନ୍ତି, ତାର ହିସାବ-ନିକାଶ ତୁମେ କରିପାରିବ ନାହିଁ, ସେ ଦିଗକୁ ତୁମେ ନଜର ମଧ୍ୟ ଦେବ ନାହିଁ, କିନ୍ତୁ ତାଙ୍କ ପାଇଁ ତୁମର ଯାହା କରିବାର ତାହା ପ୍ରାଣ ଢାଳି କରିଯିବ ଏବଂ ଏହି କରିବା ନେଇହିଁ ତୃପ୍ତ ରହିବ । ଏହାକୁ କହନ୍ତି ନିଷ୍କାମ ।
ଆ.ପ୍ର. ୫/୧୦.୭.୧୯୪୪

**ପ୍ର. ଇଷ୍ଟାନୁସରଣରେ ଚାଲିବାକୁ ଗଲେ କେବଳହିଁ ତ ବାଧାର ସମ୍ମୁଖୀନ ହେବାକୁ ହୁଏ । ସେଥିରେ ଚାଲିବାର ଉତ୍ସାହ ମଧ୍ୟ ତ କମିଯାଏ । ଏହାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର –** ସମୁଦ୍ର ମନ୍ଥନର କଥା ଜାଣିଛ ତ ! ସମୁଦ୍ର ମନ୍ଥନରେ ବିଷ, ଅମୃତ

ଦୁଇଟିହିଁ ଉଠିଥାଏ । ତୁମ୍ଭମାନଙ୍କର ଆନ୍ଦୋଳନ ମଧ୍ୟ ସମୁଦ୍ର ମନ୍ଥନ ବିଶେଷ । ଏଥିରେ ବ୍ୟଷ୍ଟି ଓ ସମଷ୍ଟି-ଚରିତ୍ରର ଭଲମନ୍ଦ ଦୁଇଟିହିଁ ଆତ୍ମପ୍ରକାଶ କରିବ । ମନ୍ଦଟା ଯଦି ଚାପି ରହିବ, ତା'ହେଲେ ଲାଭ ନାହିଁ । ତାର solution (ସମାଧାନ) ହେବା ଦରକାର । ସେଥିପାଇଁ, ନିଜର ବା ଅପରର ଭିତରେ ଥିବା ଯେକୌଣସି ମନ୍ଦର ସମ୍ମୁଖୀନ ହୁଅନା କାହିଁକି, ସେଥିରେ ଅଧୈର୍ଯ୍ୟ ହୁଅନାହିଁ, ନିରାଶ ହୁଅନାହିଁ, ଘାବରି ଯାଅନାହିଁ । ସେଗୁଡ଼ିକର ଯେପରି ଇଷ୍ଟାନୁଗ adjustment (ନିୟନ୍ତ୍ରଣ) ହୁଏ, ସହ୍ୟ, ଧୈର୍ଯ୍ୟ ଓ ଅଧ୍ୟବସାୟ ସହକାରେ ତାହାହିଁ କରିଚାଲ । ଭଗବତ୍ ସେବାର ପଥରେ ଭିତରେ ଓ ବାହାରେ ଶଇତାନ ନାନାଭାବରେ ମୁଣ୍ଡ ଟେକିଥାଏ । ତାକୁ କବ୍ଜା କରିବା ଭଳି ପରାକ୍ରମ ଓ କୌଶଳ ଦରକାର । ସେହି ପରାକ୍ରମ ଓ କୌଶଳ ଯଦି ନ ଥାଏ, ତାହେଲେ ଅସ୍ତିତ୍ୱହିଁ କିନ୍ତୁ ବିପନ୍ନ ହୋଇ ଉଠିବ । ଶଇତାନର ସହିତ ଯେତେଦିନ ଆପୋଷ କରିଚାଲିବା ହୁଏ, ସେତେଦିନ ବୁଝାଯାଏ ନାହିଁ – ଶଇତାନ କେତେଟା କ୍ରୁର, କେତେଟା ହିଂସ୍ର । ଶଇତାନର ବିରୁଦ୍ଧରେ ଯେତେବେଳେ ସଂଗ୍ରାମ ଆରମ୍ଭ ହୁଏ, ସେତେବେଳେ ତାର ଅସଲ ରୂପ ଦେଖାଯାଏ । ତୁମ୍ଭେମାନେ ଧର୍ମ ଓ କୃଷ୍ଟିର ପ୍ରତିଷ୍ଠାର ପଥରେ ଆପୋଷରଫାହୀନ ହୋଇ ଯେତେ ଅଗ୍ରସର ହେବ, ସେତେହିଁ ଦେଖିବ କେତେରକମର ବାଧାଆସି ହାଜର ହେଉଛି । ବାଧା ଆସିବହିଁ, କିନ୍ତୁ ସେହି ବାଧାକୁ ବାଧ କରିବା ଭଳି ଶକ୍ତି ସଂଗ୍ରହ କରିବାକୁ ହେବ । ଆ.ପ୍ର. ୫/୧୫.୭.୧୯୪୪

**ପ୍ର. – ଇଷ୍ଟାନୁସରଣର ପଥରେ ଜୀବନରେ ପ୍ରାଚୁର୍ଯ୍ୟ ଆସେ କି ? ନା କେବଳ ଦୁଃଖ-କଷ୍ଟ ?**

**ଶ୍ରୀଶ୍ରୀଠାକୁର** – ଯାଜନ ଓ ସେବାରେ ଯେ ଯେତେ ପ୍ରଚୁର ହୁଏ, ତା ଜୀବନରେ ପ୍ରାଚୁର୍ଯ୍ୟ ମଧ୍ୟ ସେତେ ସହଜ ହୋଇଉଠେ । ମଣିଷକୁ ଟିକିଏ sincerely (ଆନ୍ତରିକ ଭାବରେ) ଭଲପାଅ, ତାର ଯାହାଦ୍ୱାରା ଭଲ ହୁଏ, ସେହିପରି ସେବାଚାର୍ଯ୍ୟ କର – ସ୍ୱାର୍ଥ-ପ୍ରତ୍ୟାଶା ବାଦ ଦେଇ, – ତା'ହେଲେ ଦେଖ, ମଣିଷ ଯେ ତୁମ ପାଇଁ କ'ଣ କରିବ, ତୁମକୁ କେଉଁଠି ରଖିବ, ତାହା ଭାବି ଠିକ୍ କରିପାରିବ ନାହିଁ । ସେଥିପାଇଁ କୁହେ, ମଣିଷ ଉପାୟ କର, ଟଙ୍କା ଉପାୟ କରିବା କଥା ତୁମକୁ ଭାବିବାକୁ ହେବ ନାହିଁ । ଆ.ପ୍ର. ୫/୧୫.୭.୧୯୪୪

**ପ୍ର. – ଇଷ୍ଟଙ୍କର ଯାଜନ କରି ମଧ୍ୟ ଅନେକଙ୍କର ଦୁଃଖ ଘୁଞ୍ଚେ ନାହିଁ କାହିଁକି ?**

**ଶ୍ରୀଶ୍ରୀଠାକୁର** – ମନେ ରଖିବାକୁ ହେବ ଯେ ଆମ୍ଭେମାନେ ଯେଉଁ ଯାଜନ କରୁ, ତାହା ଯେପରି ଯଥାସମ୍ଭବ ଆମର ଚରିତ୍ରରେ ଫୁଟି ଉଠେ । ଆମର ଚରିତ୍ର ଓ ଆଚରଣ ଯଦି ଆମର ମୌଖିକ ଯାଜନର ପ୍ରତିବାଦ କରେ, ତାହେଲେ ମୌଖିକ ଯାଜନ କିନ୍ତୁ ଅନେକଟା ନିଷ୍ଫଳ ହୋଇଯାଏ । ଯାଜନ ଯେ ସପରିବେଶ ତୁମକୁ ଆଶାନୁରୂପ ଉଜ୍ଜ୍ୱଳ କରି ତୋଳୁ ନାହିଁ, ତାର କାରଣ – କଥାରେ-କାର୍ଯ୍ୟରେ ଅସଙ୍ଗତି । ଆଉ ପ୍ରତ୍ୟାଶା-ପୀଡ଼ିତ ଯାଜନ-ସେବା ନିଜେହିଁ ଦୈନ୍ୟଦୁଷ୍ଟ, ସେଥିପାଇଁ ତାହା ଦୈନ୍ୟ ଦୂର କରିପାରେ ନାହିଁ ।

ଆ.ପ୍ର. ୫/୧୫.୭.୧୯୪୪



**ପ୍ର. – ଇଷ୍ଟ-ବିଷୟକ ଆଳାପ-ଆଲୋଚନା ବହୁ ଲୋକ ଆଗ୍ରହ ସହକାରେ ଶୁଣିଲେ ମଧ୍ୟ ଇଷ୍ଟଙ୍କ ପ୍ରତି ଟାଣ ତ ବେଶୀ ଲୋକଙ୍କର ହେବାର ଦେଖାଯାଏ ନାହିଁ, – ଏହାର କାରଣ କ'ଣ ?**

**ଶ୍ରୀଶ୍ରୀଠାକୁର** – ଆଳାପ-ଆଲୋଚନା ଶୁଣିବା ଗଳ୍ପ-ଶୁଣିବା ପରି । ତା ମଧ୍ୟରେ ତପସ୍ୟାର ବ୍ୟାପାର ନାହିଁ । ଆଉ, ତପଃ-ପ୍ରାଣତା ସମସ୍ତଙ୍କ ମଧ୍ୟରେ ରହି ନଥାଏ । କିନ୍ତୁ ତପଃ-ପ୍ରାଣତା ନ ରହିଲେ ଟାଣଟା maintained (ରକ୍ଷିତ) ହୁଏ ନାହିଁ । ସେଥିପାଇଁ, ତପଃ-ପ୍ରାଣତା imparted (ସଞ୍ଚାରିତ) ହୁଏ – ଏହିପରି ଭାବରେ କହିବାକୁ ହୁଏ । ତାହା impart (ସଞ୍ଚାରିତ) କରିବାକୁ ଗଲେ, ନିଜ ଭିତରେ ତାହା ସ୍ୱଭାବଗତ କରିନେବା ଦରକାର । Active attachment (ସକ୍ରିୟ ଅନୁରାଗ) ଜିନିଷଟିହିଁ ଅଲଗା, ତାର ପ୍ରକୃତି ହେଲା how to fulfil the Beloved (କିପରି କରି ପ୍ରିୟଙ୍କର ପରିପୂରଣ କରିବାକୁ ହେବ) । ଏହାଠାରୁ ଯେଉଁ ଆଳାପ-ଅଲୋଚନା ଆସେ, ତାହା ଶୁଣି ମଣିଷର କରିବାର ବୁଦ୍ଧି ବଢ଼ିଯାଏ । ଇଷ୍ଟଙ୍କ ପାଇଁ କରିବାର ବୁଦ୍ଧି ଯେତେ ବଢ଼େ, ତା' ଭିତର-ଦେଇ ସେତେ ଟାଣ ଫୁଟି ଉଠେ । ଆଉ, ଟାଣ ଗଜାଇଲା କି ନାହିଁ, ତାର ଲକ୍ଷଣ ହେଲା – କରିବାର ସମ୍ବେଗ କେତେଟା ସୃଷ୍ଟି ହେଲା ।

ଆ.ପ୍ର. ୫/୧୫.୭.୧୯୪୪

**ପ୍ର. – ଇଷ୍ଟଙ୍କର ଇଚ୍ଛାଗୁଡ଼ିକ ମୂର୍ତ୍ତ କରି ତୋଳି ହୁଏ ନାହିଁ କାହିଁକି ?**

**ଶ୍ରୀଶ୍ରୀଠାକୁର** – ପାର ନାହିଁ, ତାହା ନୁହେଁ । କର ନାହିଁ, ସେଥିପାଇଁ ପାର ନାହିଁ । ଯେତେଟିକିଏ କର, ସେତେଟିକିଏ ପାର । ପାରିବା-ନ-ପାରିବାର ପ୍ରଶ୍ନ ମନରେ ନ ଆଣି କରିବାକୁ ଲାଗି ଗଲେହିଁ ହୁଏ । ...ଅନ୍ୟ ଟାଣ ଥାଏ, ସେଥିପାଇଁ କରିବାକୁ ଦିଏ ନାହିଁ ।

ଆ.ପ୍ର. ୫/୧୫.୭.୧୯୪୪

**ପ୍ର.– ଇଷ୍ଟାନୁସରଣର ମଧ୍ୟ ଦେଇ ମଣିଷ ଉପରେ ପ୍ରକୃତରେ ପ୍ରଭାବ ହୁଏ କେତେବେଳେ ?**

**ଶ୍ରୀଶ୍ରୀଠାକୁର** – ଚଳନ-ଚରିତ୍ର ଯେତେ ଇଷ୍ଟକେନ୍ଦ୍ରିକ ଓ ସଙ୍ଗତିଶୀଳ ହୁଏ ଏବଂ ବିହିତ ସରଞ୍ଜାମ, ପ୍ରୟୋଜନୀୟ ବସ୍ତୁ ଓ ପ୍ରସ୍ତୁତି ସହ ବାସ୍ତବ ସେବା ଯେତେ ଗଭୀର ଓ ବ୍ୟାପକ

ହୁଏ, ସେତେହିଁ ମଣିଷ ଉପରେ ପ୍ରଭାବ ହୁଏ। ଦୁଇଟି ଜିନିଷ ଦରକାର – ଗୋଟିଏ ହେଉଛି ମଣିଷର ପ୍ରୟୋଜନ ପୂରଣର କ୍ଷମତା, ଆଉ ଗୋଟିଏ ହେଉଛି ତାକୁ ଇଷ୍ଟପ୍ରାଣ କରି ତୋଳିବା – ଯାହାଦ୍ୱାରା ପରିବେଶର ସେବାର ଭିତର ଦେଇ ସେ ଇଷ୍ଟାର୍ଥ ପୂରଣରେ ଉଦ୍ଦାମ ହୋଇ ଉଠେ। ମଣିଷକୁ କେବଳ ବଞ୍ଚିବା ବଢ଼ିବାର ଯୋଗାଣ ଦେଲେ ହେବ ନାହିଁ, ସେ ଯାହାଦ୍ୱାରା ସଂକୀର୍ଣ୍ଣ ସ୍ୱାର୍ଥପରତା ଠାରୁ ମୁକ୍ତ ହୋଇ ଉଠେ, ତାର ବ୍ୟବସ୍ଥା କରିବାକୁ ହେବ। ମଣିଷକୁ ନାନାଭାବରେ ସେବା ଦେବା ପାଇଁ ସେହିପରି individuo-environmental adjustment, organisation ଓ equipment (ବ୍ୟଷ୍ଟି ଓ ପରିବେଶର ନିୟନ୍ତ୍ରଣ, ସଂଗଠନ ଓ ପ୍ରସ୍ତୁତି) ସୃଷ୍ଟି କରିବା ଦରକାର। କେବଳ ଏକାକୀ ଇଷ୍ଟପଥରେ ଚାଲିଲେ ଓ ସେବା ଦେଲେ ହେବ ନାହିଁ, ପରିବେଶକୁ ମଧ୍ୟ ସେହି ପଥରେ ପଥିକ କରି ତୋଳିବାକୁ ହେବ। ଯିଏ ଯେତେ ବୃହତ୍ତର ପରିବେଶକୁ ଏହି ଭାବରେ ଗଢ଼ି ତୋଳିପାରେ, ତାର ପ୍ରଭାବ ମଧ୍ୟ ହୁଏ ସେତେ ବିରାଟ। ଆଉ, ସେବା ଦେବାକୁ ଗଲେ fine perception (ସୂକ୍ଷ୍ମବୋଧ) ଦରକାର। କାହାର ବ୍ୟଥା କେଉଁଠି, ଯନ୍ତ୍ରଣା କେଉଁଠି, କଷ୍ଟର ମୂଳ କାରଣଟି କ'ଣ, ଚାହିଦା କ'ଣ, ତାହା ଯଥାଯଥ ଭାବରେ ଅନୁଭବ କରିବା ଦରକାର, ଏବଂ ଅନୁଭବ କରି, ଯାହା ପାଇଁ ଯେପରି ପ୍ରୟୋଜନ, ତାକୁ ସେହିପରି ସେବା ଦେବା ଦରକାର, ଯାହାଦ୍ୱାରା ସେ ଜୀବନରେ ଉନ୍ନତି କରିପାରେ ଓ ଦଶଜଣଙ୍କୁ ଉନ୍ନତ କରି ତୋଳିପାରେ। ଏହି ଦରଦୀ ସେବା-ସହାନୁଭୂତି ଯାହା ପାଖରୁ ପାଏ, ମଣିଷ ସାଧାରଣତଃ ତାକୁ ଭୁଲି ପାରେ ନାହିଁ। ଆପଣମାନେ ପ୍ରତ୍ୟେକେ ଇଷ୍ଟନିଷ୍ଠାରେ ଅଟୁଟ ହୋଇ ମଣିଷ ପାଖରେ ସେମାନଙ୍କର ମା', ବାପା, ଭାଇ, ବନ୍ଧୁ ପରି ହୋଇ ଛିଡ଼ା ହୁଅନ୍ତୁ। ଆପଣମାନେ ପ୍ରତ୍ୟେକଙ୍କର ନିଜର ହୋଇ ଉଠନ୍ତୁ, ପ୍ରତ୍ୟେକେ ଆପଣଙ୍କର ନିଜର ହୁଅନ୍ତୁ। ସମସ୍ତଙ୍କ ଛାତିରେ ବଳ ବୃଦ୍ଧି ହେଉ। ପ୍ରଭାବ ହେବା ମାନେ ମୁଁ ବୁଝେ ଏହା। ପ୍ରଭାବର ଅର୍ଥ ପ୍ରକୃଷ୍ଟ ଭାବରେ ହେବା। ନହେଲେ ମଣିଷକୁ ବାଗେଇ ସ୍ୱାର୍ଥସାଧନ କରିବା ପରେ ସେମାନଙ୍କ ଦିଗକୁ ଫେରି ନ ଚାହିଁବାରେ କିନ୍ତୁ ପ୍ରଭାବ ହୁଏ ନାହିଁ।

ଆ.ପ୍ର. ୫/୧୫.୭.୧୯୪୪

**ପ୍ର. – ଇଷ୍ଟାନୁସରଣରେ ସକଳ କର୍ମ ତ୍ୟାଗ କରିବାହିଁ କ'ଣ ବାଞ୍ଛନୀୟ ? ତାକୁ ହିଁ କ'ଣ କର୍ମସନ୍ୟାସ କହନ୍ତି ? ସେହି ପଥରେ ହିଁ କ'ଣ ଜୀବନରେ କୃତକାର୍ଯ୍ୟତା ଆସେ ?**

**ଶ୍ରୀଶ୍ରୀଠାକୁର** – କର୍ମ ତ୍ୟାଗ କରି ମଣିଷର ଜୀବନହିଁ ଚାଲେ ନାହିଁ। ସମସ୍ତ କର୍ମ ଯେତେବେଳେ ଇଷ୍ଟାର୍ଥରେ ନିୟୋଜିତ ଓ ସଂନ୍ୟସ୍ତ ହୁଏ, ତାକୁହିଁ କହନ୍ତି କର୍ମସନ୍ୟାସ। କର୍ମସନ୍ୟାସ ମଣିଷକୁ ସକ୍ରିୟ ଭାବରେ ଇଷ୍ଟଙ୍କଠାରେ ଯୁକ୍ତ କରି ତୋଳେ। ଏପରି କର୍ମ ଇଷ୍ଟାନୁରାଗରହିଁ ଅପରିହାର୍ଯ୍ୟ ଅଙ୍ଗ। ସେଥିପାଇଁ, ତାହା ତ୍ୟାଗ କରିବାର କଥା ଉଠେ ନାହିଁ।



ଆଉ, ଜୀବନରେ କୃତକାର୍ଯ୍ୟ ହେବାକୁ ଗଲେହିଁ ଇଷ୍ଟସ୍ୱାର୍ଥୀ ହୋଇ କର୍ମ କରିବା ଦରକାର। କାରଣ, ଆତ୍ମସ୍ୱାର୍ଥୀ ହୋଇ କର୍ମ କରିବାକୁ ଗଲେହିଁ ମଣିଷର ବୁଦ୍ଧି ବିଭ୍ରମ ହେବାର ସମ୍ଭାବନା ବେଶି ଥାଏ, ନିଜରହିଁ ଜାଲରେ ନିଜେ ଜଡ଼ାଇ ଯାଏ, ସେଥିରେ ଶେଷ ପର୍ଯ୍ୟନ୍ତ ଲାଭ ହୁଏ ନାହିଁ।

ଆ.ପ୍ର. ୫/୧୫.୭.୧୯୪୪

**ପ୍ର. – ଇଷ୍ଟାନୁସରଣରେ ଭିତରର ତ୍ରୁଟି, ଅବସାଦ କେତେବେଳେ ବାଧା ହୋଇ ଛିଡ଼ା ହୁଏ ନାହିଁ ?**

**ଶ୍ରୀଶ୍ରୀଠାକୁର** – ଟାଣ ପରି ଟାଣ ହେଲେ ତ୍ରୁଟି ଜମି ପାରେ ନାହିଁ, ଅବସାଦ ବସା ବାନ୍ଧି ପାରେ ନାହିଁ। ଅବସନ୍ନତା ସେତେବେଳେହିଁ ପାଇ ବସେ, ଯେତେବେଳେ conviction (ପ୍ରତ୍ୟୟ)ର urge (ଅକୂତି) ଠାରୁ complex (ପ୍ରବୃତ୍ତି) ବଡ଼ ହୋଇଉଠେ। ଇଷ୍ଟପ୍ରାଣ ଯିଏ, ତାର ସ୍ଫୁର୍ତ୍ତି କମ୍ ହୁଏନାହିଁ, ଯେ ଖାଏ-ପିଏ, କାମଦାମ କରେ, ଆଉ ନିର୍ଭାବନାରେ ଛାତି ଫୁଲାଇ ଦୁନିଆର ବୁକୁରେ ଚାଲେ। ଯାହାର ଇଷ୍ଟ ବା ଇଷ୍ଟପ୍ରାଣତା ନାହିଁ, ତାର ଝୁଁଟ ଖାଇ-ଖାଇ ଜୀବନ ଶେଷ ହୋଇଯାଏ।

ଆ.ପ୍ର. ୫/୨୬.୧୦.୧୯୪୪

**ପ୍ର. – ଇଷ୍ଟାନୁସରଣ ଠିକ୍ ରଖି କିପରି ଭାବରେ କାହାର ଆଚରଣର ସମାଲୋଚନା କରିଲେ ବିରୋଧ ଆସିବ ନାହିଁ ?**

**ଶ୍ରୀଶ୍ରୀଠାକୁର** – ଗୁଣଗ୍ରହଣମୁଖର ଆଳାପ-ଆଲୋଚନା ହେଲା ମନର ଖୋରାକ। ଗୋଟିଏ ମଣିଷକୁ ଯଦି ତୁମେ ବାଧା ବି ଦିଅ, ଏବଂ ସେ ଯଦି ବୁଝେ ଯେ ତୁମେ ତାର ସ୍ୱାର୍ଥରେ ସ୍ୱାର୍ଥାନ୍ୱିତ ଏବଂ ତା' ପ୍ରତି ସଶ୍ରଦ୍ଧ ଗୁଣଗ୍ରହଣମୁଖର, ତେବେ ସେ-ବାଧାରେ ବିରୋଧ ଆସିବ ନାହିଁ। ବିରୋଧ ଆସିଲେ ସାଧାରଣତଃ ବୁଝିବାକୁ ହେବ error of egoistic application (ଅହଙ୍କାର-ପ୍ରସୂତ ପ୍ରୟୋଗର ଭୁଲ)। ତୁମେ ଖୁବ୍ ତୀବ୍ର ଭାବରେ ବାଧା ଦେଇ ପାର, ଗାଳି ଦେଇ ପାର, କିନ୍ତୁ ତାର ପ୍ରକୃତରେ ସ୍ୱାର୍ଥ ଓ ମଙ୍ଗଳଦିଗକୁ ଲକ୍ଷ୍ୟ ରଖି ଯଦି କଥା କୁହ, ଦେଖିବ, ସେ ହୁଏତ କାନ୍ଦି ତୁମ ପାଖରେ କ୍ଷମା ଭିକ୍ଷା କରିବ। ଅଭ୍ୟାସ କରୁ-କରୁ ହୁଏ।

ଆ.ପ୍ର. ୫/୨୬.୧୦.୧୯୪୪

**ପ୍ର. – ଇଷ୍ଟନୁସରଣ କରିଚାଲିଲେ ମଧ୍ୟ ସମୟ ସମୟରେ ଖରାପଟି କାହିଁକି ଅବଧାରିତ ଭାବରେ ମଣିଷ ଜୀବନରେ ଓହ୍ଲାଇ ଆସେ ? ଏହି ଖରାପର ପ୍ରଭାବକୁ କ'ଣ କମାଇବାର ଉପାୟ ନାହିଁ ?**

**ଶ୍ରୀଶ୍ରୀଠାକୁର** – ପୃଥିବୀର ଛୋଟ ବଡ଼ ପ୍ରତ୍ୟେକଟି ଜିନିଷହିଁ ଆମଉପରେ ପ୍ରଭାବ ବିସ୍ତାର କରୁଛି। ଏହା ମଧ୍ୟରୁ କେତେଗୁଡ଼ିକର ଫଳ ଭଲ, କେତେଗୁଡ଼ିକର ଫଳ ଖରାପ।

ଏହିପରି ହେବାକୁ ବାଧ। ଏଗୁଡ଼ିକ ଉପରେ ଆମର କୌଣସି ହାତ ନାହିଁ। କିନ୍ତୁ ଖରାପଟିକୁ minimise କରିବାର (କମାଇବାର) ଏକମାତ୍ର ରାସ୍ତା ହେଲା – ଇଷ୍ଟଙ୍କୁ ନେଇ thoroughly (ପୁରାପୁରି) engaged (ବ୍ୟାପୃତ ହେବା)। ଇଷ୍ଟଙ୍କୁ ନେଇ ଯଦି ବୁଡ଼ି ରୁହାଯାଏ, ସେତେବେଳେ ଅନିଷ୍ଟ ଆକ୍ରମଣ କରିବାର ସୁଯୋଗ ପାଏ ନାହିଁ। ଏହିସବୁ କାର୍ଯ୍ୟକର୍ମ ନେଇ ତୁମେମାନେ ଯଦି ceaselessly active (ନିରନ୍ତର ସକ୍ରିୟ) ରୁହ, ଅମଙ୍ଗଳ ହାତରୁ ଅନେକଟା ରିହାଇ ପାଇ ଯାଇପାର। ଆ.ପ୍ର. ୫/୨୬.୧୦.୧୯୪୪

**ପ୍ର. – ଇଷ୍ଟ ଯାହା ଚାହାଁନ୍ତି, ତାହା କିପରି ଭାବରେ ପାରି ହୁଏ ?**

**ଶ୍ରୀଶ୍ରୀଠାକୁର** – ଯେପରି ଚଳୁଛ, ସେହି ଚଳନରେ ତାହା ସମ୍ଭବ ନୁହେଁ। ମାଙ୍କଡ଼ ଯେପରି ଗୋଟିଏ ଡାଳରୁ ଡେଇଁ ଆଉ ଗୋଟିଏ ଡାଳରେ ଉଠେ, ତାର ଚାରି ହାତ-ପାଦ ସମାନ ଚାଳରେ ଚାଲେ, ହାତ ଦେଇ ନ ପାରିଲେ, ପାଦ ଦେଇ ଜାବୁଡ଼ି ଧରେ, ମଣିଷ କ'ଣ ତାହା ପାରେ ? ସେ ବଡ଼ଜୋର ଦୁଇ ହାତ ଦେଇ ଜାବୁଡ଼ି ଧରି ପାରେ, ଗୋଡ଼ ଦୁଇଟି ତାର ଶକ୍ତ ହୋଇଯାଇଛି, ତା ଦେଇ ଆଉ ପାରେ ନାହିଁ। ସେହିପରି ଇଷ୍ଟଙ୍କଠାରେ ଯହାର ସମସ୍ତ complex (ପ୍ରବୃତ୍ତି) ଗୁଡ଼ିକ interested (ଆଗ୍ରହୀ) ହୋଇ ଉଠି ନାହିଁ, ତାର brain (ମସ୍ତିଷ୍କ), muscles (ପେଶୀ ଗୁଡ଼ିକ), nerves (ସ୍ନାୟୁ ଗୁଡ଼ିକ), limbs (ଅଙ୍ଗପ୍ରତ୍ୟଙ୍ଗ) ଓ ଇନ୍ଦ୍ରିୟଗ୍ରାମ ଯୁଗପତ୍ active (ସକ୍ରିୟ) ଓ alert (ସତର୍କ) ହୋଇ ଇଷ୍ଟସାର୍ଥକତାରେ ସମାନ ଚାଳରେ ଚାଲିପାରେ ନାହିଁ। ହାତ ଚାଲେ ତ ଗୋଡ଼ ଚାଲେ ନାହିଁ, ଗୋଡ଼ ଚାଲେ ତ ହାତ ଚାଲେ ନାହିଁ, ଏହିପରି ଅବସ୍ଥା ହୁଏ। କେଉଁଠି ହୁଏତ ସାମାନ୍ୟ କାରଣରୁ depression (ଅବସାଦ)ରେ ମୁହ୍ୟମାନ ହୋଇପଡ଼େ, ପୁଣି କେଉଁଠି ହୁଏତ ସାମାନ୍ୟ ଆଶା ପାଇ ଅଯଥା elated (ଉଦ୍ଦୀପ୍ତ) ହୋଇ, ସେ ସ୍ଥଳରେ ଯାହା କରଣୀୟ ତାହା କରେ ନାହିଁ, ପରେ failure (ଅକୃତକାର୍ଯ୍ୟତା) ଡାକି ଆଣେ। କିନ୍ତୁ ତୁମେମାନେ ଇଚ୍ଛା କରିଲେହିଁ ଯଥାଯଥ ଆନ୍ତରିକ ପ୍ରଚେଷ୍ଟାର ଭିତର ଦେଇ ପ୍ରୟୋଜନୀୟ ଯାବତୀୟ ସତ୍ ଅଭ୍ୟାସ ଓ ସଦ୍‌ଗୁଣ ଅର୍ଜ୍ଜନ କରି ଏପରି ଅଭ୍ୟସ୍ତ ହୋଇପାର, ଯା'ଦ୍ୱାରା success (କୃତକାର୍ଯ୍ୟତା) ଅନିବାର୍ଯ୍ୟ ହୋଇଉଠେ। ଆ.ପ୍ର. ୫/୨୬.୧୧.୧୯୪୪

**ପ୍ର. – ଇଷ୍ଟକର୍ମରେ ପରିବେଶର ସାହାଯ୍ୟ-ସହଯୋଗିତା ଯଦି ପାଇ ନହୁଏ ?**

**ଶ୍ରୀଶ୍ରୀଠାକୁର** – ତାହା କିଛି ନୁହେଁ। ତୁମର ଚାରିଦିଗରେ ସାଡ଼ାଶୀଳ ଲୋକ ଅଛନ୍ତି ହିଁ। ତେବେ ସମସ୍ତେ magnet (ଚୁମ୍ବକ) ନୁହଁନ୍ତି, ଗୋଟିଏ-ଅଧେ magnet (ଚୁମ୍ବକ) ଥାଆନ୍ତି। ତୁମେ ନିଜେ ପା୍ବନ ପରି ସମସ୍ତଙ୍କର ଚେତନା ଉପରେ ଭାରି ପଡ଼, ସେମାନଙ୍କୁ



ଭସାଇ ଦିଅ, ପା୍ବିତ କରିଦିଅ। ଇଷ୍ଟନିଶାରେ ମାତାଲ କରି ତୋଳ। ନିଜେ ଝଡ଼ ବେଗରେ ଛୁଟିବାକୁ ଆରମ୍ଭ କର। ଚାଲ, ଚଲାଅ – ତୁମର ଦୁର୍ନିବାର ଚାଲିବାର ଘୂର୍ଣ୍ଣିରେ ପଡ଼ି ସମସ୍ତେ mobile (ଚଳତ୍‌ଶୀଳ) ହୋଇ ଉଠିବେ। ଯେଉଁମାନେ motile (ସ୍ୱତଃ-ଚଳତ୍‌ଶୀଳ) ହେବାର କଥା, ସେମାନେ ମଧ୍ୟ ଏହି ଧକ୍‌କାରେ motile (ସ୍ୱତଃ-ଚଳତ୍‌ଶୀଳ) ହୋଇଯିବେ। ତୁମ ନିଜ ଉପରେ ସବୁକିଛି ନିର୍ଭର କରେ। ପରିଶ୍ରମ କର, ପରିଶ୍ରମ ନ କଲେ କ'ଣ କିଛି ହୁଏ ? ଧାନ-ଚାଷ ପାଇଁ କେତେ ଖଟ, ଆଉ ମଣିଷ-ଚାଷ ପାଇଁ ଖଟିବାକୁ ହେବ ନାହିଁ? ଏହି ପରିଶ୍ରମ ମଧ୍ୟରେ ମନ ଥାଏ ତୀବ୍ର, ତରତର; ଶରୀର ମଧ୍ୟ ଚାଙ୍ଗା ହୋଇଉଠେ। ଜୀବନକୁ ଯଦି ଉପଭୋଗ କରିବାକୁ ଚାହଁ, ତେବେ ମଣିଷ ହେବାର ସାଧନାରେ, ମଣିଷକୁ ମଣିଷ କରି ତୋଳିବାର ସାଧନାରେ ନିଜକୁ ଉତ୍ସର୍ଗ କରିଦିଅ। ନ ହେଲେ ପ୍ରବୃତ୍ତି-ସ୍ୱାର୍ଥାନ୍ଧ ଜୀବନର କୌଣସି ଦାମ୍ ନାହିଁ। ଇଷ୍ଟଙ୍କୁ ନେଇ ବହୁ ଜୀବନରେ ବ୍ୟାପ୍ତ ହୋଇପଡ଼। ଏହି ଭାବରେ ଚାଲିଲେ ଦେଖିବ, ପରେ ଏହି କାର୍ଯ୍ୟ ବାଦ ଦେଇ କୌଣସି ପ୍ରକାରେ ବି ସ୍ୱସ୍ତି ପାଇବ ନାହିଁ। ...ନିଜ ଚରିତ୍ର ଭିତରର ଯେଉଁ ବାଧା, ତାହା ସବୁଠାରୁ ବଡ଼ ବାଧା। ବାଧାରେ କାବୁ ହେବା ପରି ଦୁର୍ବଳତା ଯଦି ଆମର ନ-ଥାଏ, ତା'ହେଲେ ବାଧା ଆମର କ'ଣ କରିପାରିବ ? ବାଧାରେ ଯେ କାବୁ ହୁଏ ଏହାହିଁ କହିଦିଏ ଯେ ଇଚ୍ଛାଟା ଖୁବ୍ ପ୍ରବଳ ନୁହେଁ। ଇଚ୍ଛା ପରି ଇଚ୍ଛା ଥିଲେ ବାଧାର ଉପର ଦେଇ ତାହା ଠେଲିଉଠେ। ଏକଟୋପା ତେଲ ମଧ୍ୟରେ ଯଦି ଏକ କଳସୀ ଜଳ ଢାଳିଦିଅ, ତାହେଲେ ଏହି ଏକ ଟୋପା ତେଲ ହିଁ ଏକ କଳସୀ ଜଳକୁ ଭେଦି ଉପରକୁ ଭାସି ଉଠିବ। ତେଲର ଧର୍ମହିଁ ହେଲା ଏହିପରି। ଆଉ ଦୋଷ-ଦର୍ଶନ ଭଲ ନୁହେଁ। ଦୋଷ ଯଦି ଥାଏ ତାହା eliminate (ଅପସାରଣ) କରିବା ପାଇଁ, ନିରାକରଣ କରିବା ପାଇଁ। ଦୋଷ ଦେଖି ଦୁଷ୍ଟ ହୋଇ ଲାଭ ନାହିଁ। ଆ.ପ୍ର. ୬/୩.୧୨.୧୯୪୪

**ପ୍ର. – ଇଷ୍ଟାନୁସରଣରେ କାହା ଦ୍ୱାରା ମାନସିକ ଆଘାତର କ୍ଷେତ୍ରରେ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଯେତେ ଆଘାତ ଦେଉ, ତା'ଠାରୁ ବଡ଼ ଆଘାତ ପାଇଁ ମନକୁ ଯଦି ପ୍ରସ୍ତୁତ ରଖାଯାଏ, ତାହେଲେ ଆଘାତଟା କମ୍ ଲାଗେ। ଆଉ ଆଘାତ ପାଇଁ ପ୍ରସ୍ତୁତ ରହିବାହିଁ ଭଲ। କାରଣ, ମଣିଷ କେଉଁ ଅବସ୍ଥାରେ ପଡ଼ି କ'ଣ କରେ, ତାର କିଛି ଠିକ୍ ଅଛି କି ? କିନ୍ତୁ ଯିଏ ଯାହାବି କରୁ, ସେଥିରେ ରାଗିଯାଇ ଲାଭ ନାହିଁ। କାରଣ, ମଣିଷ ଆଉ ତାର ego (ଅହଂ) କିମ୍ବା passion (ପ୍ରବୃତ୍ତି) ଏକ ଜିନିଷ ନୁହେଁ। ଗଞ୍ଜା ଖାଇଲେ ଗଞ୍ଜାର ଗୁଣରେ ଗଞ୍ଜୁଡ଼ି ପରି ବ୍ୟବହାର ମଣିଷ କରେ, ସେହି ବ୍ୟବହାର ଉପରେ ତାର ହାତ କମହିଁ ଥାଏ। ଆଉ ଏହି ହାତ କମ୍ ରହିବାଟାହିଁ ଦୁର୍ବଳତା। ଏହି ବ୍ୟବହାର ଉପରେ ସେଥିପାଇଁ ଗୁରୁତ୍ୱ

ଦେବା ଉଚିତ ନୁହେଁ। ମଣିଷ ସେହିପରି ପ୍ରବୃତ୍ତିର କବଳରେ ମାନସିକ ଅସୁସ୍ଥତାର ବଶରେ ଯାହା କରେ, ତାହା ଧର୍ତ୍ତବ୍ୟ ନୁହେଁ। We must look to the man and not to the obsession, obsession is not the man. (ମଣିଷର ଦିଗକୁ ଚାହିଁବାକୁ ହେବ, ତାର ପ୍ରବୃତ୍ତି-ଅଭିଭୂତିର ଦିଗକୁ ନୁହେଁ, ପ୍ରବୃତ୍ତି-ଅଭିଭୂତି ମଣିଷ ନୁହେଁ।)

ଆ.ପ୍ର. ୬/୪.୧୨.୧୯୪୪

**ପ୍ର. – ଇଷ୍ଟାନୁ-ସରଣର ପଥରେ ଯଦି କେହି କ୍ଷତି କରେ ସେତେବେଳେ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର** – କ୍ଷତି ଯେପରି କରି ନପାରେ, ସେହିପରି ପରାକ୍ରମ ଦେଖାଇବା ଭଲ। ତେଜ ବା ପରାକ୍ରମ ଦେଖାଇବା ଓ ରାଗର ବଶବର୍ତ୍ତୀ ହେବା ଏକ ଜିନିଷ ନୁହେଁ। ରାଗର ବଶବର୍ତ୍ତୀ ହେଲେ କାଯ ପଣ୍ଡ ହୁଏ। ଏ କଥା ସବୁ ସମୟରେ ମନେ ରଖିବାକୁ ହେବ ଯେ, ତୁମେ ଯଦି କାହାକୁ ସହି-ବହି ନପାର, ତୁମକୁ ମଧ କେହି ସହି-ବହିବାର ଧାର ଧାରିବେ ନାହିଁ। ଦୋଷ-ତୃଟି ପ୍ରାୟ ପ୍ରତ୍ୟେକରହିଁ କିଛି ନା କିଛି ଅଛି। ତୁମେ ଯଦି ଅନ୍ୟ ସମ୍ବନ୍ଧରେ ଅସହିଷ୍ଣୁ ହୁଅ, ଅନ୍ୟମାନେ ମଧ ତୁମ ସମ୍ବନ୍ଧରେ ଅସହିଷ୍ଣୁ ହେବେ। ଏଥିରେ କହାରି ପକ୍ଷରେ ସୁବିଧା ହେବ ନାହିଁ। ସେଥିପାଇଁ ଅନ୍ୟାୟର ସମର୍ଥନ ନ କରି ମଧ କ୍ଷମାଶୀଳ ହେବା ଦରକାର। ଅପରର କ୍ଷମା ଦରକାର ନାହିଁ, ଏପରି କମ୍ ମଣିଷ ଅଛନ୍ତି।

ଆ.ପ୍ର. ୬/୪.୧୨.୧୯୪୪

**ପ୍ର. – ଇଷ୍ଟ ସାନ୍ନିଧରେ ରହିଲେ ମଧ ମଣିଷର ଉନ୍ନତି ହୁଏ ନାହିଁ କାହିଁକି ?**

**ଶ୍ରୀଶ୍ରୀଠାକୁର** – ମଣିଷ ଏଠାକୁ ଆସେ ମୋତେ ଭଲ ପାଇବାକୁ, କିନ୍ତୁ ପରେ ମୋ ପାଖରୁ ଭଲପାଇବାଟା ସେମାନଙ୍କର ମୁଖ୍ୟ ହୋଇ ଉଠେ। ... ତାର ମାନେ, ମୋର ଖୁସିଟା ସେମାନଙ୍କ ଲକ୍ଷ ନୁହେଁ – ଲକ୍ଷ୍ୟ ନିଜର ଖୁସି। ଆଉଜଣକର ଖୁସିକୁ ପ୍ରାଧାନ୍ୟ ଦେଇ ଚାଲିବାପାଇଁ ଅନେକଟା କ୍ଷମତା ଦରକାର ହୁଏ। ନିଷ୍କାମ କର୍ମ କହିଲେ ମୁଁ ବୁଝେ ନିଜର କାମନାକୁ ପ୍ରଶ୍ରୟ ନ ଦେଇ ଇଷ୍ଟଙ୍କର କାମନାକୁ ପ୍ରାଧାନ୍ୟ ଦେଇ ଚାଲିବା; ସେ ଯେଉଁଥିରେ ଖୁସି ହୁଅନ୍ତି ତାହାହିଁ କରି ଚାଲିବା – ତାହା ଯେତେହିଁ କଠିନ ହେଉନା କାହିଁକି। ମଣିଷ ଅନେକଟା ଆବିଳତା ମୁକ୍ତ ନ ହେଲେ ଏହା ପାରେ ନାହିଁ। ଅନେକ ଯୁକ୍ତିର ଅବତାରଣା କରି ନିଜର ଖୁସି ଓ ତୃପ୍ତିକୁହିଁ ଅନୁସରଣ କରି ଚାଲିବାକୁ ଚାହେଁ। ଇଷ୍ଟଙ୍କର ତୃପ୍ତିର ଦିଗକୁ ଚାହିଁ ଯେ ନିଜର ଭଲମନ୍ଦ ପରିକଳ୍ପନା ବା ଖିଆଲର ବିସର୍ଜନ ଦେଇ ନ ପାରେ, ତାର କିନ୍ତୁ ପ୍ରକୃତ ଉନ୍ନତି ହୁଏ ନାହିଁ। ଜଣକୁ ଯଦି ସାରା ଦୁନିଆ ମଧ ବାହାବା ଦିଏ, ଅଥଚ ସେ ଯଦି ଇଷ୍ଟଙ୍କ



ସନ୍ତୋଷ ବିଧାନ କରି ନପାରେ, ତାହେଲେ କିନ୍ତୁ ତାର ଜୀବନ ବ୍ୟର୍ଥ। ଜୀବନର ସାର୍ଥକତା ଭଲପାଇବାରେ – ପ୍ରେମରେ। ଚୈତନ୍ୟ ଚରିତାମୃତରେ ଅଛି –

''ଆମ୍ଳେନ୍ଦ୍ରିୟ ପ୍ରୀତି-ଇଚ୍ଛା ତାକୁ କହେ କାମ,
କୃଷ୍ଣେନ୍ଦ୍ରିୟ ପ୍ରୀତି-ଇଚ୍ଛା ଧରେ ପ୍ରେମ ନାମ ॥

ଆ.ପ୍ର. ୬/୪.୧୨.୧୯୪୪

**ପ୍ର. – ଇଷ୍ଟଙ୍କ ପାଖରେ କ'ଣ ପ୍ରାର୍ଥନା କରିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ପ୍ରାର୍ଥନା ମଧରେହିଁ ଅଛି ସେହିପରି ଭାବରେହିଁ କରିବା, କହିବା, ଭାବିବା, ଚାଲିବା – ଯାହାଦ୍ୱାରା ଇପ୍ସିତ ଲାଭ ହୁଏ। କେବଳ କହିବା ବା ଭାବିବାଟା ପ୍ରାର୍ଥନା ନୁହେଁ। ପ୍ରାର୍ଥନା ମାନେହିଁ ହେଉଛି, ପ୍ରକୃଷ୍ଟ ରୂପରେ ଚାଲିବା, ଯିଏ ଯେଉଁ ଦିଗରେ ହିଁ ଚାଲୁ ନା କାହିଁକି। ଭଲ କରିଲେ ଭଲ ହୁଏ, ମନ୍ଦ କରିଲେ ମନ୍ଦ ହୁଏ। ତେବେ ନିଜର ସ୍ୱାର୍ଥ ପାଇଁ ସାଧାରଣତଃ ପ୍ରାର୍ଥନା କରିବା ଉଚିତ ନୁହେଁ। ହୀନ ସ୍ୱାର୍ଥପରତା ଉପରକୁ ନ ଉଠି ପାରିଲେ, ମଣିଷ ବଡ଼ ହୋଇ ପାରେ ନାହିଁ। ପ୍ରାର୍ଥନା କରିବାକୁ ହୁଏ ଇଷ୍ଟଙ୍କ ପାଇଁ – "ତୁମେ ଭଲରେ ରୁହ, ତୁମେ ସୁଖରେ ରୁହ, ତୁମେ ସୁସ୍ଥ ରୁହ। ମୋ ଦ୍ୱାରା ତୁମର ଇଚ୍ଛା ମୂର୍ତ୍ତ ହୋଇଉଠୁ, ସାରା ଦୁନିଆରେ ତୁମର ପ୍ରତିଷ୍ଠା ହେଉ। ପ୍ରତି ଘଟେ-ଘଟେ ତୁମର ସେବା କରି, ସମ୍ବର୍ଦ୍ଧନା କରି, ମୋର ଜୀବନ ଧନ୍ୟ ହେଉ। ପରିବେଶର ପୋଷଣର ଭିତର ଦେଇ ମୋର ଆତ୍ମପୋଷଣ ଅତୁଟ ହୋଇଉଠୁ। ମୋର ଜୀବନରେ ତୁମେ ସର୍ବତୋଭାବରେ ଅନୁପ୍ରବିଷ୍ଟ ହୁଅ, ମୁଁ ତୁମକୁ ନେଇ ସାରା ଜୀବନ ମତ୍ତ ହୋଇ ରହିଥାଏ, ସାରା ଜୀବନ କାହିଁକି – ଜନ୍ମ-ଜନ୍ମାନ୍ତର। ପ୍ରୀତି-ଅର୍ଚ୍ଚନାରେ ତୁମର ସେବା କରି ଧନ୍ୟ ହୁଏ।" ଏହିପରି ଭାବରେ ପ୍ରାଣରେ ଯାହା ଆସେ, କହିବାକୁ ହୁଏ। ଆଉ କହିବାର ତାଳେ-ତାଳେ କରିବାକୁ ହୁଏ, ଚାଲିବାକୁ ହୁଏ, ଭାବିବାକୁ ହୁଏ। ଏହିପରି ଭାବରେ ଚାଲୁ-ଚାଲୁ ଭିତରେ-ଭିତରେ ଭାବ, ଭକ୍ତି, ଭଲପାଇବା ଓ ଆକୁଳତାର ସମୁଦ୍ର ଗର୍ଜି ଉଠେ। ଏହିପରି କରି ଇଷ୍ଟାର୍ଥରେ ତନ୍ମୟ ହୋଇ ନ ପାରିଲେ ଜୀବନଟା ଗ୍ଲାନି ମୁକ୍ତ ହୁଏ ନାହିଁ। ସ୍ୱାର୍ଥର ବୋଝ ବୋହି ବୋହି କେବଳ କ୍ଲାନ୍ତ ଓ ଅବସନ୍ନ ହେବାକୁ ହୁଏ।

ଆ.ପ୍ର. ୬/୯/୧୨.୧୯୪୪

**ପ୍ର. – ଇଷ୍ଟାନୁସରଣରେ କିପରି ମନୋଭାବ ନେଇ ଚାଲିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ମୁଁ ଅଛି ଆଉ ମୋର ଠାକୁର ଅଛନ୍ତି। ମୁଁ ତାଙ୍କର ହିଁ। ମୁଁ ତାଙ୍କୁ ଭଲପାଏ। ତାଙ୍କୁ ଭଲପାଇବାହିଁ ମୋର ସ୍ୱଭାବ, ତାଙ୍କୁ ଭଲପାଏ ବୋଲି ସମସ୍ତଙ୍କୁହିଁ ଭଲପାଏ, କାରଣ ସମସ୍ତଙ୍କ ଭିତରେହିଁ ସେ। ଏହି ଭଲପାଇବାପୂର୍ଣ୍ଣ ବଞ୍ଚିବାରେ ମୁଁ ବଞ୍ଚିବାକୁ ଚାହେଁ। କିନ୍ତୁ ମୁଁ

ଏକା ଏପରି କରି ବଞ୍ଚିପାରିବି ନାହିଁ। ସେଥିପାଇଁ ସମସ୍ତ ଦୁନିଆକୁ ସେହି ଜୀବନୀୟ ଭଲପାଇବାରେ ପରିପ୍ଳାବିତ କରି ଦେବାକୁ ଚାହେଁ, ଯାହାଦ୍ୱାରା ପାରସ୍ପରିକ ଆଦାନ ପ୍ରଦାନରେ, ସେବା-ସାହଚର୍ଯ୍ୟରେ କ୍ରମାଗତ ଭାବରେ ତାଙ୍କୁ ହିଁ ଉପଭୋଗ କରିପାରେ। ଏହିପରି ଗୋଟିଏ tremendous attitude (ପ୍ରବଳ ମନୋଭାବ) ରହିଲେହିଁ you are saved and along with you the world is also on the way to be saved. (ତୁମେ ଉଦ୍ଧାର ପାଇଗଲ ଏବଂ ତୁମ ସହିତ ଜଗତ ମଧ୍ୟ ଉଦ୍ଧାର ପାଇବାର ପଥରେ ଛିଡ଼ା ହେଲା।)

ଆ.ପ୍ର. ୬/୯.୧୨.୧୯୪୪

**ପ୍ର. – ଇଷ୍ଟାନୁସରଣରେ ଚାଲୁଥିବା ମୁଷ୍ଟିମେୟ କିଛି ସଂଖ୍ୟକ ଲୋକ କିପରି ଭାବରେ ଅସତ୍ ଚଳନରେ ଅଭ୍ୟସ୍ତ ପରିବେଶର ବେଶୀ ଭାଗ ଲୋକଙ୍କ ମଧ୍ୟରେ କାର୍ଯ୍ୟ କରିବେ ?**

**ଶ୍ରୀଶ୍ରୀଠାକୁର** – ବ୍ୟଷ୍ଟି ନେଇହିଁ ସମଷ୍ଟି। ସେଥିପାଇଁ ବ୍ୟଷ୍ଟିକୁ ଧରି-ଧରିହିଁ ଆଗେଇବାକୁ ହୁଏ। ନିଜକୁ ଆଦର୍ଶନିଷ୍ଠ, ଆଚାରବାନ ଓ ଯାଜନ ମୁଖର ହେବାକୁ ହେବ ଏବଂ ଯାହାର ଯେପରି ଯୋଗ୍ୟତା ଅଛି ତାକୁ ମଧ୍ୟ ସେହିପରି କରି ତୋଳିବାକୁ ହେବ। ଏହି ଭାବରେ ସଞ୍ଚାରିତ ହୁଏ। କେବଳ ଭୁଲ ଧରାଇ ଦେଲେ ହେବନାହିଁ, ଠିକ୍ ପଥ ବତାଇ ଦେବାକୁ ହେବ। ସେହିପଥହିଁ ଯେ profitable in all respects (ସବୁ ଦିଗରୁ ଲାଭ ଦାୟକ) ତାହା ବାସ୍ତବରେ କରି, କରାଇ ଦେଖାଇବାକୁ ହେବ। ତଥାପି ମଣିଷ ବାରମ୍ବାର ଭୁଲ କରିବ, ବାରମ୍ବାର ବିପଥରେ ଯିବ। କିନ୍ତୁ ସେଥିରେ ଅଧୈର୍ଯ୍ୟ ହେଲେ ଚଳିବ ନାହିଁ। ଲୋକଙ୍କ ପଛରେ ଲାଗି ରହିବାକୁ ହେବ। ଅତନ୍ଦ୍ର ଶାସନ-ତୋଷଣ, ସେବା-ସମ୍ବୋଧନାର ଭିତର ଦେଇ ସେହିମାନଙ୍କୁ ଇଷ୍ଟାନୁବର୍ତ୍ତନରେ ବ୍ରତୀ କରି ତୋଳିବାକୁ ହେବ – ଭଲପାଇଲେ ମଣିଷ ଯାହା କରେ। ଆପଣ କ'ଣ ଆପଣଙ୍କର ପିଲାଟିକୁ ନଷ୍ଟ ହୋଇ ଯିବା ପାଇଁ ଦିଅନ୍ତି ? ବିପଥରେ ଗଲେ ମଧ୍ୟ ପ୍ରାଣପଣେ ଫେରାଇବାକୁ ଚେଷ୍ଟା କରନ୍ତି। ତାହା ଯେ ଆପଣଙ୍କର ଦାୟିତ୍ୱ। ଏହି ଦାୟିତ୍ୱବୋଧ ନ ରହିଲେ ଏ-କାମ କରି ପାରିବେ ନାହିଁ। ଆମର ଚାରିଦିଗରେ ହତାଶାର ଯଥେଷ୍ଟ କାରଣ ଅଛି। କିନ୍ତୁ ହତାଶ ହୋଇପାରେ ନାହିଁ। ଭାବେ, ଦେହରେ ଗୁହ ବୋଳିଲେ ତ ଯମ ଛାଡ଼ିବ ନାହିଁ। ମୋର ଯାହା କରଣୀୟ ତାହା ମୋତେ କରିବାକୁହିଁ ହେବ। ଆପଣମାନଙ୍କୁ ପ୍ରତ୍ୟେକଙ୍କୁ ନେଇହିଁ ମୁଁ। ଆପଣମାନେ କଷ୍ଟରେ ପଡ଼ିଲେ, ମୁଁ ସେଥିରୁ ବାଦ ପଡ଼ିବି ନାହିଁ। ସେଥିପାଇଁ ନିଜର ଗରଜରେହିଁ ଜ୍ଞାନ-ବୁଦ୍ଧି ଅନୁସାରେ ଲାଗିଥାଏ। ମୋ ପରି ଆପଣମାନେ ମଧ୍ୟ କେତେଜଣ ଯଦି ଲାଗନ୍ତି, ତାହେଲେ ଦେଖିବେ, କି ଗୁରୁତର କାର୍ଯ୍ୟ ହୋଇଯାଏ।

ଆ.ପ୍ର. ୬/୭.୩.୧୯୪୫



**ପ୍ର. – ଇଷ୍ଟକର୍ମରେ ଯୋଗ୍ୟତାର ପ୍ରଥମ ଲକ୍ଷଣ କ'ଣ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟକର୍ମରେ ପ୍ରତିକୂଳ ହେଲେ ତୁମର ସ୍ତ୍ରୀ ତୁମର ସ୍ତ୍ରୀ ନୁହେଁ, ପୁଅ ତୁମର ପୁଅ ନୁହେଁ, ବନ୍ଧୁ-ବାନ୍ଧବ ତୁମର ବନ୍ଧୁ-ବାନ୍ଧବ ନୁହଁନ୍ତି, କିଛି ହିଁ କିଛି ନୁହେଁ – ଏହିପରି ନିରାଶୀ, ନିର୍ମମ ଅବସ୍ଥା ଯେତେ ଦିନ ତୁମର ନ-ଆସିଛି, ସେତେ ଦିନ କେବଳ ଚେଷ୍ଟା କରିବା, ସେତେ ଦିନ କେବଳ ଅଭ୍ୟାସ କରିବା। ଯଥାର୍ଥ କାର୍ଯ୍ୟ ତା ପୂର୍ବରୁ ଆରମ୍ଭ ହେବ ନାହିଁ। ଯଥାଯଥ ଭାବରେ କାର୍ଯ୍ୟକରିବା ତ ଦୂରର କଥା, ପ୍ରବୃତ୍ତି-ଅଭିଭୂତ ହୋଇ ରହିଲେ ଇଷ୍ଟଙ୍କର କଥାହିଁ ସହଜରେ ମୁଣ୍ଡରେ ପଶେ ନାହିଁ। ସେଥିପାଇଁ, ନିରାଶୀ, ନିର୍ମମ ହୋଇ ଉଠିଲେ ତୁମେ କାର୍ଯ୍ୟର ପ୍ରଥମ ପାହାଚରେ ପାଦ ପକାଇଲ।

ଆ.ପ୍ର. ୬/୭.୩.୧୯୪୫

**ପ୍ର. – ଇଷ୍ଟାନୁସରଣର ସଙ୍ଗେ-ସଙ୍ଗେ ଜନ-ସେବା ମୂଳକ ବିଭିନ୍ନ କାର୍ଯ୍ୟ କରିବାର କୌଣସି ପ୍ରୟୋଜନ ନାହିଁକି ?**

**ଶ୍ରୀଶ୍ରୀଠାକୁର** – ତୁମ୍ଭେମାନେ ଯଦି ଯଜନ, ଯାଜନ, ଇଷ୍ଟଭୃତି ଠିକ୍ ଠିକ୍ କର ଓ ଠିକ୍ ଭାବରେ ସଞ୍ଚାରିତ କର, ଏହା ଭିତର ଦେଇ ସେବାର କିଛି ବାଦ ପଡ଼େ ନାହିଁ। ଯାଜନର ଭିତରେହିଁ ଅଛି ବାସ୍ତବ ସେବା, ସହାନୁଭୂତି, ସାହଚର୍ଯ୍ୟ ଓ ସାହାଯ୍ୟ – ତାହା ଯେଉଁଠାରେ ଯେପରି ପ୍ରୟୋଜନ। ଆଉ, ସତ୍ତାସମ୍ବର୍ଦ୍ଧନାର ଭିତ୍ତିହିଁ ହେଲା ସକ୍ରିୟ ଇଷ୍ଟପ୍ରାଣତା। ଆଉ ସକ୍ରିୟ ଇଷ୍ଟପ୍ରାଣତାର ଅଭିବ୍ୟକ୍ତିହିଁ ହେଉଛି ଯଜନ, ଯାଜନ, ଇଷ୍ଟଭୃତି, ସଦାଚାର ଇତ୍ୟାଦି। ସେଥିପାଇଁ ଇଷ୍ଟପ୍ରାଣ ଚଳଣୀରେ ଚାଲିବା ଓ ଇଷ୍ଟପ୍ରାଣତା ସଞ୍ଚାରିତ କରିବାର ଭିତରେ ସପରିବେଶ ନିଜର ସର୍ବାଙ୍ଗୀନ ମଙ୍ଗଳ ନିହିତ। ପ୍ରବୃତ୍ତି-ପରାମୁଖ ଗୋଟିଏ ମଣିଷର ଜୀବନର ଧାରାକୁ ବଦଳାଇଦେଇ, ତାକୁ ଯଦି ଇଷ୍ଟ ପଥରେ ପଥିକ କରି ତୋଳାଯାଏ, ତାହା ଗୋଟିଏ ରାଜ୍ୟ ସ୍ଥାପନ ଠାରୁ କମ୍ ଗୁରୁତ୍ୱପୂର୍ଣ୍ଣ ବ୍ୟାପାର ନୁହେଁ। ଗୋଟିଏ ମଣିଷ ଯଦି ପ୍ରକୃତ ଇଷ୍ଟମୁଖୀ ହୁଏ, ସେ ଯେ କେତେ ମଣିଷର କେତେ ଉପକାରରେ ଲାଗେ, ତାର କ'ଣ କିଛି ଲେଖାଜୋଖା ଅଛି ? ...ଦରକାର ତପସ୍ୟା, ଦରକାର ଚରିତ୍ର। ଚରିତ୍ର ହିଁ ଚରାଇ ଦିଏ।

ଆ.ପ୍ର. ୬/୮.୩.୧୯୪୫

**ପ୍ର. – ଇଷ୍ଟାନୁସରଣରେ ଚାଲିବା ପାଇଁ ନିଜକୁ କିପରି ତିଆରି କରିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ସହ୍ୟ, ଧୈର୍ଯ୍ୟ, ଅଧ୍ୟବସାୟ, ତ୍ୟାଗ, ତିତିକ୍ଷା, ସଂଯମ ସବୁହିଁ ବଢ଼ାଇବାକୁ ହେବ ଇଷ୍ଟାର୍ଥେ। ତୁମ ସହିତ ହୁଏତ ମଣିଷ ଲକ୍ଷେ ଦୁର୍ବ୍ୟବହାର କରିବ, କିନ୍ତୁ ତାହା ମଧ୍ୟ ତୁମକୁ ହସ ହସ ମୁହଁରେ ସହ୍ୟ କରିବାକୁ ପଡ଼ିବ। ନିଜକୁ ତିଆରି କରିବାକ

ହେବ ସବୁଦିଗରୁ ଯାହାଦ୍ୱାରା ସଇତାନର ସବୁ ଯୋଜନା ବ୍ୟର୍ଥ କରିଦେଇ ଚିର ଅଜେୟ ହୋଇ ଇଷ୍ଟଙ୍କର ସେବାରେ ତୁମେ ରତ ରହିପାର। ଆଘାତ, ବ୍ୟାଘାତ, ଦୁଃଖ, କଷ୍ଟ, ଅପମାନ, ନିନ୍ଦା, ଗ୍ଲାନି, ଅତ୍ୟାଚାର କିଛି ହିଁ ତୁମକୁ ତାଙ୍କଠାରୁ ବିଚ୍ୟୁତ କରି ନ ପାରେ। ଆଉ ଶରୀରଟିକୁ ଖୁବ୍ ଶକ୍ତ କରିବାକୁ ହୁଏ। ଆ.ପ୍ର. ୬/୮.୩.୧୯୪୫

**ପ୍ର. – ମଣିଷ ଇଷ୍ଟାନୁସରଣ କରେ ଭଲ ଭାବରେ ବଞ୍ଚିବା-ବଢ଼ିବାର ଆଶାରେ, ସୁଖ ଶାନ୍ତିର କଳ୍ପନାରେ। ତାହା କିପରି ସମ୍ଭବ ହୋଇପାରେ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କୁ ସେବା କରିବାର ଆଶା ଓ କଳ୍ପନା ବ୍ୟତୀତ ଅନ୍ୟ କୌଣସି ଆଶା ଓ କଳ୍ପନା ରହିଲେ ଚଳିବ ନାହିଁ। ତାଙ୍କ ପ୍ରତି ଟାଣ ଏତେଟା ଗଭୀର ଓ ଦୃଢ଼ ହେବା ଦରକାର ଯେ, ଯାହା କୌଣସି ପ୍ରକାରେହିଁ ତୁଟିବ ନାହିଁ। ଯେତେ ପରୀକ୍ଷାହିଁ ଆସୁନା କାହିଁକି, କିଛି ପ୍ରକାରରେ ଟଳିବ ନାହିଁ। ତାଙ୍କୁହିଁ ମୁଖ୍ୟ ଓ ଏକାନ୍ତ କରି ଚାଲିବାକୁ ହେବ – ସେଥିରେ ଯାହାବି ହେଉ। ବଞ୍ଚିବା ବଢ଼ିବା ଓ ସୁଖ-ଶାନ୍ତି ଆସେ ଏହିପରି ଭାବରେ ଇଷ୍ଟୈକ-ଲକ୍ଷ୍ୟ ହେଲେ। ବଞ୍ଚିବା-ବଢ଼ିବା ଓ ସୁଖ-ଶାନ୍ତି ଆସେ ମାନେ ଯେ ଦୁଃଖ କଷ୍ଟ ରହେ ନାହିଁ, ତା' କିନ୍ତୁ ନୁହେଁ। Bigger environment (ବୃହତ୍ତର ପରିବେଶ) ସହ becoming (ବୃଦ୍ଧିର) ଦିଗରେ ଚାଲିବାକୁ ଗଲେ, କ୍ରମାଗତ ଚେଷ୍ଟା, କଷ୍ଟ ଓ ତ୍ୟାଗ ସ୍ୱୀକାର କରିବା ଛଡ଼ା ଆଉ ପଥ ନାହିଁ। ଯେଉଁମାନେ ନିଜର ବଞ୍ଚିବା-ବଢ଼ିବା ଓ ସୁଖ-ଶାନ୍ତିକୁ ଅନ୍ୟର ବଞ୍ଚିବା ବଢ଼ିବା ସୁଖ-ଶାନ୍ତିଠାରୁ ବିଚ୍ଛିନ୍ନ କରି ଦେଖନ୍ତି, ସେମାନେ ସାମୟିକ କିଛିଟା ଆରାମରେ ରହିଲେ ବି ରହିପାରନ୍ତି, କିନ୍ତୁ ସେ ଆରାମ ମହା ବେରାମରହିଁ ହୋଚା। ପରିବେଶକୁ ignore (ଉପେକ୍ଷା) କରିଲେ, ତାର reaction (ପ୍ରତିକ୍ରିୟା) ଅନିବାର୍ଯ୍ୟ। ସେଥିପାଇଁ ପରିବେଶର ପ୍ରକୃତ ଭଲ କରିବାର ଚେଷ୍ଟାକୁ ଯେଉଁମାନେ ହସ ହସ ମୁହଁରେ ବରଣ କରିନିଅନ୍ତି, ସେମାନେ ଅନେକ କଷ୍ଟ ଠାରୁ ବଞ୍ଚି ଯାଆନ୍ତି। ତେବେ ପରିବେଶ ତ ଅଳ୍ପ ଟିକିଏ ବ୍ୟାପାର ନୁହେଁ। ଯେତେ କରାଯାଏ, ସେତେହିଁ ଦେଖାଯାଏ, ଆହୁରି ଅନେକ ବାକି। ସେଥିପାଇଁ ଏହି କାମ ଆଉ ଶେଷ ହୁଏ ନାହିଁ, ପୁଣି କରି ମଧ୍ୟ କରିବାର progress (ଅଗ୍ରଗତି) ଭଲକରି ବୁଝାଯାଏ ନାହିଁ। କାରଣ ପ୍ରଥମରେ ତ ବିରାଟ ପରିବେଶ, ତା'ପରେ ମଣିଷ ଭିତରେ ଏତେ ଯେ submerged complex (ଚୋରାବୃତ୍ତି) ଅଛି, କେତେବେଳେ ଯେ କାହା ଭିତରୁ କେଉଁଟା ଠେଲି ବାହାରେ, ତାର ଠିକ୍ ଠିକଣା ନାହିଁ। ସେଥିପାଇଁ ଘାବରେଇ ଗଲେ ହୁଏ ନାହିଁ, କ୍ରମାଗତ ସେବା-ସମ୍ବୋଧନା ଚଳାଇ ରଖିବାକୁ ହୁଏ – ଯେଉଁଠାରେ ଯେତେବେଳେ ଯେପରି ପ୍ରୟୋଜନ। ଏ-କାର୍ଯ୍ୟ କରିବାକୁ ଗଲେ ନିଜ ଉପରେ ମଧ୍ୟ ଖୁବ୍‌ଖବର ଦାରି କରିବାକୁ ହୁଏ, ଯେପରି କୌଣସି ରକମର obsession (ଅଭିଭୂତି) କାବୁ କରି ନପାରେ। ମୋଟ ଉପରେ ଏଥିରେ



ଆଳସ୍ୟ ବା ଶୈଥିଲ୍ୟର ଅବକାଶ ନାହିଁ। ତେବେ ଯାହା କିଛି ଇଷ୍ଟାର୍ଥେ କରା ହୁଏ ବୋଲି ତଜ୍ଜନିତ କଷ୍ଟ ମଧ୍ୟ କଷ୍ଟ ବୋଲି ମନେ ହୁଏ ନାହିଁ। ଯେତେବେଳେ ଦେଖାଯାଏ ଯେ ଆମର ଚେଷ୍ଟା ଫଳରେ ଗୋଟିଏ ଲୋକର ଭଲ ହେଲା, ଇଷ୍ଟ ଖୁସି ହେଲେ, ସେତେବେଳେ କିନ୍ତୁ ସବୁ କଷ୍ଟ ସାର୍ଥକ ମନେହୁଏ, ଆତ୍ମପ୍ରସାଦରେ ହୃଦୟ ଭରିଯାଏ। ମନେରଖ – ଇଷ୍ଟଙ୍କୁ ଭଲପାଇବା ମାନେ ସମସ୍ତଙ୍କର ଭଲ ପାଇଁ ଦାୟୀ ରହିବା। ସେ ଯଦି ଚିର-ଅତନ୍ଦ୍ର ହୁଅନ୍ତି, ତୁମକୁ ମଧ୍ୟ ଚିର-ଅତନ୍ଦ୍ର ହେବାକୁ ହେବ। ଚିନ୍ତାଚଳନର ଏହି ରକମଟା ଆସିଲେ ବୁଝିବାକୁ ହେବ – ତୁମେ ଶାନ୍ତିର ପଥରେ ଚାଲିଛ, ସ୍ୱର୍ଗର ପଥରେ ଚାଲିଛ, ସମ୍ବର୍ଦ୍ଧନାର ପଥରେ ଚାଲିଛ। ଆ.ପ୍ର. ୬/୮.୩.୧୯୪୫

**ପ୍ର. – ଇଷ୍ଟାନୁସରଣରେ ମନର କେଉଁ ଭାବଟା ପକ୍କା କରି ପକାଇବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ଏହି ଗୋଟିଏ ଭାବ ପକ୍କା କରି ପକାଅ – ତୁମର ଇଷ୍ଟ କ'ଣ ଚାହାଁନ୍ତି, କ'ଣ ହେଲେ ସେ ଖୁସି ହୁଅନ୍ତି। ପ୍ରତିଟି ମୁହୂର୍ତ୍ତରେ, ପ୍ରତିଟି ପଦକ୍ଷେପରେ ଏହି ଦୃଷ୍ଟିଭଙ୍ଗି ରଖି ଯାହା କରିବାର କରିବ – ତାହା ତୁମକୁ ଭଲ ଲାଗୁ ବା ନ ଲାଗୁ।

ଆ.ପ୍ର. ୬/୨୦.୩.୧୯୪୫

**ପ୍ର. – ଇଷ୍ଟଙ୍କୁ ଗ୍ରହଣ କରି ମଧ୍ୟ ଅର୍ଥାତ୍ ଦୀକ୍ଷା ନେଇ ମଧ୍ୟ ତ ଅନେକଙ୍କର ସେପରି ପରିବର୍ତ୍ତନ ହୁଏ ନାହିଁ ?**

**ଶ୍ରୀଶ୍ରୀଠାକୁର** – ଦେଖିବାକୁ ହୁଏ, ତୁମର ପରିବର୍ତ୍ତନ କେତେଟା ହୋଇଛି। ସାଧାରଣତଃ ମଣିଷ କମ୍‌ହିଁ ବଦଳେ। ବଦ୍ଧମୂଳ ଅଭ୍ୟାସ ଓ ସଂସ୍କାର ମଣିଷକୁ ସେହି ଦିଗକୁ ଟାଣିଥାଏ। ତାର ହାତକୁ ଏଡ଼ାଇ ଯିବା ଭାରି କଠିନ ବ୍ୟାପାର। ସେଥିପାଇଁ ଯିଏ ଯେପରିବି ହେଉ ନା କାହିଁକି, ନିଷ୍ଠା, ଆନୁଗତ୍ୟ, କୃତିସମ୍ବେଗ ଓ ଶ୍ରମପ୍ରିୟତା-ସମନ୍ୱିତ ଯଜନ, ଯାଜନ, ଇଷ୍ଟଭୃତିର ଅଭ୍ୟାସ ଓ ସଂସ୍କାର ଯେପରି ପ୍ରତ୍ୟେକଙ୍କର ମଜ୍ଜାଗତ ହୋଇ ଉଠେ, ସେ ଦିଗକୁ ତୀବ୍ର ନଜର ଦେବାକୁ ହୁଏ। ସେତେବେଳେ କିଛି ଖରାପ କରିଲେ ସେ ଅତ୍ୟନ୍ତ ଅସ୍ୱସ୍ତି ବୋଧ କରେ, ନିଜ ଭିତରେ ଗୋଟିଏ conflict (ଦ୍ୱନ୍ଦ୍ୱ) ଲାଗିଯାଏ, ନିଜସ୍ୱ ଅଭ୍ୟାସ ଓ ସଂସ୍କାର ଗୁଡ଼ିକୁ adjust (ସୁନିୟନ୍ତ୍ରିତ) କରିବା ଛଡ଼ା ଆଉ ଉପାୟ ନ ଥାଏ। ପ୍ରଧାନ ଜିନିଷ ହେଲା, ଇଷ୍ଟଙ୍କ ପ୍ରତି ଗୋଟିଏ vigorous sentiment (ପ୍ରବଳ ଭାବାନୁକମ୍ପିତା) ଗଢ଼ାଇ ଦେବା। ସେହିଟି ହେଲେ ଭଲମନ୍ଦ ସବୁ ନେଇ ସେ ଚେଷ୍ଟା କରେ ଇଷ୍ଟଙ୍କୁ ଖୁସି କରିବାକୁ। ଆତ୍ମନିୟନ୍ତ୍ରଣର ଗୋଟିଏ ଗରଜ ବୋଧ କରେ। ନହେଲେ କେବଳ ବିଚାର-ବିବେଚନାରେ ହୁଏ ନାହିଁ। ତୁମର ଯଦି ଇଷ୍ଟଙ୍କ ପ୍ରତି ଗୋଟିଏ ଅକାଟ୍ୟ ଟାଣ ଥାଏ, ତାହା ତୁମ ଭିତର ଦେଇ

ଅନ୍ୟ ଭିତରେ ସଂକ୍ରମିତ ହୋଇଯିବ, ଯାହା ଭିତରେ ଯେପରି ଯେତେଟା ସଂକ୍ରମିତ ହେବା ସମ୍ଭବ। ଏହି ସଂକ୍ରମଣର ସୂତ୍ର ହେଉଛ ଶ୍ରଦ୍ଧା। ତୁମର ଚଳନ-ଚରିତ୍ର, ସେବା-ସହାନୁଭୂତି ଲୋକଙ୍କର ଅନ୍ତରରେ ଗଭୀର ଶ୍ରଦ୍ଧାର ଉଦ୍ରେକ କରିବା ଦରକାର।

ଆ.ପ୍ର. ୬/୧୩.୪.୧୯୪୫

**ପ୍ର. – ଇଷ୍ଟାନୁସରଣର ନିର୍ଦ୍ଦେଶ ଗୁଡ଼ିକ ସାଧାରଣ ଭାବରେ ସହଜ ଲାଗେ, କିନ୍ତୁ କାମରେ କରିବାକୁ ଗଲେହିଁ ସବୁ ଜଟିଳ ବୋଲି ମନେ ହୁଏ। ଏହି ସମସ୍ୟାର ସମାଧାନ କ'ଣ?**

**ଶ୍ରୀଶ୍ରୀଠାକୁର** – ତୁମେ ଯଦି ମୋତେ ଭଲପାଅ – ଅନ୍ୟର ଭଲ କରିବା ତୁମର ସ୍ୱାର୍ଥ ହୋଇ ଉଠିବ। ଆଉ ଅନ୍ୟର ଭଲ କରିବା ଯଦି ତୁମର ସ୍ୱାର୍ଥ ହୁଏ, ତାହେଲେ ଦେଖିବ, ସମସ୍ୟା ଅନେକ ସରଳ ହୋଇ ଆସିଛି। ହୀନ ସ୍ୱାର୍ଥବୁଦ୍ଧି ନେଇ, ହାମବଡ଼ାଇ ନେଇ ଯେତେବି ବଡ଼ କାର୍ଯ୍ୟ କରିବାକୁ ଯାଅନା କାହିଁକି, ତାହା ପଣ୍ଡ କରିବାର ପ୍ରଧାନ ପୁରୋହିତ ତୁମେହିଁ ହେବ। ତୁମ ଭିତରେ ଅସଙ୍ଗତି କାରଣରୁ ତୁମେ କାହାକୁ ବା କିଛିକୁ ସୁସଙ୍ଗତ କରି ତୋଳିପାରିବ ନାହିଁ। ସେହି ଅବସ୍ଥାରେ ମୁଣ୍ଡ ଗୋଳମାଳ ହୋଇ ଯିବାଟାହିଁ ସ୍ୱାଭାବିକ। ମୋର ଚିନ୍ତା-ଚଳନ ସହିତ ଯଦି ତୁମର ଚିନ୍ତା-ଚଳନକୁ ଖାପ ଖୁଆଇ ନେଇ ପାର, ତା'ହେଲେ ଦେଖିବ, ମୁଁ ଯାହା କରିବାକୁ କହେ ତାହା କରିବା ଅତି ସାଧାରଣ ବ୍ୟାପାର। ନିଜର ଭଲ ସମ୍ବନ୍ଧରେ, ନିଜର ସ୍ୱାର୍ଥ ସମ୍ବନ୍ଧରେ ତୁମ୍ଭମାନଙ୍କର ଗୋଟିଏ ବିକୃତ ବୋଧ ଓ ପ୍ରଚେଷ୍ଟା ଅଛି। ଏହିଭୂତ ଯେତେ ସମୟ ତୁମର ମୁଣ୍ଡରୁ ନ ଓହ୍ଲାଇଛି, ସେତେ ସମୟ ବିଫଳତା ଓ ହଇରାଣ ତୁମମାନଙ୍କୁ ଛାଡ଼ିବ ନାହିଁ, ମୁଁ ବାରମ୍ବାର କହୁଛି, ପୁଣି କହୁଛି – ଯଦି ନିଜର ଭଲ ଚାହଁ, ନିଜର ସ୍ୱାର୍ଥ ଚାହଁ, ତେବେ ଇଷ୍ଟପ୍ରାଣ ଅନୁବର୍ତ୍ତନାରେ ପରିବେଶର ଭଲ କର, ପରିବେଶର ସ୍ୱାର୍ଥ ଦେଖ। ଏହି କଥାଟିକୁ ତୁମ୍ଭେମାନେ ଯଦି-ମନପ୍ରାଣରେ ବିଶ୍ୱାସ କର ଏବଂ ଅଭ୍ୟାସରେ ଆୟତ୍ତ କର, ସେତେବେଳେ ହିଁ ଦେଖିବ – ତୁମ୍ଭମାନଙ୍କର ପରିବାର ପରିବେଶ, ଏପରିକି ସାରା ଦେଶ ଦ୍ରୁତ ଉନ୍ନତିର ପଥରେ ଆଗେଇ ଯାଉଛି। ଆ.ପ୍ର. ୬/୧୩.୪.୧୯୪୫

**ପ୍ର. – ଇଷ୍ଟାନୁସରଣ ପଥରେ ନାନା ରକମର ସାଂସାରିକ ଦୁଃଶ୍ଚିନ୍ତା ବାଧା ହୋଇ ଛିଡ଼ା ହୁଏ, ସେଗୁଡ଼ିକୁ ତଡ଼ିବା ମଧ୍ୟ ସମ୍ଭବ ହୁଏ ନାହିଁ! ଏହାର ଉପାୟ କ'ଣ?**

**ଶ୍ରୀଶ୍ରୀଠାକୁର** – ତଡ଼ି ଦେବା ଦରକାର କ'ଣ? ଇଷ୍ଟଚିନ୍ତା, ଇଷ୍ଟକର୍ମ ବଢ଼ାଇ ଦିଅ। ସେତେବେଳେ ଏଗୁଡ଼ିକ ଏତେଟା ଦୌରାତ୍ମ୍ୟ କରିପାରିବ ନାହିଁ! ବାସ୍ତବ ସମସ୍ୟା ଯେଉଁଗୁଡ଼ିକ ଅଛି, ସେଗୁଡ଼ିକର ସମାଧାନରେ ଚେଷ୍ଟା ମଧ୍ୟ କରିବା ଦରକାର। ଦରଦୀ ଇଷ୍ଟପ୍ରାଣ



ସେବାରେ, ବ୍ୟବହାରରେ ମଣିଷର ପ୍ରାଣ କାଢ଼ି ନେବାକୁ ହୁଏ। ସେତେବେଳେ ଦେଖିବ, ସେହିମାନେହିଁ ତୁମ ପାଇଁ ଭାବିବେ। ଆଉ ଯେଉଁ ବ୍ୟାପାରରେ ଯେତେବେଳେ ଯାହା କରଣୀୟ ତା' କିନ୍ତୁ କରିବେ ହିଁ। ସାଂସାରିକ କରଣୀୟ ଗୁଡ଼ିକ କ୍ରମ ପର୍ଯ୍ୟାୟରେ କରି ଚାଲିଲେ, ସଂସାର ନେଇ ଏତେ ବିବ୍ରତ ହେବାକୁ ହୁଏ ନାହିଁ। ଧର ତୁମର ପିଲାଟି ଆଜି ହୁଏତ ଅବାଧ ହୋଇଯାଇଛି, ସେଥିପାଇଁ ତୁମର ମନ ଖରାପ। କିନ୍ତୁ ଏହି ଅବସ୍ଥାଟା ଗୋଟିଏ ଦିନରେ ହୋଇନାହିଁ। ପିଲା ଉପରେ ଦିନ ପରେ ଦିନ ଯେ ନଜର ରଖିବା ଦରକାର ତା ନ ରଖିବା କାରଣରୁ ଆଜି ହୁଏତ ଏପରି ଅବସ୍ଥା ଉପୁଜିଛି। ତୁମେ ହୁଏତ ଋଣର ଦାୟରେ ଜର୍ଜରିତ, କିନ୍ତୁ ମୂଳରୁ ଯଦି ସଂକଳ୍ପ କରିଥାନ୍ତ, କଷ୍ଟ ହେଉ ତା ମଧ୍ୟ ଭଲ, କିନ୍ତୁ ଋଣ ମଧ୍ୟରେ ପଶିବି ନାହିଁ, ବରଂ ସମୟ-ଅସମୟ ପାଇଁ କିଛି-କିଛି ସଞ୍ଚୟ କରିବାକୁ ଚେଷ୍ଟା କରିବି, ତା'ହେଲେ ସଞ୍ଚୟ ହେଉ ବା ନ ହେଉ ଋଣଟା ନ କରି ହୁଏତ ଚଳି ପାରିଥାନ୍ତ, କିଛି ସଞ୍ଚୟ ହେବା ମଧ୍ୟ ଅସମ୍ଭବ ନ ଥିଲା। ସବୁ ଦିଗକୁ ଖିଆଲ ରଖି ସୁଚିନ୍ତିତ ଦୂରଦର୍ଶୀ ଚଳଣୀରେ ଚଳିବା ଦରକାର। Mathodical habit (ପ୍ରଣାଳୀ ସମ୍ମତ ଅଭ୍ୟାସ) ନ ହେଲେ ମଣିଷର ଦୁର୍ଭୋଗର ଅନ୍ତ ରହେ ନାହିଁ। ଏହିସବୁ Mathodical habit (ଅଭ୍ୟାସ) ପିଲା ବେଳରୁ form (ଗଠନ) କରିବା ଦରକାର। ଆ.ପ୍ର. ୬/୧୪.୪.୧୯୪୫

**ପ୍ର. – ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠା ସବୁ ବିଷୟରେ ହିଁ ପ୍ରୟୋଜନ କାହିଁକି?**

**ଶ୍ରୀଶ୍ରୀଠାକୁର** – ଏହିଟି ହିଁ ହେଲା ଭବସମୁଦ୍ରର compass (ଦିଗ ନିର୍ଣ୍ଣୟ ଯନ୍ତ୍ର)। ପ୍ରତି ପଦକ୍ଷେପରେ ଏହା ଦେଇ ମାପି-ମାପି ଚାଲିବାକୁ ହୁଏ। ବୁଦ୍ଧଦେବ ସମ୍ୟକ ଦୃଷ୍ଟିର କଥା କହିଛନ୍ତି। ମୋର ମନେ ହୁଏ, ତାହା ମଧ୍ୟ ଏହି ଇଷ୍ଟସ୍ୱାର୍ଥ, ଇଷ୍ଟପ୍ରତିଷ୍ଠାର କଥା। ଇଷ୍ଟ ସ୍ୱାର୍ଥ ଓ ଇଷ୍ଟ ପ୍ରତିଷ୍ଠାର ଭିତରେ ଅଛି ବ୍ୟକ୍ତିଗତ ଓ ସମଷ୍ଟିଗତ ସ୍ୱାର୍ଥ ଓ ପ୍ରତିଷ୍ଠାର ସମନ୍ୱୟ ଏବଂ ତାହା ବୈଶିଷ୍ଟ୍ୟ ଉପରେ ଛିଡ଼ା ହୋଇ। ସେଥିପାଇଁ ଏଥିରେ କୌଣସି ଅନ୍ଧ ଦ୍ୱନ୍ଦର ସୃଷ୍ଟି ହୁଏ ନାହିଁ। ସୁବିଧାର ରାସ୍ତା ପରିଷ୍କାର ଖୋଲା – ତା' ନିଜ ପାଇଁ ଓ ଅନ୍ୟ ପାଇଁ। ପୁଣି ସବୁ-କିଛିର ସାର୍ଥକତାର ଗୋଟିଏ ଜୀବନ୍ତ କେନ୍ଦ୍ର ଥାଏ। ତାହାହିଁ ଦାନା ବାନ୍ଧି ଉଠେ, ରୂପ ନିଏ। ନହେଲେ ମଙ୍ଗଳ ବା କଲ୍ୟାଣ-ପ୍ରଚେଷ୍ଟା ଯେ କେତେ ଅନିର୍ଦ୍ଦିଷ୍ଟ ଓ ଅବାନ୍ତର ପଥରେ ବିଭ୍ରାନ୍ତ ଓ ବିଲୀନ ହୋଇ ଚାଲେ, ତାର କୌଣସି ଠିକଣା ନାହିଁ। ବାଦ-ବିବାଦର ମଧ୍ୟ ଶେଷ ନାହିଁ। ହଜାରେ ରକମର philosophy ର(ଦର୍ଶନର) ଆମଦାନୀ ହୋଇଥାଏ। ମୁଁ ଯେଉଁ Ideal (ଆଦର୍ଶ ବା ଇଷ୍ଟ), individual (ବ୍ୟଷ୍ଟି) ଓ environment-ର (ପାରିପାର୍ଶ୍ୱିକଙ୍କର) concordanceର (ସଙ୍ଗତି-ସାଧନର) କଥା କୁହେ – ତାହା କରିବାକୁ ଗଲେହିଁ ପ୍ରତି ପ୍ରତ୍ୟେକଙ୍କର ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହୋଇ ଚାଲିବା ଦରକାର। ଗୋଟିଏ ମଣିଷ ଏହି

ଚଳଣୀରେ ଚାଲିବାକୁ ଆରମ୍ଭ କଲେ, ତାର ଯେ କେତେ ପରିମାଣରେ ଶୁଭପ୍ରଭାବ ହୁଏ, ତାର ଇୟତ୍ତା ନାହିଁ। କେହି ଯଦି ଦେଶ ଓ ଦଶ ପାଇଁ କିଛି କରିବାକୁ ଚାହେଁ ତାର ଆଦି ବି ଏଠାରେ, ମଧ୍ୟ ବି ଏଠାରେ ଓ ଅନ୍ତ ବି ଏଠାରେ। ଆ.ପ୍ର. ୬/୧୪.୪.୧୯୪୫

**ପ୍ର. – ଇଷ୍ଟାନୁସରଣରେ ନିଜର ଅନ୍ୟ କୌଣସି ଚାହିଦା ରହିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ନିଜର କେତେଗୁଡ଼ିଏ ଚାହିଦା ରହିଲେ ଦ୍ୱନ୍ଦ ଆଉ ଯାଏ ନାହିଁ। ତୁମର ଚାହିଦା ରହିବ ତାଙ୍କର ଚାହିଦା ପୂରଣ କରିବା ପାଇଁ। ପ୍ରବୃତ୍ତିକୁ ଯଦି ଭଗବାନଙ୍କ ସେବାରେ ଲଗାଇବାକୁ ଚାହଁ, ତା ହେଲେ ସେହିଟି ହିଁ ସହଜ। କିନ୍ତୁ ଭଗବାନଙ୍କୁ ଯଦି ପ୍ରବୃତ୍ତିର ସେବାରେ ଲଗାଇବାକୁ ଚାହଁ, ସେହିଟି ହିଁ ବଡ଼ କଠିନ। ଆ.ପ୍ର. ୬/୧.୮.୧୯୪୫

**ପ୍ର. – ଇଷ୍ଟାନୁସରଣର ମୂଳକଥା କ'ଣ ? ତାହାଦ୍ୱାରା କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟପ୍ରାଣତା ହେଲା ମୂଳକଥା। ସେବା ମୁଖର ଇଷ୍ଟପ୍ରାଣତାକୁ ଅବଲମ୍ବନ କରି ଚାଲିଲେ ଧର୍ମ, ଅର୍ଥ, କାମ, ମୋକ୍ଷ ତାକୁ ଆଲିଙ୍ଗନ କରିବ ହିଁ। ... ଇହକାଳରେ-ପରକାଳରେ ସାର୍ଥକ ହେବାର ଏହି ଏକମାତ୍ର ପଥ।

ଆ.ପ୍ର. ୬/୪.୮.୧୯୪୫

**ପ୍ର. – ଅନେକେ ତ ଇଷ୍ଟଙ୍କର ଧାର ଧାରନ୍ତି ନାହିଁ, ସେମାନଙ୍କର କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଯେଉଁମାନେ ଇଷ୍ଟଙ୍କର ଧାର ଧାରନ୍ତି ନାହିଁ, ଅନିଷ୍ଟ ସେମାନଙ୍କର ପଛେ-ପଛେ ହିଁ ଘୂରି ବୁଲେ। ଆ.ପ୍ର. ୬/୭.୮.୧୯୪୫

**ପ୍ର. – ଷ୍ଟାନୁସରଣ ଫଳରେ ମଣିଷର ଚାରିତ୍ରିକ ପରିବର୍ତ୍ତନ କେତେବେଳେ ହୁଏ ?**

**ଶ୍ରୀଶ୍ରୀ ଠାକୁର** – ଚାରିତ୍ରିକ ପରିବର୍ତ୍ତନର ତାଗିଦ୍ ମଣିଷ ସେଇ ପର୍ଯ୍ୟନ୍ତ ଭଲକରି ବୋଧ କରେ ନାହିଁ, ଯେତେସମୟ ପର୍ଯ୍ୟନ୍ତ ସେ ଇଷ୍ଟଙ୍କଠାରେ interested (ସ୍ୱାର୍ଥାନ୍ୱିତ) ନ ହୁଏ। ଇଷ୍ଟଙ୍କ ପ୍ରତି ଭଲପାଇବା ହେଲେହିଁ ତାଙ୍କର ମନଅନୁସାରେ ନିଜକୁ ଗଢ଼ି ତୋଳିବାର ଏବଂ ନିଜର-ଆଚାର ଆଚରଣ ଓ ସେବା-ବ୍ୟବହାରକୁ ମନୋଜ୍ଞ କରି ମଣିଷକୁ ଇଷ୍ଟଙ୍କଠାରେ ଅନୁରଞ୍ଜିତ କରିବାର ବୁଦ୍ଧି ହୁଏ। ମଣିଷକୁ ନିଜ ପ୍ରତି ଆକୃଷ୍ଟ କରିବାର ଲୋଭରେ କେହି ଯଦି ଆଚାର-ବ୍ୟବହାର ମାର୍ଜିତ କରିତୋଳେ, ତା' ଭିତରେ କିନ୍ତୁ କୃତ୍ରିମତା ରହିଯାଏ ଏବଂ ସେଥିରେ ପ୍ରକୃତ ଚାରିତ୍ରିକ ପରିବର୍ତ୍ତନ ହୁଏ ନାହିଁ। ଆ.ପ୍ର. ୬/୯.୮.୧୯୪୫

**ପ୍ର. – ଇଷ୍ଟଙ୍କ ପ୍ରତି ଯିଏ ବିଶ୍ୱାସଘାତକତା କରେ ତା' ସହିତ କ'ଣ ସମ୍ପର୍କ ରଖିବା ଚଳେ ?**



**ଶ୍ରୀଶ୍ରୀଠାକୁର** – କେହି ଯଦି ଇଷ୍ଟଗ୍ରହଣ କରି ତାଙ୍କ ପ୍ରତି ବିଶ୍ୱାସଘାତକତା କରେ, ତା ପଛରେ ମଧ୍ୟ ଆପଣ ଲାଗି ରହି ପାରନ୍ତି, ତାକୁ ଫେରାଇବା ପାଇଁ। କିନ୍ତୁ ଏତେ ବଡ଼ ଅପରାଧ ସତ୍ତ୍ୱେ ମଧ୍ୟ ଆପଣ ଯଦି ତା ସହିତ ନିବିଡ଼ ସମ୍ପର୍କ ବଜାଇ ରଖି ଚାଲନ୍ତି ତାହେଲେ ବୁଝିବାକୁ ହେବ, ଆପଣଙ୍କର ଇଷ୍ଟଙ୍କ ପ୍ରତି କୌଣସି sentiment (ଭାବାନୁକମ୍ପିତା) ନାହିଁ, କିମ୍ବା ସାମାନ୍ୟ ଟିକିଏ ଯଦି ବି ଥାଏ, ତା ମଧ୍ୟ ଏହି ସଂସର୍ଗ ଫଳରେ ନଷ୍ଟ ହୋଇଯିବ। ...ଇଷ୍ଟନିଷ୍ଠାହିଁ ହେଲା ମଣିଷର ଶୁଭଦ ମସ୍ତିଷ୍କ-କେନ୍ଦ୍ର, ଯାହା ଦେଇ ସେ ସତ୍‌ପଥରେ ଚାଳିତ ହୁଏ। ସବୁ-କିଛିକୁ ନିୟନ୍ତ୍ରଣ କରି ଚାଲିବାର, ଭଲହେବାର, ଭଲ ରହିବାର ମୂଳ ସେହିଠାରେ। ସେହି spine (ମେରୁଦଣ୍ଡ)-ଟା ଭାଙ୍ଗିଗଲେ କିଛି ପ୍ରକାରେ କିଛି ବି ହେବ ନାହିଁ। ସବୁ ଚେଷ୍ଟା ବୃଥା ହୋଇଯିବ। ଆ.ପ୍ର. ୬/୧୯.୮.୧୯୪୫

**ପ୍ର. – କିପରି ଚଳିଲେ ଇଷ୍ଟଙ୍କର ଇଚ୍ଛାକୁ ଶୀଘ୍ର ବାସ୍ତବତାରେ ରୂପ ଦେଇ ହେବ ?**

**ଶ୍ରୀଶ୍ରୀଠାକୁର** – Strong adherence (ପ୍ରବଳ ଅନୁରାଗ) ହେଲେହିଁ ହୁଏ। ଇଷ୍ଟ ଯାହା ଚାହାଁନ୍ତି, ଯାହାଦ୍ୱାରା ଖୁସି ହୁଅନ୍ତି, ତାହାହିଁ ବାସ୍ତବରେ materialise (ମୂର୍ତ୍ତ) କରିବାକୁହିଁ ସାଧନା କହନ୍ତି। ଏହାଦ୍ୱାରା inner life ରେ (ଅନ୍ତର୍ଜୀବନରେ) corresponding spiritual and psychical materialisation (ଅନୁରୂପ ଆଧ୍ୟାତ୍ମିକ ଓ ମାନସିକ ମୂର୍ତ୍ତନା) ଯାହା ହେବାର ତାହା ହେଉଥାଏ। ଆଧ୍ୟାତ୍ମିକ ଚେତନା ନେଇ ଅର୍ଥାତ୍ ସବୁ ବୃତ୍ତିର ସମାହାର କରି, ସମଗ୍ର ସତ୍ତାର ସମ୍ବେଗ ନେଇ କାର୍ଯ୍ୟ କରିବା ଦରକାର। ଆଧ୍ୟାତ୍ମିକତା ମାନେ, ଇଷ୍ଟଙ୍କୁ ଅବଲମ୍ବନ କରି ସମ୍ୟକ ଗମନ ବା ଚଳନ। ଏହା ଭିତର ଦେଇ ହିଁ ଆତ୍ମୋପଲବ୍ଧି ବା ବ୍ରହ୍ମୋପଲବ୍ଧି ଆସେ। ଆତ୍ମାର ପ୍ରକୃତି ହେଲା ଗତିଶୀଳତା, ବ୍ରହ୍ମର ପ୍ରକୃତି ହେଲା ବୃଦ୍ଧିପ୍ରାଣତା। ଇଷ୍ଟଙ୍କ ପ୍ରତି ଅନୁରକ୍ତ ହେଲେ ତାର ବୃଦ୍ଧିମୁଖୀ ଚଳନ ସ୍ୱାଭାବିକ ହୋଇଉଠେ। ଏହି ସ୍ୱଭବଗତ ଚଳନହିଁ ହେଲା କର୍ମୀର ମାନଦଣ୍ଡ। ଏହାଦ୍ୱାରା ସପରିବେଶ ଯାହା ହେବାର ଆପେ ଆପେ ହୁଏ। ଏହି mood (ଭାବ) ସୃଷ୍ଟି କରିବା ଦରକାର। ... ମୁଁ ଲକ୍ଷେ ଥର କହୁଛି – ଆପଣମାନଙ୍କ ଭିତରେ ଭଲଟା ଯାହା ଦେଖାଯାଏ, ଆପଣମାନେ ତାହାହିଁ; ମନ୍ଦଟା ଯାହା ଦେଖାଯାଏ ତାହା ଆପଣମାନେ ନୁହଁନ୍ତି। ଆପଣମାନଙ୍କର ସତ୍ତା ଭଲ, ଆପଣମାନେ ଭଲ ହିଁ ଚାହାଁନ୍ତି, ନହେଲେ ଆପଣମାନେ ଏଠାକୁ ଆସନ୍ତେ ନାହିଁ।

ଆ.ପ୍ର. ୬/୧୮.୧୦.୧୯୪୫

**ପ୍ର. – ଇଷ୍ଟାନୁରାଗ କାହା ଭିତରେ ଅଛି କି ନାହିଁ, କ'ଣ ଦେଖି ବୁଝାଯିବ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟାନୁରାଗ ରହିଲେହିଁ ଅନୁସନ୍ଧିତ୍ସୁ ସେବାବୁଦ୍ଧି, କର୍ମସମ୍ବେଗ, ଦକ୍ଷତା,

କ୍ଷିପ୍ରତା, କୁଶଳ-କୌଶଳୀ ଚଳନ ରହିବ। ଏଗୁଡ଼ିକ ରହିଲେ ତାର success (ସାଫଲ୍ୟ)କୁ କିଏ ଅଟକାଇବ ? ଏସବୁ ଫାଙ୍କିବାଜିର କାରବାର ନୁହେଁ। ସ୍ୱୟଂ ମା'-ଲକ୍ଷ୍ମୀ ମଧ୍ୟ ତାକୁ ସମୀହ (ଖାତିର) କରି ଚଳନ୍ତି। ଆ.ପ୍ର. ୬/୧୯.୧୧.୧୯୪୫

**ପ୍ର. – ଇଷ୍ଟାନୁସରଣର ପଥରେ ଅନେକେ ବିଭ୍ରାନ୍ତ ହୁଅନ୍ତି, ପୁଣି ଅନେକେ ଅପରକୁ ମଧ୍ୟ ବିଭ୍ରାନ୍ତ କରାନ୍ତି, – ତାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର –** ଏଥର ସେ ଚାବିକାଠି ଦେଇ ଯାଇଛନ୍ତି। ଇଚ୍ଛା ନ ଥିଲେ କାହାରି ବିପଥରେ ବିଭ୍ରାନ୍ତହେବାର ସମ୍ଭାବନା ନାହିଁ। ସେ ଦୟାକରି ମୁଖାବରଣ ଖୋଲି ଦେଇଛନ୍ତି। Science (ବିଜ୍ଞାନ) ଆଉ ଧର୍ମ merge କରି (ମିଶି) ଯାଇଛି।

ଆ.ପ୍ର. ୬/୨୦.୧୧.୧୯୪୫

**ପ୍ର. – ଇଷ୍ଟାନୁସରଣ ନ କରି ମଧ୍ୟ ଯଦି ପରିବେଶକୁ ଭଲପାଇ ହୁଏ ଓ ପରିବେଶର ସେବା କରାଯାଏ ତାହେଲେ କ୍ଷତି କ'ଣ ?**

**ଶ୍ରୀଶ୍ରୀଠାକୁର –** ମଣିଷ ଯଦି superiorଙ୍କ (ଶ୍ରେୟଙ୍କ) ପ୍ରତି ଟାଣରେ ଆବଦ୍ଧ ନଥାଏ, ତାହେଲେ ପରିବେଶକୁ ଭଲପାଇବାକୁ ଯାଇ ସେ ହଜିଯାଏ, passion and complex ର (ବୃତ୍ତି-ପ୍ରବୃତ୍ତିର) prey (ଶିକାର) ହୋଇପଡ଼େ। ଭଲପାଇବାର କୌଣସି ମୂଳ କେନ୍ଦ୍ର ଯଦି ଥାଏ, ତେବେ ସେଠାରୁ ତାହା ବିସ୍ତୃତ ହୋଇପଡ଼େ; sublimated (ଭୂମାୟିତ) ହୁଏ। ଶ୍ରେୟଙ୍କ ପ୍ରତି ଭଲପାଇବା ନ ରହିଲେ ମଣିଷ complex ର (ପ୍ରବୃତ୍ତିର) aboveରେ (ଊର୍ଦ୍ଧ୍ୱକୁ) ଉଠି ପାରେ ନାହିଁ। ଆଉ complex-pervading love (ପ୍ରବୃତ୍ତିଭେଦି ଭଲପାଇବା) ନହେଲେ sublimationର (ଭୂମାୟିତ ହେବାର) ସମ୍ଭାବନା ମଧ୍ୟ କମ୍ ଥାଏ। ଜଣକର ପୁତ୍ର ସ୍ନେହ ମଧ୍ୟ ବ୍ୟାପକତା ଲାଭ କରିପାରେ, ଯଦି ତାର ମାତୃଭକ୍ତି, ପିତୃଭକ୍ତି ବା ଗୁରୁଭକ୍ତି ଅଟୁଟ ଥାଏ। ଯେ ନିଜର ମା-ବାପାଙ୍କୁ ଶ୍ରଦ୍ଧା କରେ, ସେ ପ୍ରତ୍ୟେକଙ୍କୁ ହିଁ ଶ୍ରଦ୍ଧା କରିବାକୁ ଶିଖେ। ଉପରଙ୍କୁ ବାଦ ଦେଇ ଯେଉଁ ସେବା ବୁଦ୍ଧି, ତା ମଧ୍ୟରେ ଗୋଳମାଳ ଅଛି।

ଆ.ପ୍ର. ୬/୭.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣର ପଥରେ ବିଶେଷ କୌଣସି ସମସ୍ୟାର ଉଦୟ ହେଲେ କରଣୀୟ କି ଭାବରେ ସ୍ଥିର କରିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର –** ନିଜର ସ୍ୱାର୍ଥଚାହିଦା ନେଇ, ଅହମିକା ବା ଅନ୍ୟ କୌଣସି obsession-କୁ (ଅଭିଭୂତିକୁ) ପ୍ରଶ୍ରୟ ନ ଦେଇ receptive mood-ରେ (ଗ୍ରହଣମୁଖର ମନୋଭାବ ନେଇ) ଇଷ୍ଟସ୍ୱାର୍ଥପ୍ରତିଷ୍ଠାର compass-ରେ (ଦିଗନିର୍ଣ୍ଣୟ ଯନ୍ତ୍ରରେ) କରଣୀୟ କ'ଣ ଦେଖିନେବାକୁ ହୁଏ। ଭବସମୁଦ୍ରରେ ସବୁସମୟରେ ଏହି ଯନ୍ତ୍ର ସାଥିରେ ନେଇ ଚାଲିବା ଦରକାର। ନ ହେଲେ କେତେ ଝଡ଼ଝଞ୍ଜା, ବେତାଳ ଘୂର୍ଣ୍ଣି ଅଛି, ତାର କିଛି ଠିକ୍ ଅଛି ? ନିଜର ସହିତ ନିଜେ ଯଦି ଶଇତାନି ନ କର ତା'ହେଲେ କୌଣସି ଭାବନା ନାହିଁ। ...ତାର ମାନେ ଜାଣିଶୁଣିହିଁ ପ୍ରବୃତ୍ତିର ପଥରେ ଚାଲୁଛ, ଅଥଚ ନିଜକୁ ଓ ଅପରକୁ ଇଷ୍ଟସ୍ୱାର୍ଥପ୍ରତିଷ୍ଠା ପାଇଁ ହିଁ ଏପରି ଚଳୁଛ କହି, ଯଦି ବିଭ୍ରାନ୍ତ କରିବାକୁ ଚାହିଁ ତା'ହେଲେ ସେହିଟିକୁହିଁ କୁହାଯାଏ ନିଜର ସହିତ ନିଜେ ଶଇତାନି କରିବା। ଏହିଭାବରେ ଚାଲୁଚାଲୁ insincerity (କପଟତା) ଦୃଢ଼ମୂଳ ହୋଇଯାଏ। ମଣିଷ ନିଜକୁହିଁ ନିଜେ ଚିହ୍ନି ପାରେ ନାହିଁ। ଆ.ପ୍ର. ୬/୯.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣ କରି ଚାଲେ ବୋଲି କାହାରି ଆତ୍ମୀୟ-ସ୍ୱଜନ ବା ଗୁରୁଜନ କେହି ଯଦି ତାର ଇଷ୍ଟଙ୍କ ପ୍ରତି ଶତ୍ରୁଭାବାପନ୍ନ ହୋଇଉଠନ୍ତି ?**

**ଶ୍ରୀଶ୍ରୀଠାକୁର –** ଆତ୍ମୀୟ-ସ୍ୱଜନ ଓ ଗୁରୁଜନ ଅତିପ୍ରିୟ ଓ ଶ୍ରଦ୍ଧେୟ ସେ ବିଷୟରେ କୌଣସି ସନ୍ଦେହ ନାହିଁ। କିନ୍ତୁ ଗୁରୁ ବା ଇଷ୍ଟଙ୍କ ତୁଳନାରେ କେହି କିଛି ନୁହଁନ୍ତି, ବିଶେଷତଃ ସେମାନେ ଯଦି ସେହି ଗୁରୁ ବା ଇଷ୍ଟଙ୍କର ଶତ୍ରୁ ହୁଅନ୍ତି। ସେଠାରେ ମମତା ଦ୍ୱାରା carried (ଚାଳିତ) ହେବା ମାନେ, ଗୁରୁଭକ୍ତିକୁ ଶିଥିଳ କରିବା। Primary (ପ୍ରାଥମିକ) ବା ମୂଳ ଜିନିଷ ହେଲା being and becoming (ବଞ୍ଚିବା ଓ ବଢ଼ିବା)। ଏହା ଥାଏ Ideal-ରେ (ଇଷ୍ଟଙ୍କଠାରେ)। ସେଥିପାଇଁ ପ୍ରୟୋଜନ ହେଲେ ତାଙ୍କ ପାଇଁ ବାପା-ମା, ଭାଇ-ବନ୍ଧୁ ସମସ୍ତଙ୍କୁ sacrifice (ତ୍ୟାଗ) କରାଯାଏ। ଯାହାଙ୍କୁ ଅବଲମ୍ବନ କରି ମଣିଷ ଜୀବନ ବୃଦ୍ଧିର ପଥରେ ଚାଲେ, ସେ ହିଁ ମୂଳ ଓ ମୁଖ୍ୟ। ଆ.ପ୍ର. ୬/୧୧.୧୨.୧୯୪୫

**ପ୍ର. – ଇଷ୍ଟଙ୍କ ପ୍ରତି ଯଦି ପ୍ରକୃତରେ ଟାଣ ଥାଏ, ତାହା କ'ଣ ସମସ୍ତଙ୍କ ମଧ୍ୟରେ ସଞ୍ଚାରିତ ହେବ ?**

**ଶ୍ରୀଶ୍ରୀଠାକୁର –** ହଁ। ଇଷ୍ଟଙ୍କ ପ୍ରତି ଟାଣ ହେଲା real (ଖାଁଟି) ଜିନିଷ। ଆଉ ଏହା ଯଦି ପ୍ରକୃତରେ କାହା ଭିତରେ ଥାଏ, ତାହେଲେ ପାରିପାର୍ଶ୍ୱିକଙ୍କ ଭିତରେ ସଂକ୍ରମିତ ନ ହୋଇ ରହିପାରେ ନାହିଁ। ସେତେବେଳେ ସେ normally loving (ସ୍ୱଭାବତଃହିଁ ଭଲ-ପାଇବା ପ୍ରବଣ) ହୁଏ। ଭଲ ନ ପାଇ ରହିପାରେ ନାହିଁ, କିନ୍ତୁ ଏହି ଭଲପାଇବା ଓ ସେବାର ଉତ୍ସ ମଧ୍ୟ ଇଷ୍ଟ, ଗନ୍ତବ୍ୟ ମଧ୍ୟ ଇଷ୍ଟ। ଯତ୍ର ଯତ୍ର ନେତ୍ର ପଡ଼େ, ତତ୍ର ତତ୍ର ଇଷ୍ଟ ସ୍ଫୁରେ – ଏହିପରି ହୁଏ। ଇଷ୍ଟ ଏବଂ ପାରିପାର୍ଶ୍ୱିକଙ୍କ ପ୍ରତି ତାର ସ୍ୱତଃସ୍ଫୁର୍ତ୍ତ ଶ୍ରଦ୍ଧା ଦେଖି ପାରିପାର୍ଶ୍ୱିକଙ୍କର ଭିତରେ ମଧ୍ୟ ତା ପ୍ରତି ଏବଂ ସେହି ସଙ୍ଗେ-ସଙ୍ଗେ ତାର ଇଷ୍ଟଙ୍କ ପ୍ରତି ଶ୍ରଦ୍ଧା ଗଢ଼ିଉଠେ। ତାର ଚଳନଟି ହିଁ ମଣିଷର ଅନ୍ତରର ଶ୍ରଦ୍ଧା କାଢ଼ିନିଏ। ଆ.ପ୍ର. ୬/୧୩.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ମଣିଷର ଜୀବନରେ ପ୍ରକୃତ ସାମଞ୍ଜସ୍ୟ ଓ ସଙ୍ଗତି କେତେବେଳେ ଆସେ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟାନୁରାଗ ଯେ ପର୍ଯ୍ୟନ୍ତ ସମସ୍ତ ବୃତ୍ତି ଗୁଡ଼ିକୁ penetrate (ଭେଦ) କରି ନ ପାରେ, ସେ ପର୍ଯ୍ୟନ୍ତ ମଣିଷର ଜୀବନରେ ପ୍ରକୃତ ସାମଞ୍ଜସ୍ୟ ଓ ସଂଗତି ଆସେ ନାହିଁ। ସେଥିପାଇଁ ଯିଏ ଇଷ୍ଟପ୍ରାଣ ନୁହେଁ, ତାକୁ କୌଣସି ଗୁରୁତ୍ୱପୂର୍ଣ୍ଣ ପଦରେ ନିଯୁକ୍ତ କରିବା ଉଚିତ ନୁହେଁ।

ଆ.ପ୍ର. ୬/୧୩.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣରେ ଭକ୍ତିହିଁ ତ ପ୍ରଧାନ ଅବଲମ୍ବନ ? ମାତା-ପିତାଙ୍କ ପ୍ରତି ଭକ୍ତି ତ ତାହାର ସହାୟକ ?**

**ଶ୍ରୀଶ୍ରୀଠାକୁର –** ଭକ୍ତି ପରି ଏତେ ବଡ଼ ପାଳକ-ପୂରକ ମୁଁ ଆଉ ଦେଖେ ନାହିଁ। ସେଥିପାଇଁ ଭକ୍ତିର କଥା ଏତେ କରି କୁହେ ! ଯେଉଁମାନେ ମାତୃଭକ୍ତ, ପିତୃଭକ୍ତ ହୁଅନ୍ତି, ସେହିମାନେହିଁ ଗୁରୁଭକ୍ତ ହୁଅନ୍ତି। ଏହି ଭକ୍ତିର ମୂଳଧନ ନେଇ ଯେଉଁମାନେ ଜୀବନ ଆରମ୍ଭ କରନ୍ତି, ସେମାନେ ପ୍ରକୃତରେ ବଡ଼ ହୁଅନ୍ତି। ମାତୃଭକ୍ତି, ପିତୃଭକ୍ତି esential (ଅତି ପ୍ରୟୋଜନୀୟ), ତେବେ ଯେଉଁ ଭକ୍ତିହିଁ ହେଉ ତାହା ଯଦି ଇଷ୍ଟାନୁଗ ନ ହୁଏ, ତେବେ ତାହା becoming (ବୃଦ୍ଧି)କୁ accelerate (ତ୍ୱରାନ୍ୱିତ) କରେ ନାହିଁ। ତାର ମାନେ ସେହି ଭକ୍ତି ଇଷ୍ଟଙ୍କ ଦିଗକୁ lead (ଚାଳନା) କରି ନେଇ ଯିବା ଦରକାର। Sublimated (ଭୂମାୟିତ) ହେବା ଦରକାର।

ଆ.ପ୍ର. ୬/୧୩.୧୨.୧୯୪୫

**ପ୍ର. – ଇଷ୍ଟଙ୍କଠାରେ ନିତ୍ୟ ଯୁକ୍ତ ରହିବାର ଅଭ୍ୟାସରେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର –** କେହି ଯଦି ଜୀବନରେ ଇଷ୍ଟଙ୍କଠାରେ ନିତ୍ୟ ଯୁକ୍ତ ରହିବାରେ ଅଭ୍ୟସ୍ତ ହୁଏ, ଭିତରର ବା ବାହାରର ଚାପରେ ଇଷ୍ଟଙ୍କ ସହିତ ଯୋଗ ଯଦି କୌଣସି ପ୍ରକାରେହିଁ କେତେବେଳେ ମଧ୍ୟ ବିଚ୍ଛିନ୍ନ ନ ହୁଏ, ମୋର ମନେ ହୁଏ, ତାର ସ୍ମୃତିବାହୀ ଚେତନା ଲାଭର ସମ୍ଭାବନା ବେଶୀ ଥାଏ। କାରଣ, ତାର ସ୍ମୃତି-ଚେତନା ଅନ୍ତରାୟକୁ ଅତିକ୍ରମ କରି ନିରନ୍ତର ଉଦ୍‌ସମୁଖରେ ଧାବିତ ହେବାର ଯୋଗ୍ୟତା ଅର୍ଜନ କରେ। ଏହି ଅଭ୍ୟାସ ସୁଦୃଢ଼ ହେଲେ ମୃତ୍ୟୁକୁ ଭେଦ କରି ମଧ୍ୟ ତାର ଧାରା ଅବିଚ୍ଛିନ୍ନ ରହିବା ଅସମ୍ଭବ ନୁହେଁ। ସେଥିପାଇଁ ଦରକାର untottering, sincere, tenacious, responsive adherence (ଅଟୁଟ, ଆନ୍ତରିକ, ନଛୋଡ଼ବନ୍ଦା, ସାଡ଼ାପ୍ରବଣ ଅନୁରାଗ)।

ଆ.ପ୍ର. ୬/୨୩.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣ ପାଇଁ ଋତ୍ୱିକଙ୍କ ପାଖରୁ ଦୀକ୍ଷା ନେବାକୁ ହୁଏ କାହିଁକି ? ସେହି ଋତ୍ୱିକ କ'ଣ ଦୀକ୍ଷା ଗ୍ରହିତାର ଆଚାର୍ଯ୍ୟ ବା ଗୁରୁ ହେବେ ?**



**ଶ୍ରୀଶ୍ରୀଠାକୁର –** ଯିଏ ଇଷ୍ଟ, ସେ ହିଁ ଋତ୍ୱିକମାନଙ୍କ ମାଧ୍ୟମରେ ମନ୍ତ୍ର ଦିଅନ୍ତି। ଦୀକ୍ଷାର ପଦ୍ଧତି ଇଷ୍ଟଙ୍କରହିଁ କହିଥିବା ପଦ୍ଧତି, ତାଙ୍କରି ଦ୍ୱାରା ଦିଆଯାଇଥିବା ଜିନିଷ ତାଙ୍କରି ଆଦେଶ କ୍ରମେ ଋତ୍ୱିକ ମାନେ ଜଣାଇ ଦିଅନ୍ତି। ଏହି ଆଦେଶ ନାମା ନ ରହିଲେ କିନ୍ତୁ ଦୀକ୍ଷା ଦେବାର ଅଧିକାର ହୁଏ ନାହିଁ, ଆଉ ସେଥିରେ ଦୀକ୍ଷା ସିଦ୍ଧ ମଧ୍ୟ ହୁଏ ନାହିଁ। ...ସେମାନଙ୍କର କାର୍ଯ୍ୟ ହେଲା ତାଙ୍କର ବାଣୀ ବହନ କରିବା, ତାଙ୍କୁ ସଞ୍ଚାରିତ କରିବା। ଫଳକଥା ପୁରୁଷୋତ୍ତମହିଁ ଏକାଧାରରେ ଋତ୍ୱିକ, ଯାଜକ, ଅଧ୍ୱର୍ଯ୍ୟୁ ସବୁହିଁ। ...ସେ ହିଁ ଆଚାର୍ଯ୍ୟ, ସେ ହିଁ ଗୁରୁ। ଆଚାର୍ଯ୍ୟ ମାନେ, ଯିଏ ଆଚରଣ କରି ଜଣାନ୍ତି। ତାଙ୍କ ଠାରୁ ବେଶି ଗୁରୁତ୍ୱ ଆଉ କାହାର ନାହିଁ। ଯୁଗ ପୁରୁଷୋତ୍ତମହିଁ ମଣିଷର ଏକମାତ୍ର ଇଷ୍ଟ ବା ବାଞ୍ଛିତ।

ଆ.ପ୍ର. ୬/୨୩.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣ ପଥରେ ବଞ୍ଚିବା-ବଢ଼ିବାପାଇଁ ଅବଶ୍ୟ ପ୍ରୟୋଜନ କ'ଣ କ'ଣ ?**

**ଶ୍ରୀଶ୍ରୀଠାକୁର –** Ideal (ଆଦର୍ଶ ବା ଇଷ୍ଟ), self (ଅହଂ) ଏବଂ environment ର (ପାରିପାର୍ଶ୍ୱିକଙ୍କର) co-ordination (ସଙ୍ଗତି)। Thoughts, habits and behaviour (ଚିନ୍ତା, ଅଭ୍ୟାସ ଏବଂ ବ୍ୟବହାର) adjust (ନିୟନ୍ତ୍ରଣ) କରିବା ପାଇଁ ଯଜନ କରିବାକୁ ହୁଏ। ଯଜନ ନ କରିଲେ ଇଷ୍ଟଙ୍କର, ପରିବେଶର ବା ନିଜର କାହାରି ମଧ୍ୟ ସେବା ଠିକ୍ ଭାବରେ କରାଯାଏ ନାହିଁ। କରିବା ଗୁଡ଼ିକ disconnected, passion-prominent ଓ blundering (ବିଚ୍ଛିନ୍ନ, ପ୍ରବୃତ୍ତି-ପ୍ରବଳ ଓ ଭ୍ରାନ୍ତିବହୁଳ) ହେଉଥାଏ। ସେଥିପାଇଁ ନିୟମିତ ଜପଧ୍ୟାନ, ଆତ୍ମ-ବିଶ୍ଳେଷଣ, ସଦ୍‌ଗ୍ରନ୍ଥପାଠ, ଇଷ୍ଟସଙ୍ଗ କିମ୍ବା ଇଷ୍ଟପ୍ରାଣ ଜ୍ଞାନବୃଦ୍ଧ ମାନଙ୍କ ସଙ୍ଗ ଇତ୍ୟାଦି କରିବାକୁ ହୁଏ। ଏହାଦ୍ୱାରା ମନରେ ଇଷ୍ଟଙ୍କର ରଙ୍ଗ ଧରେ। ପୁଣି ସେହି ରଙ୍ଗକୁ ସ୍ଥାୟୀ କରିବାକୁ ଗଲେ ପାରିପାର୍ଶ୍ୱିକଙ୍କୁ ମଧ୍ୟ ସେବା ଓ ଯାଜନ ଭିତର ଦେଇ ଇଷ୍ଟଙ୍କର ଭାବରେ ରଙ୍ଗିନ କରିତୋଳିବାକୁ ହୁଏ। ଆଉ ଆଗ୍ରହ ସହକାରେ ଦୈନନ୍ଦିନ ଇଷ୍ଟଭୃତି କରିବାକୁ ହୁଏ। ଏହାରି ଭିତର ଦେଇ ଇଷ୍ଟ – the person (ମଣିଷଟି) ବାହାରେ ଯେପରି ତୁଷ୍ଟ-ପୁଷ୍ଟ ହୁଅନ୍ତି, ଭକ୍ତର ଅନ୍ତର ରାଜ୍ୟରେ ମଧ୍ୟ ସେ ସେହିପରି ତୁଷ୍ଟ-ପୁଷ୍ଟ ହୋଇ ଉଠନ୍ତି ଅର୍ଥାତ୍ ଇଷ୍ଟପ୍ରାଣତା ବଢ଼ିଯାଇଥାଏ। ସେଥିପାଇଁ ସେହି co-ordination (ସଙ୍ଗତି) ଆଣିବାକୁ ଗଲେ ଯଜନ, ଯାଜନ, ଇଷ୍ଟଭୃତି ଏହି ତିନୋଟି ସ୍ତମ୍ଭ ପାଖାପାଖି ଗଢ଼ିଯିବାକୁ ହେବ। ଏଗୁଡ଼ିକ ଯଦି ଲମ୍ବା ବା ଛୋଟ ହୁଏ ତାହେଲେ balance (ଭାରସାମ୍ୟ) ଠିକ୍ ରହିବ ନାହିଁ।

ଆ.ପ୍ର. ୬/୨୬.୧୨.୧୯୪୫

**ପ୍ର. – ଯଥେଷ୍ଟ ଜ୍ଞାନବୁଦ୍ଧି ନ ରହିଲେ ବା ଲେଖାପଢ଼ା ନ ଜାଣିଲେ ଇଷ୍ଟାନୁସରଣ କ'ଣ ଠିକ୍ ଠିକ୍ ଭାବରେ କରାଯାଇପାରେ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କଠାରେ active adherence (ସକ୍ରିୟ ଅନୁରାଗ) ଯଦି ଥାଏ, ତେବେ ଯାହାର ଯାହା ବୁଦ୍ଧି ଅଛି, ତାହା ନେଇହିଁ ବହୁତ ହୋଇପାରେ, ବହୁତ କରିପାରେ। ସେହି ମୂଳ attitude (ମନୋଭାବ) ହିଁ ଜଗତ ସାରା ବ୍ୟାପିଯାଏ। ସମସ୍ତଙ୍କୁ ଭଲପାଇବାକୁ ଇଚ୍ଛା କରେ। ସମସ୍ତଙ୍କର ଭଲ କରିବାକୁ ଇଚ୍ଛା କରେ। ଏହାଦ୍ୱାରା ଜାଣିବା, ବୁଝିବା, କରିବାର ବୁଆର ସ୍ୱାଭାବିକ ଭାବରେ ଆସେ। ସେଥିପାଇଁ ନିଜ ଅଜାଣତରେ educated (ଶିକ୍ଷିତ) ହୋଇପଡ଼େ। ସେ literated (ଲେଖାପଢ଼ା ଜାଣିବା) ନ ହେଲେ ମଧ୍ୟ, ତାର କାର୍ଯ୍ୟ ଅଟକାଏ ନାହିଁ।

ଆ.ପ୍ର. ୬/୨୬.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣର ଉଦ୍ଦେଶ୍ୟ କ'ଣ ଜ୍ଞାନଲାଭ ?**

**ଶ୍ରୀଶ୍ରୀଠାକୁର –** ତା' କାହିଁକି ? ଉଦ୍ଦେଶ୍ୟ ହେଲା ଅଚ୍ୟୁତ ଇଷ୍ଟପ୍ରାଣତା ଲାଭ। ଜ୍ଞାନ କହନ୍ତୁ, ଯେତେରକମର ଗୁଣ କୁହନ୍ତୁ – ସବୁହିଁ ତାହାର ପ୍ରିୟ ଏବଂ ସେ ମଧ୍ୟ ସମସ୍ତଙ୍କର ପ୍ରିୟ। ତାର ସଙ୍ଗ ପାଇଲେ ସମସ୍ତେ ମହା ଖୁସି। ସେଥିପାଇଁ ସେ ଯେଉଁଠାକୁ ଗଲେ ଅନ୍ୟ ସମସ୍ତେ ଡାକ ଦିଅନ୍ତି – 'ଆ ରେ ଆ, ଓ ରେ ଆ, ତା' ସଙ୍ଗେ ତା'। ନାଚି ନାଚି ସମସ୍ତେ ହାତ ଧରା ଧରି କରି ଦଳବାନ୍ଧି ଆସି ହାଜିର ହୁଅନ୍ତି। ପିଲାମାନେ ଯେପରି ଖେଳରେ ଦଳର ଦଳପତିଙ୍କୁ ଅନୁସରଣ କରନ୍ତି, ଏହା ମଧ୍ୟ ସେହିପରି। ଇଷ୍ଟପ୍ରାଣତା ହେଲା ଯାବତୀୟ ଜ୍ଞାନ ଓ ଗୁଣର ଆଧାର ଓ ଆଶ୍ରୟସ୍ଥଳ। ତା'ଠାରୁ ବିଚ୍ୟୁତ ଯେଉଁ ଜ୍ଞାନ ଓ ଗୁଣ, ତାହା ବିକେନ୍ଦ୍ରିକ ଓ ବ୍ୟଭିଚାରୀ, ସେଥିପାଇଁ ବ୍ୟର୍ଥ। ଜୀବନରେ ତାର କୌଣସି ଦାମ୍ ନାହିଁ।

ଆ.ପ୍ର. ୬/୨୬.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣରେ ସବୁସମୟରେ ଇଷ୍ଟଚେତନା କିପରି ଭାବରେ ବଜାୟ ରଖାଯାଏ ? ନାନା ଅବସ୍ଥାର ଚାପରେ ତାଙ୍କୁ ଭୁଲିଯିବାଟା ତ ସ୍ୱାଭାବିକ ?**

**ଶ୍ରୀଶ୍ରୀଠାକୁର –** ହଁ ! ଭୁଲି ଗଲେହିଁ ହେଲା। ଏକଥା ଅବାନ୍ତର। ଯଦି କୁହ ଭଲପାଏ, ସେପରି ଭାବରେ ଯଦି କର, ସେପରି ଯଦି ଭାବ – ନିରନ୍ତରତା ନେଇ, କିପରି ଭୁଲିବେ ? ଏହା କ'ଣ ଯାହା ତାହା ମାଲ ? ଅଭ୍ୟାସଯୋଗ ନେଇ ରତ ରହିଲେ ତୁମକୁ ପାଇବସିବ ନାହିଁ ? ଆଗେ ନିଖୁଣ ଭାବରେ କର ନା, ସେତେବେଳେ ଯାହା ଘଟିବାର ଆପେ ଆପେ ଘଟିଯିବ। ଥରେ ଯଦି ତାଙ୍କ ଠାରେ ମନ ମଜ୍ଜିଯାଏ, ସାମୟିକ ବିସ୍ମରଣ ଓ ବିଭ୍ରାନ୍ତି ହେଲେ ମଧ୍ୟ ତାଙ୍କୁ ବେଶିଦିନ ଭୁଲି ରହି ହୁଏନାହିଁ। ....ପ୍ରଥମରୁ ଲାଗିପଡ଼ି ଚେଷ୍ଟା-ଚରିତ୍ର କରି ଭଲପାଇବାଟିକୁ ଅନ୍ୟ ସବୁ ଆକର୍ଷଣଠାରୁ ଟିକିଏ ବଡ଼ ଓ ଶକ୍ତିଶାଳୀ କରିତୋଳିବା ଦରକାର। ପ୍ରବୃତ୍ତିର ଟାଣଠାରୁ ପ୍ରେଷ୍ଠ ଟାଣ ବଡ଼ ହେଲେହିଁ ବାଜିମାତ୍।

ଆ.ପ୍ର. ୬/୨୬.୧୨.୧୯୪୫



**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ମଣିଷ କେତେବେଳେ ପ୍ରକୃତ ଜ୍ଞାନର ଅଧିକାରୀ ହୋଇପାରେ ?**

**ଶ୍ରୀଶ୍ରୀଠାକୁର –** ତୁମେ ଗୋଟିଏ ମଣିଷକୁ ଦେଖୁଛ – ଗଞ୍ଜା ଖାଇଛି, ରାସ୍ତା ପାଖରେ (ଧାରରେ) ପଡ଼ିଅଛି, କିନ୍ତୁ ସେ ଯାହା କରେ ତାହା ଯଦି ଏକମାତ୍ର ଇଷ୍ଟଙ୍କ ପାଇଁ କରେ, ଅନ୍ୟ କୌଣସି ଧନ୍ଦା ଯଦି ତା'ର ନ ଥାଏ, ତାହେଲେ ଜାଣିବ ତା' ଭିତରେ ମାଲ ଅଛି। ତୁମେ ତା' ପାଖରୁ ପ୍ରକୃତ ଜ୍ଞାନ କିଛି ପାଇପାର, ଯାହା ଦିଗ୍‌ଗଜ ପଣ୍ଡିତ ପାଖରୁ ପାଇବ ନାହିଁ। ଯାହାର ଯାହା-କିଛି ଇଷ୍ଟାସ୍ୱାର୍ଥପ୍ରତିଷ୍ଠାରେ ପର୍ଯ୍ୟବସିତ, ସେ ହିଁ ଜ୍ଞାନର ଅଧିକାରୀ ହୋଇପାରେ। ଏହି କର୍ମମୁଖର ଏକନିଷ୍ଠାହିଁ ମଣିଷକୁ ଜ୍ଞାନୀ କରି ତୋଳେ, otherwise (ଅନ୍ୟଥା) ତଥାକଥିତ ଲକ୍ଷେ ପାଣ୍ଡିତ୍ୟ ପ୍ରକୃତ ଜ୍ଞାନ ଦେଇପାରେ ନାହିଁ।

ଆ.ପ୍ର. ୬/୨୬.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣର ସାଧନାରେ ଯଦି ସାଂସାରିକ କର୍ତ୍ତବ୍ୟର ଅବହେଳା ହୁଏ ତା' କ'ଣ ଭଲ ? ସଂସାରରେ ତ ତା' ଦ୍ୱାରା ସମସ୍ୟାହିଁ ସୃଷ୍ଟି ହେବ ?**

**ଶ୍ରୀଶ୍ରୀଠାକୁର –** ଯେପରି ମୋତେ ଜ୍ୱର ହେଲା, ସେତେବେଳେ ତ ଆଉ ଅଫିସ୍ ଯାଇପାରିବି ନାହିଁ। ଯଦିବା ଅଫିସକୁ ଯିବା ମୋର କର୍ତ୍ତବ୍ୟ। ସେହିପରି ପ୍ରେମଜ୍ୱର, ଭକ୍ତିଜ୍ୱର ଯଦି ଧରେ, ସେହି ଜ୍ୱରର ଫଳରେ ନିତିଦିନିଆ ଚଳନର କିଛି-କିଛି ଓଲଟ-ପାଲଟ ହୋଇପାରେ। ଆଉ ତାହା ହେବା ମଧ୍ୟ ଦରକାର। ଯେଉଁଭାବରେ କର୍ତ୍ତବ୍ୟ କରି ଚାଲୁଛୁ, ଏହାକୁ କର୍ତ୍ତବ୍ୟ କରିବା କୁହାଯାଏ ନାହିଁ। ଇଷ୍ଟଙ୍କୁ ବାଦ ଦେଇ ଏହି ଯେ କର୍ତ୍ତବ୍ୟ କରିବା – ଏହା ଏକ କୁଜ୍ୱର ଓ କୁଅଭ୍ୟାସ। ଏହି କୁଜ୍ୱର ଓ କୁଅଭ୍ୟାସ ରହିଲେ କାହାରି ସଂସାର ସମସ୍ୟାର ସମାଧାନ ହେବା ସମ୍ଭବ ନୁହେଁ। ତେବେ ଭକ୍ତିଜ୍ୱର ହେଲେ କୁଜ୍ୱର ଛାଡ଼ିଯାଏ। ସେଥିପାଇଁ ପ୍ରଥମଟା ଯେତେବି ଖରାପ ମନେ ହେଉ, ମଣିଷ ଟିକିଏ adjusted (ନିୟନ୍ତ୍ରିତ) ହୋଇପାରିଲେ ସଂସାରରେ ଯାହା ପ୍ରତି ଯାହା କରଣୀୟ – ଭଲକରି କରିପାରେ, fulfilling to family, nay! even all (ପରିବାରର, କେବଳ ପରିବାର କାହିଁକି, ସମସ୍ତଙ୍କର ପରିପୂରଣୀ) ହୁଏ। ଗୀତାରେ ଅଛି – କୌନ୍ତେୟ ! ପ୍ରତିଜାନୀହି ନ ମେ ଭକ୍ତ ପ୍ରଣଶ୍ୟତି (ହେ କୌନ୍ତେୟ ! ଏହା ନିଶ୍ଚିତ ଜାଣ ଯେ, ମୋର ଭକ୍ତ କେବେ ବିନିଷ୍ଟ ହୁଏ ନାହିଁ)। Test (ପରଖ) ହେଲା through hindrance and persecution (ବାଧା ଓ ଅତ୍ୟାଚାରର ଭିତର ଦେଇ) ତୁମେ ତୁମର ସେବାରେ ତୁମର ଇଷ୍ଟ ଓ ପରିବେଶକୁ କେତେଟା profitable (ଉପଚୟୀ) କରି ତୋଳିଛ। ତାହା ଯେତେଟା ତୁମେ କରିବ, ନିଜେ ମଧ୍ୟ ସେହି ମାତ୍ରାରେ profitable (ଉପଚୟୀ) ହେବ।

ଆ.ପ୍ର. ୬/୨୬.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ମଣିଷ ପ୍ରକୃତ ଇଷ୍ଟନିଷ୍ଠ ହେଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର –** ଯିଏ ପ୍ରକୃତ ଇଷ୍ଟନିଷ୍ଠ, ସେ ଯେତେହିଁ ନଗଣ୍ୟ ହେଉ, ଦିନେ ସେ ତାର ଚରିତ୍ର ଗୁଣରେ ମହତ ବୋଲି ପରିଗଣିତ ହେବହିଁ। କିନ୍ତୁ ଏହି ମାଲ ଯାହାର ନାହିଁ, ସେ ଯେତେହିଁ ଗନ୍ୟ-ମାନ୍ୟ ହେଉ, ହାବାଳି ଭଳି ଆଲୋକ ରଶ୍ମି ନେଇ ଠେଲି ଉଠୁ-ଉଠୁ ମୁହୂର୍ତ୍ତକ ମଧ୍ୟରେ କଳାପଡ଼ିଯିବ।

ଆ.ପ୍ର. ୬/୨୬.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣରେ ପିତୃମାତୃ ଭକ୍ତି କିପରି ରହିବା ଦରକାର ?**

**ଶ୍ରୀଶ୍ରୀଠାକୁର –** ମାତୃଭକ୍ତି ଏକାନ୍ତ ଦରକାର। ସେହିଟି ହେଲା ମୂଳ। କିନ୍ତୁ ପିତୃମାତୃ ଭକ୍ତି ଯଦି ଇଷ୍ଟାନୁଗ ନ ହୁଏ, ତା ମଧ୍ୟ ସମ୍ୟକ୍-ସମ୍ବର୍ଦ୍ଧନା ଆଣିପାରେ ନାହିଁ। କାରଣ, ପିତାମାତା ଆମର ଅସ୍ତିତ୍ୱର ସବୁ ଦେଶକୁ ଆଲୋଡ଼ିତ ଓ ଆଲୋକିତ କରିପାରନ୍ତି ନାହିଁ। ତାହା ପାରନ୍ତି ଇଷ୍ଟ ବା ପୁରୁଷୋତ୍ତମ ଅର୍ଥାତ୍ ପରମପୂରକ ଯିଏ। ତାଙ୍କୁ ଧରି ଚାଲିଲେ ମା'-ବାପାଙ୍କର ସେବା ମଧ୍ୟ ଭଲକରି କରାଯାଏ।

ଆ.ପ୍ର. ୬/୨୬.୧୨.୧୯୪୫

**ପ୍ର. – ଇଷ୍ଟଙ୍କୁ ଗ୍ରହଣ କଲେ ମଧ୍ୟ ବୃତ୍ତି-ଧନ୍ଧାରେ ତ ମଣିଷର ପ୍ରାଣ ଓଷ୍ଠାଗତ ହୁଏ ! ଏହାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର –** ସ୍ୱ ଅର୍ଥାତ୍ ସତ୍ତା ଯଦି ବୃତ୍ତି ପାଖରେ ବନ୍ଦୀ ହୋଇ ଯାଏ, ତାହେଲେ ତ ପ୍ରାଣ ଓଷ୍ଠାଗତ ହେବହିଁ। ଆଉ ବୃତ୍ତି ଯଦି ସତ୍ତା ପାଖରେ ଆଜ୍ଞାବହ ସେବକ ପରି ଥାଏ, ସେତେବେଳେ ପ୍ରାଣ ଆନନ୍ଦରେ ନାଚି ଚାଲେ। ସେଥିପାଇଁ ଯାହାକର ବାବା ! ମୂଳକୁ ହରାଅ ନାହିଁ, ଉସକୁ ଭୁଲିଯାଅ ନାହିଁ। ତାହାହେଲେହିଁ ଗଲା। ଲୋକ ସେବା କର, ତା ମଧ୍ୟ ଯଦି ଇଷ୍ଟଙ୍କ ପାଇଁ ନ କର, ତା ଶାନ୍ତିର କାରଣ ନ ହୋଇ ଅଶାନ୍ତିର କାରଣ ହୋଇ ଉଠିବ। ପ୍ରବୃତ୍ତିର ଚକିରେ ପେଷିଯିବ। ଭଲ କରିବାକୁ ଯାଇ ମନ୍ଦକୁହିଁ ଡାକି ଆଣିବ। ଇଷ୍ଟଙ୍କୁ ବାଦ ଦେଇ ଚକ୍ଷୁର ଗୋଟିଏ ପଲକ ମଧ୍ୟ ପକାଇବା ଭଲ ନୁହେଁ।

ଆ.ପ୍ର. ୬/୨୬.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣରେ କେଉଁ ବୃତ୍ତି ତାଙ୍କର ଅନୁକୂଳ, ଆଉ କେଉଁ ବୃତ୍ତି ତାଙ୍କର ପ୍ରତିକୂଳ, ତାହା କିପରି ଧରାଯାଏ ?**

**ଶ୍ରୀଶ୍ରୀଠାକୁର –** ମୋର ନିଜର ସ୍ୱାର୍ଥ-ପ୍ରତିଷ୍ଠା ବୁଝେ ତ ! ଏହି ଦୃଷ୍ଟିକୋଣ ଉପରେ ଛିଡ଼ାହୋଇ ଇଷ୍ଟଙ୍କର ସ୍ୱାର୍ଥ-ପ୍ରତିଷ୍ଠାକୁ ଯଦି ମୋର ଏକମାତ୍ର କାମ୍ୟବସ୍ତୁ କରିନିଏ, ସେତେବେଳେ କ'ଷି କ'ଷି ଠିକ୍ କରି ନେଇ ପାରିବି – ସ୍ୱର୍ଣ୍ଣକାର ଯେପରି କଷଟି ପଥର ଦ୍ୱାରା ଘସି-ଘସି ସୁନାକୁ ଚିହ୍ନି ନେଇଥାଏ। ଏହାହିଁ ହେଲା ବିଚାରର ଦାଣ୍ଡିପାଲ୍ଲା। ଇଷ୍ଟଙ୍କର ସ୍ୱାର୍ଥ ଓ ପ୍ରତିଷ୍ଠା ଦୁଇ ଦିଗହିଁ ବଜାୟ ରଖିବା ଦରକାର। ଚୋରି କରି ଟଙ୍କା ଆଣି ଇଷ୍ଟଙ୍କୁ ଦେଲି, ତା'ଦ୍ୱାରା ତାଙ୍କର ସ୍ୱାର୍ଥର ପାଲ୍ଲା ଭାରି ହେଲା, କିନ୍ତୁ ପ୍ରତିଷ୍ଠାର ପାଲ୍ଲା ହାଲୁକା ହୋଇଗଲା, ଲୋକେ କହି ବୁଲିଲେ – ଅମୁକ ଚୋରର ଗୁରୁ – ତା କିନ୍ତୁ ଠିକ୍ ନୁହେଁ। ପୁଣି ତାଙ୍କର ପ୍ରତିଷ୍ଠା କରିବାକୁ ଯାଇ ଯଦି ତାଙ୍କର ସ୍ୱାର୍ଥକୁ ବ୍ୟାହତ କରେ, ତାହା ମଧ୍ୟ ହେବ ନାହିଁ। ଇଷ୍ଟପ୍ରତିଷ୍ଠାର ଉଦ୍ଦେଶ୍ୟରେ ଗୋଟିଏ ଜାଗାରେ ଗୋଟିଏ ହସପିଟାଲ କଲି, ଆଉ ତାର ଦାୟିତ୍ୱ ଚାପି ଦେଲି ଇଷ୍ଟଙ୍କ ଉପରେ। ତାଙ୍କର ସେତେବେଳେ ପ୍ରାଣର ଉପରଦେଇ ଉଠିଯାଏ। ସେଥିପାଇଁ balanced way -ରେ (ସାମ୍ୟସଙ୍ଗତ ପନ୍ଥାରେ) ଦୁଇଦିଗକୁହିଁ ଦେଖିବାକୁ ହେବ। ଇଷ୍ଟସ୍ୱାର୍ଥପ୍ରତିଷ୍ଠାହିଁ ହେଲା ସଂସାର-ସମୁଦ୍ରର ଏକମାତ୍ର compass (ଦିଗନିର୍ଣ୍ଣୟ ଯନ୍ତ୍ର)। ଏହାକୁ ସାଥିରେ ନେଇ ଯେଉଁ ଦରିଆକୁ ଗଲେ ମଧ୍ୟ, ଦିଗ-ହରା ହେବ ନାହିଁ। ଘରର ପିଲା ଘରକୁ ଫେରିଆସି ପାରିବ। ବୃତ୍ତି ତୁମର ବାହନ ହେବ।

ଆ.ପ୍ର. ୬/୨୬.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ତୃପ୍ତି ଅନୁଯାୟୀ କିଛି କରିବାର ସମୟ କେଉଁଠି ? ପେଟ ବଞ୍ଚାଇବାକୁ ତ ସମୟ ଚାଲିଯାଏ।**

**ଶ୍ରୀଶ୍ରୀଠାକୁର –** ନିଜର ଚରିତ୍ର ଅର୍ଥାତ୍ ଚଳନ ଠିକ୍ କରି ନେଇ ପାରିଲେ ପେଟ-ପିଠି ସବୁ ଠିକ୍ ଥାଏ। ଫାଙ୍କିବାଜି କରି ପେଟ ବଞ୍ଚାଇବାକୁ ଗଲେ ହୁଏତ ବା ପେଟ ବଞ୍ଚେ, କିନ୍ତୁ ଯାହା ଯାହା ବଞ୍ଚିଲେ ମଣିଷ ପରି ବଞ୍ଚିବା ହୁଏ, ସେଗୁଡ଼ିକର ଆଉ ସାମଞ୍ଜସ୍ୟ ହୋଇ ଉଠେ ନାହିଁ। ସେଥିପାଇଁ ପେଟ ବଞ୍ଚିଲେ ମଧ୍ୟ ଦୁଃଖ ଘୁଞ୍ଚେ ନାହିଁ। କିନ୍ତୁ ମଣିଷର qualification (ଗୁଣ) ଗୁଡ଼ିକର ଯଦି meaningful active adjustment(ସାର୍ଥକ ସକ୍ରିୟ ନିୟନ୍ତ୍ରଣ) ହୁଏ, ତା'ହେଲେ ସେ ସ୍ୱତଃହିଁ ଅର୍ଜି (ଉପାର୍ଜନ କ୍ଷମ) ହୋଇଉଠେ। କେବଳ ଟଙ୍କା-ପଇସା ନୁହେଁ, ଯାହା କରିବା ପାଇଁ ଯାହା-ଯାହା ଲାଗେ, ସେ ସବୁ-କିଛିହିଁ ସଂଗ୍ରହ କରିନେଇ ପାରେ। ଧର୍ମକୁ ଯିଏ ଅର୍ଜ୍ଜନ କରେ, ଅର୍ଥାର୍ଜନ ତା ପାଖରେ ଗୋଟିଏ ସମସ୍ୟା ନୁହେଁ। କୌଣସି ob-session (ଅଭିଭୂତି) ପାଇଁ ସେ ହୁଏତ ଟଙ୍କା-ପଇସା ଉପାର୍ଜ୍ଜନ କରିପାରେ ନାହିଁ। ସେହିଟା ଚାଲିଗଲେ ଦେଖିବେ ସବୁ ଆପେ ଆପେ ତୁମ ପାଖକୁ ଆସିବ। ଅପ୍ରତ୍ୟାଶୀ ହୋଇ ପରିବେଶ ପାଇଁ ପ୍ରାଣ ଢ଼ାଳି କରିବାକୁ ହୁଏ।

ମନର ସେବାର କର ଆଗେ ତୁଇ
ବାହାରର ସେବା ତା' ସାଥିରେ,
ଏପରି ଚାଲିବାରେ ଜାଣିଥା
ଶୁଭ ଆଶିଷ ପାଏ ମଥାରେ।

ଇଷ୍ଟଙ୍କର ତୃପ୍ତି ପାଇଁ ପ୍ରତ୍ୟାଶା ରହିତ ହୋଇ ଏହିଭାବରେ ମଣିଷର ସେବା କର। ଦେଖିବ, ମଣିଷ ତୁମକୁ ଦେବା ପାଇଁ ଲାଳାୟିତ ହୋଇଉଠିବ। ....ମଣିଷ ଯେତେ ଅନ୍ୟର ସେବାରେ ନିଜକୁ ହଜେଇ ଦିଏ, ସେତେହିଁ ମଣିଷର ତାକୁ ଦେବାର ଆଗ୍ରହ ହୁଏ। ଦେଇ ତୃପ୍ତି ପାଏ।

ଆ.ପ୍ର. ୭/୨୭.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣର ପଥରେ ପ୍ରବୃତ୍ତି ଗୁଡ଼ିକ କେତେବେଳେ ଆମ୍ଭମାନଙ୍କ ପାଖରେ ଧରା ପଡ଼େ ?**

**ଶ୍ରୀଶ୍ରୀଠାକୁର** – କେଉଁଠି ଆମର କେଉଁ ପ୍ରବୃତ୍ତି ଲୁଚି ରହିଛି ଏବଂ ତାହା କେତେ ପରିମାଣରେ ବାଧା ଦେଉଛି, ତାହା ବାସ୍ତବ ଭାବରେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାମୂଳକ ଦାୟିତ୍ୱ ନେଇ ଚାଲିଲେ ସେତେବେଳେ ଧରା ପଡ଼େ। ଇଷ୍ଟକାର୍ଯ୍ୟରେ ଯାହା ବାଧା ସୃଷ୍ଟି କରେ ତାକୁ କେତେବେଳେ ମଧ ବରଦାସ୍ତ କରିବା ଉଚିତ୍ ନୁହେଁ। ଏହିଭାବରେ ଧରି-ଧରି ଚରିତ୍ରର ଗଲତି ଗୁଡ଼ିକ ଦୂର କରିବାକୁ ହୁଏ। ମମତା କରି ପୋଷି ରଖିବାକୁ ହୁଏ ନାହିଁ।

ଆ.ପ୍ର. ୭/୩୧.୧୨.୧୯୪୫

**ପ୍ର. – ଇଷ୍ଟାନୁସରଣର ପଥରେ ଯଦି ସଂଘାତ ଆସେ ତାହା କିଏ ହଜମ କରି କାର୍ଯ୍ୟ କରିପାରେ ? ସେ କରିବାର ରକମଟା କିପରି ?**

**ଶ୍ରୀଶ୍ରୀଠାକୁର** – ସଂଘାତ ମଧରେ ପଡ଼ିଲେ, କିଏ କିପରି behave (ବ୍ୟବହାର) କରେ, ସେଇଟିହିଁ ହେଲା ବଡ଼କଥା। ଦ୍ୱନ୍ଦ, ଦୁଃଖ, କଷ୍ଟ, ଅପମାନ, ଦୁର୍ବ୍ୟବହାର ଇତ୍ୟାଦି ହଜମ କରିବା ପାଇଁ ଅନେକ କ୍ଷମତା ଦରକାର। ଟାଣ ନ ରହିଲେ ମଣିଷ ତାହା ପାରେ ନାହିଁ। କାମ କରିବାର ପ୍ରଥମ କଥା ହେଲା, ସେ କୌଣସି ପ୍ରକାରେହିଁ ଛିଟିକି ପଡ଼ିବ ନାହିଁ। ଯେତେ ପ୍ରତିକୂଳ ଅବସ୍ଥା ବି ଆସୁ ନା କାହିଁକି, ତାକୁ adjust (ନିୟନ୍ତ୍ରଣ) କରି favourable (ଅନୁକୂଳ) କରିତୋଳିବାକୁ ଚେଷ୍ଟା କରିବ। ତା' ଭିତର ଦେଇହିଁ ମଣିଷ grow କରେ (ବଢ଼ି ଉଠେ)। ସବୁ ରକମ ଅବସ୍ଥା ମଧରେ ପଡ଼ି ଯିଏ ନିଜକୁ ଇଷ୍ଟାନୁକୂଳରେ adjust (ନିୟନ୍ତ୍ରଣ) କରି ଚାଲିବାକୁ ଶିଖେ, ସେ ହିଁ ଜାଣେ, କିପରି କରି ମଣିଷକୁ ସେହି ପଥରେ ଚଳାଇବାକୁ ହେବ। ଆଉ କର୍ମ ମାନେ ତ ଏହାହିଁ।

ଆ.ପ୍ର. ୭/୯.୧.୧୯୪୬

**ପ୍ର. – ଇଷ୍ଟାନୁସରଣରେ ମଣିଷ ଯାହା ନେଇ ଜନ୍ମେ ତାହା କ'ଣ ବାଧା ସୃଷ୍ଟି କରେ ନାହିଁ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଯାହା ନେଇ ଜନ୍ମ ହେଉନା କାହିଁକି, ସେଥିରେ କିଛି ଯାଏ ଆସେ ନାହିଁ ଯଦି ସେ ଇଷ୍ଟମୁଖୀ ହୁଏ ! ଇଷ୍ଟମୁଖୀ ହେଲେହିଁ ମଣିଷ ଗୋଟିଏ ତୃପ୍ତିର ସନ୍ଧାନ



ପାଏ ଏବଂ ଯିଏ ନିଜେ ତୃପ୍ତି ପାଇଛି ସେ ଜାଣେ – ଅନ୍ୟ ପାଖରେ କିପରି ଭାବରେ ତୃପ୍ତିକର ହୋଇଉଠିବାକୁ ହୁଏ। ତାର ବ୍ୟକ୍ତିତ୍ୱର ଭିତର ଦେଇହିଁ ସେହି ଭାବଟା ବାହାରେ। ସେ ଯଦି ଗାଳିଗୁଲଜ ମଧ କରେ, ତା' ପଛରେ ଗୋଟିଏ ପ୍ରାଣ ଥାଏ, ଆଉ ମଣିଷ ମଧ ତାହା ବୁଝିପାରେ।

ଆ.ପ୍ର. ୭/୧୩.୧.୧୯୪୬

**ପ୍ର. – ଇଷ୍ଟଙ୍କର ଅବର୍ତ୍ତମାନରେ ଇଷ୍ଟଭୃତି କେଉଁଠାକୁ ପଠାଇବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କର ଔରସଜାତ ସନ୍ତାନ ଯଦି ଇଷ୍ଟବାହୀ ହୁଅନ୍ତି, ସେଠାକୁ ଇଷ୍ଟଭୃତି ଦେବାହିଁ ଶ୍ରେୟ।

ଆ.ପ୍ର. ୭/୯.୨.୧୯୪୬

**ପ୍ର. – ଇଷ୍ଟ ତ ସବୁ ସମୟରେ ରହନ୍ତି ନାହିଁ, ସେ-ସମ୍ବନ୍ଧରେ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ତାଙ୍କର ଅନବର୍ତ୍ତୀ ଆଚରଣଶୀଳ ଶ୍ରେୟ କାହାଙ୍କୁ ଗ୍ରହଣ କରିଲେ ବି ଚଳିପାରେ। ତେବେ ତାଙ୍କର ଏହି ମୂଳ ଆଦର୍ଶଙ୍କର (ଇଷ୍ଟଙ୍କର) ପ୍ରତିଷ୍ଠା କରିବା ଦରକାର। ନଚେତ୍ ତାଙ୍କୁ ଆଦର୍ଶାନୁରାଗୀ (ଇଷ୍ଟାନୁରାଗୀ) କୁହାଯିବ ନାହିଁ।

ଆ.ପ୍ର. ୭/୯.୨.୧୯୪୬

**ପ୍ର. – ଇଷ୍ଟଙ୍କୁହିଁ କାହିଁକି, ଯେ କୌଣସି ଜଣଙ୍କୁ ଅବଲମ୍ବନ କରି ଚାଲିଲେ କ'ଣ ମଣିଷର ଉନ୍ନତି ହୋଇପାରେ ନାହିଁ ?**

**ଶ୍ରୀଶ୍ରୀଠାକୁର** – ଯାହାଙ୍କୁ ଅବଲମ୍ବନ କରି ଚାଲିବ, ସେ ଯେତେ ଉନ୍ନତ ହେବେ ଏବଂ ତାଙ୍କ ପ୍ରତି ନିଷ୍ଠା ଯେତେ ପକ୍କା ହେବ, ଉନ୍ନତି ମଧ ହେବ ସେହି ମାତ୍ରାରେ ଓ ସେହି ଧାଁଚରେ। ଆତ୍ମପ୍ରତିଷ୍ଠାର ବୁଦ୍ଧିରେ ମଣିଷ ବିଫଳ ହୁଏ, ଇଷ୍ଟପ୍ରତିଷ୍ଠାର ବୁଦ୍ଧିର ମଣିଷ ସଫଳ ହୁଏ। ରାମଦାସଙ୍କ ପ୍ରତି ଟାଣ ଥିବାରୁ ଶିବାଜୀ କେତେ ପ୍ରତିକୂଳ ଅବସ୍ଥାରେ ପଡି ମଧ successful (କୃତକାର୍ଯ୍ୟ) ହେଲେ, କିନ୍ତୁ ରାଣାପ୍ରତାପ ତାଙ୍କର ଏତେ ବେଶୀ ସ୍ୱଦେଶପ୍ରେମ, ଶୌର୍ଯ୍ୟ-ବୀର୍ଯ୍ୟ ନେଇ ମଧ successful (କୃତକାର୍ଯ୍ୟ) ହୋଇପାରିଲେ ନାହିଁ, ତାର କାରଣ, କାହାଙ୍କୁ ପ୍ରତିଷ୍ଠା କରିବାର ଧନ୍ଦା ତାଙ୍କର ନଥିଲା। ଅର୍ଜୁନ ଓ କର୍ଣ୍ଣର ଜୀବନରେ ମଧ ଆମ୍ଭେମାନେ ଏହି ଦୃଷ୍ଟାନ୍ତହିଁ ଦେଖିବାକୁ ପାଉ। ଆଧ୍ୟାତ୍ମିକତାର ମୂଳ ହେଲା ଆଦର୍ଶକୈନ୍ଦ୍ରିକ ଚଳନ। ପୁଣି, ଯେଉଁ-ଆଦର୍ଶଙ୍କୁ ଅନୁସରଣ କରିବୁ, ତାଙ୍କର ଯଦି ଆଦର୍ଶ ନ ଥାନ୍ତି ଏବଂ ଏହି ଆଦର୍ଶ-ଅନୁସରଣର ଭିତର ଦେଇ ସେ ଯଦି ସୁନିୟନ୍ତ୍ରିତ ନ ହୁଅନ୍ତି, ତାହେଲେ କିନ୍ତୁ ଶେଷ ରକ୍ଷା ହେବ ନାହିଁ।

ଆ.ପ୍ର. ୭/୧୨.୨.୧୯୪୬

**ପ୍ର. – ଇଷ୍ଟଙ୍କୁ କାହିଁକି ବ୍ୟକ୍ତି ଓ ଜାତିର ଜୀବନରେ ମୁଖ୍ୟ କରି ରଖିବାକୁ ହୁଏ ?**

ଶ୍ରୀଶ୍ରୀଠାକୁର – ଆପଣମାନେ ଯେତେ ଯାହାବି କରନ୍ତୁ, ଉନ୍ନତିହିଁ ଯଦି କାମ୍ୟ

ହୁଏ, ତେବେ ବ୍ୟକ୍ତି ଓ ଜାତିର ଜୀବନରେ ଇଷ୍ଟଙ୍କୁ ମୁଖ୍ୟ କରି ରଖିବାକୁ ହେବ – ସେଥିରେ ସୁଖ-ଦୁଃଖ ଯାହାବି ଆସୁ ନା କାହିଁକି। କୌଣସି-କିଛି ପାଇଁ ତାଙ୍କୁ ଚାହିଁଲେ ତାଙ୍କୁ ପାଇବା ହେବ ନାହିଁ। ମଣିଷ ଯେତେବେଳେ ବୃତ୍ତିର ଅଧୀନ ହୋଇ ପଡ଼ିବ, ବୃତ୍ତି କାନକୁ ଧରି ଯାହା ଖୁସି ତାହା କରାଇବ। ଆପଣଙ୍କ beyondରେ (ଊର୍ଦ୍ଧ୍ୱରେ) ଯଦି କିଛି ନ ଥାଏ, ଯେଉଁଥିରେ ଆପଣ ligared (ଯୁକ୍ତ) ହେବେ, ତା ହେଲେ ପ୍ରବୃତ୍ତିଗୁଡ଼ିକ ତାଙ୍କ ମାଫିକ୍ ଚାଲିବେ। କିନ୍ତୁ ସେପରି ଯଦି କେହି ଥାଆନ୍ତି, ପ୍ରବୃତ୍ତିଗୁଡ଼ିକ ଯାହାଙ୍କୁ centre (କେନ୍ଦ୍ର କରି) ଚାଲିବ, ସେତେବେଳେ ତାଙ୍କୁ centre (କେନ୍ଦ୍ର) କରି individuality (ଅଖଣ୍ଡତ୍ୱ) ଆସିବ। ଏହି individuality (ଅଖଣ୍ଡତ୍ୱ) ଯେତେ strong (ଶକ୍ତିମାନ) ଓ ଜମାଟ ହୋଇଉଠିବ, personality (ବ୍ୟକ୍ତିତ୍ୱ) ଅର୍ଥାତ୍ fulfilling capacity (ପରିପୂରଣୀ କ୍ଷମତା) ସେତେଟା ବଢ଼ିଉଠିବ। ଅନ୍ୟକୁ ଯିଏ ଯେତେ fulfil (ପରିପୂରଣ) କରିବ, ସେ ସେତେ fulfilled (ପରିପୂରିତ) ହେବ। Spiritual development (ଆଧ୍ୟାତ୍ମିକ ଉନ୍ନତି)ର ସହିତ ଅଛି ଏହି active fulfilling urge (ସକ୍ରିୟ ପରିପୂରଣୀ ଆକୂତି)। ଧାର୍ମିକ ହେଲେ ସେ ସେବାପ୍ରାଣ ହେବହିଁ, ଆଉ ସେବାପ୍ରାଣ ହେଲେ ତା ପଛରେ ଐଶ୍ୱର୍ଯ୍ୟ ଆସି ଯୁଟିବହିଁ। ସେଥିପାଇଁ ମୁଁ କହେ, ମଣିଷ spiritually developed (ଆଧ୍ୟାତ୍ମିକ ଭାବରେ ଉନ୍ନତ) ହେଲେ materially (ବସ୍ତୁତାନ୍ତ୍ରିକ ଭାବରେ) ମଧ୍ୟ developed (ଉନ୍ନତ) ହୁଏ। India (ଭାରତ)ର drawback (ଖାଁକତି) ଛାଡି ଦିଅ, India will be the crown of the world (ଭାରତ ଜଗତର ଶୀର୍ଷ ସ୍ଥାନୀୟ ହେବ) – ଏକ ମୁହୂର୍ତ୍ତରେ ଛାଡ଼ି ଦେଲେହିଁ ହୁଏ।

ଆ.ପ୍ର. ୭/୧୨.୨.୧୯୪୬

**ପ୍ର. – ଇଷ୍ଟାନୁସରଣରେ ଚାଲିବାକୁ ଯାଇ କ'ଣ କରଣୀୟ ବା କ'ଣ କରଣୀୟ ନୁହେଁ ତାହା କେଉଁ ଭିତ୍ତିରେ ଠିକ୍ କରିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର –** ଆପଣଙ୍କର ଏକମାତ୍ର ବୁଦ୍ଧି ରହିବ ଇଷ୍ଟସ୍ୱାର୍ଥପ୍ରତିଷ୍ଠା କ'ଣ କରଣୀୟ ବା କରଣୀୟ ନୁହେଁ, ତାହା ଆପଣ ଠିକ୍ କରିବେ ଏହି stand point (ଦୃଷ୍ଟିକୋଣ)ରୁ। ଏହାଦ୍ୱାରା ଆପଣ ଅନୁରାଗ ବା ବିଦ୍ୱେଷ ବଶତଃ ବିଶେଷ କୌଣସି ଦିଗକୁ ଢ଼ଳି ପଡ଼ିବେ ନାହିଁ। ପ୍ରବୃତ୍ତି ଆପଣଙ୍କୁ ଘୁରାଇ ନେଇ ବୁଲି ପାରିବନାହିଁ। ଆପଣ ବରଂ ପ୍ରବୃତ୍ତିଗୁଡ଼ିକୁ ଇଚ୍ଛାନୁସାରେ ଘୁରାଇ ନେଇ ବୁଲିପାରିବେ। କାହା ଉପରେ ଯଦି ଆପଣଙ୍କର ଏପରି ଟାଣ ଥାଏ, ଯେଉଁ -ଟାଣ ଆପଣଙ୍କର ଇଷ୍ଟଚଳନର ପଥରେ ଅନ୍ତରାୟ, ସେ-ଟାଣ ଆପଣଙ୍କୁ ଟାଣି ରଖି ପାରିବ ନାହିଁ। ପୁଣି, କାହା ଉପରେ ଯଦି ଆପଣଙ୍କର ଦ୍ୱେଷ ଥାଏ, ଏବଂ ସେ-ଦ୍ୱେଷ ଯଦି ଏପରି ହୁଏ, ଯାହା ଆପଣଙ୍କର ଇଷ୍ଟ କାର୍ଯ୍ୟରେ ବ୍ୟଘାତ ଜନ୍ମାଏ, ତେବେ ସେ-



ଦ୍ୱେଷ ତ୍ୟାଗ କରିବା ପାଇଁ ମଧ୍ୟ ଆପଣଙ୍କର କୌଣସି ଅସୁବିଧା ହେବନାହିଁ। ଦରକାର ହେଲେ ସବୁ ଦ୍ରୋହ ବୁଦ୍ଧି ଜଳାଞ୍ଜଳି ଦେଇ ଆପଣ ତା ସହିତ ବନ୍ଧୁ ପରି କୋଳାକୋଳି ହୋଇ ମିଶି ପାରିବେ। ତା ବୋଲି ଏହାଦ୍ୱାରା ଯେ ମଣିଷ ବେକୁବ୍ ହୁଏ – ଆତ୍ମରକ୍ଷା ପାଇଁ ଯେଉଁଠାରେ ଯେତେଟା ସାବଧାନତା ଅବଲମ୍ବନ କରିବା ଦରକାର ତାହା କରିପାରେ ନାହିଁ – ତା କିନ୍ତୁ ନୁହେଁ। ବରଂ ଭିତରେ ଗୋଟିଏ ସମତା ଥାଏ ବୋଲି କେଉଁଠି କ'ଣ କରିବାକୁ ହେବ, କାହା ସହିତ କିପରିଭାବରେ ଚଳିବାକୁ ହେବ ତାହା ସେ ବୁଝିପାରେ। ଏହି ସମତା – balance – ନ ରହିଲେ ମଣିଷ ଜୀବନରେ କୃତକାର୍ଯ୍ୟ ହୋଇପାରେ ନାହିଁ।

ଆ.ପ୍ର. ୭/୧୨.୨.୧୯୪୬

**ପ୍ର. – ଇଷ୍ଟଙ୍କ ପ୍ରତି କାହାର କେତେ ନିଷ୍ଠା ତାହା କିପରି ବୁଝାଯିବ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କର ଖୁସି ପାଇଁ କିଏ କେତେଟା ଅଚ୍ୟୁତ ଓ ସକ୍ରିୟ ଭାବରେ ଲାଗି ରହିପାରେ, ତା' ଦେଖିହିଁ ବୁଝି ହୁଏ, ନିଷ୍ଠା କାହାର କେତେ ଟିକିଏ।

ଆ.ପ୍ର. ୭/୧୩.୨.୧୯୪୬

**ପ୍ର. – ଇଷ୍ଟାନୁସରଣ ପାଇଁ କ'ଣ କିଛି ତ୍ୟାଗ କରିବାକୁ ହୁଏ ନାହିଁ ?**

**ଶ୍ରୀଶ୍ରୀଠାକୁର –** ତ୍ୟାଗଟା ଅଭିଷ୍ଟ ନୁହେଁ। ଅଭିଷ୍ଟ ହେଲା ଈଶ୍ୱର ପ୍ରାପ୍ତି। ଈଶ୍ୱର ପ୍ରାପ୍ତି ବା ଇଷ୍ଟାନୁରାଗ ପଥରେ ଯାହା ବ୍ୟାଘାତ ଜନ୍ମାଏ, ତାହା ତ୍ୟାଗ କରିବାକୁ ହେବ। ଇଷ୍ଟାନୁରାଗକୁ ମୁଖ୍ୟ ନ କରି ଯେଉଁମାନେ ତ୍ୟାଗକୁହିଁ ମୁଖ୍ୟ କରି ତୋଳନ୍ତି, ସେମାନଙ୍କ ପାଖରେ ତ୍ୟାଗ ଗୋଟିଏ ରୋଗ ପରି ହୋଇଉଠେ। ଏହିପରି ତ୍ୟାଗରେ ତ୍ୟାଗର ଅହଂକାର ହୁଏ। ପ୍ରକୃତ ତ୍ୟାଗରେ କେବେହେଲେ ତ୍ୟାଗର ଅହଂକାର ହୁଏ ନାହିଁ। ତା' ପାଖରେ ତ୍ୟାଗର କୌଣସି ହିସାବ ରୁହେନା। ମା-ବାପା ଯେ ସନ୍ତାନ ପାଇଁ କେତେ ତ୍ୟାଗ ସ୍ୱୀକାର କରନ୍ତି, କିନ୍ତୁ ସେଥିପାଇଁ କେବେ କ'ଣ ଗର୍ବ କରି ବୁଲନ୍ତି ? ତାହା ଯେ ସେମାନଙ୍କର ସନ୍ତାନ-ପ୍ରୀତିରହିଁ ଅଙ୍ଗ। ସେଥିପାଇଁ, ତ୍ୟାଗଟା ମଧ୍ୟ ସେମାନଙ୍କ ପାଖରେ ଉପଭୋଗର ବିଷୟ ହୋଇଯାଏ। ସେଥିରେ କଷ୍ଟ ବୋଧ ରହେ ନାହିଁ। ସେଥିପାଇଁ ଯିଏ ତ୍ୟାଗୀ, ସେ କେତେବେଳେ ମଧ୍ୟ ବୋଧ କରେ ନାହିଁ ଯେ ସେ ତ୍ୟାଗୀ। ଅନ୍ୟମାନେ ଯେତେବେଳେ ତାକୁ ତ୍ୟାଗୀ କହନ୍ତି, ସେ ଭାବେ – ମୁଁ କ'ଣ ତ୍ୟାଗ କଲି ? ଏତେ ଯେ ସୁଖ ପାଇଲି, ହୃଦୟ ଭରି ଉଠିଲା, ତା' ତୁଳନାରେ ଯାହା କରିଲି, ତାହା ତ ନିତ୍ୟାନ୍ତ ଅକିଞ୍ଚିତ୍କର। ଆ.ପ୍ର. ୭/୧୩.୨.୧୯୪୬

**ପ୍ର. – ଇଷ୍ଟଙ୍କ ପ୍ରତି ଟାଣ ବଢ଼ିଲେ କ'ଣ କନ୍‌ଭିକ୍‌ଶନ୍ ବା ପ୍ରତ୍ୟୟ ବଢ଼େ ?**

**ଶ୍ରୀଶ୍ରୀଠାକୁର –** ହଁ ! ଟାଣ ଅଛି ହିଁ। ତାଙ୍କ ପାଇଁ ଖୁବ୍ କରିବାକୁ ହୁଏ। ନ କରି କେବଳ

କହିଲେ ବା ଭାବିଲେ ହୁଏ ନାହିଁ। ତାଙ୍କ ପାଇଁ କରିବା, କହିବା ଓ ଭାବିବାର ସଙ୍ଗତି ଯେତେ ବେଶୀ ହୁଏ, ଟାଣ ମଧ୍ୟ ସେତେ ବଢ଼େ, ଆଉ ସେଇ ସଙ୍ଗେ-ସଙ୍ଗେ convication (ପ୍ରତ୍ୟୟ) ମଧ୍ୟ ବଢ଼େ। ଟାଣ କେତେଟା ଅଛି, କେତେଟା ନାହିଁ, ତା'ନେଇ ବେଶୀ ମୁଣ୍ଡ ଖେଳେଇବା ଦରକାର ନାହିଁ। ଟାଣ ଅଛି ଧରି ନେଇହିଁ ସେହିଟିକୁ କ୍ରମାଗତ ବଢ଼ାଇ ତୋଳିବାକୁ ହୁଏ।

ଆ.ପ୍ର. ୭/୧୯.୨.୧୯୪୬

**ପ୍ର. – ଇଷ୍ଟଙ୍କର ନିନ୍ଦା ଯିଏ କରେ ତାକୁ କ'ଣ ଠିକ୍ ଭାବରେ ଶିକ୍ଷା ଦେବା ଦରକାର ନାହିଁ?**

**ଶ୍ରୀଶ୍ରୀଠାକୁର –** Thrashing ବି (ଆଘାତବି) ହେବ to win (ଜୟ କରିବା ପାଇଁ)। ଯେଉଁ thrashing (ଆଘାତ) ମଣିଷକୁ ବିରୋଧୀ କରି ତୋଳେ, କିନ୍ତୁ ତାର ଅନ୍ତର ଜୟ କରିପାରେ ନାହିଁ, ସେ thrashing (ଆଘାତ) କିନ୍ତୁ ବ୍ୟର୍ଥ। Thrashing (ଆଘାତ) ଯେପରି କେବେବି ବ୍ୟର୍ଥ ନ ହୁଏ। ଯେଉଁଥିପାଇଁ ଯାହା କରାହୁଏ, ସେହି ଉଦ୍ଦେଶ୍ୟ ଠିକ୍ ରଖିବା ଦରକାର। ତାହା ଭୁଲିଗଲେ କିନ୍ତୁ ଠକି ଗଲ! ସବୁଟିର ପ୍ରୟୋଜନ ଅଛି, କିନ୍ତୁ ସଦ୍‌ବ୍ୟବହାର ରହିଲେ ହେଲା। ଆ.ପ୍ର. ୭/୧୯.୨.୧୯୪୬

**ପ୍ର. – ଇଷ୍ଟାନୁସରଣ କିପରି ହେଲେ ମଣିଷର ପ୍ରକୃତ ଉନ୍ନତି ହୁଏ?**

**ଶ୍ରୀଶ୍ରୀଠାକୁର –** ....ଯେତେବେଳେ କୌଣସି ଅପମାନ, କୌଣସି ନିର୍ଯ୍ୟାତନ, କୌଣସି କଷ୍ଟ ତୁମକୁ ଧର୍ମ, କୃଷ୍ଟି ଓ ଆଦର୍ଶର (ଇଷ୍ଟଙ୍କର) ସକ୍ରିୟ ଅନୁବର୍ତ୍ତନଠାରୁ ସାମାନ୍ୟ ଟିକିଏ ମଧ୍ୟ ବିଚ୍ୟୁତ କରି ପାରିବ ନାହିଁ, ସେତେବେଳେ ତୁମେ ରାସ୍ତାରେ ଫକିର ହୋଇ ବୁଲିଲେ ମଧ୍ୟ ଜାଣିବ, ତୁମେ ରାଜାଧିରାଜ। ସେତେବେଳେହିଁ ତୁମେମାନେ ପ୍ରକୃତ ଉନ୍ନତ। ପ୍ରକୃତି ତାର ଅନନ୍ତ ଐଶ୍ୱର୍ଯ୍ୟ ନେଇ ତୁମକୁ ଶ୍ରୀମଣ୍ଡିତ କରିବା ପାଇଁ ଅଦୂରରେ ଅପେକ୍ଷା କରିଛି। ଏହା ହେଲା ବିଧିର ବିଧାନ। ଏହାର କୌଣସି ଦିନ ବ୍ୟତ୍ୟୟ ହୋଇନାହିଁ, ହେବ ନାହିଁ, ହେବାର ନାହିଁ। ତେବେ ସେହି ପ୍ରତ୍ୟାଶାରେ ଘୁରିଲେ କିଛି ହେବନାହିଁ। ସବୁ ମିଥ୍ୟା ହୋଇଯିବ। ଆଉ ଗୋଟିଏ କଥା ସବୁ ସମୟରେ ମନେ କରିବ, ମୁଁ କେଉଁ ଅବସ୍ଥାରେ କିପରି ବ୍ୟବହାର ପାଇଲେ ଖୁସି ହୁଏ। ସେଇଟିକୁ ଭାବି ଅନ୍ୟର ଅବସ୍ଥାଟା ଅନୁଭବ କରି ଯେଉଁଠାରେ ଯେପରି ବ୍ୟବହାର ଜୀବନୀୟ ଓ ତୃପ୍ତିପ୍ରଦ ହୁଏ ତାହାହିଁ କରିବ। ଆ.ପ୍ର. ୭/୧୯.୩.୧୯୪୬

**ପ୍ର. – ଇଷ୍ଟଙ୍କଠାରେ ସକ୍ରିୟ ନିଷ୍ଠା ରହିଲେ କଣ ହୁ'ଏ?**

**ଶ୍ରୀଶ୍ରୀଠାକୁର –** Adherence (ନିଷ୍ଠା) ରହିଲେ interest (ଆଗ୍ରହ) ରହେ, interest (ଆଗ୍ରହ) ସହ ଥାଏ appreciation (ଗୁଣଗ୍ରହଣ-ମୁଖରତା), appreciation



(ଗୁଣଗ୍ରହଣ-ମୁଖରତା) ସହିତ ଆସେ contented service and support (ପ୍ରସନ୍ନ ସେବା ଓ ସମର୍ଥନ)। Adherence ର (ନିଷ୍ଠାର) ଏଗୁଡ଼ିକ ହେଲେ ସହଗାମୀ। ମୁଁ ସଂକ୍ଷେପରେ କହିଲି। ବିସ୍ତାରିତ ଭାବରେ କହିଲେ ଆହୁରି କେତେ କୁହାଯିବ। ମୋଟ ଉପରେ Ideal ଙ୍କଠାରେ (ଆଦର୍ଶ ବା ଇଷ୍ଟଙ୍କଠାରେ) active adherence (ସକ୍ରିୟ ନିଷ୍ଠା) ଯଦି କାହାର ଜାଗ୍ରତ ହୁଏ, ତା ପାଇଁ ଆଉ ଭାବନା ନାହିଁ। ସେ ଆଖପାଖରେ ସମସ୍ତଙ୍କୁ ନେଇ ବଢ଼ି-ବଢ଼ି ହିଁ ଚାଲିବ।

ଆ.ପ୍ର. ୭/୨୧.୩.୧୯୪୬

**ପ୍ର. – ଇଷ୍ଟାନୁସରଣରେ ଯେଉଁମାନେ ଚାଲନ୍ତି ସଧାରଣତଃ ସେମାନଙ୍କର ମନୋବୃତ୍ତି କିପରି ଥାଏ? ସେମାନଙ୍କର ପରିଣତି ବା କ'ଣ ହୁଏ?**

**ଶ୍ରୀଶ୍ରୀଠାକୁର –** (ଅନୁସରଣକାରୀମାନଙ୍କ ମଧ୍ୟରେ) ଦୁଇଟି ଦଳ ଅଛି। ଗୋଟିଏ ଦଳର slave-mentality (ଦାସ-ମନୋବୃତ୍ତି) ଆଉ ଗୋଟିଏ ଦଳର surrender-mentality (ଆତ୍ମସମର୍ପଣର ମନୋବୃତ୍ତି)। Slave-mentality (ଦାସ-ମନୋବୃତ୍ତି) ଯେତେବେଳେ ଆସେ, ଯେତେବେଳେ ପ୍ରତ୍ୟାଶାର ଟାଣରେ ବା ପାଇବାର ଲୋଭରେ ଇଷ୍ଟଙ୍କୁ ଧରି ଚାଲେ। ଆଉ ତାଙ୍କୁ ପରିପୂରଣ କରି ଆତ୍ମପ୍ରସାଦଲାଭର ଆଗ୍ରହ ଯେତେବେଳେ ପ୍ରବଳ ହୁଏ, ସେତେବେଳେ surrender-mentality (ଆତ୍ମସମର୍ପଣର ମନୋବୃତ୍ତି) ହୁଏ। ଏହାଦ୍ୱାରା complex (ପ୍ରବୃତ୍ତି) ଗୁଡ଼ିକ adjusted (ନିୟନ୍ତ୍ରିତ) ହୁଏ, ମଣିଷ enthusiastic ଓ wise (ଉତ୍ସାହ ସମନ୍ୱିତ ଓ ପ୍ରଜ୍ଞାବାନ) ହୁଏ। Surrender-mentality (ଆତ୍ମସମର୍ପଣର ମନୋବୃତ୍ତି) ହେଲେ ମଣିଷ ଧର୍ମ ଜୀବନର ମଜା କିଛିଟା ବୁଝେ। Slave-mentality (ଦାସ-ମନୋବୃତ୍ତି) ହେଲେ ଅବଶୋଷ ଓ ଅଭିମାନହିଁ ସମ୍ବଳ ହୁଏ। ସବୁ ସମୟରେ ଭାବେ ଏତେ – ଡାକିଲି, ଏତେ କରିଲି, ହେଲା କ'ଣ? ଅବଶ୍ୟ ତାର ଏହି ମନୋବୃତ୍ତି ଯେତେଦିନ ଥିବ, ସେତେଦିନ କିଛି ହେବା ମଧ୍ୟ କଠିନ। ନିରହଂକାର, ଆର୍ତ୍ତ ଯିଏ, ତା' ପାଇଁ ରାସ୍ତା ଅଛି। କିନ୍ତୁ କରିବାର ଅହଂକାର ଓ ତା' ସହିତ ପ୍ରତ୍ୟାଶା ଯାହାକୁ ଅଶାନ୍ତ ଓ ଅସ୍ଥିର କରିତୋଳେ, ତାର ଅନେକ ବିଳମ୍ବ ହୁଏ।

ଆ.ପ୍ର. ୭/୨୭.୩.୧୯୪୬

**ପ୍ର. – ଇଷ୍ଟାନୁସରଣରେ ମାନସିକ ଶାନ୍ତି କେତେବେଳେ ଅତୁଟ ଥାଏ?**

**ଶ୍ରୀଶ୍ରୀଠାକୁର –** ପରମପିତାଙ୍କୁ ପ୍ରତ୍ୟାଶା ରହିତ ହୋଇ ଭଲପାଇବାରେ ଶାନ୍ତି ଅଛି। ଭଗବାନଙ୍କଠାରେ ବା ଇଷ୍ଟଙ୍କଠାରେ ଯେତେ ପରିମାଣରେ ଯୁକ୍ତ ହେଉ, ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ଯେତେ ହେଉ – ବାସ୍ତବ କର୍ମର ଭିତର ଦେଇ – ସେତେ ପରିମାଣରେ ଶାନ୍ତିର ପଥ ଖୋଲିଯାଏ। ଗୀତାରେ ଅଛି –

ନାସ୍ତି ବୁଦ୍ଧିରଯୁକ୍ତସ୍ୟ ନ ଚାଯୁକ୍ତସ୍ୟ ଭାବନା ।
ନ ଚାଭାବୟତଃ ଶାନ୍ତିରଶାନ୍ତସ୍ୟ କୁତଃ ସୁଖମ୍ ॥

ଇଷ୍ଟଙ୍କ ସହିତ ସକ୍ରିୟ ଯୋଗଟି ଯେତେବେଳେ କୌଣସି ପ୍ରକାରେହିଁ ଭାଙ୍ଗେ ନାହିଁ, ସେତେବେଳେ ଲକ୍ଷେ ଝଞ୍ଜାର ମଧ୍ୟରେ ବି ଶାନ୍ତି ଅଟୁଟ ଥାଏ । ନିଜର କୌଣସି କାମନା ପୂରଣ ପାଇଁ ଇଷ୍ଟଙ୍କୁ ଧରିବା ଉଚିତ୍ ନୁହେଁ, ଇଷ୍ଟଙ୍କର ଚାହିଦା ପୂରଣ ପାଇଁ ନିଜକୁ ଲଗାଇବାକୁ ହୁଏ ।

ଆ.ପ୍ର. ୭/୨୭.୩.୧୯୪୬

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ଚାହିଦାକୁ ପୂରଣ କରି ଚାଲିବା କେତେବେଳେ ସମ୍ଭବ ହୁଏ ?**

**ଶ୍ରୀଶ୍ରୀଠାକୁର** – ଦୁଇଟି ରାସ୍ତା ଅଛି । ଗୋଟିଏ ହେଉଛି ପ୍ରବୃତ୍ତି ପାଖରେ being (ସତ୍ତା)କୁ sacrifice କରିବା (ବଳି ଦେବା) । ଆଉ ଗୋଟିଏ ରକମ ହେଉଛି ସତ୍ତାକୁ ଇଷ୍ଟଙ୍କ ପାଖରେ surrender (ସମର୍ପଣ) କରି ତାଙ୍କରି ତୃପ୍ତି ପାଇଁ ଚାଲିବା । ଏହା କିଛି କଠିନ ନୁହେଁ । ମା-ବାପା, ପିଲାପିଲିଙ୍କ ପାଇଁ ଯେପରି କରୁ, ସେହିପରି ତାଙ୍କ ପାଇଁ ଭାବିବା, କହିବା, କରିବା ଆରମ୍ଭ କରିଦେବାକୁ ହୁଏ ।

ଆ.ପ୍ର. ୭/୨୭.୩.୧୯୪୬

**ପ୍ର. – ଇଷ୍ଟାନୁସରଣରେ ଅବିଶ୍ରାନ୍ତ ସଂଗ୍ରାମ ଭିତରେ ମଧ୍ୟ ସ୍ଥୈର୍ଯ୍ୟ ଓ ଶାନ୍ତଭାବ କେତେବେଳେ ବଜାୟ ରହେ ?**

**ଶ୍ରୀଶ୍ରୀଠାକୁର** – ଶାନ୍ତି ମାନେ ନିଥର ଅବସ୍ଥା ନୁହେଁ, ବରଂ ଏପରି ଆଦର୍ଶମୁଖୀ କର୍ମସମ୍ବେଗ ଯାହା କୌଣସି ପ୍ରକାରରେ କାବୁ ହୁଏନାହିଁ । ଏହି ଏକମୁଖୀ ଆଦର୍ଶପ୍ରାଣତା ଫଳରେ ପ୍ରବୃତ୍ତିଗୁଡ଼ିକ ମଧ୍ୟରେ ସଙ୍ଗତି ଓ ସାମଞ୍ଜସ୍ୟ ଆସିଥାଏ, ଆଉ ତାହାଦ୍ୱାରା ପ୍ରଚଣ୍ଡ କର୍ମର ମଧ୍ୟରେ ବି ବିକ୍ଷୋଭ ବଦଳରେ ସ୍ଥୈର୍ଯ୍ୟ ଓ ଶାନ୍ତଭାବ ଦେଖାଦିଏ । ସେ ଇଷ୍ଟାର୍ଥେ ଆହୁରି, ଆହୁରି, ଆହୁରି କରିବାକୁ ଚାହେଁ । ତାକୁ ଦବାଇ ରଖିହୁଏ ନାହିଁ । ହନୁମାନ ପରି ହୋଇଥାଏ । ସେ କୁହେ – "ମୁଁ କ'ଣ କେବେ ଲମ୍ପଟ ରାବଣକୁ ଡରିପାରେ ?"

ଆ.ପ୍ର. ୭/୨୭.୩.୧୯୪୬

**ପ୍ର.ଇଷ୍ଟାନୁସରଣ ପଥରେ ଅନେକ ସମୟରେ ତାଙ୍କ କାର୍ଯ୍ୟର ଦାୟିତ୍ୱ ଏଡ଼ାଇ ଚାଲିବାକୁ ଇଚ୍ଛା ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଟାଣ କମ୍ କିନା, ସେଥିପାଇଁ ମନେହୁଏ ଅଳସୁଆ ହୋଇ ପଡ଼ିଥାଏ । ଆଉ, ଇଷ୍ଟଟାଣରେ ମାତାଲ ହେଲେ ଯେତେ କାର୍ଯ୍ୟ ଆସୁନା କାହିଁକି, ମନେହୁଏ – ଆହୁରି ଆସୁ, ଆହୁରି ଆସୁ । ଶକ୍ତକାର୍ଯ୍ୟର ଦାୟିତ୍ୱ ପଡ଼ିଲେ ଉତ୍ସାହ ଆହୁରି ବଢ଼ିଯାଏ । ସମୁଦ୍ରରେ



ସ୍ନାନ କରିବାର ଅଭ୍ୟାସ ଯେଉଁମାନଙ୍କର ଅଛି, ସେମାନଙ୍କର ଢ଼େଉ ଦେଖିଲେ ସ୍ଫୂର୍ତ୍ତି ହୁଏ, – ହସ ଲାଗେ, – ଆନନ୍ଦ ଲାଗେ; କିନ୍ତୁ ଆମ୍ଭମାନଙ୍କର ହୁଏତ ସେ ଅବସ୍ଥାରେ ଭୟ ହୁଏ । ପ୍ରକୃତ ଭକ୍ତର ବିପଦ-ଆପଦ ମଧ୍ୟରେ ଆନନ୍ଦ ଉଦ୍‌ବେଳ ହୋଇଉଠେ । ସେ ଜାଣେ, ଏହିଟିହିଁ ତାର ଭକ୍ତି, ବିଶ୍ୱାସ ଓ ଶକ୍ତିକୁ ପୁଷ୍ଟ କରିବାର ସୁବର୍ଣ୍ଣ ସୁଯୋଗ ।

ଆ.ପ୍ର. ୭/୨୭.୩.୧୯୪୬

**ପ୍ର. – ଇଷ୍ଟାନୁସରଣରେ ପ୍ରଚଣ୍ଡ ଇଚ୍ଛା ଶକ୍ତି କ'ଣ ଇଷ୍ଟାନୁରାଗରହିଁ ଲକ୍ଷଣ ?**

**ଶ୍ରୀଶ୍ରୀଠାକୁର** – ତାହା complex ର (ପ୍ରବୃତ୍ତିର) କାରଣରୁ ହୋଇପାରେ, Ideal-ରେ (ଆଦର୍ଶ ବା ଇଷ୍ଟଙ୍କଠାରେ) aherence-ର (ଅନୁରାଗର) କାରଣରୁ ମଧ୍ୟ ହୋଇପାରେ । ଦୁଇଟିର ରକମହିଁ ଅଲଗା । ଶିବାଜୀଙ୍କର ରାଜ୍ୟଲିପ୍‌ସାହିଁ କୁହ ଆଉ ଯାହାକିଛିହିଁ କୁହ, ତାହା ରାମଦାସଙ୍କୁ ଖୁସି କରିବା ପାଇଁ – ନିଜର ବାହାଦୂରୀ ପାଇଁ ନୁହେଁ, ଆଉ ରାଣାପ୍ରତାପଙ୍କର ଯାହା-କିଛି ତଥାକଥିତ self-prestige (ଆତ୍ମମର୍ଯ୍ୟାଦା) ପାଇଁ ।

ଆ.ପ୍ର. ୭/୨୭.୩.୧୯୪୬

**ପ୍ର. – ଇଷ୍ଟାନୁସରଣର ସ୍ୱାର୍ଥରେ କାହା ସହିତ ଭଲ ବ୍ୟବହାର କରିଲେ ମଧ୍ୟ ସେ ଯଦି ତାହା ସ୍ୱୀକାର ନ କରେ ସେଠାରେ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଯିଏ ତୁମକୁ ସ୍ୱୀକାର କରେ ନାହିଁ, ତାକୁ ମଧ୍ୟ ତୁମେ ତୁମର ପରମ ସମ୍ପଦ ବୋଲି ମନେ-ମନେ ସ୍ୱୀକାର କରିନେଇ ସହ୍ୟ-ଧୈର୍ଯ୍ୟପୂର୍ଣ୍ଣ ପ୍ରାଣମତାଣିଆ ସେବା ଓ ବ୍ୟବହାରରେ ତୁମ ପ୍ରତି ଅନୁକୂଳ କରିତୋଳ । ତାର ହୃଦୟ ଜୟ କର । ଗୋଟିଏ କଥା ସବୁ ସମୟରେ ମନେ ରଖିବ – ପ୍ରତ୍ୟେକେ ତା ପରି । ତୁମ ପରି ହେବେ ନାହିଁ । ଆଉ ତାହା କରିବାକୁ ମଧ୍ୟ ଚାହଁ ନାହିଁ । କିନ୍ତୁ ପ୍ରତ୍ୟେକଙ୍କୁ ତୁମର ଆଦର୍ଶଙ୍କ (ଇଷ୍ଟଙ୍କ)ଠାରେ ଅନୁପ୍ରାଣିତ କରି ତୋଳିବାକୁ ହେବ ଯାହାଦ୍ୱାରା ସେ ତାର ବୈଶିଷ୍ଟ୍ୟ-ଅନୁଯାୟୀ ଏହି ଆଦର୍ଶଙ୍କର (ଇଷ୍ଟଙ୍କର) ସେବାରେ ସାର୍ଥକ ହୋଇପାରେ । ଏହାହିଁ ହେଲା ମିଳନର ପଥ ।

ଆ.ପ୍ର. ୭/୭.୪.୧୯୪୬

**ପ୍ର. – ଇଷ୍ଟାନୁସରଣରେ ବିପରୀତ ପ୍ରବୃତ୍ତିର ଝୁଙ୍କ ସମ୍ଭାଳିବାହିଁ ତ ସବୁଠାରୁ କଠିନ କାର୍ଯ୍ୟ । ତାହା କିପରି କରି ହୁଏ ?**

**ଶ୍ରୀଶ୍ରୀଠାକୁର** – କଠିନ କିଛି ନୁହେଁ । କରିବାକୁ ଚାହିଁଲେହିଁ କରିହୁଏ । ଅସଲ କଥା ହେଲା – ପ୍ରତ୍ୟାହାର କରିବାକୁ ଶିଖିବା ।

ମନେର ରୋଖଟି ଯାଇ ଥାକୁକ୍ ନା
ଏକଟୁଖାନି ଏଡ଼ିୟେ ଗା,
କଓୟା-କରାୟ ଚଲବି ଯେମନ
ଝୁଁକ୍ ହବେ ତୋର ତଦନୁଗା ॥

ଯେଉଁ ଦିଗକୁ ଖିଆଲ, ସେହି ଦିଗକୁ ଟିକିଏ ଢ଼ିଲା ଦିଅ, ଆଉ ଯେପରି ହେବାକୁ ଚାହଁ, ସେହିପରି କହିବା, କରିବା ଚଳାଇରଖ, ଦେଖୁ ଦେଖୁ ନୂତନ ଝୁଙ୍କ ଓ ଅଭ୍ୟାସ ଠିକ୍ ହୋଇଯିବ। କରି ଦେଖ, ହୁଏକି ନାହିଁ! ଏହା ମଧ୍ୟରେ କୌଣସି philosophising (ଦାର୍ଶନିକତା) ନାହିଁ। କରିବାକୁ ଆରମ୍ଭ କରିଲେ ହାତେ-ହାତେ ଫଳ ବୁଝି ପାରିବ।

ଆ.ପ୍ର. ୭/୧୨.୪.୧୯୪୬

**ପ୍ର – ଇଷ୍ଟାନୁସରଣର ଧାର ନ ଧରି ମଧ୍ୟ ତ ଦେଖାଯାଏ ଲୋକମାନେ ସୁଖରେ ଅଛନ୍ତି ?**

**ଶ୍ରୀଶ୍ରୀଠାକୁର** – ତାହା ଯଦି କୁହ, ତେବେ ପାଗଳମାନେହିଁ ତ ସବୁଠାରୁ ସୁଖରେ ଅଛନ୍ତି। କାରଣ, ସେମାନେ ହିତାହିତର ଧାର ଧାରନ୍ତି ନାହିଁ। ....ବ୍ୟାପରଟା ଏହା, complex (ପ୍ରବୃତ୍ତିର) obsession (ଅଭିଭୂତି) ଯଦି ଥାଏ, complex (ପ୍ରବୃତ୍ତି) nurtured (ପୁଷ୍ଟ) ହେଲେ ଆମ୍ଭେ ମନେ କରୁ, beingହିଁ (ସତ୍ତାହିଁ) nurtured (ପୁଷ୍ଟ) ହେଲା। ଏହି ଭ୍ରାନ୍ତ ବୋଧର ସୃଷ୍ଟି complex-ରହିଁ (ପ୍ରବୃତ୍ତିରହିଁ) କାରସାଦି। କିନ୍ତୁ ଅସଲରେ being-ଟା (ସତ୍ତାଟା) ଯଦି ଶୁଖିବାକୁ ଲାଗେ, ଏହି ମତ୍ତତା କେତେଦିନ ଆମ୍ଭମାନଙ୍କୁ ଭୁଲାଇ ରଖିପାରେ ? ସେତେବେଳେ ଯେ ହାହାକାର କରି ଉଠୁ। ଆ.ପ୍ର. ୭/୧୭.୪.୧୯୪୬

**ପ୍ର. – ଇଷ୍ଟପ୍ରାଣଲୋକଙ୍କର ତୁଳନାରେ ପ୍ରବୃତ୍ତିପରାୟଣ ଲୋକମାନଙ୍କର ପ୍ରଭାବ ଓ ଆଗ୍ରହ ତ ଅନେକ ବେଶୀ ପରି ମନେ ହୁଏ ?**

**ଶ୍ରୀଶ୍ରୀଠାକୁର** – କୃଷ୍ଣ ପ୍ରତିପଦର ଚନ୍ଦ୍ର ଦେଖିବାକୁ ଉଜ୍ଜ୍ୱଳ, କିନ୍ତୁ ଆମ୍ଭମାନଙ୍କର ଚକ୍ଷୁରେ ଧରା ପଡ଼େ ନାହିଁ ଯେ ତାହା କ୍ଷୟମୁଖୀ। ଶୁକ୍ଳପକ୍ଷର ଚନ୍ଦ୍ର କିନ୍ତୁ କିଛିହିଁ ନୁହେଁ, ତଥାପି ତାହା ବର୍ଦ୍ଧନମୁଖୀ। ନଦୀ ସ୍ରୋତର ଅନୁକୂଳରେ ଯିଏ ପହଁରିଯାଏ, ତାକୁ ଦେଖି ମନେହୁଏ, କିପରି ବାହାଦୁର ପହଁରାଳୀ – ସ୍ଫୂର୍ତ୍ତିରେ ଚରଚର କରି ଆଗେଇ ଯାଉଛି। କିନ୍ତୁ ସ୍ରୋତର ଓଲଟାରେ ଯିଏ ଚାଲେ, ତାକୁ ବରଂ ମନେହୁଏ, ଆଗେଇ ପାରୁ ନାହିଁ କ୍ଳାନ୍ତ ହୋଇପଡୁଛି। ଅବଶ୍ୟ ଆଦର୍ଶପ୍ରାଣତାର ନାମରେ ଅଳସୁଆମି କରି ଯେଉଁମାନେ ଦିନ କଟାନ୍ତି, ତାଙ୍କର କିଛି ବି ହୁଏନାହିଁ। ସବୁ conflict (ଦ୍ୱନ୍ଦ-ସଂଘାତ) ସତ୍ତ୍ୱେ ମଧ୍ୟ ଯେଉଁମାନେ actively (ସକ୍ରିୟ



ଭାବରେ) ଆଦର୍ଶପ୍ରାଣ ଏବଂ ଯେଉଁମାନେ ଚେଷ୍ଟାରେ ତ୍ରୁଟି କରନ୍ତି ନାହିଁ ସେମାନେ ଉନ୍ନତି କରିବେହିଁ।

ଆ.ପ୍ର. ୭/୧୭.୪.୧୯୪୬

**ପ୍ର. – ଇଷ୍ଟାନୁସରଣର ପଥରେ ଅନୁସରଣକାରୀମାନଙ୍କ ମଧ୍ୟରେ ଯଦି ବିଭିନ୍ନ ଦଳ ବା ଗୁଚ୍ଛ ଗଜାଇ ଉଠେ ?**

**ଶ୍ରୀଶ୍ରୀଠାକୁର** – Temperamental affinity (ପ୍ରକୃତିଗତ ସଂଗତି) ଅନୁଯାୟୀ ଅନେକ group (ଗୁଚ୍ଛ) ହୋଇପାରେ। କିନ୍ତୁ ଇଷ୍ଟ ବା ଆଦର୍ଶଙ୍କଠାରେ fanatic inclination (ଅକାଟ୍ୟ ଆନତି) ରହିଲେ ସମସ୍ତେ meet କରିବେ (ମିଳିତ ହେବେ)।

ଆ.ପ୍ର. ୭/୨୦.୪.୧୯୪୬

**ପ୍ର. – ଇଷ୍ଟାନୁସରଣର ସାଥେ ସାଥେ ସମସ୍ତଙ୍କୁ ପୋଷଣ ଦେଇ ଚାଲିବାକୁ ହେଲେ କ'ଣ କରିବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – ତା ପାଇଁ ତୁମ୍ଭମାନଙ୍କୁ ତପସ୍ୟାପରାୟଣ ହେବାକୁ ହେବ – ଇଷ୍ଟସ୍ୱାର୍ଥପ୍ରତିଷ୍ଠାପରାୟଣ ହୋଇ passion-ର (ପ୍ରବୃତ୍ତିର) ହାତେ ଚାଖଣ୍ଡେ ଉପରେ ରହିବାକୁ ହେବ, ନହେଲେ nurture (ପୋଷଣ) ଦେବାର ବାହାନା କରିପାର, ସେହି ବାହାନାରେ ଢ଼ଳ ଗୋଳିଆ କରିପାର, କିନ୍ତୁ ପ୍ରକୃତ ଭାବରେ କାହାକୁ କୌଣସି nurture (ପୋଷଣ) ଦେବାର ଯୋଗ୍ୟତା ଅର୍ଜନ କରିପାରିବ ନାହିଁ। ଆ.ପ୍ର. ୭/୨୦.୪.୧୯୪୬

**ପ୍ର. – ଇଷ୍ଟ ଗ୍ରହଣ କରି ମଧ୍ୟ ମଣିଷର ବ୍ୟକ୍ତିଗତ ନାନା ସମସ୍ୟା ନେଇ ବିବ୍ରତ ରହିବାର କାରଣ କ'ଣ ?**

**ଶ୍ରୀଶ୍ରୀଠାକୁର** – ବେଶୀଭାଗ ମଣିଷ ମୁଣ୍ଡ ଖଟେଇବାକୁ ଚାହାଁନ୍ତି ନାହିଁ। ଅଳ୍ପରେହିଁ ଘାବରି ଯାଆନ୍ତି। ସେଇଥିପାଇଁ ଏତେ ବିବ୍ରତ ହୋଇପଡ଼ନ୍ତି। ନିଜକୁ ନେଇ ବିବ୍ରତ ରହେ ବୋଲି obsession (ଅଭିଭୂତି)ର ମଧ୍ୟରେ ପଡ଼ିଯାଏ। ଇଷ୍ଟଧନ୍ଦା ବା ପରିବେଶର ଭଲ କରିବାର ଧନ୍ଦା ଯଦି ନିଜର ଧନ୍ଦା ଠାରୁ ପ୍ରବଳ ନ ହୁଏ, ତା'ହେଲେ କିନ୍ତୁ ଏହି obsession (ଅଭିଭୂତି) କାଟେ ନାହିଁ। ଆ.ପ୍ର. ୭/୨୦.୪.୧୯୪୬

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ବିଶେଷ ଅନୁଗ୍ରହ ବୋଲି କ'ଣ କିଛି ନାହିଁକି ?**

**ଶ୍ରୀଶ୍ରୀଠାକୁର** – Adherence that thrives one into earnest responsive fulfilling mission for the Ideal is special favour (ଯେଉଁ ନିଷ୍ଠା ମଣିଷକୁ ଆଗ୍ରହ ଦୀପ୍ତଇଷ୍ଟାର୍ଥପୂରଣୀ କର୍ମସାଧନାରେ ନନ୍ଦିତ କରିତୋଳେ, ତାହାହିଁ ବିଶେଷ ଅନୁଗ୍ରହ)। ଏହାଛଡ଼ା special favour (ବିଶେଷ ଅନୁଗ୍ରହ) ବୋଲି କିଛି ନାହିଁ। ଆଲୋକ ବା ଉତ୍ତାପର

ପାଖକୁ ଆସି ଯିଏ ଯେପରି ଗରମ ହୁଏ, ସେହିଟି ତାର speciality (ବିଶେଷତ୍ୱ ବା ବୈଶିଷ୍ଟ୍ୟ)। ଆଲୋକ ବା ଉତ୍ତାପର କୌଣସି ପକ୍ଷପାତିତ୍ୱ ନାହିଁ। ସେ ଏକ-ଭାବରେ ତାପ ବିକିରଣ କରିଥାଏ। ଯିଏ ଯେପରି ପାରେ ସେ ସେପରି ନିଏ। Mercy (ଭଗବତ୍ ଅନୁଗ୍ରହ) ମଧ୍ୟ ସେହିପରି ever blissful to all (ସମସ୍ତଙ୍କ ପ୍ରତି ସଦାନନ୍ଦ), ଯାହାର ଯେପରି କ୍ଷମତା, ସେ ସେହିପରି ଆହରଣ କରିଥାଏ। ଆ.ପ୍ର. ୭/୩.୫.୧୯୪୬

**ପ୍ର. – ଇଷ୍ଟାନୁସରଣ ଓ ଇଷ୍ଟକର୍ମ କରିବା ପାଇଁ କିପରି ମନୋଭାବ ଦରକାର? ତାହାଦ୍ୱାରା କ'ଣ ମଣିଷର କର୍ତ୍ତବ୍ୟର ହାନି ହୁଏ ନାହିଁ?**

**ଶ୍ରୀଶ୍ରୀଠାକୁର** – ଯେତେ ଯାହା କର, ନିରାଶୀ-ନିର୍ମମ ନ ହେଲେ ପରମପିତାଙ୍କର କାର୍ଯ୍ୟ କରିପାରିବ ନାହିଁ। ସ୍ୱାର୍ଥସନ୍ଧିତ୍ସୁ ହୋଇ ଯାହା କରିବାକୁ ଯିବ, ତାହା ଭଙ୍ଗୁର ହେବ। ପରେ ଅବଶୋଷ ଆସିବ। ମନେ-ମନେ ଭାବିବ, ଇଷ୍ଟକର୍ମ କରିବାର ବୋଧହୁଏ ଏହିପରି ଫଳ। ମୁଁ କହୁଛି – ଠିକ୍-ଠିକ୍ attitude (ମନୋଭାବ) ନେଇ ଇଷ୍ଟକର୍ମ କରିଲେ ସେଥିରେ କେବେବି ଭଲଛଡ଼ା ମନ୍ଦ ହୁଏନାହିଁ। ଏବଂ ଆପାତତଃ ମନ୍ଦ କିଛି ଘଟିଲେ ମଧ୍ୟ ଏହି ମନ୍ଦ ବୃହତ୍ତର ଶୁଭ ପରିଣତିର ପଥହିଁ ପ୍ରଶସ୍ତ କରେ।

ଆଉ, କର୍ତ୍ତବ୍ୟ ପୁଣି କ'ଣ? ଭଲପାଇବା ଯେଉଁଠାରେ, ସେହିଠାରେହିଁ କର୍ତ୍ତବ୍ୟ। ଠାକୁରଙ୍କୁ ବାଦ ଦେଇ ଯାହା-କିଛି create (ସୃଷ୍ଟି) କରିବ ବା ରକ୍ଷା କରିବାକୁ ଯିବ, ତାହା ଟେକିବ ନାହିଁ। ତାଙ୍କ ପାଇଁ ତୁମର ବିଶ୍ୱବ୍ରହ୍ମାଣ୍ଡ ଗଲେ ମଧ୍ୟ କିଛି ପରୱାୟ ନାହିଁ। ଯିଏ ରହିଲେ, ସବୁହିଁରହେ, ସମସ୍ତେ ରହନ୍ତି, ଯେ କୌଣସି ପ୍ରକାରେ ଆଗେ ତାଙ୍କୁ ରକ୍ଷା କର। ତାଙ୍କୁ ignore (ଉପେକ୍ଷା) କରି ଯାହା କରିବାକୁ ଯିବ, ତାହାଦ୍ୱାରା ଧ୍ୱଂସ ଅନିବାର୍ଯ୍ୟ ହୋଇଉଠିବ। ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି, 'ମୁଁ ସେମାନଙ୍କୁ ମାରି ସାରିଛି', ଅର୍ଥାତ୍ ଏହିପରି ଚଳଣୀରେ ଯେଉଁମାନେ ଚାଲିଛନ୍ତି ସେମାନେ ମୃତ୍ୟୁର ଦିଗକୁ ଆଗେଇ ଚାଲିଛନ୍ତି। ତାଙ୍କ ସହିତ ସଂଗତି ରଖି ଚାଲିବାକୁ ଯାଇ ଯାହା-ଯାହା କରଣୀୟ ସେ-ସବୁହିଁ କରିବାକୁ ହେବ, ଆଉ ସେହି କର୍ତ୍ତବ୍ୟହିଁ ଆମ୍ଭମାନଙ୍କୁ ଆବଦ୍ଧ ନ କରି ସବୁ ରକମର ଅଭିଭୂତିଠାରୁ ମୁକ୍ତ କରିଚୋଲିବ। ଆଉ, ସେଥିରେ କଲ୍ୟାଣକର କୌଣସି କରଣୀୟହିଁ ବାଦ୍ ପଡ଼ିବ ନାହିଁ, ବରଂ କରଣୀୟର ପରିଧି ବଢ଼ିଯିବ। କାରଣ, ସାଧାରଣତଃ ଜୀବନର କେନ୍ଦ୍ରରେ ଅହଂ ଥାଏ। କିନ୍ତୁ ଏବେ ଜୀବନର କେନ୍ଦ୍ର ହୋଇଛନ୍ତି ଇଷ୍ଟ। ଇଷ୍ଟଙ୍କୁ ନେଇ ଯେଉଁ-ଜୀବନ, ଇଷ୍ଟଙ୍କୁ ନେଇ ଯେଉଁ-ସଂସାର ତାହା ସଂକୀର୍ଣ୍ଣ ସଂସାରଠାରୁ ଅନେକ ବଡ଼ ସଂସାର। ସେହି ବଡ଼ ସଂସାର ଆଡ଼କୁହିଁ ଭଗବାନ ଆମକୁ ଟାଣନ୍ତି। ତାଦ୍ୱାରା ଆମ୍ଭମାନଙ୍କର ଛୋଟ ସଂସାର ନଷ୍ଟ ହୁଏ ନାହିଁ, ଭାସିଯାଏ ନାହିଁ, ବରଂ ଉଜ୍ଜ୍ୱଳ ହୋଇଉଠେ। ଆ.ପ୍ର. ୮/୧୯.୫.୧୯୪୬



**ପ୍ର. – ଇଷ୍ଟଙ୍କର ଅବର୍ତ୍ତମାନରେ ଯାହାଙ୍କୁ ଗ୍ରହଣ ବା ଅବଲମ୍ବନ କରି ମଣିଷ ଇଷ୍ଟାନୁସରଣରେ ତତ୍ପର ରହିବ, ତାଙ୍କ ପ୍ରତି ଯଦି ବେଶି ଆସକ୍ତ ହୋଇଉଠେ?**

**ଶ୍ରୀଶ୍ରୀଠାକୁର** – ତୁମ ଜୀବନରେ ଇଷ୍ଟଙ୍କୁ ବାଦ ଦେଇ ତୁମେ ଯାହାଙ୍କୁହିଁ ବଡ଼ କରି ଚୋଳିବ, ସେହି attachmentହିଁ (ଆସକ୍ତିହିଁ) ତୁମକୁ smash (ଧ୍ୱଂସ) କରିଦେବ। ଆଉ, ସିଏ ଯଦି ନ ଥାନ୍ତି, ଏହି loss (ବିୟୋଗ) ତୁମ ବକ୍ଷରେ ବଜ୍ର ପରି ଲାଗିବ। ତୁମ ଜୀବନରେ ଏପରି କେହି ରହିବେ ନାହିଁ, ଯାହାଙ୍କୁ ଜାବୁଡ଼ି ଧରି ତୁମେ ସେହି ଶୋକ ସମ୍ଭାଳି ନେଇପାରିବ। ଏକ-କଥାରେ ଇଷ୍ଟଙ୍କୁ ଗୌଣ କରି ଅନ୍ୟ କିଛିକୁ ଯଦି ମୁଖ୍ୟ କରି ଚାଲ, ତେବେ ମନ୍ଦ ପରିଣତି ଅକାଟ୍ୟ। କୌଣସି କର୍ତ୍ତବ୍ୟହିଁ ତୁମକୁ ଅଟକାଇ ପାରିବ ନାହିଁ। କିଛି ପ୍ରକାରେ ବି ତୁମେ ରିହାଇ ପାଇବ ନାହିଁ। ଆ.ପ୍ର. ୮/୧୯.୫.୧୯୪୬

**ପ୍ର. – ଇଷ୍ଟାନୁସରଣ ଓ ଇଷ୍ଟକର୍ମର ଯେଉଁ ନିରାଶୀ-ନିର୍ମମ ଜୀବନ, ସେଠାରେ କ'ଣ ମାୟାମମତାର କୌଣସି ସ୍ଥାନ ନାହିଁ?**

**ଶ୍ରୀଶ୍ରୀଠାକୁର** – ଯଥେଷ୍ଟ ଅଛି, କିନ୍ତୁ ସେ ମାୟା economical (ସାଶ୍ରୟୀ) ମାୟା। ଏହି ମାୟା ଆମ୍ଭମାନଙ୍କୁ ନିରାଶ୍ରୟ କରେ ନାହିଁ। ଜୀବନ ଯେତେହିଁ ବଢ଼ିଚାଲୁ, ଏହି-ମାୟା ସେହି ବୃଦ୍ଧିର ପଥରେ ସହାୟ ବ୍ୟତୀତ ଅନ୍ତରାୟ ହୁଏ ନାହିଁ। ଇଷ୍ଟ ଯେ ଅସୀମରହିଁ ସୀମାୟିତ ବ୍ୟକ୍ତ ପ୍ରତୀକ। ସେଥିପାଇଁ ତାଙ୍କ ପ୍ରତି ମମତା ମଣିଷକୁ କେତେବେଳେ ବି ସଂକୀର୍ଣ୍ଣ କରେ ନାହିଁ, ବିସ୍ତାରମୁଖୀ କରିଚୋଲେ। ଗୀତାରେ ଅଛି –

ଦୈବୀ ହେଷ୍ୟା ଗୁଣମୟୀ ମମ ମାୟା ଦୂରତ୍ୟୟା
ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ।

ଏତେ ସହଜ, ଏତେ ସରଳ, ଏତେ ସୁନ୍ଦର, ଏହା ମଧ୍ୟରେ କୌଣସି 'କିନ୍ତୁ' ନାହିଁ। ପ୍ରବୃତ୍ତି ଆଡ଼କୁ ଗଲେହିଁ ଯେତେ 'କିନ୍ତୁ', ଯେତେ ଗୋଳମାଳ।

ଆ.ପ୍ର. ୮/୧୯.୫.୧୯୪୬

**ପ୍ର. – ଇଷ୍ଟାନୁସରଣ ଓ ଇଷ୍ଟକର୍ମର ଅନ୍ତରାୟଗୁଡ଼ିକ କେତେବେଳେ ଅତିକ୍ରମ କରାଯାଏ ନାହିଁ? ସେତେବେଳେ କରଣୀୟ କ'ଣ?**

**ଶ୍ରୀଶ୍ରୀଠାକୁର** – ଅନ୍ତରାୟ ସର୍ବତ୍ର। ଅତିକ୍ରମ କରି ନ ପାରିବା ମାନେ ଏତେ ଟିକିଏ urge (ଆକୂତି) ନାହିଁ, ଯାହାଦ୍ୱାରା sufferings (ଦୁଃଖ-କଷ୍ଟ) laudable (ପ୍ରଶଂସନୀୟ) ହୋଇ ଉଠେ। Urge (ଆକୂତି ବା ଆବେଗ) ରହିଲେ ମଣିଷ sufferingsର (ଦୁଃଖକଷ୍ଟର) ଭିତରେ ପଡ଼ି ଘାବରି ନ ଯାଇ ଆହୁରି keen (ତୀବ୍ର) ହୋଇ ଉଠେ। ...ଅସଲ ମାଲହିଁ

ହେଲା adherence (ଅନୁରାଗ), ଏହା ମଣିଷକୁ ଆକାଶର ମଣିଷ କରିଦିଏ, ଏହାହିଁ ମଣିଷକୁ ପାତାଳକୁ ଟାଣି ଆଣେ। ...ଆମେମାନେ ଏବେ ବକ୍ତୃତା କରୁ, କିନ୍ତୁ surrender (ଆତ୍ମସମର୍ପଣ) ବିଷୟରେ –

'ମୟି ସର୍ବାଣି କର୍ମାଣି ସଂନ୍ୟସ୍ୟାଧ୍ୟାତ୍ମଚେତସା
ନିରାଶୀର୍ନିର୍ମମୋ ଭୂତ୍ୱା ଯୁଧ୍ୟସ୍ୱ ବିଗତଜ୍ୱରଃ।

ଏହି ଶ୍ଳୋକରେ ଯାହା କୁହାଯାଇଛି, ତାହା ଏକବାରେ complete (ସମ୍ପୂର୍ଣ୍ଣ)। ବିଗତଜ୍ୱର ହୋଇ ଚୁପ୍‌ଚାପ୍ ବସି ରହିଲେ ଚଳିବ ନାହିଁ। ସଂଗ୍ରାମ କରିବାକୁ ପଡ଼ିବ, ଅର୍ଥାତ୍ ବାଧା ବିଘ୍ନକୁ ଜୟ କରିବାକୁ ପଡ଼ିବ। କର୍ମ ମାନେହିଁ ଅନ୍ତରାୟକୁ ଅତିକ୍ରମ କରି ଆଗେଇ ଚାଲିବା। ପ୍ରବୃତ୍ତି ଜନିତ କର୍ମରେ ପରିବେଶର ଗୋଟିଏ ସମର୍ଥନ ଥାଏ, ଶୟତାନ ସେଠାରେ ବାଧା ହୋଇ ଛିଡା ହୁଏ ନାହିଁ। କିନ୍ତୁ ଇଷ୍ଟକର୍ମରେ ଶାତନଶକ୍ତି ପ୍ରମାଦ ଗଣେ ଏବଂ ପ୍ରାଣପଣେ ବାଧା ସୃଷ୍ଟି କରେ। ଅବଶ୍ୟ ପ୍ରବୃତ୍ତି-କର୍ମ ଶେଷ ପର୍ଯ୍ୟନ୍ତ ନିଜର ଜାଲରେ ନିଜେହିଁ ଜଡ଼ାଇ ପଡ଼େ। (ରେଶମପୋକ) ବା ଗୁଟିପୋକ ଯେପରି ନିଜର ମୁହଁର ଲାଳ ଦେଇ ନିଜର ଦେହର ଚାରିଦିଗରେ ଖୋଳପା (ଗୁଟି) ତିଆରି କରି ଶେଷରେ ସେହି ଗୁଟି (ଖୋଳପା) ମଧ୍ୟରେହିଁ ଅଟକି ଯାଏ, ତାହା କାଟି ବାହାରି ଆସିପାରେ ନାହିଁ। ପରେ ସ୍ୱକୃତ କର୍ମଫଳ ଯୋଗୁଁ ପ୍ରାଣ ହରାଏ। ତାର ପ୍ରତିଦିନର କାର୍ଯ୍ୟର ଅର୍ଥ ନିରଳସ ଚେଷ୍ଟାରେ ନିଜର ମାରଣ ଯଜ୍ଞରେ ଆହୁତି ଦାନ କରିବା। ପ୍ରବୃତ୍ତି ମୋହିତ କର୍ମର ପରିଣତିହିଁ ଏହିପରି। ସେଥିପାଇଁ 'ଆଧ୍ୟାତ୍ମଚେତସା' ଅର୍ଥାତ୍ ଇଷ୍ଟଙ୍କୁ ଅଧିକାର ବା ଅବଲମ୍ବନ କରି ତୁମର ବୈଶିଷ୍ଟ୍ୟ ଅନୁଯାୟୀ ଯେଉଁ ଚଳଣୀ ତୁମ ଭିତରେ ଉଚ୍ଚାରିତ ହୋଇଉଠେ, ତାଙ୍କରି ସଜାଗ ସମ୍ବେଦନୀ ଚେତନାର ସହିତ କର୍ମ କରିବାକୁ ହୁଏ।

ଆ.ପ୍ର. ୮/୧୯.୫.୧୯୪୬

**ପ୍ର. – ଇଷ୍ଟାନୁସରଣ ଓ ଇଷ୍ଟକର୍ମର କରଣୀୟ ତୁଳନାରେ ମଣିଷ ତ ନିତ୍ୟାନ୍ତ କ୍ଷୁଦ୍ର ଜୀବ, ତାର ଶକ୍ତି ମଧ୍ୟ ସୀମାବଦ୍ଧ। ଏପରି ଅବସ୍ଥାରେ କିପରି କ'ଣ ହେବ ?**

**ଶ୍ରୀଶ୍ରୀଠାକୁର** – ଅଭୟ ହସ୍ତ ଉତ୍ତୋଳନ କରି ଉଦାତ୍ତ କଣ୍ଠରେ କହିଲେ – ତୁମେ କ୍ଷୁଦ୍ର ହୋଇପାର କିନ୍ତୁ ତୁମେ ହେଲ ଅଗ୍ନିସ୍ଫୁଲିଙ୍ଗ। ଗୋଟିଏ ଅଗ୍ନିସ୍ଫୁଲିଙ୍ଗ ସମସ୍ତ ଜଗତଟାକୁ ପୋଡ଼ି ଦେଇପାରେ। ତାଙ୍କରହିଁ ତୁମେ। ତାଙ୍କର କାମ ଯଦି କରିବାକୁ ଚାହଁ, ତାଙ୍କ ଶକ୍ତିର ଯୋଗାଣ ତୁମେ ପାଇବ। କୌଣସି ଦିନ ତୁମର ଶକ୍ତିର ଅଭାବ ହେବନାହିଁ। ଅବଶ୍ୟ ଯଦି ଯୋଗସୂତ୍ର ଛିନ୍ନ ନ କର। ନିଜକୁ ଦୁର୍ବଳ ଭାବିବା ମାନେ ତାଙ୍କୁ ଅସ୍ୱୀକାର କରିବା। ତାଙ୍କୁ ଅସ୍ୱୀକାର କର ନାହିଁ –



'ମୋତେ ଈଶ୍ୱର ଭାବି ଆପଣାକୁ ହୀନ,
ତାର ପ୍ରେମରେ କେବେବି ମୁଁ ନୁହଁଇ ଅଧୀନ।'

ମୁଁ ଯଦି ପ୍ରିୟପରମଙ୍କୁ ଈଶ୍ୱର ଭାବେ, ଏବଂ ସେ ଯଦି ଶକ୍ତିସ୍ୱରୂପ ହୁଅନ୍ତି, ତେବେ ମୁଁ ମଧ୍ୟ ତାଙ୍କର ସନ୍ତାନ ହିସାବରେ ତାଙ୍କ ଶକ୍ତିର ଉତ୍ତରାଧିକାରୀ। ସେଥିପାଇଁ ନିଜକୁ ହୀନ ଭାବିବାର ଅଧିକାର ଆମର ନାହିଁ। ସେଥିରେ ପରମପିତା ଖୁସି ହୁଅନ୍ତି ନାହିଁ। ...ତାଙ୍କଠାରେ ଅଚ୍ୟୁତ ଅନୁରାଗ ରହିଲେ ଶକ୍ତିର ହ୍ରାସ କେବେବି ହୁଏ ନାହିଁ। ତାଙ୍କୁ ଭଲପାଇବା ମାନେ ତାଙ୍କର ସେବାରେ ନିଜର ସର୍ବଶକ୍ତି ନିୟୋଜିତ କରିବା। ତୁମର ପ୍ରତ୍ୟେକଟି ପ୍ରବୃତ୍ତି ଯଦି ତାଙ୍କର ସେବାରେ ନିୟୋଜିତ କର, ସେତେବେଳେ ସେଗୁଡ଼ିକ ତୁମର ଅନ୍ତରାୟ ନ ହୋଇ ସହାୟ ହୋଇଉଠିବ।

ଆ.ପ୍ର. ୮/୧୯.୫.୧୯୪୬

**ପ୍ର. – ଇଷ୍ଟାନୁରାଗ ଯେ ଅଛି ତାହା କ'ଣ ଦେଖି ବୁଝାଯିବ ?**

**ଶ୍ରୀଶ୍ରୀଠାକୁର** – କାହାର କେତେଟା ଇଷ୍ଟାନୁରାଗ ଅଛି ତାର କିନ୍ତୁ ଗୋଟିଏ ପରଖ ହେଲା – ପ୍ରବୃତ୍ତିଗୁଡ଼ିକ କେତେଟା ତା' ହାତରେ ଅଛି। ଇଷ୍ଟଙ୍କ ହାତରେ ଯିଏ ଥାଏ, ପ୍ରବୃତ୍ତିଗୁଡ଼ିକ ତା' ହାତରେ ରହେ। ଯିଏ ଯେତେଟା ପ୍ରବୃତ୍ତି ହାତରେ ଥାଏ, ସେ ସେତେଟା ଇଷ୍ଟଙ୍କର ହାତର ବାହାରେ ଥାଏ। ସେଥିପାଇଁ ଅନିଷ୍ଟ ଅର୍ଥାତ୍ କ୍ଷୟ ଓ କ୍ଷତି ତାର ଜୀବନରେ ଅନିବାର୍ଯ୍ୟ ହୋଇଉଠେ।

ଆ.ପ୍ର. ୮/୧୯.୫.୧୯୪୬

**ପ୍ର. – ଇଷ୍ଟାନୁସରଣରେ ତାଙ୍କ ପ୍ରତି ଭକ୍ତିର ଭାବଟା କିପରି ରହିବା ଦରକାର ?**

**ଶ୍ରୀଶ୍ରୀଠାକୁର** – 'ଏକ ଭକ୍ତିର୍ବିଶିଷ୍ୟତେ' – ଏହାଠାରୁ ଚ୍ୟୁତ ହେଲେହିଁ ତୁମ ଜୀବନର ବିଶୁଦ୍ଧି ବ୍ୟାହତ ହେଲା, ତୁମର ଚାରିତ୍ରିକ ଜଲୁସ୍ (ଔଜ୍ଜଲ୍ୟ) ଓ କୌଳିନ୍ୟ ନଷ୍ଟ ହୋଇଗଲା, ତୁମର ଭକ୍ତି ବ୍ୟଭିଚାରୀ ହୋଇପଡ଼ିଲା। ଦରକାର unit-centric love (କେନ୍ଦ୍ରାନୁଗ ଟାଣ ବା ଏକ କେନ୍ଦ୍ରିକ ଅନୁରାଗ) – only love for the Ideal (ଏକମାତ୍ର ଆଦର୍ଶ ବା ଇଷ୍ଟଙ୍କ ପାଇଁ ଦରକାର ନିର୍ଦ୍ଧ୍ୱେଧ ଅଖଣ୍ଡ ଅନୁରାଗ)। ଆଜି ଏହା ଉପରେ, କାଲି ତା' ଉପରେ ଏପରି ବହୁନୈଷ୍ଠିକ ରକମ ନୁହେଁ।

ଆ.ପ୍ର. ୮/୧୯.୫.୧୯୪୬

**ପ୍ର. – ଇଷ୍ଟାନୁସରଣରେ ଅତୁଟ ଭାବରେ ଚାଲିବାକୁ ଗଲେ ପରିବାର-ପାରିପାର୍ଶିକଙ୍କ ସହିତ ସମୟ ସମୟରେ ଏପରି ସଂଘାତର ସୃଷ୍ଟି ହୁଏ ଯେ ଇଷ୍ଟଙ୍କୁ ନେଇ ଚାଲିବା କଠିନ ହୋଇପଡ଼େ। ଏପରି ଅବସ୍ଥାରେ କ'ଣ କରିବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – ଆଦର୍ଶଙ୍କୁ (ଇଷ୍ଟଙ୍କୁ) ନେଇ ଆପୋଷରଫାହୀନ ଚଳନରେ ଚାଲିବାକୁ ଗଲେ ପାରିପାର୍ଶିକଙ୍କ ପାଖରୁ ଅନେକ ରକମର ସଂଘାତ ଆସିପାରେ, କିନ୍ତୁ ତା ବୋଲି

ସେଠାରେ ଆପୋଷରଫା କରିଲେ ଚଳିବ ନାହିଁ, ସେଥିପାଇଁ ଭଗବାନ ଯିଶୁ କହିଛନ୍ତି – 'ମୁଁ ଶାନ୍ତି ଦେବାକୁ ଆସି ନାହିଁ, ମୁଁ ଅଟୁଟ ନିଷ୍ଠାର ତରବାରୀ ନେଇ ଆସିଛି। ମୁଁ ପିତାକୁ ପୁତ୍ର ବିରୁଦ୍ଧରେ, ପୁତ୍ରକୁ ପିତା ବିରୁଦ୍ଧରେ, ସ୍ୱାମୀକୁ ସ୍ତ୍ରୀ ବିରୁଦ୍ଧରେ, ସ୍ତ୍ରୀକୁ ସ୍ୱାମୀ ବିରୁଦ୍ଧରେ ନିୟୋଜିତ କରି ଏକମାତ୍ର ଧର୍ମ ପ୍ରତି ସେମାନଙ୍କର ଅଖଣ୍ଡ ନିଷ୍ଠାକୁ ଉଦ୍‌ବୁଦ୍ଧ କରିବା ପାଇଁ ଆସିଅଛି।' ତାଙ୍କ କଥାର ମର୍ମ ଏହା ଯେ, ଆଦର୍ଶ (ଇଷ୍ଟ) ଓ ଧର୍ମକୁ ବିସର୍ଜନ ଦେଇ କୌଣସି ଜାଗତିକ ସମ୍ପର୍କକୁ ପ୍ରାଧାନ୍ୟ ଦେଲେ, ପରମପିତାଙ୍କ ସହିତ ଆମ୍ଭମାନଙ୍କର ସମ୍ପର୍କ କ୍ଷୁର୍ଣ୍ଣ ହେବ। ଆଉ ସେଥିରେ ମହତୀ ବିନଷ୍ଟି। ଏହା ଅପେକ୍ଷା ଆପାତ-ବିରୋଧର ଭିତର ଦେଇ ମଧ୍ୟ ଯଦି ଆମ୍ଭମାନଙ୍କର ସ୍ନେହ-ମମତା ଆଦର୍ଶାନୁଗ (ଇଷ୍ଟାନୁଗ) ସଂଗତି ଲାଭ କରେ, ତାର ମୂଲ୍ୟ ଢ଼େର ବେଶୀ। କାରଣ ଏହିପରି ସ୍ନେହ-ମମତାହିଁ ଆମମାନଙ୍କ ଅସ୍ତିତ୍ୱର ପରିପୋଷଣୀ। ସେଥିପାଇଁ, ଇଷ୍ଟଙ୍କ ପଥରେ ଅଟୁଟ ଭାବରେ ଚାଲିବାକୁ ହେଲେ ପ୍ରଥମରେ ଯେ ଅନିବାର୍ଯ୍ୟ ଦୁଃଖର ଆବିର୍ଭାବ ହୁଏ, ତାକୁ ଏଡ଼ାଇ ଚାଲିବାକୁ ଗଲେ ହେବ ନାହିଁ। ଏହି ଦୁଃଖର ନଦୀ ଅତିକ୍ରମ କରିହିଁ ଶାନ୍ତି ଓ ମହତ-ପ୍ରାପ୍ତିର ରାଜ୍ୟରେ ପହଞ୍ଚିବାକୁ ହୁଏ। ଯିଶୁ ପିତରକୁ ବଡ଼ ଚମତ୍କାର ଭାବରେ କହିଛନ୍ତି – ତୁମେ ମୋ ପାଇଁ କିଛି କରିଛ କି ନାହିଁ, ମୋ ପାଇଁ କୌଣସି ତ୍ୟାଗ ସ୍ୱୀକାର କରିଛ କି ନାହିଁ, ତାର ପରଖ ଏହି ଯେ, ତୁମେ ମୋ ପାଇଁ ଯାହା କରିଛ ବା ମୋତେ ଯାହା ଦେଇଛ ତା'ର ଶତଗୁଣ ପାଇଛ କି ନାହିଁ। କାରଣ, persecution (ନିର୍ଯ୍ୟାତନ) ଓ perseverance (ଅଧ୍ୟବସାୟ)ର ଭିତର ଦେଇ କେହି ଯଦି ଇଷ୍ଟଙ୍କୁ ଠିକ୍-ଠିକ୍ ଅନୁସରଣ କରି ଚାଲେ, ତେବେ field (କ୍ଷେତ୍ର, ପରିସ୍ଥିତି) ସେ gain (ଜୟ) କରିବହିଁ ଏବଂ ତାର mastery (ଆଧିପତ୍ୟ) automatically (ଆପେ ଆପେ) ଆସିବହିଁ। ଏହି ପରିଣତି ଦେଖିହିଁ ବୁଝାଯିବ, କାହାର ଚଳଣୀ କେତେଟା ଅଭ୍ରାନ୍ତ ପଥରେ ଚାଲିଛି। ଏହି ପାଇବା ଫାଙ୍କିବାଜି ବା ମିଛ କଥା ନୁହେଁ। ଚରିତ୍ରହିଁ ଏପରି ହୋଇ ଉଠେ ଯେ, ନ ଚାହିଁଲେ ମଧ୍ୟ ପାଇବା ହୁଏ। ଲୋଭର ତାଗିଦ୍‌ରେ ଯେଉଁମାନେ ଇଷ୍ଟଙ୍କୁ ଧରନ୍ତି, ଆତ୍ମନିୟନ୍ତ୍ରଣର ଧାର ଯେଉଁମାନେ ଧାରନ୍ତି ନାହିଁ, ସେମାନଙ୍କର କିନ୍ତୁ କିଛି ବି ଲାଭ ହୁଏନା। ....ଗୀତାରେ ପୁଣି ଅଛି – 'ସର୍ବାରମ୍ଭ ପରିତ୍ୟାଗୀ ଯୋ ମଦ୍‌ଭକ୍ତଃ ସ ମେ ପ୍ରିୟଃ।' ଅର୍ଥାତ୍, ମୋର ସୁଖ ଚାହିଁ ଯିଏ ତାର ପ୍ରବୃତ୍ତି-ପ୍ରରୋଚିତ ପ୍ରତିଟି ଇଚ୍ଛା, ଉଦ୍ଦେଶ୍ୟ, ସଂକଳ୍ପ ଓ କର୍ମ ହସହସ ମୁହଁରେ ବିସର୍ଜନ ଦେଇ ଏକମାତ୍ର ମୋର ଇଚ୍ଛା ଓ ଉଦ୍ଦେଶ୍ୟ ପୂରଣରେ ଉଦଗ୍ର ହୋଇଉଠେ, ସେ ମୋର ବିଶେଷ ପ୍ରିୟ। ଏପରି ନହେଲେ ହୁଏ ନାହିଁ। ବେପରୁଆ ନହେଲେ କାର୍ଯ୍ୟ ହୁଏ ନାହିଁ। ଶ୍ୟାମ ଓ କୁଳ ଦୁଇଟିକୁହିଁ ଯଦି ତୁଲ୍ୟ ମୂଲ୍ୟର ବୋଲି ମନେ କର, ସେଥିରେ ଶ୍ୟାମ ତ ରହିବେ ନାହିଁ, କୁଳ ମଧ୍ୟ ରହିବ ନାହିଁ। ଶ୍ୟାମଙ୍କ ପାଇଁ ସବୁ ହେବା ଦରକାର। ଶ୍ୟାମର ସହିତ କୌଣସି ସଙ୍ଗତି ନାହିଁ, ଏପରି କୌଣସି ଆକାଂକ୍ଷା ଯଦି ଆମେ ପୋଷଣ କରୁ, then that desire will make us dislocated from the principle (ସେତେବେଳେ ସେହି ଆକାଂକ୍ଷା ଆମମାନଙ୍କୁ ଶ୍ୟାମଙ୍କପାଖରୁ ଚ୍ୟୁତ କରିବ।)



ଆ.ପ୍ର. ୮/୧୯.୫.୧୯୪୬

**ପ୍ର. – ଇଷ୍ଟାନୁସରଣର ସୁବିଧା ପାଇଁ ଇଷ୍ଟ ମଧ୍ୟ କ'ଣ ଆମମାନଙ୍କୁ ଭଲପାଇ ତାଙ୍କ ଆଡ଼କୁ ଟାଣି ରଖି ପାରନ୍ତି ନାହିଁ ?**

**ଶ୍ରୀଶ୍ରୀଠାକୁର** – ମୁଁ ତୁମକୁ ଲକ୍ଷେ ଭଲପାଏ, କିନ୍ତୁ ତୁମେ ଯଦି ମୋତେ ଭଲ ନ ପାଅ, ତାହେଲେ ମୋର ଭଲପାଇବା feel (ଅନୁଭବ) କରିପାରିବ ନାହିଁ। ମୋର ଭଲ-ପାଇବାଟା ପ୍ରଶ୍ନ ନୁହେଁ, ତାହା ଅଛିହିଁ। ତୁମ୍ଭମାନଙ୍କ ତରଫରୁ ଯାହା କରିବାର ତାହା କରିଗଲେହିଁ ହୁଏ। ବାପା-ମା'ଙ୍କୁ ଏକଥା କହିବାକୁ ହୁଏ ନାହିଁ ଯେ ତୁମ୍ଭେମାନେ ସନ୍ତାନକୁ ଭଲପାଅ। ସେ ଭଲପାଇବା ସେମାନଙ୍କର ସତ୍ତାଗତ। ଏହି ଭଲପାଇବାଟା ସେମାନେହିଁ ଠିକ୍-ଠିକ୍ ଅନୁଭବ ଓ ଉପଭୋଗ କରିପାରନ୍ତି ଯେଉଁମାନଙ୍କର ବାପା-ମା'ଙ୍କ ପ୍ରତି ଅକାଟ୍ୟ ଟାଣ ଅଛି, ସେମାନଙ୍କୁ ଖୁସି କରିବାର ସକ୍ରିୟ ଆଗ୍ରହ ଅଛି। ଆମ୍ଭମାନଙ୍କ ଜୀବନରେ ଯାହା-କିଛି ଇଷ୍ଟଙ୍କର ପ୍ରୀତି ପାଇଁ ଉତ୍ସର୍ଗୀକୃତ ନୁହେଁ, ଆତ୍ମପ୍ରୀତିକାମ ଯାହା-କିଛି ତାହାହିଁ ଅନର୍ଥ ଘଟାଇଥାଏ। ଇଷ୍ଟ-ପ୍ରୀତି-ମୁଖର କର୍ମ ଓ ଚିନ୍ତାହିଁ ଧର୍ମ, ଆଉ ସବୁ ଭୂତର ବେଗାରି ଖଟିବା। କୁମାରନାଥଙ୍କ ଗୀତାରେ ଅଛି –

> 'ଈଶ୍ୱରଙ୍କର ପ୍ରୀତି ଆଉ ଆରାଧନା ପାଇଁ
> ଯେ ସକଳ କର୍ମ ନର ଅନୁଷ୍ଠାନ କରଇ,
> ତାହା ଭିନ୍ନ ଅନ୍ୟ କର୍ମେ ବନ୍ଧନ ନିଶ୍ଚୟ
> ଈଶ୍ୱରଙ୍କ ପାଇଁ କର୍ମ କର ଧନଞ୍ଜୟ।'

ଆ.ପ୍ର. ୮/୧୯.୫.୧୯୪୬

**ପ୍ର. – ଇଷ୍ଟାନୁସରଣରେ ପ୍ରକୃତ ଧ୍ୟାନ କ'ଣ ? ସବୁସମୟ ଧ୍ୟାନପରାୟଣ ହୋଇ ନ ରହିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – କଥା, ଚାଲିଚଳନ, କାମ-ଦାମ, ଭାବ, ରକମ-ସକମ, ସବୁଟିର ଭିତର ଦେଇ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନଚାର ସୂତ୍ରକୁ ଅଛିନ୍ନ ରଖିବାର ପ୍ରୟାସହିଁ real meditation (ପ୍ରକୃତ ଧ୍ୟାନ)। Meditative mood (ଧ୍ୟାନପରାୟଣ ଭାବ) ନ ରହିଲେ କାର୍ଯ୍ୟ-କର୍ମ ମଧ୍ୟରେ, ସଂଘାତ ମଧ୍ୟରେ ଇଷ୍ଟଙ୍କ ସହିତ ଅନୁରାଗ ମୁଖର ଯୋଗସୂତ୍ର ଅବ୍ୟାହତ ରହେ

ନାହିଁ। ଅନୁରାଗ ମୁଖର ସେବା ଓ ସ୍ମରଣ-ମନନର ମାଧ୍ୟମରେ ଇଷ୍ଟଙ୍କ ସହିତ ସର୍ବଦା ଯୁକ୍ତ ରହିବାକୁହିଁ ଭକ୍ତିଯୋଗ କହନ୍ତି। ଖୁଣ୍ଟ ସହିତ ବନ୍ଧା ନ ରହିଲେ କର୍ମ ଆମ୍ଭମାନଙ୍କୁ କେଉଁଠାକୁ ଭସାଇ ନେଇଯିବ ତାର ଠିକ୍ ଅଛି କି ? ଯାହା କହିଲି ସେହିପରି meditation (ଧ୍ୟାନ)ହିଁ ଅଖଣ୍ଡ ବ୍ୟକ୍ତିତ୍ୱ ସୃଷ୍ଟି କରି, ପ୍ରକୃତ ଜ୍ଞାନ ଆଣେ। ସେ literate (ଅକ୍ଷରଜ୍ଞାନ-ସମ୍ପନ୍ନ) ନ ହୋଇ ପାରେ, କିନ୍ତୁ enormously educated (ପ୍ରଭୂତ ଭାବରେ ଶିକ୍ଷିତ) ହୋଇ ଉଠେହିଁ। ଯେତେ କଠିନ ଅବସ୍ଥାହିଁ ଆସୁ ନା କାହିଁକି, ସେ କମ୍ ବିଭ୍ରାନ୍ତ ହୁଏ। ସବୁ ଅବସ୍ଥାରେ ତାର decision (ସିଦ୍ଧାନ୍ତ) sharp (କ୍ଷିପ୍ର) ଓ unblundering (ଅଭ୍ରାନ୍ତ) ହୋଇଉଠେ। ତାହେଲେ ବୁଝି ଦେଖନ୍ତୁ ଜୀବନ-ସଂଗ୍ରାମରେ, କାର୍ଯ୍ୟକ୍ଷେତ୍ରରେ ଏପରି meditationର (ଧ୍ୟାନର) ପ୍ରୟୋଜନ କେତେଟା। ଧ୍ୟାନ-ଜପର ଅନୁଶୀଳନରେ ପ୍ରତିଦିନ ନିୟମିତ ନିର୍ଦ୍ଦିଷ୍ଟ ଭାବରେ ଦୁଇ-ତିନି ଥର ବସିବାକୁ ହୁଏ। ଆଉ, କଥାବାର୍ତ୍ତା କାର୍ଯ୍ୟ-କର୍ମ ମଧ୍ୟରେ ବି ତାର ଗତି ଚଳାଇବାକୁ ହୁଏ। ଜପ ଦ୍ୱାରା brain cell (ମସ୍ତିଷ୍କ କୋଷ) sensitive (ସାଡ଼ାପ୍ରବଣ) ହୁଏ ଏବଂ ଧ୍ୟାନରେ ତାହା receptive (ଧାରଣକ୍ଷମ) ହୁଏ।

ଆ.ପ୍ର.୮/୨୨.୫.୧୯୪୬

**ପ୍ର. – ଇଷ୍ଟାନୁସରଣ ଓ ଇଷ୍ଟଙ୍କ ସେବା ମଧ୍ୟ ଦେଇ କ'ଣ ମଣିଷର ଅର୍ଥନୈତିକ ସମସ୍ୟାର ମଧ୍ୟ ସମାଧାନ ହୋଇପାରେ ?**

**ଶ୍ରୀଶ୍ରୀଠାକୁର** – ପ୍ରତ୍ୟାଶାହୀନ ଅନୁରାଗରେ ପରମପିତାଙ୍କ ସେବାରେ ଯିଏ ନିଜକୁ ନିଃଶେଷରେ ଓ ଉତ୍ସର୍ଗ କରିଦିଏ, ମଣିଷପ୍ରକୃତି ଓ ବିଶ୍ୱପ୍ରକୃତି ତାର ସେବାରେ କୃତାର୍ଥ ହେବାକୁ ଚାହେଁ। ସେଥିପାଇଁ ଅକିଞ୍ଚନ ହୋଇ ମଧ୍ୟ, ତାର କୌଣସି ଅଭାବ ରହେ ନାହିଁ। ଅର୍ଥ ଯେଉଁମାନଙ୍କ ପାଖରେ ମୁଖ୍ୟ, ପରମାର୍ଥ ସେମାନଙ୍କଠାରୁ ଅନେକ ଦୂରରେ। ପରମାର୍ଥ ଅର୍ଥାତ୍ ପରମପିତା ଯାହାଙ୍କ ପାଖରେ ମୁଖ୍ୟ, ଅର୍ଥ ତାଙ୍କର ଦାସାନୁଦାସ। ଯୀଶୁଖ୍ରୀଷ୍ଟ କହିଛନ୍ତି – It is easier for a camel to pass through the eye of a needle than for a rich man to go to heaven (ଗୋଟିଏ ଓଟର ପକ୍ଷେ ଛୁଞ୍ଚର ଛିଦ୍ର ମଧ୍ୟ ଦେଇ ଗଳିଯିବା ବରଂ ସହଜ, କିନ୍ତୁ ଧନୀ ପକ୍ଷରେ ସ୍ୱର୍ଗକୁ ଯିବା କଠିନ। ଧନୀ କହିଲେ ବୁଝିବାକୁ ହେବ ଧନ-ଗର୍ବୀ ଓ ଧନ-ସର୍ବସ୍ୱ। ଯେପରି କରି ଯାହା କରିଲେ ଯାହା ହୁଏ, ତାହା ଯଦି ଠିକ୍ ସେପରି ନ କରୁ, ତା'ହେଲେ ତାହା ହେବ ନାହିଁ। ଗୀତାରେ ଅଛି – 'ଚିକୀର୍ଷୁଃ ଲୋକସଂଗ୍ରହମ୍'। କଷ୍ଟ ପାଇଁ ରାଜି ଥାଇ – ସ୍ୱାର୍ଥସନ୍ଧିତ୍ସୁତା ବିସର୍ଜନ ଦେଇ – ଇଷ୍ଟାର୍ଥେ ଲୋକସଂଗ୍ରହ କରି ଚାଲିବାକୁ ହେବ।

ଆ.ପ୍ର.୮/୨୩.୫.୧୯୪୬



**ପ୍ର. – ଇଷ୍ଟାନୁସରଣ ଓ ଇଷ୍ଟକର୍ମର ଅବିଚ୍ଛେଦ୍ୟ ଅଙ୍ଗହିଁ ଯଦି କଷ୍ଟ ହୁଏ ତେବେ ମଣିଷ ଏ ପଥରେ ଆସିବ କାହିଁକି ?**

**ଶ୍ରୀଶ୍ରୀଠାକୁର** – କଷ୍ଟ ହୋଇପାରେ, ନ ବି ହୋଇପାରେ। କଷ୍ଟ ପାଇଁ ରାଜି ରହିଲେ ତାହା ସହ୍ୟ କରିବା ସେତେ କଷ୍ଟକର ହୁଏ ନାହିଁ। ବାହ୍ୟିକ ଅଭାବ-ଅନାଟନ ଓ କଷ୍ଟ ରହିଲେ ମଧ୍ୟ ମନରେ ସୁଖ ଓ ଆତ୍ମପ୍ରସାଦ ଭରି ରହିଥାଏ। ସେଥିରେ କଷ୍ଟବୋଧ ହୁଏ ନାହିଁ। କଷ୍ଟ ହୁଏ ନିଷ୍ଠା ଓ ଅନୁରାଗର ଅଭାବ ଥାଏ ବୋଲି, ଅନିଚ୍ଛା ଥାଏ ବୋଲି। କାର୍ଯ୍ୟ କରିବାକୁ ଗଲେ ଭିତରର ବାଧା ଗୁଡ଼ିକ ଜୋର କରି overcame (ଅତିକ୍ରମ) କରିବାକୁ ହୁଏ, ସେଥିପାଇଁ କଷ୍ଟ ଲାଗେ। ଇଚ୍ଛା ଓ ଆଗ୍ରହ ଜ୍ୱଳନ୍ତ ହେଲେ, ବାହାରର ବାଧା ଅତିକ୍ରମ କରିବା ପାଇଁ ଯଥେଷ୍ଟ କଷ୍ଟ ହୋଇପାରେ, କିନ୍ତୁ ସେଥିରେ କଷ୍ଟ ମନେ ହୁଏ ନାହିଁ। ଅବଶ୍ୟ ଶରୀର ଭଲ ନ ରହିଲେ ଇଚ୍ଛା ଥିବା ସତ୍ତ୍ୱେ ମଧ୍ୟ କାର୍ଯ୍ୟ କରାଯାଏ ନାହିଁ। ସେଥିରେ ମଧ୍ୟ କଷ୍ଟ ହୁଏ। ସେଥିପାଇଁ ସ୍ୱାସ୍ଥ୍ୟ-ବିଧି ଓ ସଦାଚାର ପାଳନ କରି ଶରୀରକୁ ସୁସ୍ଥ ଓ ଶକ୍ତ ରଖିବାକୁ ହୁଏ। ତା'ଦ୍ୱାରା ଠିକ୍ ଭାବରେ କାର୍ଯ୍ୟ କରାଯାଏ। ଇଷ୍ଟକର୍ମ ଠିକ୍-ଠିକ୍ ଭାବରେ କରିପାରିଲେ ଧର୍ମ, ଅର୍ଥ, କାମ, ମୋକ୍ଷ ତାକୁ ଦାସୀ ପରି ସେବା କରେ। ଲୋଭର ବଶବର୍ତ୍ତୀ ହୋଇ କଲେ ତାର କିଛିହିଁ ହୁଏନାହିଁ। ଏକମାତ୍ର ଲୋଭ ରହିବ ତାଙ୍କୁ ଖୁସି କରିବା ପାଇଁ। ବିହିତ ନିର୍ଲୋଭ-ତପସ୍ୟାରେ ଦୁନିଆଟା ହାତକୁ ଆସିଯାଏ। ଆ.ପ୍ର.୮/୨୩.୫.୧୯୪୬

**ପ୍ର. – ଇଷ୍ଟହୀନ ହୋଇ ମଧ୍ୟ ମଣିଷ ଯଦି ସତ୍-ପ୍ରକୃତିସମ୍ପନ୍ନ ହୁଏ ତେବେ ଅସୁବିଧା କେଉଁଠି ? ତାହା ଦ୍ୱାରା ତ ଅନେକଙ୍କର ଉପକାର ହୋଇପାରେ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଯଦି ଶ୍ରେୟଙ୍କ ସହିତ ଆବଦ୍ଧ ନ ରହେ, ତା'ହେଲେ ତାର ମୂଲ୍ୟହିଁ ଠିକ୍ ରହେ ନାହିଁ, ସେଥିପାଇଁ ପରିବେଶର ଖୋରାକ୍ ହୋଇପଡ଼େ। ଭାବେ – ମଣିଷର ଭଲ କରୁଛି, ବାସ୍ତବରେ ଯିଏ ଯେପରି ଖୁସି ତାକୁ utilise (ବ୍ୟବହାର) କରିନିଏ। ଇଷ୍ଟହୀନ ଖରାପ ମଣିଷ ନିଜର ସ୍ୱାର୍ଥାନ୍ଧ ପ୍ରବୃତ୍ତିର ସେବା କରି ଚାଲେ, ଆଉ ଇଷ୍ଟହୀନ ତଥାକଥିତ ଭଲ-ମଣିଷ ଭଲ କରିବାର ନାମରେ ଅନ୍ୟର ସ୍ୱାର୍ଥାନ୍ଧ ପ୍ରବୃତ୍ତି-ଚାହିଦାର ପୋଷଣ ଦେଇ ଚାଲେ, କିନ୍ତୁ ସେମାନଙ୍କୁ towards being and becoming (ବଞ୍ଚିବା ବଢ଼ିବାର ଦିଗକୁ) mould (ନିୟନ୍ତ୍ରଣ) କରିପାରେ ନାହିଁ। ...ଏହିପରି ଯେଉଁମାନେ, ପରଉପକାରୀ ବୋଲି ସେମାନଙ୍କର ଖୁବ୍ ସୁନାମ ହୋଇପାରେ, କିନ୍ତୁ ଅସଲରେ ଫାଙ୍କା। ପ୍ରକୃତ ଉପକାର ତା' ନିଜର ମଧ୍ୟ ହୁଏ ନାହିଁ, ବା ଅନ୍ୟର ମଧ୍ୟ ହୁଏ ନାହିଁ। ଆ.ପ୍ର.୮/୨୩.୫.୧୯୪୬

**ପ୍ର. – ଇଷ୍ଟାନୁସରଣର ପଥରେ ମଣିଷ କେତେବେଳେ ବଡ଼ ହୁଏ ?**

**ଶ୍ରୀଶ୍ରୀଠାକୁର** – ବଡ଼ ହେବାର ଏକମାତ୍ର ପଥ ହେଲା – ଇଷ୍ଟଙ୍କର interest (ସ୍ୱାର୍ଥ)ର ସହିତ actively identified (ସକ୍ରିୟଭାବରେ ଏକୀଭୂତ) ହେବା। ସେଥିରେ ସ୍ୱାର୍ଥପର ଅଭିଭୂତ ଓ ପରିକଳ୍ପନା, ଯାହା ମଣିଷକୁ କ୍ଷୁଦ୍ରତାରେ ଆଚ୍ଛନ୍ନ କରି ରଖେ, ତାହା ଖସି ପଡ଼େ।

ଆ.ପ୍ର. ୮/୩୦.୫.୧୯୪୬

**ପ୍ର. – ଇଷ୍ଟାନୁସରଣ ପାଇଁ ଦୀକ୍ଷା ନ ନେଇ କେହି ଯଦି ତାଙ୍କୁ ଭଲପାଏ ଓ ତାଙ୍କର ନୀତି ନିର୍ଦ୍ଦେଶଗୁଡ଼ିକୁ ମାନି ଚାଲିବାକୁ ଚେଷ୍ଟା କରେ – ସେଥିରେ ଅସୁବିଧା କ'ଣ ?**

**ଶ୍ରୀଶ୍ରୀଠାକୁର** – ତୁମେ ଯେପରି ଭାବରେ ଯେଉଁ principle-ରେ (ଆଦର୍ଶଙ୍କ) ପ୍ରତି ଯେତେଟା well-adhered (ସୁନିଷ୍ଠ), ତୁମ ଠାରେ ସେତେଟା fire (ଅଗ୍ନି) ଓ ignition (ଦିପ୍ତି) ସୃଷ୍ଟି ହେବ। Adherence-ର (ନିଷ୍ଠାର) ସହିତ ଥାଏ discipline (ଶିଷ୍ୟ) ହେବା। Disciple (ଶିଷ୍ୟ) ହେବାର ସଙ୍ଗେ-ସଙ୍ଗେ discipline (ଶୃଙ୍ଖଳା) automatic (ସ୍ୱତଃ) ହୋଇଉଠେ। ଶିଷ୍ୟତ୍ୱର ବୁଦ୍ଧି ନ ରହିଲେ, ନିଜ ପସନ୍ଦର ବିରୋଧୀ-ନର୍ଦ୍ଦେଶ ମୁଣ୍ଡପାତି ମାନି ନେବାକୁ ଇଚ୍ଛା ହୁଏ ନାହିଁ। ବାଛି-ବାଛି ନିଜର ପସନ୍ଦର ଅନୁକୂଳ ନିର୍ଦ୍ଦେଶ ଗୁଡ଼ିକୁ ପାଳନ କରିବାକୁ ଇଚ୍ଛା କରେ। ନିଶା ଥିବା ସତ୍ତ୍ୱେ ମଧ୍ୟ ନିଜର ଚାହିଦା ଓ ପସନ୍ଦ ସହିତ ଯେଉଁଠାରେ ଦ୍ୱନ୍ଦ ଉପୁଜେ, ସେଠାରେ overrule (ଅମାନ୍ୟ) କରିବାର ବୁଦ୍ଧି ଥାଏ। ....ବିବେକାନନ୍ଦ କହିଛନ୍ତି – "carrying out the commands of the Guru without the least hesitation or doubt is the only way to spiritual success." (ଦ୍ୱିଧା ଓ ସନ୍ଦେହର ଲେସ୍ ମାତ୍ର ନ ରଖି ଗୁରୁଙ୍କର ଆଜ୍ଞା ପାଳନ କରିବାହିଁ ଆଧ୍ୟାତ୍ମିକ ଜୀବନରେ ସଫଳତାର ଏକମାତ୍ର ପଥ)। ଶିରଦାର୍ ତ ସରଦାର୍। ତୁମେ ଯଦି surrender (ଆତ୍ମସମର୍ପଣ) କର, ଅନ୍ୟମାନେ ମଧ୍ୟ ତୁମକୁ ମାନି ଚାଲିବାପାଇଁ ପ୍ରେରଣା ପାଇବେ। ତା' ନ କରି ଉପଦେଶ ଦେଲେ ସେ-ଉପଦେଶ ମାନି ଚାଲିବାର ଆଗ୍ରହ ଅନ୍ୟମାନଙ୍କ ଭିତରେ ସଞ୍ଚାରିତ ହେବ ନାହିଁ। ବାଧ୍ୟ ବାଧକତାରେ କେହି ଯଦି ମାନି ଚାଲେ ବି ତା ମଧ୍ୟ ତା ପାଖରେ ବିରକ୍ତିକର ପରିଶ୍ରମ ପରି ମନେହେବ। ଯେତେବେଳେ ତୁମେ adhered (ନିଷ୍ଠା ସମ୍ପନ୍ନ) ହେଲ, ସେତେବେଳଠାରୁ vanity (ଦମ୍ଭ) goodnight କରିଲା (ବିଦାୟ ନେଲା)। ସେତେବେଳେ glorious pride for principle or principal (ମୂର୍ତ୍ତ ଆଦର୍ଶଙ୍କ ପାଇଁ ଗୌରବବୋଧ) ଆସିବ। ଏହାକୁହିଁ କହନ୍ତି ଆଭିଜାତ୍ୟ। ମୁଁ ଅମୁକ୍ ଲୋକର ପିଲା, ଅମୁକ୍ ମୋର spiritual father (ଧର୍ମପିତା) – ମୁଁ କେବେ ବି ଖରାପ କରିପାରେ ନାହିଁ। ଆଭିଜାତ୍ୟର ନିଦର୍ଶନ ହେଉଛି ଉନ୍ନତ ଆଚରଣ। ଆଭିଜାତ୍ୟ ହେଲା elixier of life (ଜୀବନର ରସାୟନ)। ଆଭିଜାତ୍ୟ ମାନେ ଏହା ନୁହେଁ ଯେ ତୁମେ ନିଜକୁ କାହାଠାରୁ ବଡ଼



ବୋଲି ପ୍ରତିପନ୍ନ କରିବା ପାଇଁ ତା' ସହିତ ଝଗଡ଼ା କରୁଛ ବା ତା' ସମ୍ବନ୍ଧରେ ଘୃଣାବ୍ୟଞ୍ଜକ ଉକ୍ତି କରୁଛ।

ଆ.ପ୍ର. ୮/୩୦.୫.୧୯୪୬

**ପ୍ର. – ଇଷ୍ଟାନୁସରଣରେ ଅନ୍ୟକୁ ଭଲପାଇବାର ରକମଟା କିପରି ହେବ ?**

**ଶ୍ରୀଶ୍ରୀଠାକୁର** – ଯାହାକୁ ବି ଭଲପାଉ, ତାହା ଇଷ୍ଟାନୁଗ ହେଲେହିଁ ହେଲା। ଯେଉଁ ଭଲପାଇବା ଇଷ୍ଟାନୁରାଗକୁ ବ୍ୟାହତ କରେ, ତାହାହିଁ ଖରାପ।

ଆ.ପ୍ର. ୮/୫.୬.୧୯୪୬

**ପ୍ର. – ଇଷ୍ଟାନୁସରଣରେ ତାଙ୍କ ଠାରେ ପ୍ରଶ୍ନହୀନ ନିଷ୍ଠା ଓ ଆନୁଗତ୍ୟରେ କ'ଣ ହୁଏ ? ଯେଉଁମାନଙ୍କର ତାହା ନାହିଁ ସେମାନଙ୍କର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟନିଷ୍ଠା ଯେଉଁମାନଙ୍କର ଜୀବନଦଣ୍ଡ, ନିର୍ବିଚାରରେ, ନିର୍ଦ୍ୱନ୍ଦରେ ଇଷ୍ଟନିର୍ଦ୍ଦେଶ ପାଳନ କରିବାହିଁ ଯେଉଁମାନଙ୍କର ଜୀବନର ତପସ୍ୟା, ସେମାନେ ମହା ଭାଗ୍ୟବାନ। ଏହି ନିଷ୍ପ୍ରଶ୍ନ ଆନୁଗତ୍ୟ ପରମପିତାଙ୍କର ପରମ ଆଶୀର୍ବାଦ। ମନର ଏହିପରି ଭାବନା ରହିଲେହିଁ ବିଚାରବୁଦ୍ଧି ଅକାଟ୍ୟ ଓ ଅଭ୍ରାନ୍ତ ହୋଇଉଠେ। ସେମାନେ ଯାହା-କିଛିକୁ ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠାର ମାପକାଠିରେ ମାପି-ମାପି ଦେଖନ୍ତି। ସେମାନଙ୍କୁ ବିଭ୍ରାନ୍ତ କରିବା ଶକ୍ତ ବ୍ୟାପାର। ତେଣୁ ସେମାନଙ୍କ ସମ୍ବନ୍ଧରେ ଆଶଙ୍କାର କୌଣସି କାରଣ ଦେଖିବାକୁ ମିଳେ ନା। ଦଳେ ରହିପାରନ୍ତି ଯେଉଁମାନଙ୍କର ତୀବ୍ର ଟାଣ ତ ନାହିଁ, ପୁଣି ବିଚାର-କ୍ଷମତା ମଧ୍ୟ ଦୁର୍ବଳ। ସେମାନଙ୍କର ଚାଲିବା-କହିବା ମଧ୍ୟରେ ଅସଙ୍ଗତି ରହିବହିଁ। ଯାହା ହେଉ, ଯଦି ଲାଗି ରହେ, ଧରି ରଖେ, ସବୁ deficiency (ଅଭାବ) ସତ୍ତ୍ୱେ ମଧ୍ୟ ସେମାନେ ଆଗେଇଯିବେ।

ଆ.ପ୍ର. ୮/୫.୬.୧୯୪୬

**ପ୍ର. – ଇଷ୍ଟାନୁସରଣର ପଥ ଯଦି କେବଳ ଯନ୍ତ୍ରଣାରହିଁ ହୁଏ ତେବେ ଏତେ ବାଧା-ବିଘ୍ନ ମଧ୍ୟରେ ମଣିଷ ଇଷ୍ଟଙ୍କୁ ଧରି କିପରି ଚାଲିବ ?**

**ଶ୍ରୀଶ୍ରୀଠାକୁର** – ଯନ୍ତ୍ରଣାହିଁ ସବୁ ନୁହେଁ, ଆଉ ଆମ୍ଭେମାନେ ଯନ୍ତ୍ରଣା ପାଉ obsession of complex (ପ୍ରବୃତ୍ତି-ଅଭିଭୂତି) ପାଇଁ। ସେ ବ୍ୟାପାରରେ ତାଙ୍କର କୌଣସି ଦାୟିତ୍ୱ ନାହିଁ। ସେ ଦିଅନ୍ତି wine of life (ଜୀବନର ମଦିରା)। ଯେତେବେଳେ ତାହା ପାଇବ, ସେତେବେଳେ ସେ ଯନ୍ତ୍ରଣା ମଧ୍ୟକୁ ଟାଣି ଆଣିଛନ୍ତି ବୋଲି ମନେ ହେବନାହିଁ। ସେ obsession (ଅଭିଭୂତି) କଟାଇବା ପାଇଁ ସାମୟିକ ଯେଉଁ ଦ୍ୱନ୍ଦ ଓ ଯନ୍ତ୍ରଣା ମଧ୍ୟରେ ପକାନ୍ତି, ତା' ମଧ୍ୟରେହିଁ ତାଙ୍କର ଆଶୀର୍ବାଦ ଅଛି। ଏଗୁଡ଼ିକର ସମ୍ମୁଖୀନ ନ ହୋଇ କୌଣସି ଲାଭ ନାହିଁ। ଆଲୋକ-ରାଜ୍ୟର ଅସୁଖୀ ସନ୍ତାନ ହେବା ମଧ୍ୟ ଭଲ, କିନ୍ତୁ ତିମିର-ରାଜ୍ୟର ସୁଖୀ ପ୍ରଜା ହୋଇ ମଧ୍ୟ ଅନ୍ତର୍ନିହିତ ସତ୍ତାର କୌଣସି ସୁଖ ନାହିଁ। ସେ ଜୀବନ-ଯାପନ ପାଇଁ ପଶୁ ମାନେ

ଅଛନ୍ତି, ମଣିଷ ପାଇଁ ସେ-ଜୀବନ ନୁହେଁ। ବିଧାତାର ଦଲିଲରେ ତାହା ଲେଖାନାହିଁ। ତାଙ୍କୁ ଯଦି ଧରିଥାଏ ଆଜୀବନ ଧରି ରହିବି, ଆଉ ଏହି ଧରି ରହିବା ପାଇଁ ଯେତେ ବାଧା-ବିଘ୍ନ ଆସୁ ନା କାହିଁକି face କରିବି (ସମ୍ମୁଖୀନ ହେବି) – ଏହିପରି ପଣ ରହିବା ଦରକାର। 'ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ, ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍'। It is easier to die for Lord than to live for Him (ପ୍ରଭୁଙ୍କ ପାଇଁ ବଞ୍ଚିବାଠାରୁ ତାଙ୍କ ପାଇଁ ମରିବା ସହଜ)। Live for Lord and enjoy life (ପ୍ରଭୁଙ୍କ ପାଇଁ ବଞ୍ଚ ଓ ଜୀବନକୁ ଉପଭୋଗ କର।)

ଆ.ପ୍ର. ୮/୫.୬.୧୯୪୬

**ପ୍ର. – ଇଷ୍ଟାନୁସରଣର ପଥରେ କିଛି-କିଛି ଦୋଷ-ଦୁର୍ବଳତା ତ ରହିହିଁ ଯାଏ। ତାହାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଆମ୍ଭେମାନେ ଯାହା କରୁ, ଆମ୍ଭମାନଙ୍କ ଭିତରେ ଭଲ-ମନ୍ଦ ଯାହା ଥାଉ, ତାହା ନେଇ ଜୋର କରି ନଛୋଡ଼ବନ୍ଧାହୋଇ ତାଙ୍କ ଦିଗକୁ ମୁହଁ କରି ଯଦି ଆଗେଇବାକୁ ଲାଗୁ, ତାହାହେଲେ ଆଉ ଭାବନା ନାହିଁ। ତାଙ୍କ ଆଡ଼କୁ ପଛ ଫେରାଇ ଅନ୍ୟ ଦିଗକୁ ମୁହଁ କରି ଯେତେ ଭଲ କାମହିଁ କରୁ ନା କାହିଁକି, ତାର କୌଣସି ସାର୍ଥକତା ନାହିଁ। ପୁଣି ଭୁଲ ତ୍ରୁଟି ହେବ ସେହି ଭୟରେ କେହି ଯଦି ସତ୍‌ପଥରେ, ସତ୍‌କାର୍ଯ୍ୟରେ ଅଗ୍ରସର ନ ହୁଏ, ତାହା କିନ୍ତୁ ବୋକାମୀ। ...ଗୀତାର 'ସାଧୁରେବ ସ ମନ୍ତବ୍ୟଃ' କଥାଟା ବଡ଼ ଭଲ ଲାଗେ। ଶଳା ଚୋରୀ, ଜୁଆଚୋରୀ, ପରସ୍ତ୍ରୀହରଣ, ଡକାୟତି, ଖୁନଖାରାପି ଯାହା ବି କରିଥାଏ, ମୋର ସବୁ-କିଛି ନେଇ, ମୋର ସବୁ-କିଛି ଦେଇ ତାଙ୍କୁ ଯଦି fulfill (ପରିପୂରଣ) କରିବାକୁ ଲାଗିଯାଏ, ସେତେବେଳେହିଁ 'ସାଧୁରେବ ମନ୍ତବ୍ୟ'।

ଆ.ପ୍ର. ୮/୮.୬.୧୯୪୬

**ପ୍ର. – ଇଷ୍ଟାନୁସରଣରେ ଚାଲି ଇଷ୍ଟଟାଣ ଯେତେବେଳେ କୌଣସି ପ୍ରକାରେହିଁ ଟଳେ ନାହିଁ ସେତେବେଳେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – Blessed is he who is not repelled by anything in me (ମୋର କୌଣସି-କିଛିରେହିଁ ଯିଏ ମୋ ଠାରୁ ବିଚ୍ୟୁତ ହୁଏ ନାହିଁ, ସେ ହିଁ ଧନ୍ୟ)। ଯେତେବେଳେ କିଛି ପ୍ରକାରରେ ବି ଇଷ୍ଟଟାଣ ଟଳେ ନାହିଁ, ସେତେବେଳେହିଁ ବୁଝାଯିବ ତାହା ପ୍ରବୃତ୍ତିକୁ ଭେଦ କରି ଅସ୍ତିତ୍ୱର ସର୍ବତ୍ର ବ୍ୟାପ୍ତ ହୋଇଯାଇଛି। ତାକୁ ଆଉ ଅଟକାଇ ହେବ ନାହିଁ। ଏହିପରି ଯଦି ହୁଏ, ତେବେ ତୁମର କଥାରେ ଯାହା କାମ ହେବ, ଶହେ ସ୍ପିନୋଜା, ମିଲ୍, କ୍ୟାଣ୍ଟ, ସ୍ପେନ୍‌ସାର, ହେଗେଲ୍ ମାନଙ୍କୁ ହଜମ କରି ବାର୍କଙ୍କପରି ବକ୍ତୃତା ଦେଲେ ମଧ୍ୟ ସେ effect (ଫଳ) ହେବ ନାହିଁ। ...ତୁମ ମଧ୍ୟରେ ଯଦି ପାଗଳ ପରି ଅବସ୍ଥା ହୁଏ, ତୁମର ଛାତି ଭିତରେ ଯଦି ଆକ୍‌ପାକ୍ କରିବାକୁ ଲାଗେ, ତୁମର କଥାର ଭିତର ଦେଇ ସେତେବେଳେ



ଅଗ୍ନିର ଝଲକ୍ ବାହାରିବ। ଯେଉଁମାନେ ଶୁଣିବେ ସେମାନେ କହିବେ – "କାନ ଭିତର-ଦେଇ ମରମେ ପଶିଲା ଗୋ, ଆକୁଳ କରିଲ ମୋହର ପ୍ରାଣ"। ଭୁଲିବାର ଉପାୟ ନାହିଁ। ଯେପରି ଆବିଷ୍ଟ କରି ରଖେ। ସେତେବେଳେ ଭାବେ – ସବୁହିଁ ତ ଶୁଣିଲି, ବର୍ତ୍ତମାନ ମୁଁ କରିବି କ'ଣ ? ହଁ ! ମୁଁ କ'ଣ କରିବି ? (ଇଷ୍ଟଙ୍କ କାମରେ) ଝାମ୍ପ ଯେ ଦେବି, କିନ୍ତୁ ମୋର ଯେ ଅମୁକ୍ ଅଛି, ତମୁକ୍ ଅଛି, ସେମାନଙ୍କର କ'ଣ ହେବ ? ବାଧାଗୁଡ଼ିକ ପ୍ରାଣର ଭିତରେ ଯେପରି ଭୂମିକମ୍ପ ସୃଷ୍ଟି କରିଥାଏ। କାରଣ, ମହତ୍ ଜୀବନର ଆକର୍ଷଣ ତାର ଅନ୍ତରରେ ଅହରହ ଦିକ୍‌ଦିକ୍ ହୋଇ ଜଳୁଥାଏ। ଏହା ତପ୍ତ ଆଖୁ ଚର୍ବଣ ପରି। ମୁହଁ ଜଳିଯାଏ କିନ୍ତୁ ଛାଡ଼ି ହୁଏ ନାହିଁ।

ଆ.ପ୍ର. ୮/୮.୬.୧୯୪୬

**ପ୍ର. – ଇଷ୍ଟଙ୍କୁ ଭଲପାଇବାର ସହଜ କୌଶଳ କ'ଣ ?**

**ଶ୍ରୀଶ୍ରୀଠାକୁର** – ଯାହା ହେବାକୁ ଚାହଁ ବା ପାଇବାକୁ ଚାହଁ – ଆଗ୍ରହ ସହକାରେ ଭାବିବା, କହିବା, କରିବାକୁ ସେହି ଦିଗରେ ବୁହାଇ ଦିଅ, ଓଲଟା ରକମର ଭାବିବା, କହିବା, କରିବାକୁ ପ୍ରଶ୍ରୟ ଦିଅନାହିଁ। ଦେଖିବ, ତୁମର ଚାହିଦା ସିଦ୍ଧ ହେବାକୁ ଯାଉଛି। ଇଷ୍ଟଙ୍କୁ ଯଦି ଭଲପାଇବାକୁ ଚାହଁ – ଭାବ – 'ଭଲପାଏ' କୁହ – 'ଭଲପାଏ', ଏବଂ ଭଲପାଇବା ଭଳି କର୍ମ କର। ସେଥିରେହିଁ ସର୍ବକର୍ମ ସିଦ୍ଧ।

ଆ.ପ୍ର. ୮/୧୭.୬.୧୯୪୬

**ପ୍ର. – ଇଷ୍ଟଙ୍କୁ ଭଲପାଇବାର ଉଦ୍ଦେଶ୍ୟ କ'ଣ ହେବ ?**

**ଶ୍ରୀଶ୍ରୀଠାକୁର** – ଉଦ୍ଦେଶ୍ୟ ରହିଲେ ହେବ ନାହିଁ। କୌଣସି-କିଛି ପାଇଁ ହେଲେ ଭାବ ଜମିବ ନାହିଁ। ଅଠା ଲାଗିବ ନାହିଁ। ତାଙ୍କୁ ଖୁସି କରିବା ଛଡ଼ା ଅନ୍ୟ କୌଣସି କାମ-କାମନା ମଝିରେ ରହିଲେ, ସେହି କାମ-ସଂଶ୍ରବରେ ସବୁ ଗୋଳିଆ ହୋଇଯିବ, ମଝିରେ ଏକ ପରଦା ପଡ଼ିଯିବ, ତାହା ଭେଦ କରି ଭଲପାଇବା ଅସଲ ଜାଗାରେ ଯାଇ କମ୍‌ହିଁ ପହଞ୍ଚି ପାରିବ। ତାଙ୍କ ପାଇଁ ତାଙ୍କୁ ଭଲପାଇବା କିଛି କଠିନ ନୁହେଁ। ଏହାହିଁ ସହଜ, ସ୍ୱାଭାବିକ। ଏହାହିଁ ଏହାହିଁ ସତ୍ତାର ଧର୍ମ।

ଆ.ପ୍ର. ୮/୧୭.୬.୧୯୪୬

**ପ୍ର. – ଇଷ୍ଟକର୍ମରେ ଅକୃତକାର୍ଯ୍ୟତାର କାରଣ କ'ଣ ?**

**ଶ୍ରୀଶ୍ରୀଠାକୁର** – ଉତ୍ସବିମୁଖ ଚାଲିବା-କହିବା। Straying away from Ideal (ଆଦର୍ଶଙ୍କଠାରୁ ବିପଥରେ ଚାଲିଯିବା)। ଏହା ଫଳରେ କେବଳ ଇଷ୍ଟକର୍ମରେହିଁ ଅକୃତକାର୍ଯ୍ୟତା ଆସେ ନାହିଁ, ଯେକୌଣସି କାର୍ଯ୍ୟରେ failure (ଅସଫଳତା) ଡାକିଆଣିବା ପାଇଁ ସେହି ଗୋଟିଏ ଜିନିଷହିଁ ଯଥେଷ୍ଟ।

ଆ.ପ୍ର. ୮/୯.୧୦.୧୯୪୬

**ପ୍ର. – କ'ଣ କଲେ ଇଷ୍ଟକର୍ମର ସୁଯୋଗ ଶୀଘ୍ର ଆସେ ?**

ଯେଉଁମାନେ ଝାମ୍ପ ଦିଅନ୍ତି, ଝପ୍ କରି ଡ଼େଇଁ ପଡ଼ନ୍ତି, ସେହିମାନେହିଁ **ଶ୍ରୀଶ୍ରୀଠାକୁର –** ଯେଉଁମାନେ କେବଳ ଭାବନ୍ତି 'to do or not to do' (କରିବି କି କରିବି ନାହିଁ) ପାରନ୍ତି। ଯେଉଁମାନେ କେବଳ ଭାବନ୍ତି... ସେମାନେ କମ୍‌ହିଁ ପାରନ୍ତି। ଏହି ମୁହୂର୍ତ୍ତରେହିଁ ହୋଇପାରେ। ବାଧା-ବିଘ୍ନକୁ ଖାତିର ନ କରି – ଆରମ୍ଭ କରିଦେଇ କ୍ରମାଗତ ଭାବରେ କରିଯିବାକୁ ହୁଏ। ଏହାଛଡ଼ା ଆଉ କୌଣସି ବାହାଦୁରି ବା ଚୁଟୁକା ନାହିଁ।

ଆ.ପ୍ର. ୮/୯.୧୦.୧୯୪୬

**ପ୍ର. – ଇଷ୍ଟଙ୍କ କାର୍ଯ୍ୟ ଯଦି କେହି ନିଜର ପାରିବାରିକ ସୁଖ-ସୁବିଧା ପାଇଁ କରେ?**

**ଶ୍ରୀଶ୍ରୀଠାକୁର –** ମୁଁ ଯଦି ଆପଣଙ୍କର interest (ସ୍ୱାର୍ଥ) ହୁଏ, ତା'ହେଲେ ଆପଣ ଆପଣଙ୍କର family (ପରିବାରକୁ) ମୋ ଦିଗକୁ draw (ଆକର୍ଷଣ) କରିବାକୁହିଁ ନିଜର interest (ସ୍ୱାର୍ଥ) ମନେ କରିବେ। ତା'ଯଦି ନ କରନ୍ତି, ନିଜର ପାରିବାରିକ ସୁଖ ସୁବିଧା ପାଇଁ ଯଦି ମୋ କାର୍ଯ୍ୟ କରନ୍ତି, ତା'ହେଲେ ବୁଝିବାକୁ ହେବ, ଆପଣ ବ୍ୟବସାୟାତ୍ମିକା ବୁଦ୍ଧି ନେଇ ଚାଲିଛନ୍ତି। 'ବ୍ୟବସାୟାତ୍ମିକା ବୁଦ୍ଧି ସମାଧୌ ନ ବିଧୀୟତେ'। ଏଥିରେ କୌଣସି-କିଛିରହିଁ ସମାଧାନ ହେବ ନାହିଁ। ଯାହା କରିଲେ ଏକ ସଙ୍ଗରେ ସବୁଦିଗରୁ ସମାଧାନ ହୁଏ, ତାହା ହେଲା ଇଷ୍ଟସ୍ୱାର୍ଥପ୍ରତିଷ୍ଠା। ଏହାର ଅଭାବ ଯେତେଟା, ଜୀବନରେ meaningful adjustmentର (ସାର୍ଥକ ସଙ୍ଗତିର) ଅଭାବ ମଧ୍ୟ ସେତେଟା।

ଆ.ପ୍ର. ୮/୧୪.୧୦.୧୯୪୬

**ପ୍ର. – ଇଷ୍ଟାନୁସରଣରେ ସଂସାରରେ ନାନା ଲୋକର ନାନା ବୁଦ୍ଧି, ନାନା ମତ, ବିଭିନ୍ନ ଚାହିଦା ଆଗେଇବାକୁ ଦିଏ ନାହିଁ! ଏହା ମଧ୍ୟରେ ପଡ଼ି କ'ଣ କରିବୁ?**

**ଶ୍ରୀଶ୍ରୀଠାକୁର –** ଯେତେ ପାରିବ, ସମସ୍ତଙ୍କୁ ପୂରଣ କରିବ – ନିଜକୁ ଅକ୍ଷତ ରଖି, ସତ୍ୟତାକୁ ପ୍ରାଧାନ୍ୟ ଦେଇ। କିନ୍ତୁ ଚାଲିବ ତୁମେ ତୁମ ଇଷ୍ଟ ପଥରେ, ତାଙ୍କରି ମତରେ – ଅନ୍ୟକୁ ନ ରଗାଇ, କୁଶଳ-କୌଶଳରେ, ମଧୁର ବ୍ୟବହାର ନେଇ କିନ୍ତୁ ନିଷ୍ଠାରେ ଅଟୁଟ ରହି। ଇଷ୍ଟନିଷ୍ଠ ନ ହେଲେହିଁ ମଣିଷ ଅବ୍ୟବସ୍ଥିତ ହୁଏ, ବିଶୃଙ୍ଖଳ ହୁଏ, କେତେବେଳେ ନିଜର ଖିଆଲରେ ଚାଲେ ତ, କେତେବେଳେ ଅନ୍ୟର ଖିଆଲରେ ଚାଲେ, ଚିତ୍ତର କୌଣସି ସ୍ଥିରତା ରହେ ନାହିଁ। ସେ ନିର୍ଭର ଯୋଗ୍ୟ ଲୋକ ହୁଏ ନାହିଁ।

ଆ.ପ୍ର. ୮/୯.୧୨.୧୯୪୬

**ପ୍ର. – ଇଷ୍ଟାନୁସରଣ ଛଡ଼ା ମଣିଷକୁ ନିଃସ୍ୱାର୍ଥ ଭାବରେ ଭଲପାଇବା ଏବଂ ସେବା କରାଯାଏ ନାହିଁ କାହିଁକି?**

**ଶ୍ରୀଶ୍ରୀଠାକୁର –** ପ୍ରବୃତ୍ତିର ଊର୍ଦ୍ଧ୍ୱରେ ଛିଡ଼ା ନ ହେଲେ ନିଜକୁହିଁ ଠିକ୍-ଠିକ୍ ଭାବରେ ଭଲପାଇବା ଓ ସେବା କରାଯାଏ ନାହିଁ, ଆଉ ଅନ୍ୟକୁ ଠିକ୍-ଠିକ୍ ଭଲପାଇବା ଓ ସେବା କରିବା ତ ଅନେକ ଦୂରର କଥା। ପ୍ରବୃତ୍ତିର ଊର୍ଦ୍ଧ୍ୱକୁ ଉଠିବାକୁ ଗଲେ ଇଷ୍ଟ-ସଂନ୍ୟସ୍ତ ହେବା



ଦରକାର। ସେତେବେଳେ ନିଜର ମଧ୍ୟ ଉପକାର କରାଯାଏ, ଅନ୍ୟର ମଧ୍ୟ ଉପକାର କରାଯାଏ। ବୃତ୍ତିବିଲୋଳ ଭଲପାଇବାରେ କାହାରି କୌଣସି ଫାଇଦା ହୁଏ ନାହିଁ। ଏହା ମଧ୍ୟରେ distortion (ବିକୃତି) ପଶିହିଁ ଯାଏ। Distorted love is no love and sublimated love is real love (ବିକୃତ ପ୍ରୀତି ପ୍ରୀତି ନୁହେଁ ଏବଂ ଭୂମାୟିତ ପ୍ରୀତିହିଁ ପ୍ରକୃତ ପ୍ରୀତି)! Sublimated love (ଭୂମାୟିତ ପ୍ରୀତି) ମାନେ ସେହି love (ପ୍ରୀତି) ଯାହା ଇଷ୍ଟଙ୍କୁ କେନ୍ଦ୍ର କରି ଇଷ୍ଟାର୍ଥ ସାର୍ଥକତାରେ କ୍ରମାନ୍ୱୟୀ ପ୍ରସାରଣା ଲାଭ କରେ।

ଆ.ପ୍ର. ୮/୧୧.୧୨.୧୯୪୬

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ଇଷ୍ଟନିଷ୍ଠା, ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠାର ଧନ୍ଦା ବ୍ୟତୀତ ମଣିଷ କ'ଣ ଯଥେଷ୍ଟ ନୀତିବାଦୀ ହୁଏ ନାହିଁ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟନିଷ୍ଠା, ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠାର ଧନ୍ଦା ଯେଉଁମାନଙ୍କର ନାହିଁ, ସେମାନେ ଯେତେହିଁ ନୀତିବାଦୀ ହୁଅନ୍ତୁ ଅସଲରେ ସେମାନେ ପ୍ରାୟଶଃ ଆତ୍ମପ୍ରତିଷ୍ଠାର ଧନ୍ଦା ନେଇ ଘୁରନ୍ତି। ଆଉ, ତାର ପରିପୋଷଣ ଯେପରି ହୁଏ, ତାହାହିଁ କରନ୍ତି। ସୁତରାଂ ଅଜ୍ଞାତରେ ସେମାନେ ସମାଜର ବିପଦକୁ ଡାକି ଆଣନ୍ତି।

ଆ.ପ୍ର. ୮/୧୧.୧୨.୧୯୪୬

**ପ୍ର. – ଇଷ୍ଟଙ୍କ ପାଖରେ ଠିକ୍-ଠିକ୍ ଆତ୍ମସମର୍ପଣ କିପରି ଭାବରେ ହୁଏ?**

**ଶ୍ରୀଶ୍ରୀଠାକୁର –** Be surrendered and have surrender (ନିଜକୁ ସମର୍ପଣ କର ଓ ଆତ୍ମସମର୍ପଣର ଅଧିକାରୀ ହୁଅ)। ଯିଏ ଚାହେଁ, ଏକ ମୁହୂର୍ତ୍ତରେ ତା'ର unrepelling surrender (ଅଚ୍ୟୁତ ଆତ୍ମସମର୍ପଣ) ହୋଇଯାଏ। ଯାହାର ହୁଏ ସେ ବୁଝିପାରେ ନାହିଁ କେଉଁ ଫାଙ୍କରେ କିପରି ହେଲା। ଝିଅ ମାନେ ବିବାହ ପରେ ସ୍ୱାମୀ ଘରକୁ ନିଜର କରିନିଅନ୍ତି, ତା' ପଛରେ କୌଣସି କସରତ୍ ଥାଏ କି? ମନରେ ଗୋଟିଏ ମାନି ନେବାର ଭାବ ଥାଏ, ସେହି ଅନୁଯାୟୀ ଚାଲିବା, କହିବା, କରିବା ଥାଏ। ତା' ଭିତର ଦେଇହିଁ ଗୋଟିଏ ଅଛେଦ୍ୟ ସମ୍ବନ୍ଧ ଦାନା ବାନ୍ଧି ଉଠେ। Unrepelling attitude and adherence (ଅଚ୍ୟୁତ ମନୋଭାବ ଓ ଅନୁରାଗ) ଦରକାର। ତା'ଠାରୁ ଆସେ urge (ଆକୂତି), urge (ଆକୂତି)ଠାରୁ ଆସେ energy (ଶକ୍ତି), energy (ଶକ୍ତି) materialised (ବାସ୍ତବାୟିତ) ହୁଏ activity-ରେ (କର୍ମରେ)। Energy ଏବଂ urge-ର (ଶକ୍ତି ଏବଂ ଆକୂତିର) velocity (ଗତିବେଗ) ଅନୁସାରେ motion and output of work (କାର୍ଯ୍ୟର ଗତି ଓ ଉତ୍ପାଦନ) ହୁଏ।

ଆ.ପ୍ର. ୮/୧୬.୧୨.୧୯୪୬

**ପ୍ର. – ଇଷ୍ଟାନୁସରଣରେ ଚଳନ କିପରି ହେଲେ ବ୍ୟକ୍ତିତ୍ୱରେ ଶକ୍ତି ସଞ୍ଚାରିତ ହୁଏ?**

**ଶ୍ରୀଶ୍ରୀଠାକୁର –** ଚଳନଟା ଏପରି ଭାବରେ (ନିୟନ୍ତ୍ରିତ) କରିବାକୁ ହୁଏ, ଯାହାଦ୍ୱାରା

ଅନ୍ୟର ସୁବିଧା ଛଡ଼ା ଅସୁବିଧା ନ ହୁଏ। ଏହାହିଁ ହେଲା ସାଧାରଣ ନୀତି। ଯେଉଁଠାରେ ଇଷ୍ଟପ୍ରତିଷ୍ଠାର ସହିତ ଏହାର ସୁସଙ୍ଗତି ସ୍ଥାପିତ ହୁଏ, ସେଠାରେ ଏହି ନୀତି ସାର୍ଥକ ହୁଏ। ମୋର ଯେପରି କଷ୍ଟ ନ ହୁଏ ସେହିପରି ତୁମେମାନେ ଚଳିବ – ଏହାହିଁ ମୋର ତୁମ୍ଭମାନଙ୍କ ପାଖରେ ଦାବୀ। ଏହାଦ୍ୱାରା ତୁମେମାନେ ସୁଖି ହେବ, ପରିବେଶ ମଧ୍ୟ ଉପକୃତ ହେବ, ମୁଁ ମଧ୍ୟ ନନ୍ଦିତ ହେବି। ନିଷ୍ଠା ନ ରହିଲେ ବ୍ୟକ୍ତିତ୍ୱ କେବେ ବି ପରାକ୍ରମଶାଳୀ ହୁଏ ନାହିଁ। ପ୍ରେଷ୍ଠର ନିନ୍ଦା ଯିଏ କରେ ବା ତାଙ୍କର ନିନ୍ଦାର ପ୍ରଶ୍ରୟ ଯିଏ ଦିଏ, ତାର mentality (ମାନସିକତା) ଧିରେ-ଧିରେ bastard (ଜାରଜ) ହୋଇଉଠେ। Chaste mentality-ର (ପବିତ୍ର ମାନସିକତାର) ଲକ୍ଷଣ ହେଲା ଅକାଟ୍ୟ ଶ୍ରେୟନିଷ୍ଠା। ଯାହା କୌଣସି ପ୍ରଲୋଭନରେ, ଭୟରେ, ପ୍ରୟୋଜନରେ ବା ବାଧାରେ ଟଳେ ନାହିଁ। ଏହି ନିଷ୍ଠାର ଭିତ୍ ର ଦେଇହିଁ ବ୍ୟକ୍ତିତ୍ୱରେ ଶକ୍ତି ସଞ୍ଚାର ହୁଏ। ଆଉ ଏହି ଶକ୍ତିହିଁ ପରିବେଶର ସମ୍ଭ୍ରମ ଆକର୍ଷଣ କରେ।

ଆ.ପ୍ର. ୯/୨୨.୧୨.୧୯୪୬

**ପ୍ର. – ଇଷ୍ଟାନୁସରଣ ପାଇଁ ଦୀକ୍ଷା ନ ନେଇ ଏମିତି ଯଦି ମାନି ଚାଲେ, ତା' ହେଲେ ହୁଏ ନାହିଁ କି ?**

**ଶ୍ରୀଶ୍ରୀଠାକୁର** – ସେଥିରେ ଅନେକ ଫାଙ୍କ ଥାଏ, ତା' ଉପରେ rely (ନିର୍ଭର) କରାଯାଏନା। ବିବାହିତା ସ୍ତ୍ରୀ ଓ ରକ୍ଷିତା ମଧ୍ୟରେ ଯେତେଟା ଫରକ, ଦୀକ୍ଷିତ ଓ ଗୁଣଗ୍ରାହୀ ମଧ୍ୟରେ ପ୍ରାୟ ସେତେଟା ଫରକ। ଗୋଟିଏ ବାଜେ ମଣିଷ ଯଦି ସତ୍-ଦୀକ୍ଷାରେ ଦିକ୍ଷିତ ହୋଇ ସେହି ଚଳନରେ ଚାଲେ, ତାର ମୂଳଦୂଆ ଯେତେଟା ଶକ୍ତ ହୁଏ, ଗୋଟିଏ ଗୁଣୀ ମଣିଷ ଯଦି ଆଦର୍ଶଙ୍କ ଠାର ଦୀକ୍ଷିତ ନ ହୋଇ ଉପରଠାଉରିଆ ତାଙ୍କର ପ୍ରଶଂସା ନେଇ ଚାଲେ, ତାର ମୂଳଦୂଆ କିନ୍ତୁ ସେ ତୁଳନାରେ ଅନେକଟା କଞ୍ଚା ରହିଯାଏ। ରାଜାର ମୁଣ୍ଡରେ ମହାମୂଲ୍ୟ ମୁକୁଟ ଥାଏ, ଗୋରୁ ମୁଣ୍ଡରେ ସାମାନ୍ୟ ଶିଙ୍ଗ ଥାଏ। ଆତ୍ମରକ୍ଷା ପାଇଁ କେଉଁଟା ବେଶି ମୂଲ୍ୟବାନ ? କେଉଁଟା ବେଶି ଶକ୍ତିମାନ ? ସେଥିପାଇଁ ଜୀବନ୍ତ ଆଦର୍ଶଙ୍କ ସହିତ ନିଜକୁ ଯିଏ ଅଛେଦ୍ୟ ଭାବରେ ସମ୍ବନ୍ଧ କରିତୋଳେ, ସେ ହିଁ ଲାଭବାନ ହୁଏ।

ଆ.ପ୍ର. ୯/୧.୬.୧୯୪୭

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ଦେଶର ଦୁଃଖ–ଦାରିଦ୍ର୍ୟ କେତେବେଳେ ଦୂର କରିବା ସମ୍ଭବ ?**

**ଶ୍ରୀଶ୍ରୀଠାକୁର** – ମଣିଷହିଁ ହେଲା ସମ୍ପଦର ଉତ୍ସ। ଇଷ୍ଟାନୁରାଗର ମନ୍ଥନଦଣ୍ଡ ଦେଇ ଯେତେହିଁ ତାକୁ ମନ୍ଥନ କରାଯିବ, ସେତେହିଁ ତା' ଭିତରୁ ଅମୃତମୟ ଶକ୍ତି ଓ ସମ୍ପଦ ଆବିର୍ଭାବ



ହେବାକୁ ଲାଗିବ। ତୁମେମାନେ ଜାଣ ବା ନ ଜାଣ – ଏହା ଠିକ୍ କଥା – both materially and spiritually (ଭୌତିକ ଓ ଆଧ୍ୟାତ୍ମିକ ଦୁଇ ଦିଗରୁ) ତୁମେମାନେ ପ୍ରତ୍ୟେକହିଁ ଗୋଟିଏ ଗୋଟିଏ prince (ରାଜପୁତ୍ର)। ପରମପିତାଙ୍କର ନାମ ନେଇ ତାହା ବାସ୍ତବରେ ହୁଅ ଏବଂ କରି ଦେଖାଅ। ତା'ହେଲେ ଦେଶରୁ ଦୁଃଖ-ଦାରିଦ୍ର୍ୟ ଦୌଡ଼ି ପଳାଇବାକୁ ବାଟ ପାଇବ ନାହିଁ। Surrendered activity (ଆତ୍ମନିବେଦିତ କର୍ମ) ନେଇ ଚାଲ, efficiency (ଦକ୍ଷତା)ର ଚରମରେ ଉଠି ଛିଡ଼ା ହୁଅ। ସ୍ୱର୍ଣ୍ଣଫଳ ତୁମମାନଙ୍କ ହାତ ପାଖରେ। ମୁଁ କହୁଛି – ଏହିକ୍ଷଣିହିଁ କରିବାର ଭିତର ଦେଇ ତାହା କରାୟତ୍ତ କର।

ଆ.ପ୍ର. ୯/୧୩.୬.୧୯୪୭

**ପ୍ର. – ଇଷ୍ଟଙ୍କର କାର୍ଯ୍ୟ ପାଇଁ କ'ଣ ପ୍ରୟୋଜନ ଅନୁସାରେ ଯେ-କୌଣସି ପନ୍ଥାହିଁ ଅବଲମ୍ବନ କରାଯାଏ ?**

**ଶ୍ରୀଶ୍ରୀଠାକୁର** – ତୁମ ଦ୍ୱାରା ଯେପରି କେହି deprived (ବଞ୍ଚିତ) ନ ହୁଏ, ଉଦ୍‌ବେଜିତ ନ ହୁଏ। ଅନ୍ୟକୁ ଲାଭବାନ କରାଇ ଯଦି ଲାଭବାନ ହୁଅ, କ୍ଷତି କ'ଣ ? ଲାଭବାନ ହେବାକୁ ହେଲେହିଁ ଯେ ମଣିଷକୁ ଲାଭବାନ କରିବା ଦରକାର। ସେମାନଙ୍କର ଲାଭହିଁ ତୁମର ଲାଭ ଆଣେ।

ଆ.ପ୍ର. ୯/୨୭.୬.୧୯୪୭

**ପ୍ର. – ଇଷ୍ଟକର୍ମ କରିବା ପଥରେ ନିନ୍ଦା-ଅପମାନ, ସମାଲୋଚନା ଇତ୍ୟାଦି ଆସିଲେ କିପରି ଭାବରେ ଚାଲିବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – କର୍ମକରିବା ପଥରେ ଅନେକ ନିନ୍ଦା-ଅପମାନ, ସମାଲୋଚନା ଇତ୍ୟାଦି ଆସେ। ସେ ଆଡ଼କୁ ଭ୍ରୂକ୍ଷେପ କରିବା ଉଚିତ ନୁହେଁ। ଇଷ୍ଟଙ୍କ ପ୍ରତି ନିଷ୍ଠା ରଖି ପରିବେଶ ସହ ଶୁଭ ସଙ୍ଗତି ନେଇ ଯାହା କରଣୀୟ ତାହା ନିଖୁଣ ଭାବରେ କରିବାକୁ ହୁଏ। ଆତ୍ମବିଶ୍ଳେଷଣ କରିବାକୁ ହୁଏ, ନିଜର ଭୁଲ-ତ୍ରୁଟି ଯେଉଁଗୁଡ଼ିକ ଅଛି, ସେଗୁଡ଼ିକ କ୍ରମାଗତ ସଂଶୋଧନ କରି ଚାଲିବାକୁ ହୁଏ। କାହାରି ଅହଂକୁ ଅଯଥା ଆଘାତ କରିବା ଉଚିତ ନୁହେଁ। ମଣିଷର ଦୋଷତ୍ରୁଟି ଗୋଟିଏ ଦିନରେ ଯାଏ ନାହିଁ, ସେ-ସମ୍ବନ୍ଧରେ କଠୋର ହେବା ଉଚିତ ନୁହେଁ। ସହି-ବୋହି ଭଲପାଇ ପ୍ରତ୍ୟେକଙ୍କୁ ଆତ୍ମସଂଶୋଧନରେ ପ୍ରବୁଦ୍ଧ କରିତୋଳିବାକୁ ହୁଏ। ତେବେ ନିଜ ପ୍ରତି କଠୋର ହେବା ଦରକାର। ତାହା ଦେଖି ମଣିଷ ଶିଖେ। ନିଜର ଓଜନ ଠିକ୍ ରଖି ଚାଲିବା ଦରକାର। ଅମୁକ୍ ଏକଥା କହିଲା, ତମୁକ ଏ କଥା କହିଲା – ତାଦ୍ୱାରା coloured (ରଙ୍ଗିନ) ହେଲେ କାର୍ଯ୍ୟ କରିବା ମୁସକିଲ। ମୁଁ ସମସ୍ତଙ୍କର କଥା ଶୁଣେ, କିନ୍ତୁ କାହାରି କଥାରେ coloured (ରଙ୍ଗିନ) ହୁଏ ନାହିଁ। ବରଂ ଭୁଲ ରହିଲେ mould (ନିୟନ୍ତ୍ରଣ) କରିବାକୁ ଚେଷ୍ଟା କରେ। ଅପର ସମ୍ବନ୍ଧରେ ଦୋଷ-ଦୃଷ୍ଟି ରଖିବା ଭଲ ନୁହେଁ। ଏହାଦ୍ୱାରା ଚାଲିବାର

ରାସ୍ତାରେ ଗୋଟିଏ ଅଯଥା barrier (ଅନ୍ତରାୟ) ସୃଷ୍ଟି କରାହୁଏ । ନିଜର ମଧ୍ୟ ଲାଭ ହୁଏ ନାହିଁ। ଅନ୍ୟର ମଧ୍ୟ ଭଲ ହୁଏ ନାହିଁ। ଦୋଷଦୃଷ୍ଟି ଓ ନିନ୍ଦାର ପ୍ରବୃତ୍ତି ଗୋଟିଏ positive disqualification (ବାସ୍ତବ ଅବଗୁଣ)। ମୁଁ କହେ, ଅନ୍ୟର ସମାଲୋଚନା କରି ଲାଭ କ'ଣ ? ତୁମେ ନିଜେ ଇଷ୍ଟଙ୍କ ପଥରେ ଅଟୁଟ ହୋଇ ଚାଲ ଏବଂ ଅନ୍ୟକୁ ମଧ୍ୟ ସେହି ପଥରେ ଚାଲିବାକୁ ସାହାଯ୍ୟ କର। ତାହା ଦେଇ ତୁମର କ୍ଷମତାର ବିଚାର ହେବ। Environment (ପରିବେଶ) ଯଦି-ଖରାପ ହିଁ ହୁଏ, ସେଠାରେ ତୁମର କରଣୀୟ ହେଉଛି – ନିଜର example (ଦୃଷ୍ଟାନ୍ତ) ଦେଇ effort (ଚେଷ୍ଟା) ଦେଇ, ଭଲପାଇବା ଦେଇ ସେମାନଙ୍କୁ mould (ନିୟନ୍ତ୍ରଣ) କରି ତୋଳିବା। ଏହା କଲେହିଁ ମଣିଷ ପରିବେଶ ସହ ଉନ୍ନତ ହୁଏ।

ଆ.ପ୍ର. ୯/୧୪.୭.୧୯୪୭

**ପ୍ର. – ଇଷ୍ଟାନୁସରଣ ମଧ୍ୟ ଦେଇ ମଣିଷ ଭିତରେ ଜ୍ଞାନ, ଅଭିଜ୍ଞତା ଓ ବ୍ୟକ୍ତିତ୍ୱର ଜାଗରଣ ହୁଏ କେତେବେଳେ ?**

**ଶ୍ରୀଶ୍ରୀ ଠାକୁର** – ଇଷ୍ଟାଟାଣ ଓ ପ୍ରବୃତ୍ତିଟାଣର ଦ୍ୱନ୍ଦର ଭିତର ଦେଇ ପ୍ରବୃତ୍ତିଟାଣ ଯେତେବେଳେ ଇଷ୍ଟାନୁଗ ବିନ୍ୟାସ ଓ ସମାଧାନ ଲାଭ କରେ ସେତେବେଳେହିଁ ଜ୍ଞାନ, ଅଭିଜ୍ଞତା ଓ ବ୍ୟକ୍ତିତ୍ୱର ଜାଗରଣ ହୁଏ।

ଆ.ପ୍ର. ୯/୧୯.୭.୧୯୪୭

**ପ୍ର. – ଯେଉଁଠାରେ ଇଷ୍ଟାନୁସରଣର ବିରୋଧ ହୁଏ ସେଠାରେ କିପରି ଭାବରେ ଚଳିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – କାହାରି ସହିତ ବିରୋଧ ନ କରି ତୁ ତୋର ଆଦର୍ଶଙ୍କ ମତରେ ଚାଲିବୁ। ଆଦର୍ଶଙ୍କ ମତରେ ଚାଲିବା ମାନେ ଯାହାଦ୍ୱାରା ସମସ୍ତଙ୍କର ଭଲ ହୁଏ ତାହାହିଁ କରିବା। ତୁ ଯଦି କାହାର ଅହଂକାରରେ ଆଘାତ ନ କରି, ସମସ୍ତଙ୍କ ସହିତ ସମ୍ପ୍ରୀତି ବଜାୟ ରଖି, ଅଟୁଟ ଓ କଠୋର ହୋଇ କୁଶଳ-କୌଶଳରେ ତୋର ଆଦର୍ଶଙ୍କ ପଥରେ ଚାଲୁ, ତେବେ ପ୍ରଥମଟା ଭୁଲ ବୁଝାବୁଝି ହେଲେ ମଧ୍ୟ ପରେ ଦେଖିବୁ ସମସ୍ତେ ତୋତେ ଭଲ ପାଇବେ।

ଆ.ପ୍ର. ୯/୨୧.୭.୧୯୪୭

**ପ୍ର. – ଇଷ୍ଟାନୁସରଣର ବାଧା କିପରି ଭାବରେ ଦୂର ହୁଏ ?**

**ଶ୍ରୀଶ୍ରୀଠାକୁର** – ଅସଲ ଜିନିଷ ହେଲା ଯୋଗ ଅର୍ଥାତ୍ ଇଷ୍ଟଙ୍କ ପ୍ରତି ଭକ୍ତି, ଭଲପାଇବା, ଅନୁରାଗ। ଏହି ନିଶା ଯେତେ ବଢ଼ି ବଢ଼ି ଯାଏ, ସେତେହିଁ ଦେଖିବୁ ଭିତରେ-ବାହାରେ ଯେକୌଣସି ବାଧାହିଁ ଆସୁନା କାହିଁକି, ତାଦେଇ ଇଷ୍ଟଙ୍କର ସ୍ୱାର୍ଥ ଓ ପ୍ରତିଷ୍ଠା କେତେଟା ହାସଲ କରିପାର। କୌଣସି ଚିନ୍ତାକୁ ଜୋର କରି ଚାପିଦେବାକୁ ଗଲେ, ତାହା ଆହୁରି ଅଧିକ ମନକୁ



ଆବୋରି ବସେ। ଏହାଦ୍ୱାରା ତାହା adjusted (ନିୟନ୍ତ୍ରିତ) ହୁଏ ନାହିଁ। କିନ୍ତୁ ଯାହା-କିଛିକୁ ଇଷ୍ଟସ୍ୱାର୍ଥପ୍ରତିଷ୍ଠାରେ ଲଗାଇବାର ବୁଦ୍ଧି ରହିଲେ ସେଗୁଡ଼ିକ ନିୟନ୍ତ୍ରିତ ହୋଇଆସେ। ଯେଉଁଗୁଡ଼ିକ ଅସୁବିଧାର କାରଣ ହୋଇଥିଲା, ସେହିଗୁଡ଼ିକ ସୁବିଧାର ଉପକରଣ ହୋଇଉଠେ। ତା'ଠାରୁ ଆସେ experience (ଅଭିଜ୍ଞତା), experience (ଅଭିଜ୍ଞତା)ରୁ knowledge (ଜ୍ଞାନ) ହୁଏ, knowledge (ଜ୍ଞାନ) ପରିପକ୍ୱ ହୋଇଉଠେ wisdomରେ (ପ୍ରଜ୍ଞାରେ)।

ଆ.ପ୍ର. ୯/୨୨.୭.୧୯୪୭

**ପ୍ର. – ଇଷ୍ଟାନୁସରଣ ପଥରେ ମଧ୍ୟ ମଣିଷ କେତେବେଳେ ଦୁଷ୍ଟ ଗ୍ରହର କବଳରେ ପଡ଼େ ? ତା'ଠାରୁ ରକ୍ଷା ପାଇବାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଯେତେବେଳେହିଁ ଦେଖିବ ଇଷ୍ଟଙ୍କ ଧନ୍ଦା ମୁଣ୍ଡରୁ ଘୁଞ୍ଚିଯାଉଛି, ଅନ୍ୟ ଧନ୍ଦା ପ୍ରବଳ ହୋଇଉଠୁଛି, ଆଉ ସେଥିରେ ମତ୍ତ ହୋଇ ଇଷ୍ଟଙ୍କ ପାଇଁ କରିବାଟା ବାଦ୍ ପଡ଼ିଯାଉଛି, ସେତେବେଳେହିଁ ଧରି ନିଅ ତୁମେ ଦୁଷ୍ଟ ଗ୍ରହର କବଳରେ ପଡ଼ିଯାଇଛ। ଏହି ଅବସ୍ଥାରେ ଜୋର କରି ନିଜକୁ ଇଷ୍ଟାର୍ଥୀ ଚଳନରେ ଓ କରଣରେ ବ୍ୟାପୃତ ରଖିବାକୁ ହୁଏ। ତାଦ୍ୱାରା ଦୁର୍ଭୋଗ ଅନେକ କମିଯାଏ। ...ଇଷ୍ଟସେବା ଠାରୁ କୌଣସି ସମୟରେ ବିରତ ହେବା ଉଚିତ ନୁହେଁ। ଆଉ ଇଷ୍ଟସେବା କରିବାକୁ ଗଲେହିଁ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଦିଗକୁ ନଜର ରଖି ପରିବେଶର ସେବା କରିବାକୁ ହୁଏ। ନିଜର ସ୍ୱାର୍ଥ ବଡ଼ କରି ଦେଖିବାକୁ ଗଲେହିଁ ନିଜର ସ୍ୱାର୍ଥକୁ ହରାଇବାକୁ ହୁଏ – ଏହା ହେଲା ବିଧିର ବିଧାନ। ଏହି ସତ୍ୟ ଯିଏ ନ ଜାଣିଛି ସେ ହେଲା ବେକୁବ୍-ବର୍ବର।

ଆ.ପ୍ର. ୯/୫.୯.୧୯୪୭

**ପ୍ର – ଇଷ୍ଟଙ୍କ ପ୍ରତି ବିଶ୍ୱାସ କିପରି ଆସେ ?**

**ଶ୍ରୀଶ୍ରୀଠାକୁର** – ଭକ୍ତି ରହିଲେ ବିଶ୍ୱାସ ଆସେ। ବିଶ୍ୱାସ ଜିନିଷଟା ମୂଳତଃହିଁ ଭକ୍ତି। କାହାରି ଉପରେ ହାଡ଼ଭଙ୍ଗା ଟାଣ ହେଲେ, ତା ସମ୍ବନ୍ଧରେ ଆଉ ପ୍ରଶ୍ନ ରହେ ନାହିଁ, ଏହି ପ୍ରଶ୍ନହୀନ ଭାବଟାହିଁ ବିଶ୍ୱାସ। ମୋର ନିଜର ଅସ୍ତିତ୍ୱ ସମ୍ବନ୍ଧରେ ଯେପରି ମୋର କୌଣସି ପ୍ରଶ୍ନ ନାହିଁ। ମୁଁ ଅଛି ଏହାହିଁ ମୋ ନିକଟରେ ଅବଧାରିତ। ମୋ ଜୀବନରେ ମୋର ଇଷ୍ଟହିଁ ସର୍ବପ୍ରଥମ ଓ ସର୍ବପ୍ରଧାନ ଏହିପରି ଅକାଟ୍ୟ ଭଲପାଇବା ଯେତେବେଳେ ଗଜାଏ, ସେତେବେଳେ ସେ ବୋଧ ଆଉ ଟଳେ ନାହିଁ। ସେ ଅତ୍ୟାଚାର କରିଲେ ମଧ୍ୟ ମନରେ କୌଣସି ବିରୂପ ଭାବ ଆସେ ନାହିଁ। ସବୁଥିରେ ହିଁ ମୁଁ ରାଜି। ସୁଖରେ ରହିଲେ ମଧ୍ୟ ତାଙ୍କୁ ନେଇ ବିଭୋର ହୋଇ ରହେ। ଦୁଃଖରେ ରହିଲେ ମଧ୍ୟ ତାଙ୍କୁ ନେଇ ବିଭୋର ହୋଇ ରହେ। ଏହି ନିଶା କୌଣସି ପ୍ରକାରେହିଁ କାଟେ ନାହିଁ। ଏହାକୁହିଁ କହନ୍ତି ବିଶ୍ୱାସ ବା ନିଷ୍ଠା। ବେକାଇଦାରେ ପଡ଼ିଲେ

ଯେତେବେଳେହିଁ ଭକ୍ତି ନଷ୍ଟ ହୋଇଯାଏ, ଦୋଷାରୋପ ବା ଅନୁଯୋଗ ଅଭିଯୋଗର ବୁଦ୍ଧି ଆସେ, ସେତେବେଳେହିଁ ବୁଝିବାକୁ ହେବ ଭକ୍ତି ବିଶ୍ୱାସର ଇଲାକାରେ ଆମ୍ଭେମାନେ ପଶି ନାହୁଁ।

ଆ.ପ୍ର. ୯/୧୨.୯.୧୯୪୭

**ପ୍ର. – ଇଷ୍ଟଙ୍କଠାରେ ପ୍ରଶ୍ନହୀନ ଭକ୍ତି-ବିଶ୍ୱାସରେ ମଣିଷ କିପରି ହୁଏ ?**

**ଶ୍ରୀଶ୍ରୀ ଠାକୁର –** ଭକ୍ତି-ବିଶ୍ୱାସର ଶ୍ରେଷ୍ଠ ଦୃଷ୍ଟାନ୍ତ ହେଲେ ହନୁମାନ। ରାମଚନ୍ଦ୍ରଙ୍କୁ ଖୁସି କରିବା ଧନ୍ଦାରେହିଁ ସେ ସାରାଜୀବନଟା କଟାଇ ଦେଲେ। ଆଉ କୌଣସି ଧନ୍ଦା ନାହିଁ। ଛାତି ଚିରି ଦେଖାଇ ଦେଲେ ସେଠାରେ ରାମଚନ୍ଦ୍ର ହିଁ ବିରାଜ କରିଛନ୍ତି। ତାଙ୍କର ହୃଦୟ ମଧ୍ୟରେ ଜଣେହିଁ ଅଛନ୍ତି। ସେ ହେଲେ ରାମଚନ୍ଦ୍ର। ଆଉ, ରାମଚନ୍ଦ୍ର ଅଛନ୍ତି ବୋଲି ଏପରିକି ରାମଚନ୍ଦ୍ରଙ୍କର ଯାହା-କିଛି ସହ ବିଶ୍ୱ ଦୁନିଆ ମଧ୍ୟ ତାଙ୍କ ପାଖରେ କେତେ ମୂଲ୍ୟବାନ। କିନ୍ତୁ ରାମବିହୀନ ଅମୂଲ୍ୟ ରତ୍ନହାର ମଧ୍ୟ ତାଙ୍କ ପାଖରେ ଅସାର ଓ ମୂଲ୍ୟହୀନ। ତାହାକୁ ସେ ଗୁରୁତ୍ୱ ଦିଅନ୍ତି ନାହିଁ। ତାକୁ କଣାକଉଡ଼ିର ଦାମ୍ ଦିଅନ୍ତି ନାହିଁ। ଭକ୍ତି-ବିଶ୍ୱାସ ଏମିତି କରିହିଁ ମଣିଷକୁ ଏକାଧାରରେ ମହା ଆସକ୍ତ ଓ ମହା ନିର୍ଲିପ୍ତ କରି ତୋଳେ। ସେ ଦୁନିଆଦାରୀର ପଛରେ ଦୌଡ଼େ ନାହିଁ। କିନ୍ତୁ ଦୁନିଆର ଐଶ୍ୱର୍ଯ୍ୟ-ମାନ-ଯଶ, ତା'ହା ପଛରେ ଗୋଡ଼ାଏ। ତା' ଦେଇ ଇଷ୍ଟସେବାରେ ସୁବିଧା ନ ହେଲେ ସେ ସେଦିଗକୁ ଭ୍ରୂକ୍ଷେପ ମଧ୍ୟ କରେ ନାହିଁ। ବରଂ ସନ୍ତର୍ପଣରେ ଏଡ଼ାଇ ଚାଲେ। ଯଦି ତାହାର ଇଷ୍ଟଭଜନ ଅର୍ଥାତ୍ ଇଷ୍ଟଙ୍କର ସଙ୍ଗ, ସେବା, ସ୍ମରଣ-ମନନ, ଯାଜନ, ପ୍ରୟୋଜନ-ପୂରଣ ଇତ୍ୟାଦି ଅଟୁଟ ଥାଏ, ଅସ୍ଖଳିତ ଥାଏ ତେବେ କୌଣସି ଦୁଃଖକୁହିଁ ସେ ଦୁଃଖ ବୋଲି ମନେ କରେ ନାହିଁ। ପୁଣି, କୌଣସି ସୁଖକୁହିଁ ସେ ସୁଖ ବୋଲି ମନେ କରେ ନାହିଁ, ଯଦି ସେ-ସୁଖ ଭୋଗ କରିବାକୁ ଯାଇ ମୁହୂର୍ତ୍ତକ ପାଇଁ ମଧ୍ୟ ତାର ମନ ଇଷ୍ଟାନୁସରଣ ଠାରୁ ବିଚ୍ଛିନ୍ନ ବା ବିଚ୍ୟୁତ ହୋଇ ପଡ଼େ। ତାକୁହିଁ ସେ ଜୀବନର ପରମ ଦୁର୍ଭାଗ୍ୟ ଓ ଦୁର୍ଘଟଣା ବୋଲି ମନେ କରେ। ସେ-କଷ୍ଟ ସେ ସହିପାରେ ନାହିଁ। ତା'ହେଲେ ବୁଝନ୍ତୁ ତା'ର ଚରିତ୍ରଟା କି ରୂପ ନିଏ। ପୁଣି, ଇଷ୍ଟଙ୍କୁ ଯିଏ ଭଲପାଏ ପରିବେଶକୁ ମଧ୍ୟ ସେ ଭଲ ନ ପାଇ, ସେବା ନ କରି ରହିପାରେ ନାହିଁ। ଜଣେ ନିଷ୍ଠାବାନ ବିଶ୍ୱାସୀ ଭକ୍ତ ଯେଉଁ ମୂଳକରେ ଥାଏ, ସେ ମୂଳକର ଚେହେରାହିଁ ବଦଳିଯାଏ। ସେ ଯେ କି ଜିନିଷ ତାହା କହି ବୁଝାଇ ହୁଏ ନାହିଁ। ଏହି ରକମର ମଣିଷ ଚର୍ମ-ଚକ୍ଷୁରେ ଦେଖିବାକୁ ପାଇବା ମଧ୍ୟ ଭାଗ୍ୟର କଥା।

ଆ.ପ୍ର. ୯/୧୨.୯.୧୯୪୭

**ପ୍ର. – ଇଷ୍ଟଙ୍କୁ ଗ୍ରହଣ କରିବା ସତ୍ତ୍ୱେ ମଧ୍ୟ କେତେବେଳେ ମଣିଷର ବିଶେଷ କିଛି ପରିବର୍ତ୍ତନ ହୁଏ ନାହିଁ ?**

**ଶ୍ରୀଶ୍ରୀଠାକୁର –** ପ୍ରବୃତ୍ତି ଗୁଡ଼ିକ ଅପେକ୍ଷା ମଣିଷ ପାଖରେ ଇଷ୍ଟ ଯଦି ପ୍ରିୟ ନ ହୋଇ ଉଠନ୍ତି, ପ୍ରଧାନ ନ ହୋଇ ଉଠନ୍ତି, ତା'ହେଲେ କିନ୍ତୁ କିଛିହିଁ ହୁଏ ନାହିଁ। ଇଷ୍ଟ ଆମ୍ଭମାନଙ୍କୁ କଲ୍ୟାଣକର ନିର୍ଦ୍ଦେଶ ଦେଇ ପାରନ୍ତି, କିନ୍ତୁ ପ୍ରବୃତ୍ତିର ବିରୁଦ୍ଧ-ସମ୍ବେଗକୁ ଉପେକ୍ଷା କରି ଇଷ୍ଟନିର୍ଦ୍ଦେଶକୁ ପ୍ରାଧାନ୍ୟ ଦେଇ ଚାଲିବା ଆମ୍ଭମାନଙ୍କର ଇଚ୍ଛାସାପେକ୍ଷ ବ୍ୟାପାର, ଅନୁରାଗସାପେକ୍ଷ ବ୍ୟାପାର। ତା' ଉପରେ ତାଙ୍କର କୌଣସି ହାତ ନାହିଁ। ସେଥିପାଇଁ ଭଗବାନ ଆମ୍ଭମାନଙ୍କୁ ବଞ୍ଚାଇ ପାରନ୍ତି ନାହିଁ। ବଞ୍ଚାଇ ପାରେ ଭଗବତ୍‌ଅନୁରାଗ। ଏଥିପାଇଁ ଗୀତାରେ ଅଛି, ମଣିଷ ନିଜେହିଁ ନିଜର ଶତ୍ରୁ, ନିଜେହିଁ ନିଜର ବନ୍ଧୁ। ନିଜର ଚେଷ୍ଟାରେ ନିଜକୁ ଉଦ୍ଧାର କରିବାକୁ ହୁଏ।

ଆ.ପ୍ର. ୯/୧୨.୯.୧୯୪୭

**ପ୍ର. – ଯଦି ନିଜ ଚେଷ୍ଟାରେ ନିଜକୁ ଉଦ୍ଧାର କରିବାକୁ ହୁଏ, ତାହାହେଲେ ଇଷ୍ଟଙ୍କର ପ୍ରୟୋଜନ କ'ଣ ?**

**ଶ୍ରୀଶ୍ରୀଠାକୁର –** ଆରେ ପାଗଳ! ଇଷ୍ଟ ନ ହେଲେ ତୋର ଟାଣଟା ରହିବ କାହା ଉପରେ ? ଟାଣକୁ ତ ପ୍ରବୃତ୍ତିକୁ ବାଣ୍ଟି ଦେଇଛୁ। ସବୁ ଦେଇ-ଥୋଇ ଦେବାଳିଆ ହୋଇ ବସି ରହିଛୁ। ବଞ୍ଚିବା-ବଢ଼ିବାର ସମ୍ବଳ ବେହାତି ହୋଇଯାଇଛି। ବର୍ତ୍ତମାନ ତାକୁ ହାତକୁ ଆଣିବୁ କିପରି ? ଏଥିପାଇଁହିଁ ଇଷ୍ଟଙ୍କର ପ୍ରୟୋଜନ, ଯିଏ କିନା ପ୍ରବୃତ୍ତିର ଅଧିଶ୍ୱର ହୋଇ ସତ୍ତାସମ୍ବର୍ଦ୍ଧନାରେ ସ୍ୱାଧିଷ୍ଠିତ ଅଛନ୍ତି। ଭଲ-ମନ୍ଦ ସବୁ ପ୍ରବୃତ୍ତି ଦେଇ ତାଙ୍କୁ ଭଲପାଇବା ଓ ପୂରଣ କରିବା ଦରକାର। ସେତେବେଳେହିଁ ସେଗୁଡ଼ିକ ଆୟତ୍ତକୁ ଆସିଯାଏ। ମୂର୍ତ୍ତ ସତ୍ତାସମ୍ବର୍ଦ୍ଧନାକୁ ଲକ୍ଷ୍ୟ କରି ଆବର୍ତ୍ତିତ ହେଉ-ହେଉ ସେଗୁଡ଼ିକ ମଧ୍ୟ ସତ୍ତାସମ୍ବର୍ଦ୍ଧନୀ ହୋଇ ପାଖୁଡ଼ା ମେଲାଇ ଉଠେ। ନାନା ପ୍ରବୃତ୍ତିର ନାନାମୁଖୀ ଦ୍ୱନ୍ଦ ଲୋପ ପାଇଗଲେ ଜୀବନରେ ଅପାର ଶାନ୍ତି ଆସେ। ପ୍ରବୃତ୍ତିର ଜ୍ୱଳନ, ପିଡ଼ନ, ରାହାଜାନି ଓ ଦଗାବାଜିର ହାତରୁ ଯିଏ ମୁକ୍ତି ପାଏ, ସେ ଯେ କେତେ ଆରାମ ପାଏ, ତାର କୌଣସି ଲେଖାଯୋଖା ଅଛି କି ? ତେବେ ଖୁବ୍ ସାବଧାନରେ ରହିବାକୁ ହୁଏ। ଇଷ୍ଟନିଷ୍ଠାକୁ ଅକ୍ଷୁର୍ଣ୍ଣ ରଖିବାକୁ ହୁଏ। ତାହା କ୍ଷୁର୍ଣ୍ଣ ହେଲେ ପ୍ରବୃତ୍ତି ଗୁଡ଼ିକ ପୁଣି ଦୌରାତ୍ମ୍ୟ ଆରମ୍ଭ କରିଦିଏ।

ଆ.ପ୍ର. ୯/୧୨.୯.୧୯୪୭

**ପ୍ର. – ଇଷ୍ଟାନୁସରଣରେ ସଂସାରୀ ମଣିଷର ତ ବିଭିନ୍ନ ପ୍ରକାର ବାଧା, ତା' ମଧ୍ୟ ଦେଇ ଚାଲିବାର କୌଶଳଟି କ'ଣ ?**

**ଶ୍ରୀଶ୍ରୀଠାକୁର –** ମଣିଷ ସଂସାରୀ ହେଉ, ସେଥିରେ କିଛି କ୍ଷତି ନାହିଁ। କିନ୍ତୁ ନିରାଶୀ-ନିର୍ମମ ହେଲେହିଁ ହୁଏ, ସେଥିରେ ସଂସାର କିଛି କ୍ଷତି କରିପାରେ ନାହିଁ। ଏହା ମନ-ପ୍ରାଣରେ ବୁଝିବା ଦରକାର ଯେ, ମୁଁ ବୋଲି ଯାହାକୁ କୁହେ ସେ ତାର ସବୁକିଛି ନେଇ ଇଷ୍ଟଙ୍କର। ଇଷ୍ଟ ମାନେ – ଯାହାଙ୍କ ମଧ୍ୟରେ ମଙ୍ଗଳ ବସବାସ କରେ। ବଞ୍ଚିବା ବା ଯାହାକିଛି କରିବା ତାହା

କେବଳ ଏହି ଇଷ୍ଟଙ୍କ ପାଇଁ। ସଂସାର ମଧ୍ୟ ଇଷ୍ଟାର୍ଥେ। ସବୁକିଛି ନେଇ ସର୍ବତୋଭାବରେ ଇଷ୍ଟଙ୍କର ହୋଇ ତାଙ୍କର ଆଶା ଆକାଙ୍‌କ୍ଷା ପୂରଣ କରି ଚାଲିବାକୁ ହେବ, ସଂସାର ଓ ପରିବେଶର ସେବା କରିବାକୁ ହେବ ତାଙ୍କ ପାଇଁ ତାଙ୍କରି ଲୋକଙ୍କର ସେବା କରୁଛି ଏହିପରି ଭାବ ନେଇ। ଏହାକୁହିଁ କହନ୍ତି ନିରାଶୀ-ନିର୍ମମ ହୋଇ ସଂସାର କରିବା। ସଂସାର କରିବା ମଧ୍ୟରେ ଏହା ବ୍ୟତୀତ ଅନ୍ୟ କୌଣସି ଆଶା-ଆକାଙ୍‌କ୍ଷା, ଧନ୍ଦା ବା ଉଦ୍ଦେଶ୍ୟ ରଖିବା ଉଚିତ୍ ନୁହେଁ। ଏହି ଭାବ ନେଇ ପରିବାର-ପରିଜନର ଓ ପରିବେଶର ପ୍ରୀତିପୂର୍ଣ୍ଣ ପରିଚର୍ଯ୍ୟା କରିଲେ ତାହାଦ୍ୱାରା ମଣିଷ ଆବଦ୍ଧ ନ ହୋଇ ମୁକ୍ତ ହୁଏ, ଆଉ ଯେଉଁମାନେ ଏହିପରି ପରିଚର୍ଯ୍ୟା ପାଆନ୍ତି, ସେମାନେ ମଧ୍ୟ ଇଷ୍ଟଙ୍କ ପ୍ରତି ଉନ୍ମୁଖ ହୋଇଉଠନ୍ତି। ଆ.ପ୍ର. ୯/୨୬.୯.୧୯୪୭

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ଅନୁସରଣକାରୀମାନଙ୍କ ମଧ୍ୟରେ ସଂହତିର ଅଭାବ, ଦୋଷଦର୍ଶନ, ନିନ୍ଦାବାଦ, ସନ୍ଦେହ ଇତ୍ୟାଦି କ'ଣ ପାଇଁ ଆସେ? ସେତେବେଳେ କ'ଣ ଦେଖି ବୁଝାଯିବ ଯେ ଜଣେ ପ୍ରକୃତରେହିଁ ଇଷ୍ଟଙ୍କଠାରେ ଅନୁରକ୍ତ?**

**ଶ୍ରୀଶ୍ରୀଠାକୁର** – ତାହାର ଅର୍ଥ ସେମାନେ ଇଷ୍ଟଙ୍କଠାରେ ଅନୁରକ୍ତ ନୁହଁନ୍ତି। ଅନୁରକ୍ତ ନିଜର ଅହମିକା ଓ ସ୍ୱାର୍ଥର ସେବାରେ। ଇଷ୍ଟଙ୍କଠାରେ ଯିଏ ଅନୁରକ୍ତ ସେ ଅନ୍ୟର ଦୋଷ ଦେଖି ଦୁଷ୍ଟ ହୋଇ ସେହି ଦୋଷ ଚାରିଆଡ଼େ କହିବୁଲେନା। ତାର ନଜର ସବୁ ସମୟରେ ନିରାକରଣର ଦିଗକୁ। ସେ ତାହାହିଁ କରେ ଯାହାଦ୍ୱାରା ମଣିଷ ସହିତ ମଣିଷର ମିଳନ ହୁଏ। ବିଷାକ୍ତ ହୋଇ ବିଷ ବୁଣେ ନାହିଁ। ଯାହା ମଧ୍ୟରେ ଏତେଟିକିଏ sincerity (ଆନ୍ତରିକତା) ଅଛି, ସେ ଅନ୍ୟର ଦୋଷ ଦେଖିବା ଆଗରୁ ନିଜର ଦୋଷ ଦେଖେ ଏବଂ ତାହା ଦୂର କରିବା ପାଇଁ ବ୍ୟସ୍ତ ଥାଏ। ସମସ୍ତଙ୍କ ସମ୍ମୁଖରେ ନିଜର ତ୍ରୁଟି ସ୍ୱୀକାର କରିବାକୁ ସେ ଆଦୌ କୁଣ୍ଠିତ ହୁଏ ନାହିଁ। ଆଉ ତା'ର ସେହି ଆତ୍ମାନୁସନ୍ଧାନୀ ନିରଭିମାନ ଚଳନହିଁ ଅନ୍ୟକୁ ଆତ୍ମସଂଶୋଧନରେ ପ୍ରବୁଦ୍ଧ କରିତୋଳେ। ପୁଣି ତାହାର ସହନଶୀଳତା ମଧ୍ୟ ଖୁବ୍ ବଢ଼ିଯାଏ। ଦୋଷଗୁଣ ସବୁ ନେଇ ସେ ମଣିଷକୁ ଭଲପାଇବାକୁ ଶିଖେ। ତେବେ ଇଷ୍ଟଙ୍କ ପକ୍ଷରେ କ୍ଷତିକର କେହି କିଛି କରିଲେ ତାହାକୁ ବିହିତ ଭାବରେ ନିରୋଧ କରିବା ପାଇଁ ସେ ପରାଙ୍ମୁଖ ହୁଏ ନାହିଁ। ଏହି ନିରୋଧ କରିବାକୁ ଯାଇ ସେ କମ୍‌ହିଁ ବିରୋଧ ସୃଷ୍ଟି କରେ। କାହାର ଅହଂକୁ ଅଯଥା ଆଘାତ କରିବାର ବୁଦ୍ଧି ତାର ରହେ ନାହିଁ। ସନ୍ତର୍ପଣରେ ଅନ୍ୟର ଦୋଷ ତ୍ରୁଟି ଧରାଇଦେଇ ସେ ତା' ସମ୍ମୁଖରେ glowing (ଉଜ୍ଜଳ) କରି ତୋଳି ଧରେ – ତା'ର ଭଲହେବାର ଓ ଭଲ କରିବାର ସମ୍ଭାବନା କେତେ ବିପୁଳ। ମଣିଷର ଭଲକୁ ଉସ୍‌କାଇ ଦେଇ ତାକୁ କ୍ରମାଗତ ଭଲ କରାଇବାହିଁ ହୁଏ ତାର ନିଶା। ଇଷ୍ଟାନୁରାଗୀ ଯିଏ ତାର ଚରିତ୍ର ସଂହତି-ସନ୍ଦୀପୀ ହେବହିଁ।

ଆ.ପ୍ର. ୯/୪.୧୦.୧୯୪୭



**ପ୍ର. – ଇଷ୍ଟାନୁସରଣରେ ସାର୍ଥକ ହେବାକୁ ହେଲେ ଗୋଟିଏ-କଥାରେ ମଣିଷର ଜୀବନ-ଚଳନର ମୁଖ୍ୟ ସୂତ୍ର କ'ଣ?**

ଶ୍ରୀଶ୍ରୀଠାକୁର ମଧୁର କଣ୍ଠରେ ପ୍ରାଣମତାଣିଆ ଭଙ୍ଗିରେ ସ୍ୱର କରି କହିଲେ –

''ସର୍ବଧର୍ମାନ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ।
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ॥''

**ଶ୍ରୀକୃଷ୍ଣ କହିଛନ୍ତି** – ତୁମର ମନଗଢ଼ା ଧର୍ମା-ଧର୍ମ, କର୍ତ୍ତବ୍ୟା-କର୍ତ୍ତବ୍ୟର ବୋଧ ଛାଡ଼ିଦେଇ, ସମସ୍ତ କାର୍ଯ୍ୟରେ, ସମସ୍ତ ଚିନ୍ତାରେ, ସମସ୍ତ କଥାରେ, ସମସ୍ତ କାମନାରେ ଏକମାତ୍ର ମୋତେ ରକ୍ଷା କରି ଚାଲ, ପରିପାଳନ କରି ଚାଲ, ପ୍ରାଧାନ୍ୟ ଦେଇ ଚାଲ। ମୋତେ କେବେହେଲେ ବି sacrifice (ତ୍ୟାଗ) କର ନାହିଁ। ଏହି ଟିକକ ଯଦି କରି ଚାଲିପାର, ତାହାହେଲେ ତୁମର ପାଳନ, ତୁମର ରକ୍ଷଣ କେବେ ବି ପତିତ ହେବ ନାହିଁ, କେବେ ବି ସ୍ଖଳିତ ହେବ ନାହିଁ। ଅନୁଶୋଚନା କରିବାର ତୁମର କୌଣସି କାରଣହିଁ ରହିବ ନାହିଁ।

ଆ.ପ୍ର. ୯/୬.୧୦.୧୯୪୭

**ପ୍ର. – ଇଷ୍ଟଙ୍କର ନାମଧ୍ୟାନ ପ୍ରତିଦିନ ନ କରିଲେ କ'ଣ ହୁଏ?**

**ଶ୍ରୀଶ୍ରୀଠାକୁର** – ନାମଧ୍ୟାନ ପ୍ରତିଦିନ ଠିକ୍ ଭାବରେ କରିବୁ। ଏହି ଦିଗରୁ କମ୍ ହେଲେ ଜୀବନର ସବୁ କ୍ଷେତ୍ରରେ ଅଭାବ ଓ ଅସାମଞ୍ଜସ୍ୟ ଦେଖା ଦେବ। ...ମଣିଷ ଯଦି ଠିକ୍ ଭାବରେ ଚାଲେ, କରେ ସେଥିରେ କେବଳ ତା'ର ଭଲ ହୁଏ ନାହିଁ, ପରିବାର-ପରିବେଶର ଅନେକଙ୍କରହିଁ ସେଥିରେ ଭଲ ହୋଇଥାଏ। ଆଉ, ତା'ର ଚାଲିବାର ଯଦି ତ୍ରୁଟି ଥାଏ, ସେଥିରେ କେବଳ ତା'ର କ୍ଷତି ହୁଏ ନାହିଁ, ତା'ର ପରିବାର-ପରିବେଶର ମଧ୍ୟ ସେଥିରେ କ୍ଷତି ହୁଏ।

ଆ.ପ୍ର. ୯/୭.୧୦.୧୯୪୭

**ପ୍ର. – ଇଷ୍ଟକେନ୍ଦ୍ରିକ ଜୀବନରେ ମୂଳ ପ୍ରୟୋଜନ କ'ଣ?**

**ଶ୍ରୀଶ୍ରୀଠାକୁର** – ମୂଳ ଜିନିଷ ହେଲା unrepelling adherence to the Ideal (ଇଷ୍ଟଙ୍କଠାରେ ଅଚ୍ୟୁତ ଅନୁରାଗ)। କାହାରି-କାହାରି ଇଷ୍ଟଙ୍କ ପ୍ରତି ଖୁବ୍ ଆବେଗର ପ୍ରାଚୁର୍ଯ୍ୟ ଦେଖାଯାଏ, ପୁଣି ଦେଖାଯାଏ ନାମଧ୍ୟାନ ପ୍ରତି ଆଗ୍ରହ, ଅନୁଭୂତିପ୍ରବଣ ଧାଁଚ୍ ଇତ୍ୟାଦି, କିନ୍ତୁ ବିଶେଷ କୌଣସି କାମନା, ସ୍ୱାର୍ଥ ବା ପ୍ରବୃତ୍ତିର ଉପରେ ଆଘାତ ଲାଗିଲେହିଁ ହୁଏତ ଦେଖାଯିବ ଭକ୍ତି ତୁଟି ଗଲା, ଇଷ୍ଟଙ୍କୁ ଧରି ରଖି ପାରିଲା ନାହିଁ। ସେଥିପାଇଁ ଏହିପରି ଧର୍ମାନୁପ୍ରାଣତା କିନ୍ତୁ ଭଣ୍ଡାମିର ଡାହାଣୀ ପ୍ରଭାବ-ମୁକ୍ତ ନୁହେଁ। ପ୍ରକୃତ ଭକ୍ତି ଯେଉଁଠାରେ ସେଠାରେ ଶଇତାନ ଶକ୍ତିହୀନ। ସେ କୁହେ – 'ଠାକୁର! ମୁଁ ତୁମ ଛଡ଼ା ଆଉ କାହାକୁ ଚାହେଁ ନାହିଁ, କିଛି ଚାହେଁ ନାହିଁ। ମୋର ସବୁ ଗଲେ ମଧ୍ୟ କିଛି ଯିବ ନାହିଁ ଯଦି ତୁମେ ଥାଅ ଏବଂ ତୁମ ପ୍ରତି ଭଲପାଇବା

ଥାଏ। ଆଉ, ଦୁନିଆଦାରୀର ସବୁ-କିଛି ପାଇ ମଧ୍ୟ ମୋର କୌଣସି ଲାଭ ନାହିଁ ଯଦି ତା' ସହିତ ତୁମେ ନ ଥାଅ। ତୁମେ ମୋର ଜୀବନ ସର୍ବସ୍ୱ, ଇହକାଳ ସର୍ବସ୍ୱ, ପରକାଳ ସର୍ବସ୍ୱ। ତୁମକୁ ପାଇବାକୁ ଯାଇ ଯଦି ଲକ୍ଷେ କଷ୍ଟ ପାଇବାକୁ ହୁଏ, ଅଜସ୍ର ଅପମାନ, ଅସମ୍ମାନ, ଲୋକସାନ, ନିନ୍ଦାଗ୍ଲାନି ଓ ନିର୍ଯ୍ୟାତନ ସହିବାକୁ ହୁଏ, ତାହା ମଧ୍ୟ ମୋର ମହାଲାଭ। ତୁମ ପାଇଁ କୌଣସି ମୂଲ୍ୟହିଁ ମୋ ପାଖରେ ଅଧିକ ନୁହେଁ।' କେବଳ କୁହେ ନାହିଁ – ଭାବେ ବି ସେପରି, କରେ ବି ସେପରି, ଚାଲେ ବି ସେପରି। ଠାକୁରହିଁ ଯେ ତାର ଅସ୍ତିତ୍ୱ। ଏହି ଅହୈତୁକୀ ଅବ୍ୟଭିଚାରିଣୀ ଭକ୍ତିର ବିନ୍ଦୁମାତ୍ର ଯଦି କାହାରି ଥାଏ, ତାହା ନେଇ ସେ ଜଗତକୁ ମତାଇ ଦେଇ ପାରେ। ଶଇତାନର ଶଇତାନି ପୋଡ଼ି ପାଉଁଶ କରି ଦେଇ ପାରେ।

ଆ.ପ୍ର. ୯/୧୦.୧୧.୧୯୪୭

**ପ୍ର. – ଇଷ୍ଟାନୁସରଣରେ ନାମଜପ ଓ ଧ୍ୟାନ ଯେ କରିବାକୁ ହୁଏ ତାର ପ୍ରକୃତ ତାତ୍ପର୍ଯ୍ୟ କ'ଣ ଆଉ ପ୍ରୟୋଜନହିଁ ବା କ'ଣ ?**

**ଶ୍ରୀଶ୍ରୀଠାକୁର** – ପାତଞ୍ଜଳିରେ ଅଛି, ତଜ୍ଜପସ୍ତଦର୍ଥଭାବନମ୍। ଜପ ମଧ୍ୟରେ ଅଛି ମାନସ ଆବୃତ୍ତି। ଆବୃତ୍ତି ମାନେ ସମ୍ୟକ ଭାବରେ ରହିବା। ଜପ୍ୟ ମନ୍ତ୍ର ବା ନାମ ଆଦି କାରଣର ପ୍ରତୀକ-ସ୍ୱରୂପ। ଆଉ, ନାମ କରିବାମାନେ ସେହି କାରଣ-ସତ୍ତା ପ୍ରତି ଆନତ ହୋଇ ତାଙ୍କ ଠାରେହିଁ ଅବସ୍ଥାନ କରିବାର ଚେଷ୍ଟା କରିବା। ଅର୍ଥ ମାନେ ଗତି ବା ଗନ୍ତବ୍ୟ। ନାମର ଗନ୍ତବ୍ୟ ହେଉଛନ୍ତି ନାମୀ। ନାମର ଅର୍ଥ ଭାବିବାକୁ ଗଲେହିଁ ନାମୀଙ୍କଠାରେ ଯାଇ ପହଞ୍ଚିବାକୁ ହେବ। ନାମ, ନାମୀ, ଜଗତ ଓ ମୁଁ ଏହିସବୁ ଗୁଡ଼ିକର ସାର୍ଥକ ସଙ୍ଗତି ଓ ସମ୍ପର୍କ ଆବିଷ୍କାର କରିବାହିଁ ଜପଧ୍ୟାନର କାର୍ଯ୍ୟ। ତା' ଯଦି ନ କରୁ ତେବେ ଅନ୍ଧାରରେ ବାଟ ଚାଲିବା ପରି ଅବସ୍ଥା ହୁଏ। ଚଳଣୀଟା ହୁଏ ଢିଲା ପରି। କାରଣ, ନିଜ ସହିତ ଓ ଜଗତ ସହିତ ଏବଂ ତାର ପଛରେ ଥିବା କାରଣ ସହିତ କୌଣସି ପରିଚୟ ବା ଯୋଗସୂତ୍ର ଘଟେ ନାହିଁ। ସେଥିପାଇଁ ଚଳଣୀଟା ହୁଏ ଅବିନ୍ୟସ୍ତ ଓ ଅସଙ୍ଗତିପୂର୍ଣ୍ଣ। କିନ୍ତୁ ସେହି ପରିଚୟ କରିବା ଆମ୍ଭମାନଙ୍କର ଏକାନ୍ତ ଦରକାର। ଅର୍ଥ ସହ ନାମ କରିଲେ ଠାକୁରଙ୍କର ପରମସ୍ଫୂର୍ତ୍ତି ହୁଏ। ନାମ ହେଲା ଶବ୍ଦବ୍ରହ୍ମରହିଁ ପ୍ରତୀକ, ତାଠାରୁହିଁ ଯାହା-କିଛିର ଉଦ୍ଭବ। ନାମ ମଧ୍ୟରେହିଁ ଅଛି ବିଶ୍ୱ-ସତ୍ତାର ବର୍ଣ୍ଣ ପରିଚୟ। ନାମହିଁ ଠାକୁରଙ୍କ ସତ୍ତା, ପ୍ରତିଟି ଯାହା-କିଛିର ସତ୍ତା। ତୁମର ପ୍ରାଣନ-ଶକ୍ତିର ତୋଷଣ କଲେ ତୁମେ ଯେପରି ତୃପ୍ତ ହୁଅ, ଠାକୁରଙ୍କ ପ୍ରତି ଅନୁରାଗ ନେଇ ନାମ କଲେ, ସେ ମଧ୍ୟ ସେମିତି ତୃପ୍ତ ହୁଅନ୍ତି, ତୁଷ୍ଟ ହୁଅନ୍ତି ଅର୍ଥାତ୍ ତୁମର ସତ୍ତାରୂପୀ ଠାକୁର ପ୍ରେରଣାପୁଷ୍ଟ ଓ ନନ୍ଦିତ ହୋଇ ଉଠନ୍ତି। ଯେତେହିଁ ନାମଧ୍ୟାନ କରାଯାଏ ସେତେହିଁ ଠାକୁରଙ୍କ ପ୍ରତି ଅର୍ଥାତ୍ ଜୀବନ୍ତ ସଦ୍‌ଗୁରୁଙ୍କ ପ୍ରତି ସତ୍ତାର ସମ୍ବେଗ ବଢ଼େ। ସେ ହିଁ ଯେ ଆମର ଜୀବନର ପ୍ରାଣ ଏହିପରି ଅନୁଭବ ସମସ୍ତ



ସତ୍ତାକୁ ଜୋର କରି ଜାବୁଡ଼ି ଧରେ। ଏହି ଭାବରେ ଅଗ୍ରସର ହେଉ-ହେଉ "ବାସୁଦେବଃ ସର୍ବମିତି" ହୋଇ ଉଠନ୍ତି। ସ୍ପଷ୍ଟ ବୋଧ କରାଯାଏ ସେ ଛଡ଼ା କେହି ନାହିଁ, କିଛି ନାହିଁ। ସମସ୍ତଙ୍କ ମଧ୍ୟରେ ଏକଙ୍କୁ ଦେଖେ, ପୁଣି ସେହି ପରମ ଏକଙ୍କ ମଧ୍ୟରେ ସମସ୍ତଙ୍କୁ ଦେଖେ। ଏହି ଦେଖିବାଟାହିଁ ତ ଦେଖିବା, ଏହି ଜାଣିବାଟାହିଁ ତ ଜାଣିବା। ...ନାମର ସହିତ ଧ୍ୟାନ ନ ରହିଲେ ନାମଟା sterile (ବନ୍ଧ୍ୟା) ହୋଇଯାଏ ପୁଣି ଧ୍ୟାନର ସହିତ ନାମ ନ ରହିଲେ ଧ୍ୟାନଟା dry (ଶୁଷ୍କ) ହୋଇଉଠେ।

ଆ.ପ୍ର. ୧୦/୯.୧୨.୧୯୪୭

**ପ୍ର. – ଇଷ୍ଟ, ଗୁରୁ-ପୁରୁଷୋତ୍ତମ ଯେ ସର୍ବଦା ପୃଥିବୀ ପୃଷ୍ଠରେ ରହନ୍ତି, ତାହା ତ ନୁହେଁ, ସେ ଯେତେବେଳେ ନ ରହନ୍ତି, ସେତେବେଳେ ମଣିଷ କିପରି ଭାବରେ ତାଙ୍କୁ ଧରିବ ?**

**ଶ୍ରୀଶ୍ରୀଠାକୁର** – ଧରିବା ମାନେ ଦୀକ୍ଷା ନେବା। ଯୁଗ-ପୁରୁଷୋତ୍ତମଙ୍କ ଭାବରେ ଭାବିତ, ଅନୁରଞ୍ଜିତ, ନିଷ୍ଠାବାନ, ଆଚାରବାନ, ତଦ୍‌ଗତଚିତ୍ତ ଋତ୍ୱିକଙ୍କ ପାଖରୁ ସେହି ପୁରୁଷୋତ୍ତମ-ପ୍ରବର୍ତ୍ତିତ ଦୀକ୍ଷାରେ ଦୀକ୍ଷିତ ହୋଇ ଏହି ପୁରୁଷୋତ୍ତମଙ୍କୁହିଁ ଇଷ୍ଟ ମାନି ତାଙ୍କରି ପଥରେ ଚାଲିବ।

ଆ.ପ୍ର. ୧୦/୩.୧.୧୯୪୮

**ପ୍ର. – ଇଷ୍ଟଙ୍କୁ ପାଇବା କେଉଁମାନଙ୍କ ଜୀବନରେ ସାର୍ଥକ ହୁଏ ?**

**ଶ୍ରୀଶ୍ରୀଠାକୁର** – ନିଜର ଖିଆଲଖୁସି ଓ ଚାହିଦାକୁ ବିସର୍ଜନ ଦେଇ ଯେଉଁମାନେ ନିଜକୁ ତାଙ୍କ ହାତରେ ସମ୍ପୂର୍ଣ୍ଣ ଛାଡ଼ିଦିଅନ୍ତି, ସେମାନଙ୍କର ତାଙ୍କୁ ପାଇବା ସାର୍ଥକ ହୁଏ। ପରମପୁରୁଷଙ୍କୁ ନିଜର ମନ ଅନୁସାରେ ଯେଉଁମାନେ ପାଇବାକୁ ଚାହାଁନ୍ତି ଏବଂ ସେହିପରି ନ ପାଇଲେ ଯେଉଁମାନେ କ୍ଷୁବ୍ଧ ହୁଅନ୍ତି, ସେମାନଙ୍କର ବିଶେଷ କିଛି ଲାଭ ହୁଏ ନାହିଁ, ସେମାନେ ଠକି ଯାଆନ୍ତି। କିନ୍ତୁ ଯେତେ କଷ୍ଟହିଁ ହେଉ, ଯେଉଁମାନେ ନିଜକୁ ତାଙ୍କରି ମନ ଅନୁସାରେ ଗଢ଼ି ତୋଳିବାକୁ ରାଜି ଥାଆନ୍ତି, ସେମାନଙ୍କର ଆଉ ଭାବନା ନାହିଁ। ଗୋଟିଏ ଜୀବନରେ ଆତ୍ମନିୟନ୍ତ୍ରଣର ଦିଗ ଦେଇ ସେମାନେ ଯେତେଟା ଅଗ୍ରସର ହୁଅନ୍ତି, ଶହ-ଶହ ଜୀବନ ସାଧନା କରି ମଧ୍ୟ ମଣିଷ ତା' ପାଖକୁ ପହଞ୍ଚିପାରେ ନାହିଁ। ...ତାଙ୍କ ପ୍ରତି unrepelling attachment (ଅଚ୍ୟୁତ ଅନୁରାଗ) ଦରକାର। ତାଙ୍କର ଯେଉଁ ନିର୍ଦ୍ଦେଶ ଯେତେଟା ଭଲ ଲାଗିବ, ତାହା ସେତିକି ପାଳନ କରିବ, ଯେଉଁଟା ଭଲ ଲାଗିବ ନାହିଁ, ତାହା ଏଡ଼ାଇ ଚାଲିବ – ଏଥିରେ କିନ୍ତୁ ଚଳିବ ନାହିଁ। ତାଙ୍କୁ ଯଦି ଭଲପାଅ, ତାଙ୍କର ପ୍ରତ୍ୟେକଟି ନିର୍ଦ୍ଦେଶ ଯେତେ କଷ୍ଟ ସାଧ ହେଉ ନା କାହିଁକି, ତୁମକୁ ଭଲ ଲାଗିବ। ମଣିଷ ଯେ ଇଷ୍ଟଙ୍କର ପ୍ରତ୍ୟେକଟି ନିର୍ଦ୍ଦେଶ ହସ-ହସ ମୁହଁରେ ମୁଣ୍ଡପାତି ଗ୍ରହଣ କରିପାରେ ନାହିଁ, ତା'ର କାରଣ, ପ୍ରତ୍ୟେକଙ୍କର କେତେଗୁଡ଼ିଏ ପୋଷା ଓ ପ୍ରିୟ ଦୁର୍ବଳତା ଥାଏ। ସେଗୁଡ଼ିକ ଉପରେ କେହି ଖୁବ୍ ବେଶି ହାତ ମାରୁ, ଏହା

ତା'ର ପସନ୍ଦ ହୁଏ ନାହିଁ। ଏହା ହେଉଛି ଗୋଟିଏ ରକମର ଶାତନ-ପ୍ରୀତି। ଏହି ଶାତନ-ପ୍ରୀତି ଇଷ୍ଟପ୍ରୀତିର ପଥରେ ବାଧା ଦିଏ ଏବଂ ଇଷ୍ଟଙ୍କର ଇଚ୍ଛାର ତାଳେ-ତାଳେ ଚାଲିବାକୁ ଦିଏ ନାହିଁ। ଯେଉଁମାନେ ସେ ଦିଗକୁ ଭ୍ରୁକ୍ଷେପ ନ କରି ବରଂ ତା' ପ୍ରତି ନିର୍ମମ ହୋଇ ବେପରୁଆ ଭାବରେ ଇଷ୍ଟଙ୍କର ପ୍ରତିଟି ଇଚ୍ଛା ପୂରଣ କରିଚାଲନ୍ତି, ସେମାନଙ୍କର ସ୍ଥୁଳ, ସୂକ୍ଷ୍ମ, ସବୁରକମର ଦୁର୍ବଳତା ଓ ଅଭିଭୂତି ଯେ କିପରି ଭାବରେ କଟିଯାଏ, ତାହା ସେମାନେ ବୁଝି ପାରନ୍ତି ନାହିଁ।

ଆ.ପ୍ର. ୧୦/୩.୧.୧୯୪୮

**ପ୍ର. – ଇଷ୍ଟାର୍ଥପୂରଣର ଧନ୍ଦା ନେଇହିଁ ପାରିପାର୍ଶ୍ୱିକ ଓ ବୃହତ୍ତର ପରିବେଶର ସେବା କରିବାକୁ ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର** – ସେହିଟିହିଁ ହେଲା fundamental (ମୂଳ) କଥା। ସେଠାରେ ଛିଡ଼ା ନ ହେଲେ ଆପଣଙ୍କର ସତ୍ତାର ସ୍ଥିତି କେଉଁଠି ? ପରିବେଶ ତା'ର ନିଜର ପ୍ରୟୋଜନ ମେଣ୍ଟାଇବାର ତାଗିଦ୍‌ରେ ଆପଣଙ୍କୁ କେଉଁ ଅସ୍ଥାନରେ (ଅଜାଗାରେ) ଟାଣି ନେଇ ସାବାଡ଼ କରିଦେବ, ତାହା ଆପଣ ଠିକ୍ ପାଇବେ ନାହିଁ। ସତ୍ତାପୋଷଣୀ ସେବା ଆପଣ ଦେଇ ପାରିବେ ନାହିଁ ଯଦି ଆପଣଙ୍କର ଇଷ୍ଟାର୍ଥପୂରଣୀ ଧନ୍ଦା ଓ ତା'ର ମାନଦଣ୍ଡ ଠିକ୍ ନ ଥାଏ। ପରିବେଶ ସେତେବେଳେ ଆପଣଙ୍କର ସେବାପ୍ରାଣତାକୁ ନିଜର ପ୍ରବୃତ୍ତି ପୋଷଣାର୍ଥେ କାର୍ଯ୍ୟରେ ଲଗାଇବ। ଆପଣ ବୋକା ହୋଇଯିବେ। ବହୁତ କରିବେ, କିନ୍ତୁ କୌଣସି ମଣିଷ ଆପଣଙ୍କର asset (ସମ୍ପଦ) ହେବ ନାହିଁ। ସେମାନେ ମଧ୍ୟ ଆପଣଙ୍କର ବୃତ୍ତିରେ ତେଲ ମାଲିସ୍ କରିବା ପାଇଁ ଆପଣଙ୍କୁ ଖୁବ୍ ବାହାବା ଦେବେ ଆଉ ଆପଣ ମଧ୍ୟ ସେମାନଙ୍କର ବାହାବା ପାଇବାର ଲୋଭରେ ସେମାନଙ୍କର ଆବୁଲ-ତାବୁଲ ଚାହିଦା ମେଣ୍ଟାଇ ଚାଲିବାକୁ ଚେଷ୍ଟା କରିବେ। ଶେଷରେ ଆପଣଙ୍କର ପ୍ରାଣନାଶପରି ଅବସ୍ଥା ହେବ। ଆପଣ ଯେବେ ସେମାନଙ୍କର ଚାହିଦା ସହିତ ତାଳ ରଖି ଚାଲି ପାରିବେ ନାହିଁ, ସେତେବେଳେ ସେମାନେ ଆପଣଙ୍କର ବିରୁଦ୍ଧାଚରଣ କରିବେ। ଲାଭ ମଧ୍ୟରେ ଏହିଟାହିଁ ଲାଭ ହେବ। ...ଫଳକଥା ମଣିଷକୁ ସେତେବେଳେହିଁ ସେବା କରାହୁଏ, ଯେତେବେଳେହିଁ ତା' ଭିତରେ ଯୋଗ୍ୟତା ଓ ଆତ୍ମଶକ୍ତିର ଉଦ୍‌ବୋଧନ କରିଦିଆହୁଏ। ଇଷ୍ଟାନୁଗ ସେବାର ଭିତର ଦେଇହିଁ ତାହା ସମ୍ଭବ ହୁଏ। ଇଷ୍ଟାନୁଗ ସେବାର ଅଙ୍ଗହିଁ ହେଲା ବହିରଙ୍ଗ ସେବାର ସହିତ ତା'ର ଭିତରଟା adjust (ନିୟନ୍ତ୍ରଣ) କରିବା, ଯାହାଦ୍ୱାରା ସେ କେବଳ ନିଜର ସ୍ୱାର୍ଥ ଓ ପ୍ରବୃତ୍ତି ନେଇ ବିବ୍ରତ ନ ଥାଏ ଏବଂ ନିଜର ଘୁମନ୍ତ ଶକ୍ତିକୁ ଜାଗ୍ରତ କରି କାର୍ଯ୍ୟରେ ଲଗାଇବାର ତାଗିଦ୍ ବୋଧ କରେ। ଏହା ପାଇଁ ତା' ଭିତରର ଇଷ୍ଟପ୍ରାଣତା ସଞ୍ଚାରିତ କରି ତାର ସତ୍ତାରେ ହାତ ଦେବାକୁ ହୁଏ। ଏହି ଟିକକ ନ କଲେହିଁ ସବୁ ବ୍ୟର୍ଥ। ମୁଁ କହେ ବାପ-ମା'ଙ୍କ ପ୍ରତି ଭକ୍ତି ଖୁବ୍ ବଡ଼ ଜିନିଷ। କିନ୍ତୁ ତା' ମଧ୍ୟ ଯଦି



ଇଷ୍ଟାନୁଗ ପରିଣତି ଲାଭ ନ କରେ, ତାହା ମଧ୍ୟ ସେବି ବ୍ୟଭିଚାରୀ ଭକ୍ତିରେ ପର୍ଯ୍ୟବସିତ ହୁଏ। ଗୋଟିଏ ମାଳ ଗୁନ୍ଥିରେ କିନ୍ତୁ ମାଳର ଦୁଇଦିଗ ଯଦି ଏକ ସହିତ ବାନ୍ଧି ନ ଦିଅନ୍ତି, ତାହା କାହାରି ଗଳାରେ ପିନ୍ଧାଇ ପାରିବେ ନାହିଁ। ମାଳ ହୋଇ ମଧ୍ୟ ତାହା ମାଳର କାର୍ଯ୍ୟ କରେ ନାହିଁ। ସେବା ବା ଭକ୍ତି ମଧ୍ୟ ସେହିପରି ଅଲଗା ବ୍ୟାପାର ହୋଇଯାଏ ଯଦି ତାହା ଇଷ୍ଟବନ୍ଧନରେ ବନ୍ଧା ନ ପଡ଼େ। ତାହା କୌଣସି ସାର୍ଥକତା ଲାଭ କରେ ନାହିଁ। ତା'ଛଡ଼ା ଇଷ୍ଟପ୍ରାଣତା ନ ରହିଲେ ମଣିଷଗୁଡ଼ିକ ଗୁଚ୍ଛ ବାନ୍ଧି ଉଠନ୍ତି ନାହିଁ। ପରସ୍ପର ସ୍ୱାର୍ଥାନ୍ୱିତ ହୁଅନ୍ତି ନାହିଁ।

ଆ.ପ୍ର. ୧୦/୧୬.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ମାନସିକ ବ୍ୟଭିଚାର କାହାକୁ କୁହାଯାଏ ?**

**ଶ୍ରୀଶ୍ରୀଠାକୁର** – ଗୁରୁ-ନିର୍ଦ୍ଦେଶିତ ଦାୟିତ୍ୱ ଓ କର୍ତ୍ତବ୍ୟକୁ ଅବହେଳା କରି ଅନେକେ ନିଜର ଖିଆଲ-ଖୁସି ଅନୁସାରେ ତଥାକଥିତ 'ସତ୍‌କାର୍ଯ୍ୟ କରି ବୁଲନ୍ତି। ହୁଏତ ତୀର୍ଥ କରିଛବୁଲନ୍ତି, କେଉଁଠି ମହୋତ୍ସବରେ ମାତି ଯାଉଛନ୍ତି, କାହାର ବଜାର-ହାଟ କରି ଦେଉଛନ୍ତି, କିନ୍ତୁ ଇଷ୍ଟ ଯାହା-ଯାହା କରିବାକୁ କହିଛନ୍ତି, ତାହା ବିସ୍ମରଣ ହୋଇଯାଇଛି। ଏଗୁଡ଼ିକ ମାନସିକ ବ୍ୟଭିଚାର ଭିତରେ ଆସେ। ଇଷ୍ଟଙ୍କୁ ତ୍ୟାଗ କରିନାହିଁ ବା ସେ-କଥା ବି ଭାବେ ନାହିଁ କିନ୍ତୁ ଇଷ୍ଟଙ୍କର ନିର୍ଦ୍ଦେଶ ଗୁଡ଼ିକ ପାଳନ କରିବାକୁ ଯାଇ ଯେଉଁମାନେ ଅବାନ୍ତର ଉପପଥରେ ବିଭ୍ରାନ୍ତ ହୋଇ ଚାଲନ୍ତି, ସେମାନେ ମଧ୍ୟ ଏହି ଦଳରେ ପଡ଼ନ୍ତି। ....ଅମୁକ ପରି ସତ୍‌ଲୋକ କମ୍ ଅଛନ୍ତି, କିନ୍ତୁ ତା' ଉପରେ depend (ନିର୍ଭର) କରିବା ମୁସ୍କିଲ। ହୁଏତ ତାକୁ କୁହାହେଲା – କଲିକତାରୁ ଗୋଟିଏ ଔଷଧ କିଣି ନେଇ କାଲି ହିଁ ଫେରିବା ଦରକାର। ସେ ସେହି ଉଦ୍ଦେଶ୍ୟ ନେଇ ବାହାରିବ। କିନ୍ତୁ ମଝି ରାସ୍ତାରେ ଆହୁରି କେତେ ଜଣଙ୍କର କେତେ ବ୍ୟାପାରରେ ଯେ ଜଡ଼ାଇ ପଡ଼ିବ ତା'ର ଠିକ୍ ନାହିଁ। ଏବଂ ଏହାର କୌଣସିଟାହିଁ ତାର ନିଜର ସ୍ୱାର୍ଥସିଦ୍ଧି ପାଇଁ ନୁହେଁ, ପ୍ରତ୍ୟେକଙ୍କର ଭଲ ଯେପରି ହୁଏ, ତାହା କରିବାହିଁ ତା'ର ଉଦ୍ଦେଶ୍ୟ। ଶେଷ ପର୍ଯ୍ୟନ୍ତ ଦେଖାଯିବ ଆବୁଲ-ତାବୁଲ ଅନେକ କିଛି କରିବାକୁ ଯାଇ ତା'ର ମୂଳ କାର୍ଯ୍ୟଟାହିଁ ସେ ଭୁଲିଯାଇଛି। ଉପଯୁକ୍ତ ସମୟ ମଧ୍ୟରେ ତା ଉପରେ ନ୍ୟସ୍ତ ହୋଇଥିବା ଦାୟିତ୍ୱ ସେ କିଛି ପ୍ରକାରେ ବି ଉଦ୍‌ଯାପନ କରିପାରିବ ନାହିଁ। ମୁଁ ଦେଖିଛି ମୋର ନିର୍ଦ୍ଦେଶ ଯେଉଁମାନେ ଯଥାସମୟରେ କଣ୍ଟାରେ-କଣ୍ଟାରେ ପାଳନ କରି ଚାଲନ୍ତି – ହଜାରେ ଟାଣରେ ବିକ୍ଷିପ୍ତ ନ ହୋଇ, ସେମାନେ କିନ୍ତୁ ଅନେକ ଅବାନ୍ତର ଜଟିଳତା ଓ ଦୁର୍ଭୋଗରୁ ବଞ୍ଚି ଯାଆନ୍ତି। ପରମପିତାଙ୍କୁ ନେଇ thoroughly engaged (ପରିପୂର୍ଣ୍ଣ ଭାବରେ ବ୍ୟାପୃତ) ରହିବାହିଁ ନିୟତିର ନିଗ୍ରହ ଯଥାସମ୍ଭବ ଅତିକ୍ରମ କରିବାର ଏକମାତ୍ର ପଥ।

ଆ.ପ୍ର. ୧୦/୨୧.୧.୧୯୪୮

**ପ୍ର. – ଇଷ୍ଟାନୁସରଣ ମାଧ୍ୟମରେ କ'ଣ ବୈରାଗ୍ୟ ବି ଆସେ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କ ଉପରେ ଅନୁରାଗ ପ୍ରବଳ ନ ହେଲେ ବୈରାଗ୍ୟ ଆସିପାରେ ନାହିଁ। ତାହା ମଧ୍ୟରେହିଁ ସବୁ ରହିଯାଇଛି। ଇଷ୍ଟଙ୍କ ଉପରେ ଟାଣ ଯେତେ ବଢ଼େ, ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ପ୍ରତିକୂଳ ଯାହା ତା' ପ୍ରତି ଲାଳସା ସେତେ କମିଯାଏ। ବୈରାଗ୍ୟ ମାନେ ଏହା ନୁହେଁ ଯେ ବିଷୟ ଓ ସଂସାରକୁ ଅବହେଳା କରିବାକୁ ହେବ। ସବୁକିଛିକୁ ଇଷ୍ଟାର୍ଥେ ଗୋଛାଇ ତୋଳିବାହିଁ ବରଂ ଅସଲ ବୈରାଗ୍ୟ। ଇଷ୍ଟଙ୍କର ଅଭିପ୍ରାୟକୁ ରୂପ ଦେବା ପାଇଁହିଁ ଆମକୁ ଯାହା-କିଛି କରିବାକୁ ହେବ। ଏବଂ ତାହା ଆଗ୍ରହ ସହକାରେ ଓ ସୁଷ୍ଠୁ ଭାବରେ କରିବାକୁ ହେବ। ତାହା ନ କରି ଉତ୍ସାହ-ଉଦ୍ୟମହୀନ ହୋଇ ଅଳସୁଆ ପରି ବସି ରହିଲି, ତାହା ବୈରାଗ୍ୟ ନୁହେଁ। ଇଷ୍ଟଙ୍କୁହିଁ ସବୁଠାରୁ ନିଜର ଓ ବଡ଼ ବୋଲି ଜାଣିବାକୁ ହେବ, ମାନିବାକୁ ହେବ। ଆମ ପାଖରେ ତାଙ୍କ ଠାରୁ ପ୍ରିୟତର ବା ଅଧିକ ମୂଲ୍ୟବାନ ବୋଲି କିଛି ରହିବ ନାହିଁ। ଆମର ଲକ୍ଷ-ଲକ୍ଷ ଟଙ୍କା ଥାଉ, କିନ୍ତୁ ସେ ଟଙ୍କା ରହିବ ଇଷ୍ଟସେବା ଓ ଇଷ୍ଟାର୍ଥୀସେବା ପାଇଁ! ତାଙ୍କ ପାଇଁ ଯଦି ପ୍ରୟୋଜନ ହୁଏ, ତାହାହେଲେ ମୁଁ ଯେ-କୌଣସି ସମୟରେ ଯେ-କୌଣସି ତ୍ୟାଗ ସ୍ୱୀକାର ପାଇଁ ପ୍ରସ୍ତୁତ ରହିବି। ଏହି ତ୍ୟାଗ କରି ମଧ୍ୟ ତ୍ୟାଗର କୌଣସି ଅହଂକାର ରହିବ ନାହିଁ। ଆମର ଅର୍ଥ ତାଙ୍କର ସେବାରେ କିମ୍ବା ତାଙ୍କର wishes (ଇଚ୍ଛା) fulfil (ପୂରଣ) କରିବା ପାଇଁ ଲୋକସେବାରେ ଲାଗିଛି ବୋଲି ନିଜକୁ ଧନ୍ୟ ମନେ କରିବି। ବୈରାଗ୍ୟର ସବୁଠାରୁ ବଡ଼ ଦୃଷ୍ଟାନ୍ତ ଆମ୍ଭେମାନେ ଶିବାଜୀଙ୍କ ଜୀବନରେ ଦେଖିବାକୁ ପାଉ। ନିଜେ ରାଜା ହୋଇ ଗୁରୁଙ୍କୁ ରାଜ୍ୟ ଦେଇ ଦେଲେ। ପୁଣି ଗୁରୁଙ୍କ ଇଚ୍ଛାରେ ଗୁରୁଙ୍କ representative (ପ୍ରତିନିଧି) ସ୍ୱରୂପ ନିଖୁଣ ରାଜକାର୍ଯ୍ୟ ଚଳାଇ ଗଲେ। ଆମର ସବୁକିଛିକୁ ତାଙ୍କର ବୋଲି ଜାଣିବାକୁ ହେବ ଏବଂ ତାଙ୍କରି ସେବାରେ ନିୟୋଗ କରିବାକୁ ହେବ। ଏହାଦ୍ୱାରା ମଣିଷ 'ମୁଁ', 'ମୋର' 'ମୁଁ', 'ମୋର' କରି କହି ପାଗଳ ହୁଏନାହିଁ, ଜଡ଼ାଇ ପଡ଼େନାହିଁ। ସବୁକିଛିରେ ଲିପ୍ତ ଥାଇ ମଧ୍ୟ ନିର୍ଲିପ୍ତ ଥାଏ। ତାର ଆସକ୍ତି ଇଷ୍ଟଙ୍କଠାରେ କେନ୍ଦ୍ରୀଭୂତ ରହେ। ସେଥିପାଇଁ ରୂପ, ଗୁଣ, ଐଶ୍ୱର୍ଯ୍ୟ, ସମ୍ମାନ, ପ୍ରତିପତ୍ତି, ଭୋଗସୁଖ କୌଣସିଟାହିଁ ତାକୁ ସେଠାରୁ ବିଚ୍ୟୁତ କରିପାରେ ନାହିଁ। ଏହାକୁହିଁ କହନ୍ତି ଅନାସକ୍ତି ବା ବୈରାଗ୍ୟ। ପୁଣି, କୌଣସିକିଛି ଯଦି ତାର ଇଷ୍ଟାଚଳନରେ ଏକାନ୍ତହିଁ ବ୍ୟାଘାତ ଘଟାଏ ଏବଂ ସେ କୌଣସିମତେ ଯଦି ତା'ର ଇଷ୍ଟାନୁଗ ନିୟନ୍ତ୍ରଣ, ସାମଞ୍ଜସ୍ୟ, ସମାଧାନ କରି ନ ପାରେ, ତେବେ ମୁହୂର୍ତ୍ତକ ମଧ୍ୟରେ ତାହା ପରିହାର କରିବାକୁ ଅଟକେ ନାହିଁ। ବିଲ୍ୱମଙ୍ଗଳ ଯେପରି ନିଜର ଆଖିଦୁଇଟିକୁ ନଷ୍ଟ କରି ପକାଇଥିଲେ, କାରଣ ଏହି ଆଖି ନାରୀର ରୂପ ଆଡ଼କୁ ଆକୃଷ୍ଟ କରି ତାର ମନକୁ ଭଗବତ୍-ପାଦପଦ୍ମଠାରୁ ଘୁଞ୍ଚାଇ ନେଇ ଯାଉଥିଲା।

ଆ.ପ୍ର. ୧୦/୨୪.୧.୧୯୪୮



**ପ୍ର. – ଇଷ୍ଟାନୁସରଣ ଯଦି ଠିକ୍-ଠିକ୍ ହୁଏ ତାହା ଆମ୍ଭମାନଙ୍କୁ କେଉଁଠାକୁ ନେଇଯାଏ ?**

**ଶ୍ରୀଶ୍ରୀଠାକୁର –** ମୋକ୍ଷ, ମୋକ୍ଷ କହିଲେ ମାନେ ମୁଁ ବୁଝେ surrendered life (ଆତ୍ମସମର୍ପିତ ଜୀବନ)। ପରମପିତାଙ୍କ ନିକଟରେ ଯେତେବେଳେ ଆମ୍ଭେମାନେ ନିଜକୁ ସମର୍ପି ଦେଉ, ତାଙ୍କୁ ଯେତେବେଳେ ଅଧିକାର ଓ କର୍ତ୍ତୃତ୍ୱ ଦେଉ – ତାଙ୍କର ଇଚ୍ଛାନୁସାରେ ଆମ୍ଭମାନଙ୍କର ଅସ୍ତିତ୍ୱକୁ ବ୍ୟବହାର ଓ ନିୟୋଗ କରିବା ପାଇଁ,ଯେତେବେଳେ ଆମ୍ଭେମାନେ ପୁରାପୁରି ତାଙ୍କ ହାତରେ ଥାଉ, ତାଙ୍କର ହୋଇ ଚାଲୁ, ସେତେବେଳେ ଆମ୍ଭେମାନେ ପ୍ରବୃତ୍ତିର ଶାସନ ଓ ପ୍ରଭୁତ୍ୱଠାରୁ ମୁକ୍ତି ପାଉ। ବୃତ୍ତି ଗୁଡ଼ିକ ସେତେବେଳେ କିନ୍ତୁ ନଷ୍ଟ ହୁଏ ନାହିଁ। ସେଗୁଡ଼ିକ ସେତେବେଳେ ତାଙ୍କର ସେବକ ହୁଏ। ସତ୍ତା ସେତେବେଳେ ନିଜର ଆଗ୍ରହ ନେଇ ଦୀପ୍ତି ପାଏ। କଥାଟା କିପରି ଜାଣ – ଚନ୍ଦ୍ରଗ୍ରହଣ ସମୟରେ ପୃଥିବୀର ଛାୟା ଚନ୍ଦ୍ର ଉପରେ ପଡ଼େ। ଯେଉଁ ଅଂଶ ଉପରେ ଛାୟା ପଡ଼େ, ସେ ଅଂଶ ଅନ୍ଧକାରାଚ୍ଛନ୍ନ ହୋଇଯାଏ। ପୂର୍ଣ୍ଣିମା ଚାନ୍ଦର ଯେଉଁ ପରିପୂର୍ଣ୍ଣ ଚେହେରା, ତାହା ଆଉ ଆମ୍ଭମାନଙ୍କ ଆଖିରେ ପଡ଼େ ନାହିଁ। କିନ୍ତୁ ଛାୟା ଯେତେବେଳେ ଅପସରି ଯାଏ, ସେତେବେଳେ ପୂର୍ଣ୍ଣିମା ଚାନ୍ଦର ପୂର୍ଣ୍ଣରୂପ ପୁଣି ଦେଖାଯାଏ। ...ଇଷ୍ଟଙ୍କ ଉପରେ ସର୍ବପ୍ଲାବି ଟାଣ ହେଲେ ଠିକ୍ ଏହିପରି ହୁଏ। ସତ୍ତାର ପୂର୍ଣ୍ଣ ଜ୍ୟୋତି ସେତେବେଳେ ପ୍ରକାଶିତ ହୁଏ ଏବଂ ଇଷ୍ଟଙ୍କର ଅଭିପ୍ରାୟ ପୂରଣରେ ଅର୍ଥାତ୍ ଲୋକମଙ୍ଗଳ ସାଧନରେ ତାହା ଯେ କି ଦୁର୍ବାର ଶକ୍ତି ହିସାବରେ କାର୍ଯ୍ୟ କରେ, ତାହା କହି ଶେଷ କରାଯାଏ ନାହିଁ। ବୀର ହନୁମାନ, ସେଣ୍ଟ ପଲ, ଆଲି, ଓମର, ଆବୁବକ୍ର, ନିତ୍ୟାନନ୍ଦ, ବିବେକାନନ୍ଦ ଇତ୍ୟାଦି ଭକ୍ତ ତା'ର ଉଜ୍ଜଳ ଦୃଷ୍ଟାନ୍ତ।

ଆ.ପ୍ର. ୧୦/୨୫.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ଯାଜନ ସ୍ୱତଃ ହୁଏ କେତେବେଳେ ?**

**ଶ୍ରୀଶ୍ରୀଠାକୁର –** କାହାକୁ ଭଲପାଇଲେ ସ୍ୱତଃହିଁ ତାର ପ୍ରସଙ୍ଗ ଆସିଥାଏ। ତାକୁହିଁ କହନ୍ତି ଯାଜନ। ଇଷ୍ଟାନୁରାଗୀ ମଣିଷ ସେଥିପାଇଁ ଯାଜନମୁଖର ହେବହିଁ। ଯାଜନର ଭିତର ଦେଇ ସେ ଇଷ୍ଟଙ୍କୁହିଁ enjoy (ଉପଭୋଗ) କରେ। ଇଷ୍ଟ ହେଲେ ପ୍ରତିପ୍ରତ୍ୟେକଙ୍କର ସତ୍ତା-ସ୍ୱରୂପ। ସୋହାଗର ସହିତ ସତ୍ତାର ରୂପ ସ୍ୱରୂପର କଥା ଯେତେବେଳେ କେହି କୁହେ, ସେତେବେଳେ ଯେଉଁମାନେ ଶୁଣନ୍ତି, ସେମାନଙ୍କର ସତ୍ତା ମଧ୍ୟ କ୍ଷଣିକ ପାଇଁ ହେଲେ ବି ସାଡ଼ା ଦେଇ ଉଠିଥାଏ। ସେଥିପାଇଁ ସେମାନେ ମଧ୍ୟ enjoy (ଉପଭୋଗ) କରନ୍ତି। ଯାଜନ ବଡ଼ ଜବର ମାଲ।

ଆ.ପ୍ର. ୧୦/୨୫.୧.୧୯୪୮

**ପ୍ର – ଇଷ୍ଟଙ୍କର ନିର୍ଦ୍ଦେଶ ପାଳନ କରିବା ଯଦିକଷ୍ଟ ସାଧ ହୋଇଉଠେ ?**

**ଶ୍ରୀଶ୍ରୀଠାକୁର** – ମୋ ମାଧ୍ୟମରେ ଯେଉଁ ନିର୍ଦ୍ଦେଶ ତୁମେମାନେ ପାଇବ, ତାହା ଶତ କଷ୍ଟସାଧ୍ୟ ହେଲେ ମଧ୍ୟ ପାଳନ କରିଚାଲ। ମୋର ନିର୍ଦ୍ଦେଶ ପାଳନ କରିବାକୁ ଯାଇ ଯଦି ଆପାତତଃ ଦୁଃଖ-କଷ୍ଟ-ଅସୁବିଧା ମଧ୍ୟରେ ପଡ଼ିବାକୁ ହୁଏ, ତାହା ମଧ୍ୟ ବରଣ କରିନେବା ଭଲ। ଯେଉଁ-କଷ୍ଟରେ ଅନର୍ଥର ଅବସାନ ହୁଏ, ସେ-କଷ୍ଟ ଅନର୍ଥ ଆମନ୍ତ୍ରକ ସୁଖସ୍ୱାଚ୍ଛନ୍ଦ୍ୟଠାରୁ ଅନେକ ବେଶୀ କାମ୍ୟ। ଆ.ପ୍ର. ୧୦/୨୫.୧.୧୯୪୮

**ପ୍ର. – ଇଷ୍ଟଙ୍କ ପ୍ରତି ଭଲପାଇବା କ'ଣ ମଣିଷର ଅତୀତକୁ ବଦଳାଇ ଦେଇପାରେ ?**

**ଶ୍ରୀଶ୍ରୀଠାକୁର** – ମଣିଷର ବର୍ତ୍ତମାନର character (ଚରିତ୍ର) ଓ condition (ଅବସ୍ଥା) ତାର ଅତୀତର ଚାଲିବା, କହିବା, ଚିନ୍ତା ଓ କର୍ମର resultant (ସମଷ୍ଟିଗତଫଳ) ଛଡ଼ା ଆଉ କିଛି ନୁହେଁ। ତାର ଚାଲିବା, କହିବା, ଚିନ୍ତା ଓ କର୍ମର ଧରଣ ଯଦି ବଦଳିଯାଏ, ତେବେ ତାର character (ଚରିତ୍ର) ଓ condition ମଧ୍ୟ (ଅବସ୍ଥା ମଧ୍ୟ) ଧିରେ-ଧିରେ ବଦଳିଯାଏ। ଭଲପାଇବାହିଁ ଏହି ପରିବର୍ତ୍ତନ ସାଧନରେ ସହାୟତା କରିଥାଏ – ତାହା ଭଲ ଦିଗରୁ ହେଉ ବା ମନ୍ଦ ଦିଗରୁ ହେଉ। ସେଥିପାଇଁ ସଚେତନ ଭାବରେ ଇଷ୍ଟଙ୍କଠାରେ ଭଲପାଇବା ନିୟୋଜିତ କରିବାକୁ ହୁଏ, ତାହାଦ୍ୱାରା ଅତୀତକର୍ମଜାତ ଅମଙ୍ଗଳ ମଙ୍ଗଳର ଦିଗକୁ ସୁନିୟନ୍ତ୍ରିତ ହେଉଥାଏ। ଇଷ୍ଟଙ୍କଠାରେ ଭଲପାଇବା ନିୟୋଜିତ କରିବାପାଇଁହିଁ ଦୀକ୍ଷା ଗ୍ରହଣ କରି ଦୈନନ୍ଦିନ କରଣୀୟଗୁଡ଼ିକ ଅନୁଶୀଳନ କରି ଚାଲିବାକୁ ହୁଏ। ପୁଣି, ଭଲପାଇବା ଯେତେ ପୁଷ୍ଟ ହୁଏ ସେହି କରିବାଗୁଡ଼ିକ ସେତେ spontaneous, habitual ଓ constant (ସ୍ୱତଃ, ସ୍ୱଭାବଗତ ଓ ନିରବଚ୍ଛିନ୍ନ ହୋଇ ଉଠିଥାଏ।) ଆ.ପ୍ର. ୧୦/୨୫.୧.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟଦେଇ ତାଙ୍କୁ ଭଲପାଇବାରେ ଯେଉଁମାନଙ୍କର ସ୍ୱାର୍ଥଧନ୍ଦାହିଁ ପ୍ରବଳ ସେମାନଙ୍କର କ'ଣ ଉପାୟ ହେବ ?**

**ଶ୍ରୀଶ୍ରୀଠାକୁର** – ସେମାନଙ୍କର ବୈଧୀ ଭକ୍ତିର ଅନୁଶୀଳନ କରିଚାଲିବା ଉଚିତ। ପ୍ରଥମେ ସେମାନଙ୍କର ଭଲପାଇବାର କାର୍ଯ୍ୟକାରିତା ସମ୍ବନ୍ଧରେ ଜ୍ଞାନଲାଭ କରିବା ଉଚିତ୍, ଯାହାଦ୍ୱାରା ସେମାନଙ୍କର ଭଲପାଇବାର ଇଚ୍ଛା ବର୍ଦ୍ଧିତ ହୋଇପାରେ। ସ୍ୱାର୍ଥବୋଧ ମୂଳତଃ କିନ୍ତୁ ଖରାପ ଜିନିଷ ନୁହେଁ, ସେଥିପାଇଁ ତାକୁ annihilate (ବିନାଶ) କରିବାକୁ ଚେଷ୍ଟା ନ କରି elevated, enlightened, expanded ଓ purified (ଉନ୍ନତ, ଆଲୋକ ପ୍ରାପ୍ତ, ବିସ୍ତାରିତ ଓ ପବିତ୍ର) କରି ତୋଳିବାକୁ ଚେଷ୍ଟା କରିବା ଭଲ। ସତ୍ତାସ୍ୱାର୍ଥୀ ଚଳନହିଁ ଧର୍ମ। Lord (ପ୍ରଭୁହିଁ) ହେଲେ ଆମ୍ଭମାନଙ୍କର inner Divine self-ର (ଅନ୍ତର୍ନିହିତ ଭାଗବତ ସତ୍ତାର) ପ୍ରତୀକ। ତାଙ୍କୁ ନ ଧରିଲେ, ତାଙ୍କୁ ଭଲ ନ ପାଇଲେ, ତତ୍‌ସ୍ୱାର୍ଥୀ ନ ହେଲେ, ସତ୍ତାସ୍ୱାର୍ଥୀ ହେବାର



ଅନ୍ୟକୌଣସି ପନ୍ଥା ବା ଉପାୟ ଆମ୍ଭମାନଙ୍କର ନାହିଁ। ଘୁରି-ଫେରି କୌଣସି-ନା-କୌଣସି ପ୍ରବୃତ୍ତିର କବଳରେ ଆମ୍ଭେମାନେ ପଡ଼ିଯିବୁ। ସେଥିପାଇଁ, ଶାଶ୍ୱତ ବିଧି ଅର୍ଥାତ୍ ଯାହା କରିଲେ ଯାହା ହୁଏ, ତାହା ସାଧାରଣ ମଣିଷକୁ କହିବାକୁ ହୁଏ, ବୁଝାଇବାକୁ ହୁଏ। ବୈଧୀ ପନ୍ଥାରେ ଚାଲୁ-ଚାଲୁ ଯେତେବେଳେ ଇଷ୍ଟଙ୍କ ଉପରେ ପ୍ରଭୁଙ୍କ ଉପରେ ଭକ୍ତି-ଭଲପାଇବା ଗଜେଇଉଠେ ସେତେବେଳେହିଁ ହୀନସ୍ୱାର୍ଥ transformed (ରୂପାନ୍ତରିତ) ହୁଏ ଇଷ୍ଟସ୍ୱାର୍ଥରେ। ସେତେବେଳେହିଁ ମଣିଷ ଜୀବନରେ ଧୃତିପୋଷଣୀ ଚଳନ ଅର୍ଥାତ୍ ଧର୍ମର ପ୍ରତିଷ୍ଠା ପାଏ। ...ଯେପରି କରି ହେଉ ତାଙ୍କୁ ମନପ୍ରାଣ ଦେଇ ଭଲପାଇବାକୁ ହେବ – ତାହା ଅଭ୍ୟାସ କରିହିଁ ହେଉ ବା ସ୍ୱତଃସ୍ଫୂର୍ତ୍ତଭାବରେହିଁ ହେଉ। ଯିଏ ତାଙ୍କୁ ସ୍ୱତଃସ୍ଫୂର୍ତ୍ତଭାବରେ ଭଲପାଏ ସିଏ ତାଙ୍କୁ ପ୍ରାଣର ତାଗିଦରେହିଁ ଧରେ ଓ ଅନୁସରଣ କରେ। ତାହା ନ କରି ସେ ରହିପାରେ ନାହିଁ, ତେଣୁ କରେ। ଲାଭ-କ୍ଷତିର ହିସାବ ସେ କରେ ନାହିଁ। କଷ୍ଟ ବା ପ୍ରଲୋଭନ ତାକୁ ଏହି ପଥରୁ ବିଚ୍ୟୁତ କରିପାରେ ନାହିଁ। ଯାହାର ପ୍ରାଣ ପରମପିତାଙ୍କୁ ନେଇ ମତ୍ତ, କୌଣସି କଷ୍ଟହିଁ ତାକୁ କାବୁ କରିପାରେ ନାହିଁ, କୌଣସି ପ୍ରଲୋଭନ ତାକୁ ପ୍ରଲୁବ୍ଧ କରିପାରେ ନାହିଁ, କୌଣସି ଭୟ ତାକୁ ଭୀତ କରିପାରେ ନାହିଁ। ସେଥିପାଇଁ ମୁଁ କହେ – ଅଚ୍ୟୁତ ଇଷ୍ଟନିଷ୍ଠ ହୁଅ। ଏହା ଅପେକ୍ଷା ବଡ଼ ଲାଭ ବା ପ୍ରାପ୍ତି ତ୍ରିଭୁବନରେ ଆଉ କିଛିହିଁ ନାହିଁ। ଆ.ପ୍ର. ୧୦/୨୫.୧.୧୯୪୮

**ପ୍ର. – ଇଷ୍ଟଙ୍କୁ ଆମ୍ଭେମାନେ ଠିକ୍-ଠିକ୍ ଭାବରେ କେତେବେଳେ ପାଉ ?**

**ଶ୍ରୀଶ୍ରୀଠାକୁର** – ଆମ୍ଭମାନଙ୍କ ନିଷ୍ଠାକୁ ଅବଲମ୍ବନ କରି ଯେତେବେଳେ ତାଙ୍କର ଚଳନ ସବୁ ସମୟ ପାଇଁ ଆମ୍ଭମାନଙ୍କୁ ପାଇ ବସେ ଏବଂ କିଛି ପ୍ରକାରେ ବି ଛାଡ଼େ ନାହିଁ ସେତେବେଳେହିଁ ହୁଏ ତାଙ୍କୁ ପାଇବା। ମୂଳକଥା, ସେ ସବୁ ସମୟରେ ଆମ୍ଭମାନଙ୍କୁ ଖୋଜୁଛନ୍ତି, କିନ୍ତୁ ଆମ୍ଭେମାନେ ଅନ୍ୟ ବ୍ୟାପାରରେ ମୁଗ୍ଧ ଓ ବ୍ୟାପୃତ ବୋଲି ସେ ଆମ୍ଭମାନଙ୍କୁ ଧରି ପାରୁ ନାହାଁନ୍ତି। ଯେତେବେଳେ ଆମ୍ଭେମାନେ ତାଙ୍କ ପାଖରେ ଧରା ଦେଉ, ସେ ଯେତେବେଳେ ଆମ୍ଭମାନଙ୍କୁ ପାଆନ୍ତି ଅର୍ଥାତ୍ ଆମ୍ଭେମାନେ ଯେତେବେଳେ ଆମ୍ଭମାନଙ୍କର ସବୁ ଇଚ୍ଛା ଓ ଉତ୍ସାହ ନେଇ ତାଙ୍କ ପାଖରେ ସହଜପ୍ରାପ୍ୟ ହେଉ, ତାଙ୍କରି ଦ୍ୱାରା ପରିଚାଳିତ, ନିୟନ୍ତ୍ରିତ ଓ ବ୍ୟବହୃତ ହେବାକୁହିଁ ଜୀବନର ପରମ ସୁଖ ଓ ସାର୍ଥକତା ବୋଲି ବିବେଚନା କରୁ ସେତେବେଳଠାରୁ ତାଙ୍କୁ ପାଇବା ଆରମ୍ଭ ହୁଏ। ଆଉ, ଏହି ପାଇବାର ଅନ୍ତ ନାହିଁ। ଆମ୍ଭେମାନେ ଯେତେଟା ତାଙ୍କର ହେଉ ଏବଂ ତାଙ୍କର ହୋଇଉଠିବା ପାଇଁ ଯେଉଁ କଷ୍ଟ ତାହା ସାନନ୍ଦେ ବରଣ କରି ନେଉ – ଆତ୍ମସ୍ୱାର୍ଥ ଓ ଆତ୍ମପ୍ରତିଷ୍ଠାର ବିନ୍ଦୁମାତ୍ର ଆକାଂକ୍ଷା ନ ରଖି – ସେତେଟା ଆମ୍ଭେମାନେ ତାଙ୍କୁ ପାଉ। ତାଙ୍କୁ ଭଲପାଇବାକୁ ଯାଇ ତନ-ମନ-ଧନ ଯିଏ ଯେତେ ଉଜାଡ଼ି କରିଦେଇ ପାରେ – ଅହଂକାର ଓ ପ୍ରତ୍ୟାଶାର ଲେସମାତ୍ର ନ ରଖି – ଧର୍ମ, ଅର୍ଥ,

କାମ, ମୋକ୍ଷ ସେଟେଟା ତାହାକୁ ଦଶଦିଗରୁ ଘେରି ଧରେ। ତାଙ୍କୁ ପାଇଲେ ତାଙ୍କ ସହିତ ମଣିଷର ସବୁ ଆସେ। ଆ.ପ୍ର. ୧୦/୨୫.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ତାଙ୍କୁହିଁ ପ୍ରଥମ ଓ ପ୍ରଧାନ କରିଚାଲିବାକୁ ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର** – ତାଙ୍କୁ first and foremost (ପ୍ରଥମ ଓ ପ୍ରଧାନ) କରିଚାଲିବାହିଁ ମଣିଷ ପରି ଚାଲିବା। ତାଙ୍କୁ secondary (ଗୌଣ) କରି ଚାଲିବା ମାନେ ପ୍ରେତଜୀବନ ବା ପଶୁଜୀବନ ବହନ କରିଚାଲିବା। ଆ.ପ୍ର. ୧୦/୨୫.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ କିପରି ଭାବରେ ଚାଲିଲେ ତାଙ୍କ ସହିତ ଯୋଗହରା ହେବାକୁ ହୁଏ ନାହିଁ। ସେଥିରେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଯୋଗ ମାନେ ଭଲପାଇବା। କାହାକୁ ଭଲପାଇଲେ ତା'ର ଚିନ୍ତା ମନରେ ଲାଗିହିଁ ରହିଥାଏ। ଭାବେ, କେଉଁଥିରେ ତା'ର ଭଲ ହେବ, କିପରି ସେ ସୁଖୀ ହେବ, ତାର ସୁଖ ସୁବିଧା ପାଇଁ ମୁଁ କ'ଣ କରିପାରେ। ସେଥିପାଇଁ loving active effort ମଧ୍ୟ (ଭଲପାଇବା ସହିତ ସକ୍ରିୟ ଚେଷ୍ଟା ମଧ୍ୟ) ଲାଗି ରହିଥାଏ। ଭାବିବାରେ କରିବାରେ, କହିବାରେ ତାକୁହିଁ ନେଇ ଜଡ଼ି ରହେ। ଏହାକୁହିଁ କୁହାଯାଏ ଯୋଗ। ସ୍ତ୍ରୀ-ପୁତ୍ରକୁ ନେଇ ଆମ୍ଭେମାନେ ଯେପରି ଜଡ଼ିରହୁ, ଭଗବାନଙ୍କୁ ନେଇ, ଇଷ୍ଟଙ୍କୁ ନେଇ ଏହି ଭାବରେ ରହିପାରିଲେହିଁ କାମ ଶେଷ (କର୍ମ ସମ୍ପୂର୍ଣ୍ଣ)। ସେତେବେଳେ ଆଉ କସରତ୍ କରିବା ଦରକାର ନାହିଁ। ତାଙ୍କ ପାଇଁ ଭାବିବା, କରିବା, କହିବା spontaneous (ସ୍ୱତଃ) ହୋଇଉଠେ। ତା'ଠାରୁ ଆମେ knowledge (ଜ୍ଞାନ), knowledge (ଜ୍ଞାନ)ରୁ ହୁଏ experience (ଅଭିଜ୍ଞତା), experience (ଅଭିଜ୍ଞତା)-ରୁ ହୁଏ wisdom (ପ୍ରଜ୍ଞା)। ଏହିପରି କରି power (ଶକ୍ତି) ବଢ଼େ, ability (ସାମର୍ଥ୍ୟ) ବଢ଼େ, prosperity (ଐଶ୍ୱର୍ଯ୍ୟ) ବଢ଼େ। ସେ ଚାହେଁ ନାହିଁ, ଆପେ ଆପେ ବଢ଼େ।

ଉଷା-ନିଶାରେ ମନ୍ତ୍ରସାଧନ
ଚଲା-ଫେରାରେ ଜପ,
ଯଥା ସମୟରେ ଇଷ୍ଟ ନିର୍ଦ୍ଦେଶ
ମୂର୍ତ୍ତ କରିବାହିଁ ତପ।

ଏହି କେତୋଟି ଜିନିଷ ଅଭ୍ୟାସରେ ଆୟତ୍ତ କରିପାରିଲେ ତାଙ୍କ ସହ କେବେ ବି ଯୋଗହରା ହେବାକୁ ହୁଏ ନାହିଁ। ଏହାଦ୍ୱାରା ସବୁ ଦିଗରୁ ରକ୍ଷା ପାଇହୁଏ। ସବୁକ୍ଷଣରେ ସବୁ କାର୍ଯ୍ୟର ଭିତରେ ତାଙ୍କୁ ନେଇ engaged (ବ୍ୟସ୍ତ) ରହିପାରିଲେ, ପ୍ରବୃତ୍ତି ଆମକୁ ଆଉ ଧରିପାରେ ନାହିଁ, ହଇରାଣ କରିପାରେ ନାହିଁ। ଏହାଦ୍ୱାରା କର୍ମସାଫଲ୍ୟ ଅନିବାର୍ଯ୍ୟ ହୋଇଉଠେ। କାରଣ, କାର୍ଯ୍ୟର ପଥରେ ପ୍ରବୃତ୍ତି ଯେ resistance ଓ destraction (ବୋଧ ଓ ଚିତ୍ତ ବିକ୍ଷେପ) create (ସୃଷ୍ଟି) କରେ ଏବଂ ତାହା overcome (ଅତିକ୍ରମ) କରିବାକୁ ଯାଇ ଯେଉଁ energy ଓ effort (ଶକ୍ତି ଓ ଚେଷ୍ଟା) ଲାଗେ, ତାହା ଯଦି ଅନେକଟା ବଞ୍ଚିଯାଏ, ତେବେ କାର୍ଯ୍ୟର ପଥରେ ବାହାରୁ ଯେଉଁ-ସବୁ resistance ଓ distraction (ବାଧା ଓ ବିକ୍ଷେପ) ଆସେ ସେଗୁଡ଼ିକୁ overcome (ଅତିକ୍ରମ) କରିବା ପାଇଁ ତାହା ଲଗାଯାଇପାରେ। ଏହାଦ୍ୱାରା କମ୍ time, energy ଓ effort-ରେ (ସମୟ, ଶକ୍ତି ଓ ଚେଷ୍ଟାରେ) ବେଶୀ କାର୍ଯ୍ୟ successfully (କୃତକାର୍ଯ୍ୟତାର ସହ) କରାଯାଏ। ଏହିପରି ଭାବରେ କାର୍ଯ୍ୟରେ ଦକ୍ଷତା ଓ କ୍ଷିପ୍ରତା ବଢ଼େ। ସେଥିପାଇଁ କୁହାଯାଏ, 'ଯୋଗଃ କର୍ମସୁ କୌଶଳମ୍'। ଅସଲ କଥା, ଇଷ୍ଟଙ୍କୁ ମୁଖ୍ୟ କରି ଚାଲିଲେ, କହିଲେ, କରିଲେ ଇଷ୍ଟଙ୍କର ମଧ୍ୟ ହୁଏ, ଏବଂ ଫାଉରେ ନିଜର ମଧ୍ୟ ସୁଷ୍ଠୁଭାବରେ ହୁଏ। ନିଜକୁ ମୁଖ୍ୟ କରି ଚାଲିଲେ, କହିଲେ, କରିଲେ ଲାଭ ଯେତେଟା ହୁଏ, ତାହାଠାରୁ ଲୋକ୍‌ସାନ୍ ହୁଏ ବେଶି। ଯେଉଁ-ପରିବେଶ ମଣିଷର ପାଇବାର ଉତ୍ସ, ସେହି ପରିବେଶ ମଣିଷର ନିଜର ନ ହୋଇ ପର ହୋଇଥାଏ। ଆଉ ସେ ସବୁ ଜମା ହୋଇ ଦିନେ ନା ଦିନେ ଫଳିବହିଁ। ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ବାରମ୍ବାର ବାଧା ପାଇଲେ କ'ଣ ବସି ଯିବାକୁ ଇଚ୍ଛା ହୁଏ ନାହିଁ ?**

**ଶ୍ରୀଶ୍ରୀଠାକୁର** – ତାଙ୍କୁ ଯିଏ ଭଲପାଏ, ସେ ବସି ପଡ଼େ ନାହିଁ। ଚେଷ୍ଟା କରି ପାରେ। ପାରିଲି ନାହିଁ, ବସି ପଡ଼ିଲି, ଏହାର ମାନେ ego (ଅହଂ) satified (ସନ୍ତୁଷ୍ଟ) ହୋଇନାହିଁ, ସେଥିପାଇଁ ଛାଡ଼ି ଦେଲି ବା କ୍ଷାନ୍ତ ହେଲି। ବାହାରର ବାଧା ତ ବଡ଼ ବାଧା ନୁହେଁ, ବଡ଼ ବାଧା ବସା ବାନ୍ଧି ରୁହେ ପ୍ରତ୍ୟେକଙ୍କ ନିଜ ଭିତରେ। ମାନ, ବଡ଼ିଆମି, ଅହଂକାର, ଅଭିମାନ, କ୍ରୋଧ, ଆତ୍ମସ୍ୱାର୍ଥ, ଆତ୍ମପ୍ରତିଷ୍ଠାର ବୁଦ୍ଧି, ଲୋକଲଜ୍ଜା, ଭୟ, ସଂକୋଚ, ଦୁର୍ବଳତା, ଅସହିଷ୍ଣୁତା, କଷ୍ଟ ପାଇଁ ରାଜି ନ ରହିବା ଇତ୍ୟାଦି କେତେ ରକମର ବାଧା ଯେ ଭିତରେ ଲୁଚି ରହିଥାଏ, ତାହା ପରିସ୍ଥିତିର ଚାପ ମଧ୍ୟରେ ନ ପଡ଼ିଲେ ବୁଝାଯାଏ ନାହିଁ। ଇଷ୍ଟଟାଣର ଫଳରେ ଏହିଗୁଡ଼ିକ ଯେଉଁମାନଙ୍କର ହାତ ମୁଠା ମଧ୍ୟକୁ ଆସିଯାଏ, ସେହିଗୁଡ଼ିକ ଯେଉଁମାନଙ୍କୁ ଉତ୍ୟକ୍ତ କରିପାରେ ନାହିଁ, ସେମାନଙ୍କର ଅସମ୍ଭବ କ୍ଷମତା ହୁଏ। ତାକୁ କୁହାଯାଏ ଯୋଗବିଭୂତି। ବିଭୂତି ମାନେ ବିଶେଷ ରୂପେ ହେବା। ପ୍ରବୃତ୍ତିଭେଦୀ ଟାଣ ନେଇ ଯେଉଁମାନେ ଇଷ୍ଟଙ୍କ ସହିତ ସର୍ବକ୍ଷଣ ସକ୍ରିୟ ଭାବରେ ଯୁକ୍ତ ରହନ୍ତି, ସେମାନେ ମହାଶକ୍ତିର ଆଧାର ହୋଇ ଉଠନ୍ତି, ଅଥଚ ସେମାନଙ୍କର ଅହଂକାରରେ ଆଘାତ ଦେଲେ, ସେମାନଙ୍କର ଟିକେ ମାତ୍ର ଅହଂକାର ନ ଥାଏ।

ସେମାନେ ସେଥିରେ ଭ୍ରୂକ୍ଷେପ କରନ୍ତି ନାହିଁ, କିନ୍ତୁ ଇଷ୍ଟଙ୍କୁ ଟିକେମାତ୍ର କଟାକ୍ଷ କଲେ, ସେମାନେ ତାହା ବରଦାସ୍ତ କରନ୍ତି ନାହିଁ। ସେମାନଙ୍କର ego ଓ interest (ଅହଂ ଓ ସ୍ୱାର୍ଥର) stay-ହିଁ (ଅବଲମ୍ବନହିଁ) ହେଲେ ଇଷ୍ଟ।

ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ମଣିଷର ପ୍ରକୃତ ବନ୍ଧୁ କେଉଁମାନେ ?**

**ଶ୍ରୀଶ୍ରୀଠାକୁର –** Due to self-centric habit (ଆତ୍ମସ୍ୱାର୍ଥୀ ଅଭ୍ୟାସର କାରଣରୁ) ମଣିଷ foolishly (ବୋକା ପରି) ଚଳେ। ଅଭ୍ୟସ୍ତ ଚଳନରେ ତାର ଏପରି ନିଶା ଯେ, ତାହା ଖରାପ ବୁଝିଲେ ମଧ୍ୟ ଛାଡ଼ିବାକୁ ଚାହେଁ ନାହିଁ। ଯେନ-ତେନ-ପ୍ରକାରେଣ ଇଷ୍ଟନିଶା, ଯଜନ, ଯାଜନ, ଇଷ୍ଟଭୃତି ପାଳନର ନିଶାରେ ମଣିଷକୁ ମଜାଇ ଦେବାକୁ ହୁଏ। ଏହା ଯେମାନେ କରନ୍ତି, ସେଉମାନେ ହିଁ ମଣିଷର ପ୍ରକୃତ ବନ୍ଧୁ।

ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟସ୍ୱାର୍ଥ, ଇଷ୍ଟପ୍ରତିଷ୍ଠାର ବାହାନାରେ ଯେଉଁମାନେ ଆତ୍ମସ୍ୱାର୍ଥ ଆଉ ଆତ୍ମପ୍ରତିଷ୍ଠାର ଧନ୍ଦା ନେଇ ଚାଲନ୍ତି ସେମାନେ କିପରି ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠାର ବାହାନାରେ ଯେଉଁମାନେ ଆତ୍ମସ୍ୱାର୍ଥ, ଆତ୍ମପ୍ରତିଷ୍ଠାର ଧନ୍ଦା ନେଇ ଚାଲନ୍ତି ସେମାନେ ହତଭାଗା। ଏମାନଙ୍କ କପଟତା ମଣିଷ ପାଖରେ ଧରା ପଡ଼ିବାରେ ଡେରି ଲାଗେ ନାହିଁ। ସେଥିପାଇଁ ସେମାନେ କେବଳ ନିଜର କ୍ଷତି କରନ୍ତି ନାହିଁ, ସମାଜର ମଧ୍ୟ କ୍ଷତି କରନ୍ତି। ଧର୍ମଯାଜକ ମାନେ ଯଦି ପ୍ରକୃତ ଧର୍ମାନୁରାଗୀ ନ ହୋଇ ସ୍ୱାର୍ଥାନ୍ଧ ମତଲବବାଜ ହୁଅନ୍ତି, ତେବେ ସେମାନଙ୍କର ଯାଜନ ଶେଷ ପର୍ଯ୍ୟନ୍ତ ମଣିଷକୁ ଧର୍ମବିଦ୍ୱେଷୀ କରି ତୋଳିବାକୁହିଁ ସାହାଯ୍ୟ କରିଥାଏ। ତେବେ ଯେଉଁମାନଙ୍କ ମଧ୍ୟରେ କପଟତା ନ ଥାଏ, ଯେଉଁମାନେ ସର୍ବଦା ନିଜକୁ ଶାସନ ଓ ସଂଶୋଧନ କରି ଚାଲନ୍ତି, ସେମାନଙ୍କର ଭୁଲ-ତ୍ରୁଟି ରହିଲେ ମଧ୍ୟ ତା' ଯୋଗୁଁ ଲୋକଙ୍କର ବେଶି କ୍ଷତିହୁଏ ନାହିଁ, ଏବଂ ସେମାନେ ନିଜେ ମଧ୍ୟ ଧିରେ-ଧିରେ ପରିଶୁଦ୍ଧ ହୋଇଉଠନ୍ତି। ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ଇଷ୍ଟ ଓ ସଂସାର ଏହି ଦୁଇଟିର ଅବସ୍ଥାନ ମଣିଷ ଜୀବନରେ କିପରି ରହିବା ଦରକାର ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କୁ ସର୍ବସ୍ୱ ଓ ମୁଖ୍ୟ ବୋଲି ଜାଣିବେ। ସଂସାର ଚଳେଇବାର କଥା ବଡ଼ କରି ଭାବିବ ନାହିଁ। ବଡ଼କରି ଭାବିବେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର କଥା ଏବଂ ଯାହାଦ୍ୱାରା ଇଷ୍ଟସ୍ୱାର୍ଥପ୍ରତିଷ୍ଠା ହୁଏ ସେହି ଭାବରେ ସଂସାର ଚଳେଇବ। ସଂସାର ଚଳେଇବା ତୁମର ପ୍ରଧାନ ଦାୟିତ୍ୱ ନୁହେଁ, ତୁମର ପ୍ରଧାନ ଦାୟିତ୍ୱ ହେଲା ଇଷ୍ଟସ୍ୱାର୍ଥପ୍ରତିଷ୍ଠା, ଆଉ ତା'ପାଇଁ ସଂସାରକୁ



ଯେଉଁଭାବରେ ବିନ୍ୟସ୍ତ କରିବା ଦରକାର, ତାହାହିଁ ତୁମେ କରିବ। ଏହାଦ୍ୱାରା ଆପାତତଃ ଭୁଲ ବୁଝାବୁଝି ହୋଇପାରେ କିନ୍ତୁ tussle (ଦ୍ୱନ୍ଦ୍ୱ) avoid (ଏଡ଼ାଇ) କରି ଯଦି tactfully (କୌଶଳରେ) ସଜାଇ ନେଇପାର, ତେବେ ପରିବାରର ପ୍ରତ୍ୟେକଟି ଲୋକ ତୁମର ଭଲପାଇବାର ଗୋଲାମ ହୋଇ ରହିବେ। ସେମାନଙ୍କ ଦ୍ୱାରା ତୁମେ ଅନେକ ବଡ଼ କାର୍ଯ୍ୟ କରେଇ ପାରିବ। ଦୁଇ-ନୌକାରେ ପାଦ ଦେଇ ଦୋଦୁଲ୍ୟମାନ ରକମରେ ଯଦି ଚାଲ ଶାନ୍ତି ପାଇବ ନାହିଁ।

ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ସ୍ୱାର୍ଥ ଓ ପ୍ରତିଷ୍ଠା ପାଇଁ କିପରି ମନୋଭାବ ରହିବା ଦରକାର ?**

**ଶ୍ରୀଶ୍ରୀଠାକୁର –** ଦୁଃଖ-କଷ୍ଟ ପାଇଁ ଷୋହଳଅଣା ରାଜି ରହିବାକୁ ହେବ। ଏ କଥା ମନେ କରିବ ନାହିଁ ଯେ ତୁମ ଘରେ ଚୋରି ହେବ ନାହିଁ, ପିଲା-ପିଲି ଅସୁସ୍ଥ ହେବେ ନାହିଁ, ଅଭାବ-ଅଭିଯୋଗ ହେବ ନାହିଁ, କାହାର ଅକାଳ ମୃତ୍ୟୁ ହେବ ନାହିଁ, ଝଗଡ଼ା-ଝାଟି ହେବ ନାହିଁ। ଏଗୁଡ଼ିକ ଯେ ହେବ ନାହିଁ ତା ନୁହେଁ। ଯାହା ହେବ ତାଠାରୁ ଏମିତି experience (ଅଭିଜ୍ଞତା) gain (ଲାଭ) କରିବା ଦରକାର ଯାହାଦ୍ୱାରା ଭବିଷ୍ୟତରେ ଏଗୁଡ଼ିକ ଆଉ ଘଟି ନ ପାରେ ଏବଂ ସେହି ଦୁର୍ଘଟଣାଗୁଡ଼ିକୁ ତୁମେ ଶୁଭଫଳପ୍ରଦ କରି ତୋଳିପାର। କର୍ମଫଳ ଭୋଗ କରିବାକୁ ହେବହିଁ, କିନ୍ତୁ ଇଷ୍ଟିତଚଳନ ଅବ୍ୟାହତ ରହିଲେ, କେଉଁ-କେଉଁ କର୍ମର ଫଳ undone (ନଷ୍ଟ) ହୋଇଯାଏ, କେଉଁଟି lesser (କମ୍) ଭାବରେ ଆସିଥାଏ, କେଉଁଟି ଆଦୌ occur କରେ ନାହିଁ (ଘଟେ ନାହିଁ), ପୁଣି ଯେଉଁଗୁଡ଼ିକ ଘଟେ ସେଗୁଡ଼ିକର ଫଳ ଶୁଭରେ ସୁନିୟନ୍ତ୍ରିତ କରାଯାଏ। ତା'ଛଡ଼ା, ବର୍ତ୍ତମାନ ଚଳଣୀ ଯଦି ଇଷ୍ଟପ୍ରାଣତାର ଫଳରେ ତ୍ରୁଟିହୀନ ହୁଏ, ତା'ହେଲେ ବର୍ତ୍ତମାନର ଗର୍ଭଜାତ ଭବିଷ୍ୟତରେ ଦୁଃଖ-କଷ୍ଟ ପାଇବାର ସମ୍ଭାବନା ରୁଦ୍ଧ ହୋଇ ଆସେ। ଏଗୁଡ଼ିକହିଁ ହେଲା ଲାଭ, କିନ୍ତୁ ସେହି ଲାଭର ମୂଳ ହେଉଛି ଇଷ୍ଟାନୁଗ ଆତ୍ମନିୟନ୍ତ୍ରଣ। ନ ହେଲେ ଆକାଶରୁ କୌଣସି ସୁଖ ସୁବିଧା ଝରିପଡ଼ିବ ନାହିଁ। ନ କରି କିଛି ପାଇବାର ଦୁରାଶା ରଖ ନାହିଁ। ସେ କୌଶଳ ମୋର ଜଣା ନାହିଁ।

ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ପ୍ରବୃତ୍ତିର ବାଧାହିଁ ତ ପ୍ରବଳ। ପ୍ରବୃତ୍ତିଗୁଡ଼ିକୁ କିପରି କାବୁ କରାଯିବ ?**

**ଶ୍ରୀଶ୍ରୀଠାକୁର –** ସେଗୁଡ଼ିକୁ କାବୁ କରିବାର କଥା ଭାବିବାକୁ ଯିବୁ କେଉଁ ଦୁଃଖରେ ? ସେଗୁଡ଼ିକ ଆହୁରି strong (ଶକ୍ତିମାନ) ହେଉନା କାହିଁକି, ସେଥିରେ କ୍ଷତି କ'ଣ ଯଦି

ସେଗୁଡ଼ିକ ଇଷ୍ଟାର୍ଥେ ଛଡ଼ା ନିୟୋଜିତ ନ ହୁଏ ? ସେଥିପାଇଁ ଯାହାଦ୍ୱାରା ପ୍ରାଣରେ ଇଷ୍ଟାନୁରାଗର ପ୍ଲାବନ ଜାଗ୍ରତ ହୁଏ – ସକ୍ରିୟ ସନ୍ଦୀପନାର ସହିତ – ତାହାହିଁ କରିବା ଦରକାର। ଏହାଦ୍ୱାରା ଇନ୍ଦ୍ରିୟ ଶକ୍ତିର ପଟୁତା ମଧ୍ୟ ଉଚ୍ଛଳ ହୋଇଉଠେ, କିନ୍ତୁ ସେ ପଟୁତା ଇଷ୍ଟାର୍ଥେ ଅର୍ଥାତ୍ ମଙ୍ଗଳଜନକ କର୍ମରେ applied (ପ୍ରଯୁକ୍ତ) ହୁଏ। ତାହାଦ୍ୱାରା ଭଲ ଛଡ଼ା ମନ୍ଦ ହୁଏ ନାହିଁ। ଇଷ୍ଟାନୁରାଗର ପ୍ରବାହ ବିସ୍ତାରଶୀଳ ହେଉ-ହେଉ ଯେତେ ସର୍ବଗ୍ରାସୀ ହୋଇଉଠେ ସେତେ ପ୍ରବୃତ୍ତିର ପ୍ରବାହଗୁଡ଼ିକ ମଧ୍ୟ ଏହି ମହାପ୍ରବାହର ସହିତ ମିଶି ସୁଫଳପ୍ରସୂ ଓ ସାର୍ଥକ ହେବାର ପଥରେ ଚାଲେ। କିଛିହିଁ ମରିଯାଏନା, ଝରିଯାଏନା, ଲୋପପାଏନା, ସବୁହିଁ ଇଷ୍ଟଙ୍କର ପଦସ୍ପର୍ଶରେ ଅର୍ଥାତ୍ ଇଷ୍ଟୀଚଳନ ସ୍ପର୍ଶରେ ଧନ୍ୟ ହୋଇଉଠେ। ...ନିଜକୁ weak (ଦୁର୍ବଳ) ବୋଲି ସ୍ୱୀକାର କରିବା ଗୋଟିଏ unprofitable autosuggestion (ଲାଭହୀନ ସ୍ୱତଃଅନୁଜ୍ଞା) ଛଡ଼ା ଆଉ କିଛି ନୁହେଁ। Weakness (ଦୁର୍ବଳତା) ତୁମର କେହି ନୁହେଁ ତାକୁ ପ୍ରଶ୍ରୟ ଦିଅ ବୋଲି ଆଶ୍ରୟ ଦିଅ ବୋଲି, ସେ ଆସନ ପକାଇ ବସିଥାଏ। ଇଷ୍ଟାନୁରାଗ ଉପରେ ଜୋର ଦିଅ, ତାହାହିଁ ତୁମର ସତ୍ତାର ଚିରନ୍ତନ ସମ୍ପଦ, ଇଷ୍ଟାନୁରାଗ ଯେତେ ଫୁଲି ଉଠିବ, ଦୁର୍ବଳତା ସେତେ କ୍ଷୀଣ ହେବ। ତୁମେ ଯେପରି ବି ହୁଅ, ଆଉ ଯାହାହିଁ ହୁଅ, ଜୋର କରି ମଧ କର, କୁହ, ଭାବ ସେହିପରି, ଯେପରି କରିବା, କହିବା ଓ ଭାବିବା ଗଭୀର ଇଷ୍ଟାନୁରାଗଠାରୁ ସ୍ୱତଃହିଁ ଉତ୍ସାରିତ ହୁଏ।

ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ବେଶୀଭାଗ ଲୋକହିଁ ତ କାମନା-ପୀଡ଼ିତ ହୋଇ ଚାଲନ୍ତି। ଏମାନଙ୍କର କ'ଣ କିଛି ହୁଏ – ମାନେ ଆଧ୍ୟାତ୍ମିକ ଉନ୍ନତି ?**

**ଶ୍ରୀଶ୍ରୀଠାକୁର** – ସେ କଥା ଠିକ୍। ...ଅନେକହିଁ ବ୍ୟକ୍ତିଗତ କାମନା ନେଇ ଆରମ୍ଭ କରନ୍ତି। କିନ୍ତୁ ସେମାନଙ୍କ ମଧ୍ୟରେ ଯେଉଁମାନେ ଟିକିଏ ବିଚାର-ବିଶ୍ଳେଷଣ-ଶୀଳ ସେମାନେ କିଛିଦିନ ପରେହିଁ ବୁଝିପାରନ୍ତି ଯେ conscious nurture of their desires is sure to frustrate the fulfilment of the desires (ସଚେତନ-ବାସନା-ପୋଷଣ ସେମାନଙ୍କର ବାସନା ପୂରଣକୁ ବ୍ୟର୍ଥ କରିବାକୁ ବାଧ୍ୟ)। ଏହା ଯେଉଁମାନେ ଠିକ୍ କରି ବୁଝନ୍ତି ସେମାନେ କାମନା ବାସନାର ଦାସତ୍ୱ ଛାଡ଼ି ଦେଇ ପ୍ରତ୍ୟାଶାହୀନ ହୋଇ ପରମ-ପିତାଙ୍କର ଦାସତ୍ୱ କରନ୍ତି, ତାଙ୍କରହିଁ ପ୍ରୀତିକର୍ମରେ ନିଜକୁ ଢାଳି ଦିଅନ୍ତି। ସେତେବେଳେ କିନ୍ତୁ କିଛିହିଁ ସେମାନଙ୍କ ପାଖରେ ଅପ୍ରାପ୍ତ ବା ଅପ୍ରାପ୍ୟ ନ ଥାଏ। ତେବେ ପାଇବା ନ-ପାଇବାର ହିସାବ ସେମାନେ କରନ୍ତି ନାହିଁ। ତାଙ୍କର ସେବାରେ ନିବିଷ୍ଟ ଓ ନିୟୋଜିତ ରହିବାର ଅଧିକାର ପାଇହିଁ ସେମାନେ ଖୁସି ରହନ୍ତି। ଆଉ, ଏହା କରିବାକୁ ଯାଇ ଦୁଃଖ, କଷ୍ଟ, ନିନ୍ଦା, ଅପମାନ, ଇତ୍ୟାଦି ଯଦି ସେମାନଙ୍କ ଭାଗ୍ୟରେ ଜୁଟେ, ତା ମଧ୍ୟ ସେମାନଙ୍କୁ ଟଳାଇ ପାରେ ନାହିଁ। ଟଳାଇବେ କାହାକୁ ? ଯେଉଁ ମନକୁ ଟଳାଇବେ, ସେହି ମନ ତ ଜଣଙ୍କୁ ନେଇ ଭରପୂର। ସେ-ମନରେ ଅନ୍ୟ ଦିଗକୁ ନଜର ଦେବା ପରି ସ୍ଥାନ କେଉଁଠି ? ... ସେ ଦୁର୍ବଳ ଭକ୍ତ ହୁଏନାହିଁ। ସେ ହୁଏ ଊର୍ଜ୍ଜୀଭକ୍ତି ଓ ଦୀପ୍ତବୀର୍ଯ୍ୟର ପ୍ରତୀକ। ଯେପରି ଥିଲେ ହନୁମାନ। ଅନ୍ୟାୟ ଓ ଅସତ୍ ଯାହା, ତାକୁ ଧ୍ୱଂସ କରି ଇଷ୍ଟଙ୍କର ସ୍ୱାର୍ଥ ଓ ପ୍ରତିଷ୍ଠାରେ ସେ ହୋଇଉଠେ ଅମୋଘ ଓ ଅଜେୟ।



ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟଙ୍କ ଉପରେ ବିଶୁଦ୍ଧ ଅନୁରାଗ କେତେଦିନରେ ହୁଏ ?**

**ଶ୍ରୀଶ୍ରୀଠାକୁର** – ତାହା ଏକ ମୁହୂର୍ତ୍ତରେ ହୋଇପାରେ, କିଛି ଦିନ ମଧ୍ୟରେ ବି ହୋଇପାରେ, ପୁଣି ସାରା ଜୀବନରେ ମଧ୍ୟ ନ ହୋଇପାରେ। ମଣିଷ ଚାହିଁଲେହିଁ ପାରେ। ଏହା ଆକୂତିର ବେଗର ଉପରେ ସମ୍ପୂର୍ଣ୍ଣ ନିର୍ଭର କରିଥାଏ। ବୈଷ୍ଣବ ଶାସ୍ତ୍ରରେ ନା କ'ଣ ଅଛି – "କୃଷ୍ଣ ପ୍ରେମ ନିତ୍ୟସିଦ୍ଧ, କଭୁ ସାଧ୍ୟ ନୟ"। ଭାଇକୁ ଯେ ଭାଇ ବୋଲି ସ୍ୱୀକାର କରୁ ଓ ଭଲପାଉ, ତା' ମଧ୍ୟରେ କି କୌଣସି କସ୍ରତ ଲାଗେ ? ପ୍ରିୟପରମଙ୍କୁ ସେହିପରି ପରମ ନିଜର ଜ୍ଞାନ କରିଚାଲିବାକୁ ଲାଗିଲେହିଁ ହୁଏ। ଅନ୍ୟ କୌଣସି ଶକ୍ତ ବ୍ୟାପାର ଏହା ଭିତରେ କିଛି ନାହିଁ। ଧର୍ମକୁ ଯେଉଁମାନେ କଷ୍ଟସାଧ୍ୟ ବୋଲି ମନେ କରନ୍ତି, ସେମାନେ ଧର୍ମ ସମ୍ବନ୍ଧରେ କିଛି ବି ଜାଣନ୍ତି ନାହିଁ।

ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟଙ୍କର ଧ୍ୟାନ କ'ଣ ନିତ୍ୟ ନିୟମିତ ସମୟରେ କରିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ହଁ! ତେବେ ଇଷ୍ଟଙ୍କୁ ଯିଏ ଭଲପାଏ କାମ ଭିତରେ ମଧ୍ୟ ଧ୍ୟାନପରାୟଣତାର ଝୁଙ୍କ ତାର ଲାଗିହିଁ ଥାଏ। ସୁଯୋଗ ପାଇଲେହିଁ ସେ ଧ୍ୟାନରେ ଅର୍ଥାତ୍ ଇଷ୍ଟଚିନ୍ତାରେ ନିଜକୁ ବୁଡ଼ାଇ ଦିଏ।

ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟ ବା ଗୁରୁଗ୍ରହଣ ନ କରି ମଧ୍ୟ ଯଦି ଧ୍ୟାନ ବା ଜପର ଅଭ୍ୟାସ କରାଯାଏ ?**

**ଶ୍ରୀଶ୍ରୀଠାକୁର** – ଗୁରୁ ରହିଲେହିଁ ଧ୍ୟାନ ଠିକ୍ ଭାବରେ ହୁଏ। ଜ୍ଞାନ ଓ ବୋଧ ଅନୁସାରେ ନିତ୍ୟ ଆତ୍ମବିଚାର ଓ ଆତ୍ମବିଶ୍ଳେଷଣ ପ୍ରତ୍ୟେକଙ୍କରହିଁ କରିବା ଉଚିତ୍। ଏହା କରିବାକୁ ଗଲେ ଗୁରୁଙ୍କର ପ୍ରୟୋଜନ ଭଲ କରି ବୋଧ କରାଯାଏ। ...ଗୁରୁ ଯଦି ନଥାନ୍ତି ଏବଂ ଗୁରୁଙ୍କ ପ୍ରତି ଟାଣ ଯଦି ନ ଥାଏ ତେବେ ଚିନ୍ତା ଗୁଡ଼ିକ ସୁନିୟନ୍ତ୍ରିତ ହୁଏ ନାହିଁ। ଅନିୟନ୍ତ୍ରିତ ଚିନ୍ତାଶୀଳତାର ମାତ୍ରାଧିକ୍ୟ ମନକୁ ଅନେକ ସମୟରେ distored (ବିକୃତ) କରି ତୋଳିପାରେ। ଗୁରୁକରଣ ପରେ ଭକ୍ତିଯୁକ୍ତ ହୋଇ ଧ୍ୟାନ ଯଦି କରାଯାଏ, ତାହେଲେ complex (ପ୍ରବୃତ୍ତି) ଗୁଡ଼ିକ normally (ସ୍ୱାଭାବିକ) ଭାବରେ ଗୋଟିଏ କେନ୍ଦ୍ରରେ concentrated (କେନ୍ଦ୍ରିଭୂତ) ହୁଏ। ଏହି ଗୁରୁ ଯଦି divine man (ଭଗବତ୍ ମଣିଷ) ହୁଅନ୍ତି ତେବେ complex-ଗୁଡ଼ିକ

(ପ୍ରବୃତ୍ତିଗୁଡ଼ିକର) meaningful adjustment (ସାର୍ଥକ ନିୟନ୍ତ୍ରଣ) ହେବାର ପଥ ଖୋଲିଯାଏ। ଜୀବନର ବିଭିନ୍ନ କ୍ଷେତ୍ରରେ ସେ normal ଓ balanced (ସ୍ୱାଭାବିକ ଓ ସାମ୍ୟଭାବଦୀପ୍ତ) ହୋଇଉଠେ। ଗୋଟିଏ କ୍ଷେତ୍ରରେ ମହତ ଓ ଅନ୍ୟ ଗୋଟିଏ କ୍ଷେତ୍ରରେ ଇତର ଏହି ଧରଣର ଅସଙ୍ଗତି ତା'ର ନ ଥାଏ ଅବଶ୍ୟ ଯଦି ଧ୍ୟାନର ସଙ୍ଗେ-ସଙ୍ଗେ ଇଷ୍ଟାନୁଗ କରିବା, କହିବା ହାତ ଧରାଧରି କରି ଚାଲନ୍ତି। ପୁଣି, ମଣିଷ ଯଦି କେବଳ ଜପ କରେ, ଅଥଚ ଧ୍ୟାନ ଓ କାର୍ଯ୍ୟ-କର୍ମ ନ କରେ, ସେଥିରେ ଭଲ ହୁଏ ନାହିଁ। ଜପରେ ମଣିଷର sensitivity (ସାଡ଼ା ପ୍ରବଣତା) ବଢ଼େ, କିନ୍ତୁ ଏହି sensitivity (ସାଡ଼ା ପ୍ରବଣତା) ଯଦି ବିହିତ ଧ୍ୟାନ ଓ କାର୍ଯ୍ୟକର୍ମର ଭିତର ଦେଇ proper channel-ରେ (ଉପଯୁକ୍ତ ରାସ୍ତାରେ) directed (ପରିଚାଳିତ) ନ ହୁଏ, ତେବେ ତାହା ମଣିଷର ଅଭ୍ୟସ୍ତ ଦୋଷ, ଦୁର୍ବଳତା ଓ ପ୍ରବୃତ୍ତିପରାୟଣତାକୁ ଉତ୍ତାଳ କରି ତୋଳିପାରେ। ଉପଯୁକ୍ତ ଗୁରୁଙ୍କର ଅଧୀନରେ ତାଙ୍କର ନିର୍ଦ୍ଦେଶ ଅନୁସାରେ ଠିକ୍ ଭାବରେ ସାଧନ-ଭଜନ ନ କରିଲେ ଅନିୟନ୍ତ୍ରିତ ସାଧନାର ଫଳରେ ଅନେକଙ୍କର କାମ, କ୍ରୋଧ, ଲୋଭ, ଇତ୍ୟାଦି ବଢ଼ିଯିବା ଅସମ୍ଭବ ନୁହେଁ। ପୁଣି, ନାନାପ୍ରକାର ଅସ୍ୱାଭାବିକ suppression-ର (ଅବଦମନର) ଫଳରେ ଅନେକଙ୍କ ମଧ୍ୟରେ ବିଭିନ୍ନ ପ୍ରକାରର aberration (ବିଚ୍ୟୁତି ଓ ବୁଦ୍ଧିଭ୍ରଂଶ) ମଧ୍ୟ ଦେଖା ଦେଇଥାଏ। ସଦ୍‌ଗୁରୁଙ୍କ ପ୍ରତି ଅକାଟ୍ୟ ଅନୁରାଗକୁ pivot (କୀଳକ) କରି ସାଧନାର ପଥରେ ଅଗ୍ରସର ନ ହେଲେ କେତେ ଯେ ବିଡ଼ମ୍ବନା ଦେଖା ଦେଇପାରେ ତା'ର ଲେଖାଜୋଖା ନାହିଁ।

ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟଙ୍କୁ ଯେଉଁମାନେ ସ୍ୱଦେହରେ ପାଆନ୍ତି ନାହିଁ ସେମାନେ ତାଙ୍କର ଅବର୍ତ୍ତମାନରେ ତାଙ୍କୁ କିପରି ଭଲପାଇବେ ?**

**ଶ୍ରୀଶ୍ରୀଠାକୁର** – ଧରନ୍ତୁ ମୁଁ Lordଙ୍କୁ (ପ୍ରଭୁଙ୍କୁ) ଦେଖିନାହିଁ, କିନ୍ତୁ ମୁଁ ତାଙ୍କୁ ଭଲପାଇବାକୁ ଚାହେଁ। ସେଥିପାଇଁ ମୋର ଏପରି ଜଣଙ୍କ ସଙ୍ଗ ଲାଭ କରିବା ପ୍ରୟୋଜନ, ଯିଏ ତାଙ୍କୁ କାୟମୋନ ବାକ୍ୟରେ ଭଲପାଏ ଓ ଅନୁସରଣ କରେ। ଏହି ପ୍ରେମୀ ସୁଜନଙ୍କର ସାନ୍ନିଧ୍ୟ ଲାଭ ସୌଭାଗ୍ୟର କଥା। ତେବେ ଯାହା-ତାହାଙ୍କୁ Guide (ଚାଳକ) ହିସାବରେ select (ନିର୍ବାଚନ) କରିବା ଠିକ୍ ନୁହେଁ। ଦେଖିବାକୁ ହେବ ପ୍ରବୃତ୍ତିଭେଦୀ ପ୍ରେଷ୍ଟଟାଣ ତାଙ୍କୁ normally adjusted ଓ solved man-ରେ (ସହଜ ଭାବରେ ନିୟନ୍ତ୍ରିତ ଓ ସମାଧାନ ପ୍ରାପ୍ତ ବ୍ୟକ୍ତି ରୂପେ) ପରିଣତ କରୁଛି କି ନାହିଁ।

ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟାନୁସରଣ ପଥରେ ଚାଲଇଲେ ପରିବେଶ ଓ ପରିବାର ବାଧା ଦିଏ କାହିଁକି ? ଏହାଦ୍ୱାରା ତ ଚାଲିବାର ଆଗ୍ରହଟା କମିଯାଏ !**



**ଶ୍ରୀଶ୍ରୀଠାକୁର** – ଯେଉଁମାନେ ପ୍ରବୃତ୍ତିର ଉପାସକ, ସେମାନେ ଭଗବତ-ଉପାସନା ପଥରେ ବାଧା ସୃଷ୍ଟି କରିବେ, ତାହା ଆଉ ବିଚିତ୍ର କ'ଣ ? ଏହି ବାଧାହିଁ କିନ୍ତୁ ଭକ୍ତର ଆଗ୍ରହକୁ ଆହୁରି ଜ୍ୱଳନ୍ତ କରିତୋଳେ। ସେଥିପାଇଁ ବାଧା ପ୍ରକାରାନ୍ତରେ ଭକ୍ତିର ପରିପୋଷକ ହୁଏ। ପରମପିତାଙ୍କ ଦୟାର ଧାରା ବିଚିତ୍ର। ଆମ୍ଭମାନଙ୍କର ପ୍ରବୃତ୍ତି-ଚାହିଦା ଯେ ଅନେକ ସମୟରେ frustrated (ବ୍ୟର୍ଥ) ହୁଏ, ସେ ମଧ୍ୟ ପରମପିତାଙ୍କ ଦୟା। ଇଷ୍ଟଙ୍କୁ ଯିଏ ଚାହେଁ ସେ ପ୍ରୀତିକର, ଅପ୍ରୀତିକର, ସୁବିଧାଜନକ, ଅସୁବିଧାଜନକ ସବୁରକମ ଉପାଦାନକୁହିଁ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଅନୁକୂଳ କରି ତୋଳେ। ଏହାଦ୍ୱାରାହିଁ ଶକ୍ତି ଓ ଭକ୍ତିର ସମନ୍ୱୟ ହୋଇଥାଏ। ଯେଉଁ ଭକ୍ତି ବାଧାକୁ ଜୟ କରିବାକୁ ଜାଣେ ନାହିଁ ସେ ଭକ୍ତି ଶକ୍ତିହୀନ। ଆଉ, ତାହା ଭକ୍ତି ନାମର ଯୋଗ୍ୟ କି ନା କୁହାଯାଏ ନାହିଁ। ...କେବଳ ଏକାନ୍ତରେ ନିଝଞ୍ଝାଟ ଭାବରେ ମନର ସୁଖରେ ଜପତପ କରିବାର ଭିତରଦେଇ ଭକ୍ତି ସିଦ୍ଧହେବାର ନୁହେଁ। ଏହାର ଯେପରି ପ୍ରୟୋଜନ ଅଛି, ସେହିପରି ପ୍ରୟୋଜନ ଅଛି ଇଷ୍ଟଙ୍କ ପାଇଁ responsibility (ଦାୟିତ୍ୱ) ନେଇ କଠୋର ଶ୍ରମରେ ତାହା successfully execute (କୃତକାର୍ଯ୍ୟତାର ସହିତ ଉଦ୍‌ଯାପନ) କରିବା। ଇଷ୍ଟଙ୍କ ପାଇଁ ମୁଣ୍ଡ ଖଟାଇବାକୁ ହୁଏ, ଦେହ ଘର୍ମାକ୍ତ କରିବାକୁ ହୁଏ, ନିଜକୁ ଅକ୍ଷତ ରଖି ଅଗ୍ନିର ସମୁଦ୍ରକୁ ପାର ହେବାକୁ ହୁଏ। ତାଙ୍କର ଇଚ୍ଛାପୂରଣ କରିବାକୁ ଗଲେ ନିଜ ଉଦ୍ଦେଶ୍ୟରେ ଅଟୁଟ ରହି କେତେରକମର ପରିସ୍ଥିତି ମଧ୍ୟ ମଣିଷକୁ ସମ୍ମୁଖୀନ ହେବାକୁ ହୁଏ, ସବୁକିଛିକୁ manage ଓ manipulate (ପରିଚାଳନା ଓ ନିୟନ୍ତ୍ରଣ) କରି, ସମସ୍ତଙ୍କର କଲ୍ୟାଣକୁ ଅବଧାରିତ କରି ପାରସ୍ପରିକ ପ୍ରୀତିସଙ୍ଗତିକୁ ବଜାୟ ରଖି ଧିରେ-ଧିରେ ଅଗ୍ରସର ହେବାକୁ ହୁଏ। ଏହାରି ଭିତର ଦେଇହିଁ self-confidence, personality, experience, wisdom (ଆତ୍ମପ୍ରତ୍ୟୟ, ବ୍ୟକ୍ତିତ୍ୱ, ଅଭିଜ୍ଞତା, ପ୍ରଜ୍ଞା) ଗଜେଇ ଉଠେ।

ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟାନୁସରଣ ପଥରେ କିପରି ଭାବରେ ଚାଲିଲେ ଇଷ୍ଟଙ୍କ ପାଇଁ "ଜୀବନ ମୃତ୍ୟୁ ପାଦର ଭୃତ୍ୟ, ଚିତ୍ତ-ଭାବନାହୀନ" – ଏହିପରି ବଳଦୃପ୍ତ ମନୋଭାବ ନେଇ ଚାଲି ହେବ ?**

**ଶ୍ରୀଶ୍ରୀଠାକୁର** – ଭାବିବ ତୁମେ ମଧ୍ୟ ଠାକୁରଙ୍କ ପାଇଁ, ତୁମର ସ୍ତ୍ରୀ-ପୁତ୍ର ମଧ୍ୟ ଠାକୁରଙ୍କ ପାଇଁ। ସବୁକିଛି ଇଷ୍ଟଙ୍କର ଓ ଇଷ୍ଟାର୍ଥେ ଏହି ବୋଧଟା ଯଦି ଦୃଢ଼ ହୋଇ ଉଠେ ସେତେବେଳେ ନିଜର ସ୍ୱାର୍ଥ ଇଷ୍ଟସ୍ୱାର୍ଥର ଅଙ୍ଗୀଭୂତ ହୋଇଉଠେ। ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠାରୁ ବିଚ୍ଛିନ୍ନ କୌଣସି ଆତ୍ମସ୍ୱାର୍ଥ ଓ ଆତ୍ମପ୍ରତିଷ୍ଠାର ପ୍ରଚେଷ୍ଟା ନ ଥାଏ। ସେତେବେଳେ ହୃଦୟରେ ବଳର ଅଭାବ ହୁଏ ନାହିଁ। ସବୁ ସମୟରେ ସେ ହିଁ ଅନ୍ତରରେ ଜାଗ୍ରତ ହୋଇ ରହନ୍ତି ଏବଂ ତାଙ୍କରି ବଳରେ

ବଳିୟାନ ହୋଇ ଆମ୍ଭେମାନେ ତାଙ୍କରି ଇପ୍ସିତ କାର୍ଯ୍ୟ କରିଚାଲୁ। ଭୟ, ଦୁର୍ବଳତା ଓ ଦୁଃଶ୍ଚିନ୍ତା ସେଠାରେ ଆଗେଇବାକୁ ସାହସ କରେ ନାହିଁ। ଏହାହିଁ ତ ଅମୃତମୟ ଜୀବନ। ଏହା ଅଫୁରନ୍ତ, ଅନନ୍ତ। ମୁଁ କହେ-ଏହି ଦେହ ନେଇହିଁ ତୁମ୍ଭେମାନେ ଅମର ହୋଇ ପରମପିତାଙ୍କର ସେବା କରିଚାଲ। ତାଙ୍କ ପାଇଁ ଦରକାର ହେଲେ ବିପଦ ବା ଦାୟିତ୍ୱ କାନ୍ଧରେ, ନେବହିଁ। କିନ୍ତୁ ମୁଁ ଆଶାକରେ ମୃତ୍ୟୁର ସବୁ ଫାନ୍ଦକୁ ଫାଙ୍କି ଦେଇ ତୁମେମାନେ ବୀର୍ଯ୍ୟବତ୍ତା ଓ ବୁଦ୍ଧିମତ୍ତାର ପରିଚୟ ଦେବ। ମୁଁ ତୁମମାନଙ୍କୁ ଭଲପାଏ, ତୁମେମାନେ ମୋତେ ଭଲପାଅ – ଏହି ଭଲପାଇବା ଚିରଦିନ ପାଇଁ ଅମରଣ ଓ ଅଗ୍ରଗତିଶୀଳ ଅଭ୍ୟୁଦୟକୁ ଆମନ୍ତ୍ରଣ କରୁ, ସେ କେବଳ ଆମ୍ଭମାନଙ୍କ ପାଇଁ ନୁହେଁ, ସମସ୍ତଙ୍କ ପାଇଁ। ଏହା ମଧ୍ୟରେହିଁ ସତ୍‌ସଙ୍ଗର ସାର୍ଥକତା ନିହିତ ଅଛି।

ଆ.ପ୍ର. ୧୦/୨୬.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ତ ଚାଲୁ ତଥାପି ଅନେକଙ୍କର ସେପରି ଉନ୍ନତି ହୁଏ ନାହିଁ କାହିଁକି?**

**ଶ୍ରୀଶ୍ରୀଠାକୁର** – ତୁମେ ଯାହା କରୁଛ ତା' ମଧ୍ୟରେ ଅନେକ ଫାଙ୍କ ଅଛି। ଯଥାଯଥ ଭାବରେ କୌଣସି କାର୍ଯ୍ୟ କରିଲେ ତାର ଉପଯୁକ୍ତ ଫଳ ମିଳିବହିଁ। କିନ୍ତୁ କାର୍ଯ୍ୟ ମଧ୍ୟରେ ଯଦି ତ୍ରୁଟି ଥାଏ ତା'ହେଲେ ସେହି ତ୍ରୁଟି-ଅନୁଯାୟୀ ଯେଉଁ-ଯେଉଁ ଅସୁବିଧାର ସୃଷ୍ଟି ହେବାର ତାହା ମଧ୍ୟ ହେବ। ଧର, ତୁମେ ଖୁବ୍ ସାଧୁ ପ୍ରକୃତିର, ତୁମେ କାହାକୁ ଠକାଅ ନାହିଁ। କିନ୍ତୁ ତୁମର ବୁଦ୍ଧି ହୁଏତ ପ୍ରଖର ନୁହେଁ, ସହଜରେହିଁ ଅନ୍ୟ ଲୋକ ତୁମକୁ ଠକାଇ ଦେଇପାରେ ଏବଂ ଏହା ଫଳରେ ତୁମେ ହୁଏତ ବେକାୟିଦାରେ ପଡ଼ିଲ। ଏହି ବେକାୟିଦାରେ ପଡ଼ିବାଟା ତୁମର ସତତାର ଫଳ ନୁହେଁ। ଏହା ତୁମର ବେକୁବୀର ଫଳ। ଏହି ବେକୁବୀକୁ ଯଦି ସତତାର ଅଙ୍ଗ ମନେ କର ତା' ହେଲେ ତୁମ ବିଚାରରେ ଭୁଲ ରହିଗଲା। ଏହିପରି ଭାବରେ ଆମ୍ଭମାନଙ୍କର ଦୋଷ ପାଇଁହିଁ ଅନେକ ବିପର୍ଯ୍ୟୟ ଘଟେ। କିନ୍ତୁ କ'ଣ ପାଇଁ କ'ଣ ଘଟିଲା ତାହା ଆମ୍ଭେମାନେ ଭଲ କରି analyse (ବିଶ୍ଳେଷଣ) କରୁନାହୁଁ, ପ୍ରୟୋଜନ ଅନୁସାରେ ନିଜକୁ adjust (ନିୟନ୍ତ୍ରଣ) ମଧ୍ୟ କରୁନା। ସେଥିପାଇଁ ଯାହାର ଯାହା ନୁହେଁ, ତାକୁ ତାହା ଦେଉ। ମନ୍ଦର କାରଣକୁ ଅପସାରଣ କରି ଯାହାଦ୍ୱାରା ଭଲ ଅବ୍ୟାହତ ହୁଏ ତାହା ବିଧିଅନୁସାରେ କରିଲେ ଭଲ ଛଡ଼ା ଖରାପ ହୋଇପାରେ ନାହିଁ – ଏହା ମୋର ଅକାଟ୍ୟ ମତ। ଭଲ ପାଖରେ ଯାଇ ପହଞ୍ଚିବାକୁ ଗଲେ ନିଜକୁ ଯେପରି adjust (ନିୟନ୍ତ୍ରଣ) କରିବାକୁ ହୁଏ, ବାହାରର ଅନେକ ଦିଗକୁ ନଜର ରଖି ସେଗୁଡ଼ିକ ମଧ୍ୟ ସେହିପରି flowlessly (ନିର୍ଭୁଲ ଭାବରେ) manipulated (ପରିଚାଳନା) କରିବାକୁ ହୁଏ। ଏହି ବ୍ୟାପାରରେ ଯେଉଁଠାରେ ଯାହାର ଯେତେଟା ଅଭାବ ରହିବ ତାକୁ ସେତେଟା ଦୁର୍ଭୋଗହିଁ ଭୋଗିବାକୁ ହେବ। ଏହି ଟିକକ ଜାଣିରଖ –



ଦୁଃଖର କାରଣ ସୃଷ୍ଟି ନ କରିଲେ ଦୁଃଖର ସୃଷ୍ଟି ହୁଏ ନାହିଁ। ସାମାଜିକ ଜୀବ ହିସାବରେ ପରିବେଶର ଦୁଷ୍କର୍ମର ଫଳ ମଧ୍ୟ ଆମମାନଙ୍କୁ ଅଳ୍ପବହୁତ ଭୋଗ କରିବାକୁ ହୁଏ। ସେଥିପାଇଁ ସୁଖୀ ଓ ସାର୍ଥକ ହେବାକୁ ହେଲେ ନିଜର ଓ ପରିବେଶ ଦ୍ୱାରା ସୃଷ୍ଟ ଦୁଃଖର କାରଣଗୁଡ଼ିକୁ ବିହିତ ଭାବରେ ନିରାକରଣ କରି ସୁଖ ଓ ସାର୍ଥକତାର ବାସ୍ତବ କାରଣଗୁଡ଼ିକୁ ଧାରାବାହିକ ଭାବରେ ସୃଷ୍ଟି କରି ଚାଲିବାକୁ ହେବ। ଯାବତୀୟ ଅଜ୍ଞାନତା, ଅଭାବ ଓ ଅପାରଗତାକୁ ଅତିକ୍ରମ କରି ପାରଙ୍ଗମତାର ଅଧିରୋହଣ କରିବାକୁ ହେବ। ଏହାହିଁ ହେଲା ଉନ୍ନତିର ତାତ୍ପର୍ଯ୍ୟ।

ଆ.ପ୍ର. ୧୦/୨୮.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ଚିନ୍ତା ନେଇ କ'ଣ ସବୁ ସମୟରେ ରହି ହୁଏ ?**

**ଶ୍ରୀଶ୍ରୀଠାକୁର** – ଚେଷ୍ଟା କରିଲେହିଁ ରୁହାଯାଏ। ...କେବଳ ଚିନ୍ତା ନେଇ ମଣିଷ ରହିପାରେ ନାହିଁ। ଚିନ୍ତାର ସହିତ ବାକ୍ୟ, କର୍ମ ଓ ପ୍ରୟାସ ଲାଗେ। ମଣିଷ ଯଦି ଇଷ୍ଟଙ୍କୁ କେନ୍ଦ୍ର କରି ନିଜର ଓ ପରିବେଶର ଜୀବନ-ବୃଦ୍ଧିଦାୟକ ଚିନ୍ତା, ବାକ୍ୟ, କର୍ମ ଓ ପ୍ରୟାସରେ ନିଜକୁ ସର୍ବଦା ବ୍ୟାପୃତ ରଖେ, ତା' ଭିତର ଦେଇହିଁ ପ୍ରତ୍ୟେକଙ୍କର କ୍ଷୁଦ୍ର ଜୀବନ ବ୍ରାହ୍ମୀ ଜୀବନରେ ରୂପାନ୍ତରିତ ହୋଇ ଉଠେ। ଇଷ୍ଟସ୍ୱାର୍ଥପ୍ରତିଷ୍ଠାମୁଖର ଚିନ୍ତାହିଁ ବ୍ରହ୍ମଚିନ୍ତା, ଇଷ୍ଟସ୍ୱାର୍ଥପ୍ରତିଷ୍ଠାମୁଖର ଚଳନହିଁ ବ୍ରାହ୍ମୀ ଚଳନ। ଯାହାର ଜୀବନର ରନ୍ଧ୍ରେ-ରନ୍ଧ୍ରେ, ପରତେ-ପରତେ, ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନତା ଅନୁପ୍ରବିଷ୍ଟ ହୋଇ ଚାଲେ, ସେ ଇଷ୍ଟମୟ ହୋଇଉଠେ, ବ୍ରହ୍ମମୟ ହୋଇଉଠେ। ଏହି ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନତାର ଗଭୀରତା, ବ୍ୟାପକତା ଓ ମାତ୍ରାର କୌଣସି ଇତି ନାହିଁ। ଯେତେ ଆଗେଇବ ସେତେ ଦେଖିବ ଆହୁରି ଆଗେଇବାର ରାସ୍ତା ଆଗରେ ପଡ଼ିରହିଛି। ସେଥିପାଇଁ କୁହେ ବ୍ରହ୍ମର କୌଣସି ଇତି କରାଯାଏ ନାହିଁ। ଏହି ଅନ୍ତହୀନ, ଅଚ୍ୟୁତ, ଇଷ୍ଟାନୁସରଣ ଓ ଇଷ୍ଟାନୁପୂରଣର ଖେଳରେ ନିରନ୍ତର ମତ୍ତ ରହିବା ପାଇଁହିଁ ମାନବଜୀବନ।

ଆ.ପ୍ର. ୧୦/୨୮.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ଅନନ୍ତ ଆଶୀର୍ବାଦର ଅଧିକାରୀ କିପରି ହେବ ?**

ଶ୍ରୀଶ୍ରୀଠାକୁର – ମୁଁ କହେ –

ଉଷାରେ ନିଶାରେ ମନ୍ତ୍ର ସାଧନ,
ଚଲାଫେରାରେ ଜପ,
ଯଥା ସମୟରେ ଇଷ୍ଟ ନିର୍ଦ୍ଦେଶ
ମୂର୍ତ୍ତ କରିବାହିଁ ତପ ॥

ଏହି ସାମାନ୍ୟ ଜିନିଷ ଟିକକର ଅଭ୍ୟାସ ରହିଲେ ଅନନ୍ତ ଆଶୀର୍ବାଦର ଅଧିକାରୀ

ହୋଇହୁଏ। ଭିତରର ଯୋଗାଣ ଠିକ୍ ରହିଲେ ବାହାରର ଚଲାଟା ଆପେ ଆପେ ସାବଲୀଳ ହୋଇ ଉଠେ। ଆଉ ଉତ୍ସାହ, ଉଦ୍ଦୀପନା, ଆନନ୍ଦ ଓ ସ୍ଫୂର୍ତ୍ତିର ଜୁଆର ଆସେ ନାମପରାୟଣତାର ଭିତର-ଦେଇ, ଧ୍ୟାନଶୀଳତାର ଭିତର-ଦେଇ, ଗୁରୁମୁଖୀନତାର ଭିତର-ଦେଇ। ଏହାଦ୍ୱାରା ମନ ଚାଙ୍ଗା ଥାଏ, ହୃଦୟ ଭରି ରହିଥାଏ। କାର୍ଯ୍ୟ ମଧ୍ୟରେ ଗୋଟିଏ ନିଶାର ଆମେଜ ଲାଗି ରହିଥାଏ। କାର୍ଯ୍ୟକର୍ମରେ, ଚାଲିବା-ବୁଲିବାରେ ଭୁଲ୍ କମ୍ ହୁଏ। କବିରାଜ ମହାଶୟ ମାନେ ଯେପରି ମଣିଷକୁ ଔଷଧ ଦିଅନ୍ତି, ନାମ ମଧ୍ୟ ସେହିପରି ମୋର ଦିଆ ଔଷଧ। ଯିଏ ଯେତେଟା ନିଷ୍ଠା ସହକାରେ କରିବ ସେ ସେତେଟା ଫଳ ପାଇବ। ଏହା ମୋର କରି ଦେଖିବା ଜିନିଷ। ଏହାର ଫଳ ନିର୍ଘାତ୍। ଗୁରୁଙ୍କ ପ୍ରତି ଟାଣ ନେଇ ଠିକ୍ ଭାବରେ ନାମଧ୍ୟାନ କରିଲେ ତା'ର ଭିତରର ଘୁମନ୍ତ ଗୁଣଗୁଡ଼ିକ ଗଜାଇ ଉଠିବ। ନାମ-ଧ୍ୟାନର ସହିତ ନିରନ୍ତର କାର୍ଯ୍ୟ କରିବା ଦରକାର। ନ ହେଲେ ମଣିଷ ନିଥର ହୋଇପଡ଼େ। ଯାହାର sensory nerve (ବୋଧସ୍ନାୟୁ) ଓ motor nerve (କର୍ମୀ ସ୍ନାୟୁ) ସମାନ ଭାବରେ active (ସକ୍ରିୟ), ତା'ର personality (ବ୍ୟକ୍ତିତ୍ୱ) ଏକ ବିଶେଷ ଆଗ୍ରହ ନେଇ ଜାଗି ଉଠେ। ମଣିଷ ମଧ୍ୟରେ ତାର influence (ପ୍ରଭାବ) ବିଛାଡ଼ି ପଡ଼ିବାକୁ ବାଧ୍ୟ। ତେବେ ସବୁକିଛିର ମୂଳରେ ଦରକାର ଶ୍ରେୟ ନିଷ୍ଠା।

ଆ.ପ୍ର. ୧୦/୩୦.୧.୧୯୪୮

**ପ୍ର. – ଇଷ୍ଟଙ୍କୁ ଗ୍ରହଣ କରିବା ପରେହିଁ ଅନେକଙ୍କର ଦୁର୍ଭୋଗ ଖୁବ୍ ବଢ଼ିଯାଏ କାହିଁକି?**

**ଶ୍ରୀଶ୍ରୀଠାକୁର** – ତା'ର ମାନେ, ମହଜୁତ ହୋଇଥିବା ଅପକର୍ମର ଫଳ ଶୀଘ୍ର-ଶୀଘ୍ର ବାହାରିଯାଏ। ସେ ଯଦି ନିଷ୍ଠା ସହକାରେ କରଣୀୟ କରିଚାଲେ ତେବେ ସ୍ୱସ୍ତିର ଅଧିକାରୀ ହେବହିଁ।

ଆ.ପ୍ର. ୧୦/୩୦.୧.୧୯୪୮

**ପ୍ର. – ଇଷ୍ଟଙ୍କୁ ଗ୍ରହଣ କରି ଖୁବ୍‌ହିଁ ସତ୍ କୌଣସି ଲୋକ ଯଦି ଦୁର୍ଭୋଗ ଭୋଗେ ତାହେଲେ କ'ଣ ବୁଝିବାକୁ ହେବ ଯେ ସେ ତାର ପୂର୍ବଜନ୍ମର କର୍ମଫଳରୁ କଷ୍ଟ ପାଉଛି?**

**ଶ୍ରୀଶ୍ରୀଠାକୁର** – ଏହା ମଧ୍ୟରେ ପୂର୍ବର କର୍ମଫଳ ମଧ୍ୟ ଯେପରି ଥାଏ ବର୍ତ୍ତମାନର କର୍ମଫଳ ମଧ୍ୟ ସେହିପରି ଥାଏ। ସତ୍‌ଲୋକ ମାନେ ସେହି ଲୋକ ଯିଏ ବଞ୍ଚିବା-ବଢ଼ିବାର ନୀତି-ପଦ୍ଧତି ଓ ନିୟମ ଭଲ ଭାବରେ ଜାଣେ ଓ ମାନି ଚଳେ। କେବଳ ଜାଣିଲେ ହେବ ନାହିଁ, ମାନି ଚଳିବା ଦରକାର। ଜଣେ ହୁଏତ otherwise (ଅନ୍ୟଦିଗରୁ) ଖୁବ୍ ଭଲ ମଣିଷ, କିନ୍ତୁ ସିଏ ହୁଏତ ସଦାଚାର ବିଧି ଭଲ କରି ଜାଣେନା ବା ମାନି ଚଳେନା, ତାଦ୍ୱାରା ସେ କିନ୍ତୁ ବ୍ୟାଧିର କବଳରୁ ରିହାତି ପାଇବ ନାହିଁ। ଅଜ୍ଞତା ପାପ। ...ସଦାଚାର ମାନେ ବିଦ୍ୟମାନତାର



ଆଚାର, ରହିବା ଓ ବଞ୍ଚିବା-ବଢ଼ିବାର ଆଚାର। ସତ୍‌ପରିପୋଷଣୀ-ଆଚାର କରିବି ନାହିଁ ଅଥଚ ମୁଁ ଭଲରେ ରହିବି ତା' ହୁଏ ନାହିଁ। ସେଥିପାଇଁ ସତ୍‌ଲୋକ ହେବା ମାନେ ଅନେକ କଥା। ଜୀବନର ଯେଉଁ କ୍ଷେତ୍ରରେ ବଞ୍ଚିବା-ବଢ଼ିବାର ଚିନ୍ତା ଚଳନ ଓ ବାକ୍ୟ ଠାରୁ ଆମ୍ଭେମାନେ ଯେତେଟା ଭ୍ରଷ୍ଟ ହେଉ ସେ କ୍ଷେତ୍ରରେ ଆମ୍ଭମାନଙ୍କର ସତ୍-ତ୍ୱ ସେତେଟା କ୍ଷୁର୍ଣ୍ଣ ହୁଏ। ସୁତରାଂ ଆମ୍ଭମାନଙ୍କର ଜନ୍ମାନ୍ତରୀଣ କର୍ମଫଳ ଯାହା ଥାଉ ବା ନ ଥାଉ ଆମ୍ଭେମାନେ ଯଦି ଆମ୍ଭମାନଙ୍କର ବର୍ତ୍ତମାନ ଚଳନକୁ ନିଖୁଣ କରିବାର ଚେଷ୍ଟା କରୁ ତଦ୍ୱାରା ଅତୀତର କର୍ମଫଳ ମଧ୍ୟ ଅନେକଟା ଶୁଭରେ ବିନ୍ୟସ୍ତ ହୋଇପାରେ। ଅଦୃଷ୍ଟବାଦୀ ହୋଇ ଲାଭ ନାହିଁ। ବରଂ ଅଜ୍ଞତାର ସବୁ ଗୁପ୍ତରନ୍ଧ୍ର ଦୃଷ୍ଟି ମଧ୍ୟକୁ ଆଣ ଏବଂ ଜ୍ଞାନର ଆଲୋକରେ ଚାଲ, ଇଷ୍ଟାନୁରାଗର ଆଲୋକରେ ଚାଲ, ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଧନ୍ଦାରେ ଚାଲ। ସେଥିରେ ଅନେକକିଛି ଠିକ୍ ହୋଇଯିବ।

ଆ.ପ୍ର. ୧୦/୩୦.୦୧.୧୯୪୮

**ପ୍ର. – ଇଷ୍ଟଙ୍କ ପ୍ରତି ଶ୍ରଦ୍ଧା-ଭକ୍ତି ମଣିଷର ଜୀବନରେ ଅପରିହାର୍ଯ୍ୟ କାହିଁକି? କାହାରି ଯଦି ଖୁବ୍ ମାତୃଭକ୍ତି ଓ ପିତୃଭକ୍ତି ଥାଏ?**

**ଶ୍ରୀଶ୍ରୀଠାକୁର** – ଶ୍ରଦ୍ଧାହିଁ ହେଲା ମୂଳ ଜିନିଷ ଯାହା ମଣିଷକୁ ବଡ଼ କରି ତୋଳେ। କେବଳ ମାତ୍ର ମାତୃଭକ୍ତି ବା ପିତୃଭକ୍ତିରେହିଁ ଶ୍ରଦ୍ଧା-ଭକ୍ତି ଚରମ ସାର୍ଥକତା ଲାଭ କରେ ନାହିଁ। ସେଥିପାଇଁ ଦରକାର ଯୁଗ-ପୁରୁଷୋତ୍ତମଙ୍କର ଶରଣାପନ୍ନ ହେବା। ଆମ୍ଭେମାନେ ଯାହାପ୍ରତି ଯେଉଁ ଶ୍ରଦ୍ଧାହିଁ ପୋଷଣ କରୁ ନା କାହିଁକି, ତାହା ଇଷ୍ଟାନୁଗ ହେବା ଦରକାର। ନ ହେଲେ ତଥାକଥିତ ଶ୍ରଦ୍ଧାହିଁ ଅନେକ ସମୟ ଉନ୍ନତିର ଅନ୍ତରାୟ ସୃଷ୍ଟି କରିପାରେ। ସ୍ୱୟଂ ଇଷ୍ଟହିଁ ହେଲେ ଅଭ୍ରାନ୍ତ। ଅନ୍ୟର ଭୁଲ ରହିପାରେ। ସେଥିପାଇଁ ଏକମାତ୍ର ତାଙ୍କୁ unconditionally (ନିଃସର୍ତ୍ତ ଭାବରେ) follow (ଅନୁସରଣ) କରିବା ଦରକାର। ଆଉ, ଇଷ୍ଟାନୁରାଗ ଓ ଇଷ୍ଟାନୁସରଣ ଅକ୍ଷୁର୍ଣ୍ଣ ରଖି ପ୍ରତ୍ୟେକଙ୍କୁ ଯଥାଯୋଗ୍ୟ ଭାବରେ ଶ୍ରଦ୍ଧା ଓ ମାନ୍ୟ କରିବାକୁ ହୁଏ।

ଆ.ପ୍ର. ୧୦/୩୦.୧.୧୯୪୮

**ପ୍ର. – କୌଣସି ଗୁରୁଜନ ଯଦି ଇଷ୍ଟନୀତି-ବ୍ୟତିକ୍ରମି କିଛି କରିବାକୁ କହନ୍ତି, ସେଠାରେ କିପରି ଭାବରେ କ'ଣ କରିଲେ ଇଷ୍ଟାନୁସରଣ ଓ ଗୁରୁଜନଙ୍କ ସହିତ ସମ୍ପ୍ରୀତି ଦୁଇହିଁ ଅକ୍ଷୁର୍ଣ୍ଣ ରହିବ?**

**ଶ୍ରୀଶ୍ରୀଠାକୁର** – ତୁମେ ତାଙ୍କ ସହିତ ଏପରି ବିନୀତ ବ୍ୟବହାର କରିବ ଯାହାଦ୍ୱାରା ସେ ଖୁସି ହୁଅନ୍ତି। ତେବେ ସଙ୍ଗେ-ସଙ୍ଗେ କହିବ, ଏହିଭାବରେ ଆପଣଙ୍କ ଉଦ୍ଦେଶ୍ୟ ଆହୁରି ଭଲକରି ସିଦ୍ଧ ହୋଇପାରେ। ଧର, ସେ ତୁମକୁ ଗୋଟିଏ ଲୋକ ଉପରେ ପ୍ରତିଶୋଧ ନେବାକୁ

କହିଲେ, ତାକୁ ଜବତ୍ କରିବା ପାଇଁ। ତୁମେ ହୁଏତ କହିଲ ମୁଁ ତା' ସହିତ ଆପଣଙ୍କର କଥା ଏପରି କରି କହିବି ଯାହାଦ୍ୱାରା ସେ ଆପଣଙ୍କ ସହିତ ଯେଉଁ ବ୍ୟବହାର କରିଛି ତା' ପାଇଁ ଅନୁତପ୍ତ ହୋଇ ଆପଣଙ୍କ ପାଖରେ କ୍ଷମା ପ୍ରାର୍ଥନା କରେ। ଏହାଦ୍ୱାରା ଆପଣଙ୍କର ଜୟ ତ ହେବହିଁ ଏବଂ ତା'ର ମଧ୍ୟ ପରାଜୟ ଭିତର ଦେଇ ଜୟ ହେବ। ଆପଣ ମଧ୍ୟ ତାକୁ ନିଜର କରି ପାରିବେ, ସେ ମଧ୍ୟ ଆପଣଙ୍କୁ ନିଜର କରି ପାରିବ। ଏହିଭାବରେ କ୍ଷେତ୍ର ବୁଝି କହିବାକୁ ହୁଏ। ପ୍ରତ୍ୟେକଙ୍କ ମଧ୍ୟରେହିଁ ଶୁଭ ବୁଦ୍ଧି ଅଛି। କୌଶଳର ସହିତ ତାକୁ ଉଦ୍ଦୀପ୍ତ କରିତୋଳିବା ଦରକାର। "ଯୋଗଃ କର୍ମସୁ କୌଶଳମ୍।" ତୁମେ ଯଦି ଇଷ୍ଟଙ୍କ ସହିତ ଯୁକ୍ତ ଥାଅ, ତା'ହେଲେ ସେ ହିଁ ତୁମ ମୁଣ୍ଡରେ ବୁଦ୍ଧି ଯୋଗାଇ ଦେବେ – ତୁମେ କିପରି କରି ଅପରର ଅହଂକୁ ଆହତ ନ କରି ତାକୁ ଶୁଭର ପଥରେ ସୁନିୟନ୍ତିତ କରିପାରିବ। ଇଷ୍ଟସ୍ୱାର୍ଥପ୍ରତିଷ୍ଠାକୁ ମୁଖ୍ୟ କରି ନଟ (ଅଭିନେତା) ପରି ଚାଲିବାକୁ ହେବ। ଯେଉଁଠାରେ ଯେତେବେଳେ ଯାହା ସହିତ ଯେଉଁ କଥା, ଯେଉଁ ବ୍ୟବହାର, ଯେଉଁ ଚାଲ ଲାଗିବ ସେଠାରେ ତାହାହିଁ ପ୍ରୟୋଗ କରିବାକୁ ହୁଏ। It is just like a sport. (ଏହା ଠିକ୍ ଗୋଟିଏ ଖେଳ ପରି)। ଏହି ଖେଳରେ ମଜା ଅଛି। ଇଷ୍ଟାନୁରାଗ ଓ ଆତ୍ମନିୟନ୍ତ୍ରଣ ଯାହାର ଯେତେ ପକ୍କା ହୁଏ, ନିଜକୁ ଯିଏ ଯେତେ ଶାସନରେ ରଖେ ସେ ଏହି ଖେଳରେ ସେତେ ଜୟୀ ହୁଏ। Inferiority (ହୀନମନ୍ୟତା) ରହିଲେ ମଣିଷ ଅଯଥା stiff (ଅନମନୀୟ) ହୁଏ, ସେତେବେଳେ ସେ ନିଜକୁହିଁ ଠିକ୍ ଭାବରେ ଚଳାଇପାରେ ନାହିଁ, ସେଥିପାଇଁ ଅନ୍ୟକୁ ମଧ୍ୟ ନେଇ ଚାଲିପାରେ ନାହିଁ।

ଆ.ପ୍ର. ୧୦/୩୦.୧.୧୯୪୮

**ପ୍ର. – ଇଷ୍ଟାନୁସରଣରେ ଯାଜନ ତ ନିତ୍ୟ କରଣୀୟ, କିନ୍ତୁ ତାର କୌଶଳଟା କ'ଣ ? ଯାଜନଜୈତ୍ର କି ଭାବରେ ହୋଇହୁଏ ?**

**ଶ୍ରୀଶ୍ରୀଠାକୁର** – କେବଳ ନିଜର ରକମରେ ନିଜର ଜଗତରେ ଆଚ୍ଛନ୍ନ ହୋଇରହିଲେ ଚଳିବ ନାହିଁ। ପ୍ରତ୍ୟେକଙ୍କୁ observe (ପର୍ଯ୍ୟବେକ୍ଷଣ) କରିବା ଦରକାର ତାର ଚାହିଦା, ପସନ୍ଦ, ପ୍ରୟୋଜନ, ଝୁଙ୍କ ଇତ୍ୟାଦି ବିଷୟରେ ତା ସହିତ କଥାବାର୍ତ୍ତା କରି ଜାଣିବା ଦରକାର। ଜଣେ ହୁଏତ ଅର୍ଥ ଚାହେଁ। ତାକୁ ଯଦି ତୁମେ ବୁଝାଇବାକୁ ଚେଷ୍ଟା କର ଯେ ଅର୍ଥହିଁ ସମସ୍ତ ଅନର୍ଥର ମୂଳ ତା' ହେଲେ ତୁମ କଥାରେ ତାର କୌଣସି ଲାଭ ହେବ ନାହିଁ। ବରଂ ଅର୍ଥ ଉପାର୍ଜନ ପାଇଁ ସେ ଉତ୍ସାହ-ସହକାରେ ଯେଉଁ ଚେଷ୍ଟା କରୁଥିଲା, ସେ ଚେଷ୍ଟାରେ ଯୌକ୍ତିକତା ସମ୍ବନ୍ଧରେ ତା'ର ମନରେ ଦ୍ୱନ୍ଦ ଉପସ୍ଥିତ ହେବାରୁ ସେ ନିରୁତ୍ସାହ ହୋଇପଡ଼ିବ। ସେଥିପାଇଁ ମଣିଷକୁ negative (ନେତିବାଚକ) କଥା ନ କହି ତା'ର ଉଦ୍ଦେଶ୍ୟରେ higher fulfilment (ଉଚ୍ଚତର ପୂରଣ) ଯାହାଦ୍ୱାରା ହୁଏ ତାକୁ ସେହି ଭାବରେ ମତାଇ ଦେବାହିଁ



ଭଲ। ...କାହାର ଯଦି ସ୍ୱାର୍ଥବୁଦ୍ଧି ଥାଏ, ସେହି ସ୍ୱାର୍ଥବୁଦ୍ଧି ପାଇଁ ତାକୁ କଟାକ୍ଷ ନ କରି ତାର ସ୍ୱାର୍ଥବୁଦ୍ଧି ଯାହାଦ୍ୱାରା ବିସ୍ଫୋରିତ ହୋଇ ମହାସ୍ୱାର୍ଥର ଆବାହନରେ ଉନ୍ମୁଖ ହୋଇଉଠେ, ସେହି ଭାବରେ ତାକୁ ତାଜା କରି ଛାଡ଼ି ଦେବାକୁ ହୁଏ। କାହାକୁ ନିନ୍ଦା କରିବାର କିଛି ନାହିଁ, ଘୃଣା କରିବାର କିଛି ନାହିଁ, କେବଳ ଦରକାର ପ୍ରତ୍ୟେକକୁ ତା' ପରି କରି ମହାମଙ୍ଗଳର ପଥରେ ପରିଚାଳିତ କରିଦେବା। ଇଷ୍ଟ, ଧର୍ମ ଓ କୃଷ୍ଟିକୁ ଏହି ଭାବରେ ମଣିଷ ମଧ୍ୟରେ ଯୁକ୍ତ କରିଦେବାକୁ ହୁଏ। ...ତୁମର ସଂସ୍ପର୍ଶରେ ଆସି ଅନ୍ୟମାନେ ଯେପରି ବୁଝିପାରନ୍ତି ଯେ ତୁମେ ତାଙ୍କୁ ଭଲପାଅ, ତୁମେ ତାଙ୍କୁ ଶ୍ରଦ୍ଧା କର, ତାଙ୍କର ଭଲ ହେଲେ ତୁମେ ବର୍ତ୍ତୀଯାଅ, ତାର ଦାୟଟାକୁ ତୁମ ନିଜର ଦାୟ ବୋଲି ମନେ କର, ତାକୁ ଉପଦେଶ ଦେବା ପାଇଁ ତୁମେ ବ୍ୟସ୍ତ ନୁହଁ, ତାର ସେବା ସାହାଯ୍ୟ କରିପାରିଲେ ନିଜକୁ ତୁମେ କୃତାର୍ଥ ମନେ କର। ଏହି ଆକୁଳ ପ୍ରୀତି-ପ୍ରାଣତାର ସ୍ପର୍ଶରେ କେହି ଯଦି ତୁମ ପାଖକୁ ଆସିଯାଏ, ତା'ହେଲେ ସେ କିନ୍ତୁ ତୁମକୁ କିଛି ପ୍ରକାରରେ ବି ଛାଡ଼ିବାକୁ ଚାହିଁବ ନାହିଁ। କଠୋର ଇଷ୍ଟନଷ୍ଟ ହୋଇ ଏହି ଭାବରେ ଚାଲିପାରିବାହିଁ ଯାଜନଜୈତ୍ର ହେବାର କୌଶଳ। ମଙ୍ଗଳ ସେତେବେଳେ ତୁମର ପଛେ-ପଛେ ପାଦେ-ପାଦେ ଚାଲିବ। ତୁମେ ପଦ୍ମପାଦ ପରି ହୋଇଉଠିବ। ତୁମ ଦେଇ ସେତେବେଳେ କାହାରି ଭଲ ଛଡ଼ା ମନ୍ଦ ହେବ ନାହିଁ।

ଆ.ପ୍ର. ୧୦/୧.୨.୧୯୪୮

**ପ୍ର – ଇଷ୍ଟଙ୍କର ସ୍ୱାର୍ଥରକ୍ଷା ଓ ପ୍ରତିଷ୍ଠାର ସ୍ୱାର୍ଥରେ କେତେବେଳେ କାହାର ପ୍ରକୃତ ଚାହିଦା ଓ ଧରଣକୁ ଧରାଯାଏ ?**

**ଶ୍ରୀଶ୍ରୀଠାକୁର** – ସବୁ ସମୟରେ ମନଟାକୁ ଇଷ୍ଟଙ୍କଠାରେ ଭରପୂର କରି ରଖିବା ଦରକାର। ଏହା ଦ୍ୱାରା ମନ ଓ ଦୃଷ୍ଟି ସ୍ୱଚ୍ଛ ଥାଏ। ସେତେବେଳେ ସହଜରେହିଁ ଧରା ପଡ଼େ। ନିଜର ପ୍ରବୃତ୍ତିର ଅଭିଭୂତି ଯେତେ କମ୍ ହୁଏ, ମନଟା ସେତେ uncoloured (ଅରଙ୍ଗିନ) ଓ receptive (ଗ୍ରହଣମୁଖର) ଥାଏ, ସେତେହିଁ ବୁଝିବାର ସୁବିଧା ହୁଏ। ମନଟା ଶୂନ୍ୟ ରହିପାରେ ନାହିଁ, ସେଥିପାଇଁ ମନଟାକୁ ପରମପିତାଙ୍କ ଭାବରେ ମତୁଆଲା କରି ରଖିବାକୁ ହୁଏ। ଏହି ଭୂମିରେ ଠିଆ ହେଲେ, ଉପରୁ ଛିଡ଼ା ହୋଇ ମଣିଷଗୁଡ଼ିକୁ ଭଲ କରି ଦେଖାଯାଏ। ପ୍ରବୃତ୍ତିଲୀନ ମଣିଷର ମନ ଯେଉଁ ସ୍ତରରେ ଅଛି, ତୁମର ମନ ମଧ୍ୟ ଯଦି ସେହି ରକମର ସ୍ତରରେ ରହି ହାବୁଡୁବୁ ଖାଏ, ତା'ହେଲେ ତୁମର ସେହି ଦିଗହରା ପରିଶ୍ରାନ୍ତ ଓ ଅସ୍ୱଚ୍ଛ ମନ ନେଇ ତୁମେ ଅନ୍ୟକୁ କେତେଟିକିଏ ଦେଖିପାରିବ। ପୋଖରୀର ଜଳରେ ଆକାଶର ପ୍ରତିଫଳନ ଦେଖିବାକୁ ମିଳିଥାଏ। କିନ୍ତୁ ସେହି ଜଳରେ ଯଦି କ୍ରମାଗତ ଢେଉ ଉଠିଥାଏ ତେବେ ସେଥିରେ କ'ଣ ଆକାଶର ଯଥାଯଥ ପ୍ରତିରୂପ ପ୍ରତିଫଳିତ ହେବ ? ଆମମାନଙ୍କର ନିଜର ମନହିଁ ଇଷ୍ଟାତିରିକ୍ତ ନାନା ଧନ୍ଦାରେ, ନାନା ଭାବରେ ବିବ୍ରତ, ଅଶାନ୍ତ ଓ ଅସ୍ଥିର ହୋଇଥାଏ। ସେଥିପାଇଁ

ଆମ୍ଭମାନଙ୍କର ବହୁଧା ବିଭକ୍ତ ଓ ବିକ୍ଷିପ୍ତ ମନ ଉପରେ ବସ୍ତୁ ବା ବ୍ୟକ୍ତି ସମ୍ବନ୍ଧରେ ଯଥାଯଥ ଓ ଅବିକୃତବୋଧ ଗଢ଼ିଉଠି ପାରେନାହିଁ। ମୁଁ ଯେ କହିଛି – ''ଉଷା-ନିଶାରେ ମନ୍ତ୍ରସାଧନ ଚଲାଫେରାରେ ଜପ, ଯଥା ସମୟରେ ଇଷ୍ଟ ନିର୍ଦ୍ଦେଶ ମୂର୍ତ୍ତ କରିବାହିଁ ତପ'' – ଏହା ଖୁବ୍ ଜୋରରେ ଚଳାଇବା ଦରକାର। ମନେ କରିବ ତୁମର ଜୀବନ ତୁମେ ଯେତେବେଳେ ପରମପିତାଙ୍କୁ ଦେଇଛ, ସେତେବେଳେ ତାଙ୍କର ଅନୁକୂଳ ଚିନ୍ତା ଛଡ଼ା ପ୍ରତିକୂଳ ଚିନ୍ତା କରିବାର ଅଧିକାର ତୁମର ନାହିଁ। ଯାହା ତାଙ୍କୁ ଦେଇଛ ତାର ମାଲିକ ସେ ହିଁ। ତାହା ତାଙ୍କ କାର୍ଯ୍ୟରେ ନିୟୋଗ କରିବାହିଁ ତୁମର ଧର୍ମ। ସବୁ ସମୟରେ ଯଦି ତୁମର ମାନସ-ଶକ୍ତିକୁ ଇଷ୍ଟାର୍ଥେ ନିୟୋଜିତ କରିବାରେ ଅଭ୍ୟସ୍ତ ହୁଅ, ତା'ହେଲେ ଦେଖିବାକୁ ପାଇବ, ତୁମର ସେହି ମାନସ-ଶକ୍ତି କେତେ ଉନ୍ନତ ଓ ଅମୋଘ ହୋଇଉଠିଛି। ତୁମର ସେହି ଇଷ୍ଟୋନ୍ନତତତ୍ତ୍ୱର ଏକାଗ୍ର ମନର ମନୋଯୋଗ ଯେତେବେଳେ ଯେଉଁ ଦିଗକୁ ଯିବ ସେତେବେଳେ ସେହି ଦିଗରେହିଁ ଅସାଧାରଣ ସାଫଲ୍ୟ ଲାଭ କରିବ। ମୁଁ ତ କେବଳ ଭାବେ ଭଗବାନ ଯେତେବେଳେ ତୁମକୁ ଏତେ ବଡ଼ କରି ତୋଳିବାକୁ ଚାହାଁନ୍ତି, କ'ଣ ପାଇଁ ତୁମେମାନେ ଇଚ୍ଛା କରି ଛୋଟ ହୋଇ ରୁହ। ମୁଁ ଯେଉଁ ଭାବରେ ତୁମକୁ ଚାଲିବାକୁ କୁହେ, ସେହି-ଭାବରେ ଯଦି ଚାଲିବାକୁ ଲାଗ, ତା'ହେଲେ ଦେଖିବାକୁ ପାଇବ ତୁମେମାନେ ନିଜେ ବଡ଼ ହୋଇ ଉଠିଛହିଁ, ପୁଣି ତୁମମାନଙ୍କୁ ନେଇ କେତେ ମଣିଷ ଯେ ଉପକୃତ ହେଉଛନ୍ତି ତା'ର ଇୟତ୍ତା ନାହିଁ। ତୁମେମାନେ ମଣିଷ ଉପରକୁ ଉଠିବା ପାଇଁ ସିଡ଼ି ହୋଇଉଠିବ।

ଆ.ପ୍ର. ୧୦/୧.୨.୧୯୪୮

**ପ୍ର. – ଇଷ୍ଟାନୁସରଣରେ ତାଙ୍କର କୃପା ଛଡ଼ା କ'ଣ ମଣିଷର ଚଳନ ତ୍ରୁଟିଶୂନ୍ୟ ହୋଇପାରେ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଯେତେ ଈଶ୍ୱରମୁଖୀ ହୁଏ, ସେତେହିଁ ତାର ଚଳନ ଶୁଦ୍ଧ ହୁଏ। Mechanically (ଯାନ୍ତ୍ରିକ ଭାବରେ) ଭଲ ହେବାକୁ ଗଲେ ଅନେକ ଦ୍ୱନ୍ଦ୍ୱ ରହିଯାଏ। କିନ୍ତୁ ଇଷ୍ଟାନୁରାଗ ଯଦି ଥରେ ଦାନା ବାନ୍ଧି ଉଠେ, ତା'ହେଲେ ଚଳଣୀ adjusted (ନିୟନ୍ତ୍ରିତ) ନ ହୋଇ ପାରେ ନାହିଁ। ଈଶ୍ୱରଙ୍କର କୃପା ବୋଲି ଯଦି କିଛି ଥାଏ, ତାହେଲା ଇଷ୍ଟାନୁରାଗ ଆଉ ଏହା ହେଲା ଭକ୍ତର ନିଜସ୍ୱ ଇଚ୍ଛା-ସାପେକ୍ଷ ବ୍ୟାପାର। ଇଷ୍ଟଙ୍କୁ ଭଲପାଇବାକୁ ଚାହିଁଲେହିଁ ଭଲପାଇ ହୁଏ। ଏହି ଭଲ ପାଇବାର କ୍ଷମତା ପରମପିତା ଦେଇ ଦେଇଛନ୍ତି। ଏହା ତାଙ୍କର ଦୟା। ତାଙ୍କର ଦୟା ସତ୍ତ୍ୱେ ମଧ୍ୟ ମଣିଷ ଯଦି ନିଜ ପ୍ରତି ସଦୟ ନ ହୁଏ, ତା'ହେଲେ ପରମପିତାଙ୍କର ଦୟା କମ୍ କାର୍ଯ୍ୟକାରୀ ହୋଇପାରେ। ଆ.ପ୍ର. ୧୦/୨.୨.୧୯୪୮

**ପ୍ର. – ଇଷ୍ଟଙ୍କ ସଙ୍ଗ ନ କରିଲେ ମଧ୍ୟ କିପରି ଭାବରେ ତାଙ୍କ ଉପରେ ଭକ୍ତିଭଲପାଇବା ହୋଇପାରେ ?**



**ଶ୍ରୀଶ୍ରୀଠାକୁର** – ଶୁଣି ହୋଇପାରେ। ବହି ପଢ଼ି ହୋଇପାରେ। ଲୋକଙ୍କ ମୁହଁରୁ ଶୁଣିଲେ ସୁବିଧା ହୁଏ। ଅବଶ୍ୟ, ସେହି ଲୋକ ଯଦି ତାଙ୍କର ପ୍ରେମିକ ହୁଏ ତା'ହେଲେ ସବୁଠାରୁ ଭଲ ହୁଏ। ଭଲପାଇବାର ଭିତର ଦେଇ ଯେଉଁ ସଞ୍ଚାରଣ ହୁଏ ତାହା ଅନ୍ୟ ମନରେ ମଧ୍ୟ ଭଲପାଇବା ଗଢ଼ି ତୋଳିବାରେ ସାହାଯ୍ୟ କରେ। ମଣିଷ ଦେଖେ ଯେଉଁ ଲୋକଟି ଜଣେ ମହାପୁରୁଷଙ୍କର କଥା ଅନୁରାଗ ଓ ଆବେଗର ସହିତ କହୁଛି, ତା'ର ନିଜର ଚଳନ-ଚରିତ୍ରଟି କିପରି। ତାର ଚରିତ୍ର ଯଦି ଉନ୍ନତ ଓ ସୁନ୍ଦର ହୁଏ, ସେ ଯାହା କୁହେ ଯଦି ବାସ୍ତବରେ ତାହା ଆଚରଣ କରେ, ତା'ହେଲେ ତା'ର କଥାର ପ୍ରଭୂତ (ଅନେକ) ଦାମ୍ ହୁଏ। ଆଚରଣ-ହୀନ କଥାର ମଧ୍ୟରେ ଶକ୍ତି ନ ଥାଏ। ବିଶ୍ୱାସର ଜେଲ୍ଲା (ଔଜ୍ଜ୍ୱଲ୍ୟ) ନ ଥାଏ। ପ୍ରକୃତ ବିଶ୍ୱାସୀ ମଣିଷ ତା'ର ବିଶ୍ୱାସର ଜୋରରେ ଅନ୍ୟର ମନରେ ବିଶ୍ୱାସ ଜଗାଇ ଦେଇପାରେ।

ଆ.ପ୍ର. ୧୧/୭.୨.୧୯୪୮

**ପ୍ର. – ଇଷ୍ଟଙ୍କ ପ୍ରୀତି ପାଇଁ ଯେ ଇଷ୍ଟଭୃତି କରିବାକୁ ହୁଏ, ତାର ମୂଳ ତାତ୍ପର୍ଯ୍ୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ନିଜେ ଉପାୟ କରି ପ୍ରେଷ୍ଠଙ୍କ ସେବା ପାଇଁ ତାହା ବ୍ୟୟ କରିଲେ ପ୍ରେଷ୍ଠଙ୍କ ପ୍ରତି ନିଜର ଭଲପାଇବା ଶକ୍ତି-ସମ୍ବର୍ଦ୍ଧନୀ ଯୋଗ୍ୟତାରେ ମୂର୍ତ୍ତ ହୋଇଉଠେ। ଯାହାପାଇଁ ନିଃସ୍ୱାର୍ଥ ଭାବରେ ଯେତେ କରାଯାଏ, ତା ପ୍ରତି ଭଲପାଇବା ମଧ୍ୟ ସେତେ ବଢ଼େ। ଯାହା ପ୍ରତି ଆମର ଭଲପାଇବା ବଢ଼େ ଧିରେ-ଧିରେ ତା'ର ଚରିତ୍ରଗତ ଗୁଣାବଳୀ ଆମମାନଙ୍କ ମଧ୍ୟରେ ଜ୍ଞାତସାରରେ ଓ ଅଜ୍ଞାତସାରରେ ଫୁଟି ଉଠୁଥାଏ। ଏହାହିଁ ହେଲା ଶ୍ରେୟଙ୍କ ପ୍ରତି ଭଲପାଇବାର ମସ୍ତ ଲାଭ। ପ୍ରିୟପରମଙ୍କୁ ଯଦି ଆମେମାନେ ନିଜ ପାଇଁ କାମରେ ଲଗାଉ ତେବେ ତା'ଦ୍ୱାରା ଆମର ସ୍ୱାର୍ଥପରତା ବଢ଼େ ଏବଂ ଏହି ସ୍ୱାର୍ଥପରତାହିଁ ଆମ୍ଭମାନଙ୍କୁ ଅନ୍ଧ ଓ ପଙ୍ଗୁ କରିଦିଏ। ଆମ୍ଭମାନଙ୍କର ଯୋଗ୍ୟତା ଦିନକୁ-ଦିନ କମିଯାଉଥାଏ। ଆଉ, ପ୍ରିୟପରମଙ୍କ ପାଇଁ ସ୍ୱାର୍ଥତ୍ୟାଗ କଲେ ଆମ୍ଭମାନଙ୍କର ପ୍ରବୃତ୍ତି-ଅଭିଭୂତି କମେ। ଆମ୍ଭମାନଙ୍କର ସ୍ୱାର୍ଥବୋଧ enlarged (ବୃଦ୍ଧିପ୍ରାପ୍ତ) ହୁଏ। ସେତେବେଳେ ସଂକୀର୍ଣ୍ଣତା ଲୋପ ପାଏ। ଆମ୍ଭେମାନେ ଚାଲିବାର ରାସ୍ତା ଠିକ୍ ପାଉ। ପରିବେଶକୁ ଅବଜ୍ଞା କରିବା ପରିବର୍ତ୍ତେ ସାହାଯ୍ୟ କରିବାର ବୃଦ୍ଧି ହୁଏ। ଏହିଭାବରେ ପାଇବାର ପଥ ଖୋଲିଯାଏ। ଆ.ପ୍ର. ୧୧/୭.୨.୧୯୪୮

**ପ୍ର. – ଇଷ୍ଟାନୁସରଣରେ ମଣିଷର ଅଦୃଷ୍ଟ କେତେବେଳେ ପ୍ରଭାବ ପକାଇ ପାରେ ନାହିଁ ?**

**ଶ୍ରୀଶ୍ରୀଠାକୁର** – ତୁମର କର୍ମଫଳ ଯାହା ତୁମର ଦୃଷ୍ଟିର ବାହାରେ ତୁମ ପାଇଁ ଅପେକ୍ଷା କରୁଛି, ତାହାହିଁ ତୁମର ଅଦୃଷ୍ଟ। ତୁମେ ଯଦି ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହୁଅ ତା'ହେଲେ ଖରାପ

କର୍ମଫଳ ମଧ୍ୟ ତୁମର ବିଶେଷ କିଛି ଖରାପ କରିପାରିବ ନାହିଁ। କାରଣ, ଯେଉଁ ଅବସ୍ଥା ବି ଆସୁ ନା କାହିଁକି ତୁମେ ତା'ର ଇଷ୍ଟାନୁଗ ନିୟନ୍ତ୍ରଣ ସାମଞ୍ଜସ୍ୟ ସମାଧାନ କରି ତାହାକୁ ଶୁଭ ସନ୍ଦୀପୀ କରିତୋଳିପାରିବ। ପୁଣି, ସୁଖ-ଶାନ୍ତି ପାଇଲେ ସେଥିରେ ମଧ୍ୟ ତୁମେ ବଦ୍ଧ ହୋଇ ପଡ଼ିବ ନାହିଁ। କାରଣ, ସବୁ ଅବସ୍ଥାରେ ତୁମର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଇଷ୍ଟଙ୍କର ଇଚ୍ଛା ପୂରଣ କରିଚାଲିବା।

ଆ.ପ୍ର. ୧୧/୧୩.୨.୧୯୪୮

**ପ୍ର. – ଇଷ୍ଟାନୁସରଣ ମଧ୍ୟଦେଇ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଆଗ୍ରହ କାହା ମଧ୍ୟରେ ଜାଗ୍ରତ ହୋଇଛି କି ନାହିଁ ତାହା କ'ଣ ଦେଖି ବୁଝାଯିବ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଆଗ୍ରହ ଜାଗ୍ରତ ହେଲେ ଇଷ୍ଟ, ଇଷ୍ଟ ପରିବାର, ଇଷ୍ଟଭ୍ରାତା – ସମସ୍ତଙ୍କରହିଁ ଦୁଃଖ-କଷ୍ଟ ଦୂର କରିବାର ଦୂରନ୍ତ ପ୍ରଚେଷ୍ଟା ଜାଗ୍ରତ ହୁଏ। ଏହା ଭକ୍ତିରହିଁ ଏକ ରୂପ।

ଆ.ପ୍ର. ୧୧/୧୪.୨.୧୯୪୮

**ପ୍ର. – ଇଷ୍ଟଙ୍କ ଉପରେ ଆଜୀବନ ଅକାଟ୍ୟ ବିଶ୍ୱାସ ବଜାୟ ରଖିବାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର –** ଆମ୍ବ ଗଛଟାକୁ ତୁମେ ପଣସ ଗଛ କୁହ ନାହିଁ ବ୍ୟବହାର ଭିତର ଦେଇ ତୁମେ ଯେଉଁ ପ୍ରତ୍ୟକ୍ଷ ଜ୍ଞାନ ଲାଭ କର, ସେ ସମ୍ବନ୍ଧରେ ତୁମର କୌଣସି ପ୍ରଶ୍ନ ରହେ ନାହିଁ।

ଉଷା-ନିଶାରେ ମନ୍ତ୍ର ସାଧନ ଚାଲିବା ବୁଲିବାରେ ଜପ,
ଯଥା ସମୟରେ ଇଷ୍ଟ-ନିର୍ଦ୍ଦେଶ ମୂର୍ତ୍ତ କରିବାହିଁ ତପ।

– ଏହି କେତୋଟି କଥା ମନେରଖି ଗଞ୍ଜୁଡ଼ି ପରି ଲାଗିଯାଅ। ଯେତେ କଷ୍ଟହିଁ ହେଉ, ଯାହା କରଣୀୟ, ତାହା କରିବାରେ କେବେବେଳେ ବି ବିରତ ରୁହ ନାହିଁ। ବିହିତ କର୍ମ ପରି ଏତେବଡ଼ ଶିକ୍ଷକ ଆଉ ହୁଏ ନାହିଁ। କରିବାର ଭିତର ଦେଇ ଯେଉଁ ବୋଧ ଓ ବିଶ୍ୱାସର ଉଦୟ ହୁଏ, ତାହା କୌଣସି ପ୍ରକାରେ ଛାଡ଼େ ନାହିଁ। ଅପରର ଓଲଟା ଯାଜନରେ ତାହା ଟଳିଯାଏ ନାହିଁ। ମୁଁ ତୁମ ପାଇଁ ଯାହା କରେ ନା କାହିଁକି, ତାହା ତୁମର ସମ୍ପଦ ନୁହେଁ। ତୁମେ ମୋ ପାଇଁ ଯାହା କର, ତାହାହିଁ ତୁମର ସମ୍ପଦ। ତୁମର ଟାଣହିଁ ତୁମର ଅସ୍ତିତ୍ୱକୁ ଅଟଳ ଭାବରେ ଧରି ରଖିବ।

ଆ.ପ୍ର. ୧୧/୧୫.୨.୧୯୪୮

**ପ୍ର. – ଇଷ୍ଟାନୁସରଣରେ ଯଜନ, ଯାଜନ, ଇଷ୍ଟଭୃତି ନ କରିଲେହିଁ ନୁହେଁ କାହିଁକି ?**

**ଶ୍ରୀଶ୍ରୀଠାକୁର –** ଯଜନ, ଯାଜନ, ଇଷ୍ଟଭୃତିକୁ ଜୀବନର ସାଥି କରି ନିଅ। ତା'ଠାରୁ କେବେ ବି ବିଚ୍ୟୁତ ହୁଅନାହିଁ। ଏହାର ସୁଫଳ ଆମେ ସହସ୍ର-ସହସ୍ର ଲୋକ ନାନାଭାବରେ ପ୍ରତ୍ୟକ୍ଷ କରୁଛୁ। ଯଜନ, ଯାଜନ, ଇଷ୍ଟଭୃତି ପରମପିତାଙ୍କ ଦିଆ ରକ୍ଷାକବଚ। କରିଲେ ହିଁ ଜାଣିପାରିବ।

ଆ.ପ୍ର. ୧୧/୧୫.୨.୧୯୪୮



**ପ୍ର. – ଇଷ୍ଟାନୁସରଣରେ ବ୍ୟକ୍ତିଗତ ଭୋଗସୁଖ-ସମ୍ବନ୍ଧରେ କିପରି ମନୋଭାବ ନେଇ ଚାଲିବା ଉଚିତ୍ ?**

**ଶ୍ରୀଶ୍ରୀଠାକୁର –** ନିଜର ପ୍ରୟୋଜନ ଅଯଥାରେ ବଢ଼ାଇବା ଉଚିତ ନୁହେଁ। କେତେଗୁଡ଼ିଏ ପ୍ରୟୋଜନ ବଢ଼ାଇ ସେହି ସବୁ ପ୍ରୟୋଜନର ଦାସ ହୋଇ ପଡ଼ିଲେ ସ୍ୱସ୍ତିର ବଦଳରେ ଅସ୍ୱସ୍ତିହିଁ ବଢ଼େ। ତେବେ ଅସ୍ତିତ୍ୱପାଇଁ ଯାହା ପ୍ରୟୋଜନ ସେ ବ୍ୟାପାରରେ କୃପଣତା କରିବା ଉଚିତ ନୁହେଁ। ଅପରକୁ ସୁଖି କରିବାର ଭିତର ଦେଇ ମଣିଷର ପ୍ରକୃତ ସୁଖ ହୁଏ। ସେଥିପାଇଁ ଅର୍ଥ-ସାମର୍ଥ ଓ ଦ୍ରବ୍ୟ-ସାମଗ୍ରୀ ଇଷ୍ଟ, ପରିବେଶ ଓ ପ୍ରିୟଜନର ତୃପ୍ତି-ସାଧନ ପାଇଁ ଯେତେଟା ବ୍ୟୟ କରାଯାଏ ସେତେହିଁ ଆତ୍ମପ୍ରସାଦ ଆସେ। ଅବଶ୍ୟ ଏହି କରିବାଟା ଯଦି ପ୍ରତ୍ୟାଶାଜନିତ ହୁଏ, ତା'ହେଲେ ପରେ କ୍ଷୋଭର ମଧ୍ୟ ସଞ୍ଚାର ହୋଇପାରେ। ସେଥିପାଇଁ ପ୍ରତ୍ୟାଶାହୀନ ହୋଇ କରିବା ଦରକାର। ପରିବାର-ପରିବେଶର ସେବା ସମୟରେ ବିଶେଷ ଭାବରେ ଲକ୍ଷ୍ୟ ରଖିବା ଦରକାର ଯେଉଁଥିରେ ସେ-ସେବା ସମୀଚୀନ ଓ ସତ୍ତାପୋଷଣୀ ହୁଏ। ଆମ୍ଭମାନଙ୍କର ବେହିସାବୀ ଦାନ ଓ ଦୟା ଯେପରି କାହାକୁ ପଙ୍ଗୁ କରି ନ ତୋଳେ, ଯେପରି କାହାର ଅସତ୍ ପ୍ରବଣତାକୁ ପ୍ରଶ୍ରୟପୁଷ୍ଟ କରି ନ ତୋଳେ।

ଆ.ପ୍ର. ୧୧/୧୭.୨.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ବ୍ୟାପାରରେ ସବୁ ସମୟ ସଜାଗ ଓ ସଚେତନ ରହିବା କେତେବେଳେ ସମ୍ଭବ ହୁଏ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କଠାରେ ଯିଏ ସଜାଗ ଥାଏ, ଏହିଠାରେ ଯାହାର ମନ ବନ୍ଧା ଥାଏ, ସେ ସବୁ ସମୟରେହିଁ ହୁସିଆର ଥାଏ, ସଚେତନ ଥାଏ, ଇଷ୍ଟସ୍ୱାର୍ଥପ୍ରତିଷ୍ଠା ଓ ତା' ସହିତ ଲୋକମଙ୍ଗଳର ମାପକାଠିରେ ମାପି-ମାପି ଚାଲିବା, କହିବା, କରିବା, ଭାବିବା ଧିରେ-ଧିରେ ତା'ର ସ୍ୱଭାବସିଦ୍ଧ ହୋଇଉଠେ। ବାହ୍ୟିକ ଚାଲିବା, କହିବା, କରିବାର ସହିତ ଇଷ୍ଟଚେତନା ଓ ଇଷ୍ଟଚିନ୍ତା ...ତା'ର ଜୀବନରେ ଅଚ୍ଛେଦ୍ୟ ଓ ନିରନ୍ତର ହୋଇଉଠେ। ଧ୍ୟାନ ତାକୁ କେବେ ବି ତ୍ୟାଗ କରେ ନାହିଁ। ପ୍ରଥମେ କିଛିଦିନ ଲାଗିରହି ଚେଷ୍ଟା କରି ଅଭ୍ୟାସଟା ପକ୍କା କରିନେଇ ପାରିଲେ ସେତେବେଳେ ଆଉ... କସରତ୍ କରିବାକୁ ହୁଏ ନହିଁ।

ଆ.ପ୍ର. ୧୧/୨୧.୨.୧୯୪୮

**ପ୍ର. – ଇଷ୍ଟାନୁସରଣରେ ତାଙ୍କ ଠାରେ କିପରି ଭାବରେ ଏକାଗ୍ରତା ଆସେ ? ତା' ଦ୍ୱାରା କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଆମମାନଙ୍କର ଆଖି ଆଗରେ ଯେତେବେଳେ ଏକମାତ୍ର ଇଷ୍ଟ ଥାଆନ୍ତି, ଏହି ଏକଙ୍କୁ ଅଗ୍ରଭାଗରେ ରଖି ଯେତେବେଳେ ଆମର ଚଳଣୀ ନିୟନ୍ତ୍ରିତ ହୁଏ, ତାହାକୁହିଁ କହନ୍ତି ଏକାଗ୍ରତାର ପରାକାଷ୍ଠା । ଏହିପରି ଏକାଗ୍ରତାରେ ଆସୀନ ହୋଇପାରିଲେ ଆଉ ଭାବନା ନାହିଁ । ତୁମର ପ୍ରତିଟି କଥାବାର୍ତ୍ତା, ପ୍ରତିଟି ଚାଲି-ଚଳନ, ପ୍ରତିଟି ଭାବ, ପ୍ରତିଟି କାର୍ଯ୍ୟ, ଯେତେବେଳେ ତାଙ୍କୁ ହିଁ ପ୍ରକାଶ କରିବ, ତାଙ୍କୁହିଁ ପ୍ରଚାର କରିବ, ତାଙ୍କୁହିଁ ଟେକିଧରିବ, ତାଙ୍କରହିଁ ସ୍ୱାର୍ଥପ୍ରତିଷ୍ଠା ପକ୍କା କରିବ । ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଆଳରେ ଯଦି ଆତ୍ମସ୍ୱାର୍ଥପ୍ରତିଷ୍ଠାର ଧନ୍ଦାରେ ଘୁରୁ, କିମ୍ବା ଇଷ୍ଟଙ୍କଠାରେ ଏକାଗ୍ର ନ ହୋଇ ଯଦି ଇଷ୍ଟ ଏବଂ ଅହଂର ମଧ୍ୟରେ ଦୋଦୁଲ୍ୟମାନ ରୁହ, କେଉଁ ସମୟରେ ଇଷ୍ଟଙ୍କୁ ମୁଖ୍ୟ କର, କେଉଁ ସମୟରେ ଅହଂକୁ ମୁଖ୍ୟ କର ତା' ହେଲେ କିନ୍ତୁ ଚାଲିବା, କହିବା ଓ ଚରିତ୍ରରେ ସଂଗତି ଆସିବ ନାହିଁ, ସ୍ୱାଭାବିକତା ଆସିବ ନାହିଁ । ସେଥିପାଇଁ ନିଜେ ମଧ୍ୟ ଶାନ୍ତି ପାଇବ ନାହିଁ ଏବଂ ମଣିଷକୁ ମଧ୍ୟ ଶାନ୍ତି ଦେଇପାରିବ ନାହିଁ । ତୁମର କପଟତା, ତୁମର କୃତ୍ରିମତା ତୁମ ନିଜ ପାଖରେ ଓ ସେହି ସଙ୍ଗେ-ସଙ୍ଗେ ଅନ୍ୟ ପାଖରେ ତୁମକୁ କରୁଣାର ପାତ୍ର କରି ତୋଳିବ ।

ଆ.ପ୍ର. ୧୧/୨୧.୨.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ମଣିଷର ପ୍ରଧାନ ଆହରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ମଣିଷର ସଙ୍ଗତି ମଣିଷ । ଏହି ମଣିଷ ଯଦି ଥାଏ, ତା'ହେଲେ ମଣିଷ କେତେ କ'ଣ କରିପାରେ । ...ମଣିଷ କିଣାଯାଏ ଇଷ୍ଟାର୍ଥୀ ଭଲପାଇବାର ଗୁଣରେ, ସେବାର ଗୁଣରେ, ସହୃଦୟ ଆନ୍ତରିକ ବ୍ୟବହାରର ଗୁଣରେ, ସହିବା-ବୋହିବା ଗୁଣରେ, ଧୈର୍ଯ୍ୟ-ଅଧ୍ୟବାସାୟର ଗୁଣରେ, ଦୟା-କ୍ଷମାର ଗୁଣରେ, ଅକ୍ରୋଧିତା, ଅମାନିତା ଓ ନିରଳସ ପାଳନ-ପରିଚର୍ଯ୍ୟାର ଗୁଣରେ, ତ୍ୟାଗ-ତିତିକ୍ଷାର ଗୁଣରେ, ତାକୁ ସାର୍ଥକ, ଯୋଗ୍ୟ ଓ ବଡ଼ କରି ତୋଳିବାର ସକ୍ରିୟ ପ୍ରବଣତାର ଗୁଣରେ । ଜିନିଷ କିଣାଯାଏ ଟଙ୍କାରେ । ମଣିଷ ତୁଳନାରେ ଜିନିଷର ଦାମ୍ ବା ଟଙ୍କାର ଦାମ୍ କିଛି ହିଁ ନୁହେଁ । ଯେଉଁ-ସବୁ ଗୁଣର କଥା କହିଲି ଏହି-ସବୁ ଗୁଣ ଯଦି କାହାର ଥାଏ, ତା'ହେଲେ ସେ ନିଜର ଓ ଅପରର ଯେ କେତେ ଭଲ କରିପାରେ, ତାର ଠିକ୍ ନାହିଁ । ମଣିଷର ପ୍ରଧାନ ଆହରଣୀୟ ଜିନିଷ ହେଉଛି ଇଷ୍ଟାର୍ଥେ ଲୋକ-ଆହରଣୀ ଗୁଣ ଆହରଣ କରିବା ।

ଆ.ପ୍ର. ୧୧/୨୧.୨.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ମଣିଷର ଅଭାବ ମଧ୍ୟ କ'ଣ ଦୂର ହୁଏ ?**

**ଶ୍ରୀଶ୍ରୀଠାକୁର** – ଆମେମାନେ ଯାହାକିଛି ପାଉଁ ତାହା ପରିବେଶଠାରୁହିଁ ପାଉ । ପରିବେଶକୁ ସେବାରେ ଆମେ ଯେତେ ଉଚ୍ଛଳ କରିତୋଳି ପାରିବୁ ଆମମାନଙ୍କର ପ୍ରାପ୍ତି ମଧ୍ୟ



ସେତେ ଉଚ୍ଛଳ ହୋଇ ଉଠିବ । ମୂଳଜିନିଷ ହେଲା ଇଷ୍ଟଙ୍କ ପ୍ରତି ଟାଣ । ସେହି ଟାଣ ଯାହାର ଉଦଗ୍ର ହୁଏ, ସେ ଇଷ୍ଟଙ୍କର ପ୍ରୀତ୍ୟାର୍ଥେ ଇଷ୍ଟ ଓ ପରିବେଶର ସେବାରେ ଉଦ୍ଦାମ ହୋଇ ଉଠେ । ସେତେବେଳେ ଆଉ ମଣିଷର ଅଭାବ ରହେ ନାହିଁ । ତାର ମନ ବି ଯେପରି ଭର୍ତ୍ତି ଥାଏ, ବାହ୍ୟିକ ଐଶ୍ୱର୍ଯ୍ୟ ମଧ୍ୟ ସେପରି ଭରପୂର ହୋଇଉଠେ । ଅଭାବଟା ଆସେ ଭାବର ଅଭାବ ଠାରୁ । ଭାବ ମଧ୍ୟରେ ଅଛି ହେବା । ଯିଏ ଇଷ୍ଟଙ୍କର ହୁଏ ସେ ସମସ୍ତଙ୍କର ନିଜର ହୋଇଉଠେ । କାହାକୁ ସେ ପର ମନେ କରେ ନାହିଁ । ସେଥିପାଇଁ, ସେବା ତାର ସ୍ୱତଃ ହୋଇଉଠେ । ଏହି ସେବା ଯେ ସେ କରେ ତାହା ପ୍ରାପ୍ତିର ଆଶାରେ କରେ ନାହିଁ । ସେବା ନ କରି ପାରେ ନାହିଁ, ସେଥିପାଇଁ ସେବା କରେ । ଏହି ପ୍ରତ୍ୟାଶାହୀନ ସେବାହିଁ ପାଇବାର ପଥ । ପରମପିତାଙ୍କୁ ଭଲପାଇବାହିଁ ଭାଗ୍ୟର ଜନକ ।

ଆ.ପ୍ର. ୧୧/୨୨.୨.୧୯୪୮

**ପ୍ର. – ଇଷ୍ଟାନୁସରଣର ଗନ୍ତବ୍ୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଆମ୍ଭମାନଙ୍କର ଗନ୍ତବ୍ୟ ହେଲେ ପରମପିତା । ତାଙ୍କରି ପଥରେ ତାଙ୍କରି ଦିଗକୁ ଚାଲିବାକୁ ହେବ ଆମ୍ଭମାନଙ୍କର ପରିବେଶକୁ ସାଥିରେ ନେଇ । କେବଳ ନିଜର କଥା ଭାବିଲେ ହେବ ନାହିଁ । ସମସ୍ତଙ୍କର କଥା ଭାବିବାକୁ ହେବ । ପରିବେଶର ମଙ୍ଗଳ ଛଡ଼ା ତୁମର ମୋର ମଙ୍ଗଳ ହୋଇପାରେ ନାହିଁ । ପରମପିତାହିଁ ହେଲେ ଆମ ସମସ୍ତଙ୍କର ପଥ । ସର୍ବଦା ଭାବିବେ କିପରି କରି ସମସ୍ତଙ୍କୁ ନେଇ ପରମପିତାଙ୍କର ପଥରେ ଚାଲିପାର । ଏହି ଚାଲିବାର ଭିତର ଦେଇ ବଞ୍ଚିବାର ପଥ ପାଇବେ ।

ଆ.ପ୍ର. ୧୧/୨୨.୨.୧୯୪୮

**ପ୍ର. – ଜୀବନର ପ୍ରଥମ ଓ ପ୍ରଧାନ କାର୍ଯ୍ୟ କେଉଁଟା – ଇଷ୍ଟାନୁସରଣ, ନା ଅର୍ଥନୈତିକ ଜୀବନକୁ ସୁବିନ୍ୟସ୍ତ ଓ ସୁଦୃଢ଼ କରିବା ?**

**ଶ୍ରୀଶ୍ରୀଠାକୁର** – ଜୀବନର ପ୍ରଥମ ଓ ପ୍ରଧାନ କାର୍ଯ୍ୟ ହେଲା ଇଷ୍ଟସର୍ବସ୍ୱ ହେବା ଏବଂ ଇଷ୍ଟାର୍ଥେ ଲୋକ ସଂଗ୍ରହ କରିବା । ଯିଏ ମଣିଷ ଉପାୟ କରି ପାରେନା, ମଣିଷକୁ ଉଚ୍ଛଳ କରି ପାରେନା, ତାର ଅର୍ଥନୈତିକ ଜୀବନ କେତେବେଳେ ବି ସୁଦୃଢ଼ ହୋଇପାରେ ନାହିଁ । ଇଷ୍ଟାର୍ଥେ ମଣିଷ ଅର୍ଜନ କରିବାର ସାମର୍ଥ୍ୟ ଯିଏ ଅର୍ଜନ କରେ ପ୍ରଳୟରେ ବି ସେ ନଷ୍ଟ ହୁଏ ନାହିଁ । ଏହା ହେଲା ପରମପିତାଙ୍କ ବିଧାନ । ପରମପିତାଙ୍କ ଦୟାରେ ତୁମେମାନେ ଯାହାପାଇଛ ତାର ତୁଳନା ନାହିଁ । କୌଣସି ବିପର୍ଯ୍ୟୟହିଁ ତୁମମାନଙ୍କୁ ବିଧ୍ୱସ୍ତ କରିପାରିବ ନାହିଁ, ଯଦି କିନା ତୁମେମାନେ ପରମପିତାଙ୍କ ପଥରେ ଅଟୁଟ ଭାବରେ ଚାଲିପାର ।

ଆ.ପ୍ର. ୧୧/୨୨.୨.୧୯୪୮

**ପ୍ର. – ଇଷ୍ଟାନୁସରଣରେ ନାମ ଧ୍ୟାନ ଗୋଟିଏ ନିତ୍ୟ ଅବଶ୍ୟକରଣୀୟ କର୍ମ । ଏହି ନାମ-ଧ୍ୟାନର ତତ୍ତ୍ୱଟା କ'ଣ ?**

**ଶ୍ରୀଶ୍ରୀଠାକୁର** – ନାମହିଁ ହେଲା ବିଶ୍ୱଚରାଚରର ପ୍ରତିଟି ସତ୍ତାର ମୂଳ ଭିତ୍ତି। ସେଥିପାଇଁ ନାମକୁ ଜାଣିଲେ ଆତ୍ମତତ୍ତ୍ୱ ଜଣାଯାଏ। ନାମକୁ ଜାଣିବାକୁ ଗଲେ ନାମୀର ଶରଣାପନ୍ନ ହେବାକୁ ହୁଏ। ନାମୀ ମାନେ ଯିଏ ନାମ ସ୍ୱରୂପ ଅର୍ଥାତ୍ ନାମର ମୂର୍ତ୍ତବିଗ୍ରହ। ସେ ହେଲେ ଦୟାଘନ ପୁରୁଷ। ଜୀବ ପ୍ରତି କରୁଣା ଯୋଗୁଁ ସେ ମଣିଷ ହୋଇ ଆସନ୍ତି, ଯାହାଦ୍ୱାରା ମଣିଷ ତାଙ୍କୁ ଧରି ଦୟାଲ ଦେଶରେ ପହଞ୍ଚିପାରେ। ନାମ ପ୍ରେରଣା ଯୋଗାଏ ଆଉ ଧ୍ୟାନ ମଣିଷକୁ ଧ୍ୟେୟଙ୍କର ଭାବରେ ଭାବିତ କରି ତଦଭିମୁଖୀ ଓ ତତ୍‌ଚଳନ ପରାୟଣ କରି ତୋଳେ। ...ନାମ ନାମୀ ଅଭିନ୍ନ। ନାମ କରିବାର ସଙ୍ଗେ-ସଙ୍ଗେ ନାମୀଙ୍କୁ ଧ୍ୟାନ ଅର୍ଥାତ୍ ଚିନ୍ତା କରିବାକୁ ହୁଏ। ତାହାଦ୍ୱାରା ଜପ ଓ ଧ୍ୟାନ ଏକ ଲକ୍ଷ୍ୟାଭିମୁଖୀ ହୋଇ ପାରସ୍ପରିକ ଭାବରେ ପରିପୂରଣୀ ହୋଇଉଠେ। ନାମ ଓ ନାମୀର ସହିତ ପ୍ରତିଟି ସତ୍ତାର ସମ୍ବନ୍ଧ ନିତ୍ୟ ଓ ଅବିଚ୍ଛେଦ୍ୟ। ସେଥିପାଇଁ କୁହେ ଜୀବ ନିତ୍ୟ କୃଷ୍ଣ ଦାସ।

ଆ.ପ୍ର. ୧୧/୨୫.୨.୧୯୪୮

**ପ୍ର. – ଇଷ୍ଟ ଛଡ଼ା ଅର୍ଥାତ୍ ନାମୀ ଛଡ଼ା ଅନ୍ୟ କାହାର ଧ୍ୟାନ କରିଲେ ଅସୁବିଧା କ'ଣ?**

**ଶ୍ରୀଶ୍ରୀଠାକୁର** – ଯାହାର ତାହାର ଧ୍ୟାନ କରିବା ଉଚିତ୍ ନୁହେଁ, କାରଣ ତା'ଦ୍ୱାରା ଧ୍ୟେୟ ମଧ୍ୟରେ ଯଦି କୌଣସି imperfection (ଅପୂର୍ଣ୍ଣତା) ବା unsolved knot (ଅସମାହିତ ଗ୍ରନ୍ଥୀ) ଥାଏ, ତେବେ ତାହା ଧ୍ୟାନୀ ମଧ୍ୟରେ transmitted (ସଞ୍ଚାରିତ) ହୋଇଯାଇ ପାରେ। ଉପରୁ ଯିଏ perfection ର (ପୂର୍ଣ୍ଣତାର) ଚିହ୍ନ ନେଇ ଆସନ୍ତି, ସେ ହିଁ ଧ୍ୟେୟ। କାରଣ, He is the highest and best guide and goad to human evolution (ସେ ହେଲେ ମାନବ ବିବର୍ତ୍ତନର ସର୍ବୋଚ୍ଚ ଓ ସର୍ବଶ୍ରେଷ୍ଠ ପରିଚାଳକ ଓ ଅନୁପ୍ରେରକ)। ...ଯାହାଙ୍କ ସହିତ ମଣିଷର ସମ୍ବନ୍ଧ ନିତ୍ୟନୁହେଁ ଏବଂ ଯିଏ ଚରମଧାମର ମାଲିକ ନୁହଁନ୍ତି ତାଙ୍କର ଧ୍ୟାନରେ ମଣିଷ ନିତ୍ୟ ଓ ଚରମ ଧାମରେ ଉପନୀତ ହୋଇପାରେ ନାହିଁ। ଧ୍ୟେୟ ଯଦି ନାମର ମୂର୍ତ୍ତ ପ୍ରତୀକ ନ ହୋଇ ଅନ୍ୟକିଛି ହୁଅନ୍ତି, ତେବେ ନାମର ଗନ୍ତବ୍ୟରେ ଯାଇ ହୁଏନାହିଁ। ହୁଏତ ମଝି ରାସ୍ତାରେ ରହିଯିବାକୁ ହୁଏ, ନହେଲେ ଦୁଇଦିଗକୁ ଟାଣା ପରି ଅବସ୍ଥା ସୃଷ୍ଟିହୁଏ। ଜପ୍ୟ ନାମ ଯାହାଙ୍କର ଦ୍ୟୋତକ, ତାଙ୍କୁହିଁ ଧ୍ୟାନ କରିବାକୁ ହୁଏ। ନହେଲେ integrated evolution (ସଂହତ ବିବର୍ତ୍ତନ) hampered (ବ୍ୟାହତ) ହୁଏ, ଏପରିକି ସାଧକର ଜୀବନ ଏହାଦ୍ୱାରା bifurcated (ଦ୍ୱିଧାବିଭକ୍ତ) ହୋଇ ଯାଇପାରେ। କାରଣ, ନାମ ତାକୁ ଦିଏ ଗୋଟିଏ impulse (ପ୍ରେରଣା) ଆଉ ଧ୍ୟାନ ତାକୁ ଦିଏ ଆଉ ଗୋଟିଏ impulse (ପ୍ରେରଣା)। ନାମ ଯେ ସ୍ୱରୂପ-ସଚେତନ, ଈଶ୍ୱିତ୍ୱ-ଅଧ୍ୟୁଷିତ ବ୍ୟକ୍ତିତ୍ୱକୁ ସୂଚିତ କରେ, ସେହି ତାଙ୍କୁ ଛଡ଼ା ଅନ୍ୟକୁ ଧ୍ୟାନ କରିଲେ ନାମ-ଧ୍ୟାନର ସାର୍ଥକତା ଖୋଜି ପାଇ ହୁଏନାହିଁ। ସାଧନ-ତପସ୍ୟା ଗୋଟିଏ science (ବିଜ୍ଞାନ), ଆବୋଲ-ତାବୋଲ ଯାହା-



ତାହା କରିଲେ evolution (ବିବର୍ତ୍ତନ) ନ ହୋଇ devolution (ଅପବର୍ତ୍ତନ) ହେବାର ସମ୍ଭାବନାହିଁ ବେଶି ଥାଏ। ସେଥିପାଇଁ ତ ଧର୍ମର ଦେଶ ଭାରତରେ ଅଭି ମଣିଷ ଖୋଜି ପାଇ ହୁଏ ନାହିଁ। ଆଉ, ଧର୍ମର ନାମରେ ଚାଲେ ଅଜ୍ଞାନ, ଆତ୍ମମ୍ଭରି ମଣିଷମାନଙ୍କର ଅଦ୍ଭୁତ ଧରଣର ଅବାସ୍ତବ ବ୍ୟାପାର।

ଆ.ପ୍ର. ୧୧/୨୫.୨.୧୯୪୮

**ପ୍ର. – ଇଷ୍ଟ, ଗୁରୁ-ପୁରୁଷୋତ୍ତମଙ୍କର ଅନ୍ତର୍ଦ୍ଧାନ ପରେ ମଣିଷର ଇଷ୍ଟ ଓ ଧ୍ୟେୟ କ'ଣ ଅନ୍ୟ କେହି ହୁଅନ୍ତି? ତାଙ୍କର ଅନୁଗାମୀ ମାନେ ସେତେବେଳେ କ'ଣ କରିବେ?**

**ଶ୍ରୀଶ୍ରୀଠାକୁର** – ପୁରୁଷୋତ୍ତମହିଁ ଇଷ୍ଟ, ପୁରୁଷୋତ୍ତମହିଁ ଧ୍ୟେୟ। ତାଙ୍କର ଅନ୍ତର୍ଦ୍ଧାନ ପରେ ମଧ୍ୟ ସେ ହିଁ ମଣିଷର ଇଷ୍ଟ ଓ ଧ୍ୟେୟ ହୋଇ ରହନ୍ତି, ଯେତେଦିନ ପର୍ଯ୍ୟନ୍ତ ତାଙ୍କର ପୁନରାବିର୍ଭାବ ନ ଘଟେ। ତାଙ୍କର ଅନୁଗାମୀ ମାନଙ୍କ କାର୍ଯ୍ୟ ହେଲା ତାଙ୍କୁହିଁ ଲୋକ ସମକ୍ଷରେ ଟେକିଧରିବା। ମଣିଷର ପ୍ରାପ୍ତବ୍ୟ ହେଲେ ଈଶ୍ୱର ଏବଂ ପୁରୁଷୋତ୍ତମହିଁ ହେଲେ ରକ୍ତମାଂସସଂକୁଳ ସ୍ୱୟଂ ଈଶ୍ୱର। ପୁଣି ପୁରୁଷୋତ୍ତମଙ୍କୁ ନିଜର ଜୀବନ ଦେଇ ଯିଏ ଯେତେଟା ଅବିକୃତ ଭାବରେ ଧାରଣ, ବହନ, ପ୍ରତିଷ୍ଠା ଓ ପ୍ରକାଶ କରନ୍ତି, ଯାହାର ଚରିତ୍ର ଓ ବ୍ୟକ୍ତିତ୍ୱ ଯେତେଟା ଇଷ୍ଟାନୁରାଗ ସନ୍ଦୀପୀ, ସେ ସେତଟା ମଣିଷ ପାଖରେ ପୂଜନୀୟ।

ଆ.ପ୍ର. ୧୧/୨୫.୨.୧୯୪୮

**ପ୍ର. – ଇଷ୍ଟାନୁସରଣ ମଧ୍ୟ ଦେଇ କେତେବେଳେ ଏପରି ଅବସ୍ଥା ହୁଏ ଯେତେବେଳେ ଆଉ ପତନ ହୁଏ ନାହିଁ?**

**ଶ୍ରୀଶ୍ରୀଠାକୁର** – ସମସ୍ତ ପ୍ରବୃତ୍ତି ଇଷ୍ଟଙ୍କଠାରେ thoroughly interested (ସମ୍ପୂର୍ଣ୍ଣଭାବରେ ଅନ୍ତରାସୀ) ହେଲେ ସେତେବେଳେ ପତନର ଭୟ ରହେ ନାହିଁ। ଯେଉଁ-ସବୁ ପ୍ରବୃତ୍ତି ଓ ଆଶା-ଆକାଂକ୍ଷା ଇଷ୍ଟଙ୍କ ସହିତ ସଙ୍ଗତିଶୀଳ ହୋଇଉଠେ ନାହିଁ, ସେଗୁଡ଼ିକୁ ପ୍ରଶ୍ରୟ ଦେଲେ ଅଡୁଆରେ ପଡ଼ିଯିବାକୁ ହୁଏ। ସେଗୁଡ଼ିକ ନାକରେ ଦଉଡ଼ି ଦେଇ ଯେ କେଉଁ ଆଡ଼କୁ ଟାଣି ନେଇ ଯାଇ ପାରନ୍ତି, ତା'ର ଠିକ୍ ନାହିଁ। ଅହଂକାର, ଅଭିମାନ ଓ ନିଜ ଖିଆଲର ରାଜ୍ୟ ପାର ହୋଇ ଯିଏ ଇଷ୍ଟଙ୍କର ଚିର ଅନୁଗତ ଦାସ ହୋଇ ତାଙ୍କର ମର୍ଜି ଅନୁସାରେ ଚାଲିବାକୁ ରାଜି ଥାଏ, ପରମପିତାଙ୍କ ଦୟାରେ ସେ ରିହାଇ ପାଇଯାଏ। ଯିଏ ହୁଏ ତାଙ୍କର, ସେ ପାଏ ନିସ୍ତାର। ପ୍ରକୃତରେ ଟାଣ ରହିଲେ, ସାମୟିକ ସ୍ଖଳନ-ପତନ ହେଲେ ମଧ୍ୟ ପୁଣି ଠେଲି ଉଠେ। ଅନୁତାପ ତାକୁ ଏପରି ଚାପିଧରେ ଯେ, ସିଏ ନିଜକୁ ସଂଶୋଧନ ନ କରିହିଁ ପାରେ ନାହିଁ।

ଆ.ପ୍ର. ୧୧/୧୩.୩.୧୯୪୮

**ପ୍ର. – ଇଷ୍ଟାନୁସରଣରେ ତାଙ୍କ ପଥରେ ଚାଲିବା ମାନେ କ'ଣ ? ସେଥିରେ କେତେବେଳେ ଗୋଳମାଳ ଆରମ୍ଭ ହୁଏ ? ସର୍ବନାଶ କିପରି ଭାବରେ ଆସେ ? ସେତେବେଳେ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ତାଙ୍କ ପଥରେ ଚାଲିବା ମାନେ ତାଙ୍କୁ ଭଲପାଇ ନିରନ୍ତର ଚେଷ୍ଟାରେ ସ୍ୱ-ସ୍ୱ ପ୍ରକୃତି ଅନୁସାରେ ତାଙ୍କର ଚଳନ-ଚରିତ୍ର imbibe (ଆତ୍ମୀକୃତ) କରିବା, inherit (ଉତ୍ତରାଧିକାର) ହିସାବରେ ଲାଭ କରିବା । ଏହାକୁ ମୁଖ୍ୟ ନ କରି ଆମ୍ଭେମାନେ ବୃତ୍ତିସ୍ୱାର୍ଥୀ ହୋଇ ଯେତେବେଳେ ନାମକାଓ୍ୱାସ୍ତେ ତାଙ୍କ ପଥରେ ଚାଲୁ, ସେତେବେଳେହିଁ ଗୋଳମାଳ ଆରମ୍ଭ ହୁଏ । ସାଧାରଣ ମଣିଷ ଯେପରି-ସେପରି, ଧର୍ମସଞ୍ଚାରକ ଯେଉଁମାନେ, ଧର୍ମରକ୍ଷକ ଯେଉଁମାନେ, ସେମାନେ ଯଦି ଇଷ୍ଟସ୍ୱାର୍ଥ-ଇଷ୍ଟପ୍ରତିଷ୍ଠାର ବାହାନାରେ ଆତ୍ମସ୍ୱାର୍ଥ-ଆତ୍ମପ୍ରତିଷ୍ଠାର ନିଶାରେ ପାଗଳ ହୋଇ ଉଠନ୍ତି ଏବଂ ତାହାର ରସଦ ସଂଗ୍ରହ ପାଇଁ ଅଜ୍ଞାନ ମଣିଷମାନଙ୍କର ଅଜ୍ଞତାର ସୁଯୋଗ ନେଇ ସେମାନଙ୍କୁ ବିଭ୍ରାନ୍ତିର ପଥରେ ପରିଚାଳିତ କରନ୍ତି, ତା'ହେଲେ ସେଇଟାହିଁ ହୋଇ ଉଠେ ସର୍ବନାଶର କାରଣ । ସେଥିପାଇଁ fundamental (ମୂଳତତ୍ତ୍ୱ) ସମ୍ବନ୍ଧରେ ଜନସାଧାରଣଙ୍କୁ ଏପରି ଭାବରେ educate (ଶିକ୍ଷିତ) କରିବା ଦରକାର, ଯାହାଦ୍ୱାରା ସେମାନଙ୍କୁ ଭୁଲ ବୁଝାଇବା ସମ୍ଭବ ନ ହୁଏ । ଆ.ପ୍ର. ୧୧/୧୮.୩.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ଭଗବାନ-ଦର୍ଶନ କେତେବେଳେ ସମ୍ଭବ ହୁଏ ?**

**ଶ୍ରୀଶ୍ରୀଠାକୁର** – ଅବତାର ପୁରୁଷଙ୍କୁ ଯେଉଁମାନେ ଅଚ୍ୟୁତ ନିଷ୍ଠା ସହକାରେ ଭଲପାଆନ୍ତି ଓ ଅନୁସରଣ କରନ୍ତି, ସମୟରେ ତାଙ୍କର ଭୂତମହେଶ୍ୱର ରୂପ ମଧ୍ୟ ସେମାନଙ୍କ ପାଖରେ ଉଦ୍‌ଭାସିତ ହୋଇଉଠେ । ଏହାହିଁ ହେଲା ଭଗବାନ ଦର୍ଶନର ବାସ୍ତବ ମୂଳ କଥା । କେବଳ ତାଙ୍କୁ ପାଇଲେ ହେବ ନାହିଁ ଏବଂ ତାଙ୍କର ଦୟା ରହିଲେ ହେବ ନାହିଁ । ବିଧି ଅନୁସାରେ ତାଙ୍କର ପଥରେ ଚାଲିବା ଦରକାର । ତାଙ୍କ ଉପରେ ପ୍ରବୃତ୍ତିଭେଦି ଟାଣ ଯେତେ ହୁଏ, ସେତେହିଁ ତାଙ୍କୁ ତତ୍ତ୍ୱତଃ ଉପଲବ୍‌ଧି କରଯାଏ । ଏହାକୁହିଁ କହନ୍ତି ଭଗବାନ ଦର୍ଶନ ।

ଆ.ପ୍ର. ୧୧/୨୦.୩.୧୯୪୮

**ପ୍ର. – ଇଷ୍ଟଙ୍କୁହିଁ କେନ୍ଦ୍ର କରି ଚାଲିବାକୁ ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଯେ-କୌଣସି କାହାଙ୍କୁ କେନ୍ଦ୍ର କରି ଚାଲିଲେ ହୁଏନାହିଁ, ସେହି ମଣିଷଟି ହେବା ଦରକାର solved man (ସମାଧାନ ପ୍ରାପ୍ତ ମଣିଷ), integrated man (ସଂହତ ମଣିଷ) । ତାଙ୍କୁହିଁ ଆମେମାନେ କହୁ ଇଷ୍ଟ । ସେଥିପାଇଁ ଇଷ୍ଟଗ୍ରହଣ ବା ଦୀକ୍ଷାଗ୍ରହଣର ଏତେ ଅକାଟ୍ୟ ପ୍ରୟୋଜନ ଆମ୍ଭମାନଙ୍କ ଜୀବନରେ । ମଣିଷ ଜୀବନର ଆଦର୍ଶ ଉଦ୍ଦେଶ୍ୟ ଯଦି ଠିକ୍ ଥାଏ, ତେବେ ତା'ରି ଉପରେ ଛିଡ଼ା ହୋଇ ବାହାରର ଅନେକ କିଛିର ଗ୍ରହଣ ବା ବର୍ଜ୍ଜନ ଚାଲିପାରେ । କିନ୍ତୁ ମୂଳଦୁଆହିଁ ଯଦି ଦୁର୍ବଳ ହୁଏ ତା ଉପରେ ବିରାଟ ସୌଧ ଗଢ଼ି ଲାଭ ହେବ କ'ଣ ? ଆ.ପ୍ର. ୧୧/୨୨.୩.୧୯୪୮



ଇଷ୍ଟ ହେଲେ ଆମ୍ଭମାନଙ୍କର ନିତ୍ୟକାଳୀନ ଆଶ୍ରୟ । ଆମମାନଙ୍କର ସବୁ ଗଲେ ମଧ୍ୟ କିଛି ଯାଏ ନାହିଁ, ଯଦି ଇଷ୍ଟ ନିଷ୍ଠାରେ ବିଚ୍ୟୁତି ନ ଆସେ ।

ଆ.ପ୍ର. ୧୧/୨୪.୩.୧୯୪୮

**ପ୍ର. – ଇଷ୍ଟ କର୍ମରେ ଅନନ୍ୟମନା ନ ହେଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ଧର, ମୋର ନିର୍ଦ୍ଦେଶିତ କୌଣସି କାର୍ଯ୍ୟ କରିବାକୁ ଯାଇ ତୁମେ କ୍ରମାଗତ ନିଜ ଘରର ଅଭାବର କଥା ଭାବୁଛ ଭାବୁଛ । ୨୫ ଟଙ୍କା ଘରକୁ ପଠାଇ ପାରିଲେ ହୁଅନ୍ତା । କେବଳ ଏହି ଚିନ୍ତା କରୁଛ, କିନ୍ତୁ କ୍ଷମତା ନାହିଁ । ଏହି ଚିନ୍ତା କରି କଷ୍ଟ ମଧ୍ୟ ପାଉଛ, ତା' ଫଳରେ କାର୍ଯ୍ୟର ଶକ୍ତି ଓ ଉତ୍ସାହରେ ଭଟ୍ଟା ପଡୁଛି, କାର୍ଯ୍ୟ ମଧ୍ୟ ବାଦପଡ଼ୁଛି । ଏହିପରି କରି ତୁମର ଯୋଗ୍ୟତା କମିଯାଉଛି । ତା'ମାନେ ଯୋଗ୍ୟତା ବୃଦ୍ଧିର ଫଳରେ ଯେଉଁ ୨୫ଟଙ୍କା ତୁମେ ହୁଏତ ସତ୍ୱରହିଁ ପାଇ ପାରିଥାନ୍ତ, ତାହା ପାଇବାର ପଥ ତୁମର ପଛଟାଣର ଫଳରେ ସଂକୀର୍ଣ୍ଣହିଁ ହୋଇ ଚାଲିଲା । ଷୋହଳଅଣା ମନ ନେଇ ଅପ୍ରତ୍ୟାଶୀ ହୋଇ ଇଷ୍ଟଙ୍କ କାର୍ଯ୍ୟରେ ରତ ରହିଲେ ଗୋଟିଏ ମାସରେ ତୁମେ ଯେଉଁ ସାମର୍ଥ୍ୟ ଅର୍ଜ୍ଜନ କରିପାରିଥାନ୍ତ, ଭଙ୍ଗା ମନ ନେଇ ମାସ ପରେ ମାସ କାର୍ଯ୍ୟ କରି ମଧ୍ୟ ହୁଏତ ସେହି ସାମର୍ଥ୍ୟ ଅର୍ଜ୍ଜନ କରିପାରିଲ ନାହିଁ । ଯାହା କରିଲେ ଅଭାବ ମେଣ୍ଟେ, ତାହା ହୁଏତ ଆଦୌ କରିପାରିଲ ନାହିଁ, ଅଭାବହିଁ ଘୁଞ୍ଚିଲା ନାହିଁ । ତୁମର obsession (ଅଭିଭୂତି) ତୁମର ଅଭାବକୁ କାୟେମ କରି ରଖିଲା । ପୁଣି, ତୁମ ଦେଇ ଯେତେଟା କାର୍ଯ୍ୟ ହୋଇ ପାରିଥାନ୍ତା, ତା' ମଧ୍ୟ ହେଲା ନାହିଁ । ଏକମନା ନ ହେଲେ ଏଇ ରକମରହିଁ ହୁଏ ଆଉ କ'ଣ ! ଆ.ପ୍ର. ୧୧/୮.୪.୧୯୪୮

**ପ୍ର. – ଇଷ୍ଟାନୁସରଣର ପଥରେ କୌଣସି ଶକ୍ତିମାନ ଅହଂ-ଉଦ୍ଦୀପ୍ତ ପଣ୍ଡିତ ମଣିଷ ଯଦି ତା'ର ଇତର ଅହଂର ପୁଷ୍ଟି କରିବାକୁ ଚାହେଁ, ସେଠାରେ କ'ଣ କରଣୀୟ ?**

**ଶ୍ରୀଶ୍ରୀଠାକୁର** – ସର୍ବକାଳରେ ଓ ସର୍ବତ୍ର ଆମମାନଙ୍କର କରଣୀୟ ହେଲା ଇଷ୍ଟସ୍ୱାର୍ଥପ୍ରତିଷ୍ଠା । ଇଷ୍ଟସ୍ୱାର୍ଥପ୍ରତିଷ୍ଠା ବିସର୍ଜ୍ଜନ ଦେଇ ହୀନ ଆତ୍ମସ୍ୱାର୍ଥ ପାଇଁ କାହାର ଚାଟୁକାର ହେବା ଭଲ ନୁହେଁ । ଏହାଦ୍ୱାରା ମଣିଷ ବ୍ୟକ୍ତିତ୍ୱ ଓ ମନୁଷ୍ୟତ୍ୱ ହରାଏ । କିନ୍ତୁ ସ୍ୱାର୍ଥପ୍ରତ୍ୟାଶାହୀନ ହୋଇ କୌଣସି ଅହଂକାରୀ ମଣିଷର ବାସ୍ତବ ସଦ୍‌ଗୁଣ ଯେଉଁଗୁଡ଼ିକ ଅଛି, ସେଗୁଡ଼ିକ ପାଇଁ ତାକୁ ସମୀଚୀନ ଭାବରେ ପ୍ରଶଂସା କରି, ତା ସହିତ ହୃଦ୍ୟତା ସ୍ଥାପନ କରି ତାକୁ ଯଦି

ସୁକୌଶଳରେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ସହାୟକ କରି ତୋଳାଯାଏ, ତା'ଦ୍ୱାରା ଭଲ ଛଡ଼ା ମନ୍ଦ ହୁଏ ନାହିଁ। ଇଷ୍ଟାର୍ଥୀ ହୋଇ ସୁଦକ୍ଷ ନଟ ପରି ଚାଲିବାକୁ ହୁଏ। ଯେଉଁଠାରେ, ଯାହାସହିତ, ଯେତେବେଳେ, ଯେ କାଇଦାରେ, ଯେଉଁ ବ୍ୟବହାର କରିଲେ ଇଷ୍ଟାର୍ଥ ଅର୍ଥାତ୍ ସମସ୍ତଙ୍କର ସତ୍ତାପୋଷଣୀ ମଙ୍ଗଳ ଅବ୍ୟାହତ ଥାଏ, ତାହାହିଁ କରିବା ଦରକାର। ଗୋଟିଏ ଅହଂକାରୀ ମଣିଷକୁ ନ ରଗାଇ ତା' ପ୍ରତି ସ୍ୱାର୍ଥାନ୍ୱିତ ହୋଇ ତାକୁ ନିଜର କରି ନେଇ psychologically (ମନୋବିଜ୍ଞାନ ସମ୍ମତଭାବରେ) mould (ନିୟନ୍ତ୍ରଣ) କରିବାକୁ ଚେଷ୍ଟା କରିଲେ ଫଳ ଭଲ ହୁଏ। ଅବଶ୍ୟ କେହି ଯଦି ଇଷ୍ଟସ୍ୱାର୍ଥ ଦପ୍ରତିଷ୍ଠାରେ ବ୍ୟାଘାତ ସୃଷ୍ଟି କରେ, ସେଠାରେ ଅଦ୍ରୋହ ଭାବ ବଜାୟ ରଖି ତା'ର ପ୍ରତିକାର ପାଇଁ ଯାହା କରଣୀୟ ତାହା କରିବା ଦରକାର। ଅସତ-ନିରୋଧ କରିବାକୁ ଯାଇ ନଜର ରଖିବା ଦରକାର ଯାହାଦ୍ୱାରା ମଣିଷକୁ win (ଜୟ) କରାଯାଏ, asset (ସମ୍ପଦ) କରି ତୋଳାଯାଏ। ଯାହାକୁ friendly (ବନ୍ଧୁଭାବାପନ୍ନ) କରି ତୋଳିବା ସମ୍ଭବ, ତାକୁ hostile (ଶତ୍ରୁଭାବାପନ୍ନ) କରି ରଖିବା ଅର୍ଥ ନିଜର କ୍ଷତିକୁ ଆମନ୍ତ୍ରଣ କରିବା।

ଆ.ପ୍ର. ୧୧/୧୧.୪.୧୯୪୮

**ପ୍ର. – ଇଷ୍ଟଙ୍କ ପାଇଁ କେତେବେଳେ ଯଦି ନିଃଶେଷରେ ଆତ୍ମଦାନ ପ୍ରୟୋଜନ ହୁଏ, ତାହା କ'ଣ କରାଯାଏ ?**

**ଶ୍ରୀଶ୍ରୀଠାକୁର** – ଦେଖନ୍ତୁ... ! ଆପଣଙ୍କ ସତ୍ତାର ସ୍ରଷ୍ଟା ବା ମାଲିକ କିନ୍ତୁ ଆପଣ ନୁହଁନ୍ତି। ଆପଣ ମୁଁ ପରମପିତାଙ୍କ ମାଲ। ପରମପିତାଙ୍କର ସେବା ଓ ପରମପିତାଙ୍କର ଇଚ୍ଛା ପୂରଣହିଁ ଆମ୍ଭମାନଙ୍କର ଜୀବନ ବ୍ରତ। ତାଙ୍କ ପାଇଁ ଜୀବନଦାନ ଯଦି ପ୍ରୟୋଜନ ହୁଏ, ସେ ସ୍ୱତନ୍ତ୍ର କଥା। ନହେଲେ ବାହାଦୁରି ଦେଖାଇବାପାଇଁ ଜୀବନଦାନ କରିବାର ଅଧିକାର କିନ୍ତୁ ଆମ୍ଭମାନଙ୍କର ନାହିଁ। ଆମ୍ଭମାନଙ୍କର ସତ୍ତାକୁ ଏପରି ଭାବରେ ପାଳନ ଓ ପୋଷଣ କରି ଚାଲିବାକୁ ହେବ, ଯାହାଦ୍ୱାରା ବହୁ-ବହୁ ସତ୍ତାକୁ ଆମ୍ଭେମାନେ ଆମ୍ଭମାନଙ୍କର ବୈଶିଷ୍ଟ୍ୟ ଓ ଯୋଗ୍ୟତାନୁସାରେ ପାଳନପୋଷଣୀ ରସଦ ସରବରାହ କରି ଚାଲିପାରୁ। ବଞ୍ଚିବି ଓ ବଞ୍ଚାଇବି ଏହି ବୁଦ୍ଧି ରଖିବାହିଁ ଭଲ। ତେବେ ମଣିଷକୁ ବଞ୍ଚାଇବାକୁ ଯାଇ ଯଦି କୌଣସି ବିଶେଷ କ୍ଷେତ୍ରରେ ସବୁରକମର ସତର୍କତା ସତ୍ତ୍ୱେ ନିଜର ବଞ୍ଚିବା-ବଢ଼ିବା ବିପନ୍ନ ହୁଏ, ସେଠାରେ ଆଉ କରିବାର କ'ଣ ଅଛି ? ଏହି ପ୍ରକାର ଆତ୍ମଦାନ ହୀନ ସ୍ୱାର୍ଥ-ସର୍ବସ୍ୱ ଆତ୍ମରକ୍ଷାର ପ୍ରୟାସ ଠାରୁ ଅନେକ ବଡ଼ ଜିନିଷ ? ଯେଉଁ ମଣିଷ ଅନ୍ୟକୁ ବଞ୍ଚାଇବାର ଧନ୍ଦା ନେଇ ଚାଲେ ନାହିଁ ବରଂ ଦୁର୍ବୁଦ୍ଧି ବଶତଃ ଅପରକୁ କ୍ଷତିଗ୍ରସ୍ତ କରି ନିଜର ସ୍ୱାର୍ଥ କାୟେମ କରିବାକୁ ଚାହେଁ, ସେ କିନ୍ତୁ ବଞ୍ଚିରହି ମଧ୍ୟ ମୃତ୍ୟୁରହିଁ ସାଧନା କରେ। ଏହାକୁ ବଞ୍ଚିବା କୁହାଯାଏ ନାହିଁ, ଏହାକୁ କହନ୍ତି ଜଡ଼ ପରି ଦେହଭାର ବହନ କରିବା।

ଆ.ପ୍ର. ୧୧/୧୧.୪.୧୯୪୮



**ପ୍ର. – ଇଷ୍ଟାନୁସରଣର ପଥରେ ଅନ୍ୟ କେହି ବା କିଛି ଯଦି ଇଷ୍ଟଙ୍କଠାରୁ ବଡ଼ ହୋଇ ଉଠେ ?**

**ଶ୍ରୀଶ୍ରୀଠାକୁର** – ମଣିଷର ଜୀବନରେ ସବୁଠାରୁ ବଡ଼ ସମ୍ପଦ ହେଉଛି ଇଷ୍ଟଙ୍କ ଉପରେ ଅକାଟ୍ୟ ନିଷ୍ଠା ଓ ବିଶ୍ୱାସ। ଇଷ୍ଟଙ୍କଠାରୁ ଅନ୍ୟ କେହି ବା ଅନ୍ୟ କିଛି ଯଦି ଆମଠାରେ ବଡ଼ ହୁଏ, ତା'ହେଲେ ପତନ ଅନିବାର୍ଯ୍ୟ। ଯେ-କୌଣସି କଷ୍ଟ ସହି, ଯେ-କୌଣସି ମୂଲ୍ୟ ଦେଇ ଇଷ୍ଟନିଷ୍ଠାକୁ ଅବ୍ୟାହତ ରଖିଚାଲିଲେ, ପରମପିତା ସ୍ୱୟଂ ତାକୁ ପଦେ-ପଦେ ରକ୍ଷା କରି ଚାଲନ୍ତି ଅର୍ଥାତ୍ ତାର ଯୁକ୍ତିବୁଦ୍ଧିହିଁ ତାକୁ ଭ୍ରମ-ପ୍ରମାଦର ହାତରୁ ବଞ୍ଚାଏ। କିନ୍ତୁ ସ୍ୱାର୍ଥ ଓ ସୁଖ-ସୁବିଧାର ଆଶାରେ ଯେଉଁମାନେ unscrupulously (ବିବେକହୀନ ଭାବରେ) ମନକୁ ଆଖିଠାରି ଇଷ୍ଟଙ୍କୁ sacrifice କରି (ବିସର୍ଜନ ଦେଇ) ଚାଲନ୍ତି, ଶଇତାନହିଁ ସେମାନଙ୍କର ଭାଗ୍ୟବିଧାତା ହୋଇ ଛିଡ଼ା ହୁଏ। ବୁଦ୍ଧିବିପର୍ଯ୍ୟୟ ଯେ ସେମାନଙ୍କୁ କେଉଁ ବିପର୍ଯ୍ୟୟ ଆଡ଼କୁ ନେଇଯାଏ, ତାହା ସେମାନେ ଟେର ମଧ୍ୟ ପାଆନ୍ତିନାହିଁ। ...ଯେଉଁମାନଙ୍କର motive (ଉଦ୍ଦେଶ୍ୟ)ହିଁ ହେଲା ଠାକୁରଙ୍କୁ ଭଙ୍ଗାଇ ଆତ୍ମସ୍ୱାର୍ଥ ଓ ଆତ୍ମପ୍ରତିଷ୍ଠାର ଖୋରାକ ଯୋଗାଡ଼ କରିବା, ସେମାନଙ୍କର ପରିବର୍ତ୍ତନ ଆସିବା ଖୁବ୍ କଠିନ। ଧର୍ମଯାଜୀମାନଙ୍କ ମଧ୍ୟରେ ଯଦି ଏହି ଭାବ prominent (ପ୍ରଧାନ) ହୁଏ, ତେବେ ତା ଫଳରେ ଧର୍ମ ଉପରେ ମଣିଷର ଅଶ୍ରଦ୍ଧାହିଁ ବଢ଼ିଥାଏ। ସେଥିପାଇଁ ମତଲବ୍‌ବାଜ ଲୋକମାନଙ୍କର ଏହି divine calling (ଭାଗବତ ବୃତ୍ତି ଅର୍ଥାତ୍ ଯାଜନବୃତ୍ତି) ଠାରୁ ଦୂରରେ ରହିବାହିଁ ଭଲ।

ଆ.ପ୍ର. ୧୧/୨୭.୪.୧୯୪୮

**ପ୍ର. – ଇଷ୍ଟଙ୍କର ଇଚ୍ଛାପୂରଣ ପାଇଁ କ'ଣ କ'ଣ କରିବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – ଯାହା-ଯାହା କରିବାର କଥା କୁହାଅଛି ସେ-ସବୁ କରିବ। ନିଜେ କଣ୍ଟାରେ-କଣ୍ଟାରେ ପରମପିତାଙ୍କ ପଥରେ ଚାଲିବ ଏବଂ ପରିବାର ପରିବେଶକୁ ମଧ୍ୟ ସେହି ପଥରେ ଚାଲିବାକୁ ସାହାଯ୍ୟ କରିବ। ଅର୍ଥାତ୍ ନିଜେ ଆଚରଣଶୀଳ ହୋଇ ଯାଜନ କରିବ, ଦୀକ୍ଷିତ କରି ତୋଳିବ। ପୁଣି, ପ୍ରତ୍ୟେକ ଯେପରି ଯଜନ, ଯାଜ. ଇଷ୍ଟଭୃତି, ସଦାଚାର, ଋତ୍ୱିକୀ ଇତ୍ୟାଦି ପାଳନ କରନ୍ତି, ପରିବେଶର ସେବା ସାହାଯ୍ୟ କରନ୍ତି ସେ ଦିଗକୁ ଲକ୍ଷ୍ୟ ରଖିବ। ...କେତେ କୁହାଅଛି, କରିଲେହିଁ ହୁଏ। ଗୋଟିଏ କଥା ସବୁ ସମୟରେ ମନେରଖ – ଭଗବାନଙ୍କୁ ଭଙ୍ଗାଇ ଆତ୍ମସ୍ୱାର୍ଥ ସିଦ୍ଧିର ଚେଷ୍ଟା କରନାହିଁ, କିନ୍ତୁ ନିଜକୁ ଭଙ୍ଗାଇ ତାଙ୍କୁ fulfil (ପୂରଣ) କରିବାକୁ ତ୍ରୁଟି କରନାହିଁ। ତୁମେ ବାସ୍ତବ ସକ୍ରିୟତାରେ ସର୍ବତୋଭାବରେ ତାଙ୍କରହିଁ ହୋଇଉଠ – Unconditionally and unexpectantly (ନିଃସର୍ତ୍ତରେ ଓ ଅପ୍ରତ୍ୟାଶୀ ହୋଇ)। ସେତେବେଳେ ପ୍ରକୃତି ପ୍ରତି ପଦକ୍ଷେପରେ ତୁମକୁ ଲଗାତର ଭାବରେ ଅବଦାନ ଯୋଗାଇ ଚାଲିବ ହିଁ ଚାଲିବ। କିନ୍ତୁ ସାବଧାନ ! ଏହି ସବୁ ପାଇ ସେଗୁଡ଼ିକରେ ଯେପରି

ଆବଦ୍ଧ ଓ ଆସକ୍ତ ହୋଇ ନ ପଡ଼। ତାଙ୍କର ଦୟାରେ ଯାହା ପାଅ ଯେତେ ପାର ତାଙ୍କର ସେବାରେ ନିୟୋଜିତ କରିବ। ପରିବେଶର ସତ୍ତାପୋଷଣୀ ସେବା ମଧ୍ୟ କିନ୍ତୁ ତାଙ୍କରହିଁ ସେବାର ଅନ୍ତର୍ଗତ। ଅନାଡ଼ମ୍ବର ଭାବରେ ସପରିବାର ନିଜର ଅସ୍ତିତ୍ୱରକ୍ଷା କରିବା – ତାର ଉଦ୍ଦେଶ୍ୟ ମଧ୍ୟ ପ୍ରିୟପରମଙ୍କ ସେବା। ଇଷ୍ଟୈକଲକ୍ଷ୍ୟ ହୋଇପାରିଲେ ମୁକ୍ତି ଆମମାନଙ୍କର ହାତ ମୁଠା ମଧ୍ୟରେ। ସେତେବେଳେ କିଛିହିଁ ଆଉ ଆମକୁ ଇଷ୍ଟଙ୍କ ଠାରୁ ଛଡ଼ାଇ ନେଇପାରିବ ନାହିଁ। ଆ.ପ୍ର. ୧୧/୫.୫.୧୯୪୮

**ପ୍ର. – ଇଷ୍ଟଙ୍କୁ ଠିକ୍ ଭାବରେ କିପରି ଧରାଯାଏ ?**

**ଶ୍ରୀଶ୍ରୀଠାକୁର** – ସ୍ତ୍ରୀକୁ ଠିକ୍ କରି ଧର କେମିତି ? ପିଲାକୁ ଠିକ୍ କରି ଧର କେମିତି ? ଆଉ ଇଷ୍ଟଙ୍କୁ ଠିକ୍ କରି ଧରିବା ବେଳକୁ ଯେତେ ପ୍ରଶ୍ନ ! ଭାବି ଦେଖ, ବର୍ତ୍ତମାନ ଯଦି ଟେଲିଗ୍ରାମ୍ ଆସେ ଘରେ ଅସୁସ୍ଥ। ଜଣଙ୍କ ପାଖରେ ଯାଇ କାନ୍ଦିପକାଇବ – ୨୦୦ ଟଙ୍କା ନହେଲେ ହେବନାହିଁ। ଚଟାପଟ ସବୁ ବ୍ୟବସ୍ଥା ପତ୍ର କରି ପକାଇବ। ପ୍ରାଣର ଟାଣ ରହିଲେ ଏହିପରି ହିଁ କରି ହୁଏ। ଆଉ, ଏହି ଟାଣଟି ଗଜାଇଛି କିନ୍ତୁ ସେମାନଙ୍କୁ ନିଜର ବୋଲି ଧରି ନେଇ ସେମାନଙ୍କ ପାଇଁ କ୍ରମାଗତ ଭାବିବା, କହିବା, କରିବା, ଦୌଡ଼ାଦୌଡ଼ି କରିବା, ପରିଶ୍ରମ କରିବାର ଭିତର ଦେଇ। ଇଷ୍ଟଙ୍କ କ୍ଷେତ୍ରରେ ମଧ୍ୟ ଠିକ୍ ସେହି ଏକ କଥା। ଇଷ୍ଟ ଆମପାଇଁ ଯେତେ ବି କରନ୍ତୁ ନା କାହିଁକି, ସେଥିରେ କିନ୍ତୁ ତାଙ୍କ ପ୍ରତି ଆମର ଟାଣ ଗଜାଇବା ପକ୍ଷରେ ସୁବିଧା ହୁଏନାହିଁ। ଆମେମାନେ ତାଙ୍କ ପ୍ରୀତ୍ୟର୍ଥେ ତାଙ୍କ ପାଇଁ ଯେତେ ବେଶୀ କରୁ, ସେତେହିଁ କିନ୍ତୁ ସେ ଆମମାନଙ୍କର ଅନ୍ତରରେ ଗୁନ୍ଥି ଯିବେ। ଆ.ପ୍ର. ୧୧/୫.୫.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ନିଜର ଧନ୍ଦାଟା ମଧ୍ୟ କେତେବେଳେ କିପରି ଭାବରେ ଇଷ୍ଟଧନ୍ଦା ହୋଇଉଠେ ? କେବଳ ନିଜର ଧନ୍ଦାକୁ ବଡ଼କରି ଭାବିବାରେ ଦୋଷ କ'ଣ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କୁ ଯିଏ ନିଜର ଜୀବନରେ ପ୍ରଧାନ କରି ଚାମ୍ଭେ, ତା'ର ନିଜର ଧନ୍ଦାଟା ମଧ୍ୟ ଇଷ୍ଟଧନ୍ଦା ହୋଇ ଛିଡ଼ାହୁଏ। ତୁମର ହୁଏତ ଛତା ନାହିଁ, କିନ୍ତୁ ଛତା ବ୍ୟବହାର ନ କରିଲେ ହୁଏତ ଅସୁସ୍ଥ ହୋଇପଡ଼ିବ। ସେଥିରେ ଇଷ୍ଟଙ୍କ କାର୍ଯ୍ୟରେ କ୍ଷତି ହେବ, ସେଥିପାଇଁ ଛତା ଯୋଗାଡ଼ କରୁଛ। ଏହା କିନ୍ତୁ **ଇଷ୍ଟଧନ୍ଦାରହିଁ** ଅନ୍ତର୍ଭୁକ୍ତ। ଅବଶ୍ୟ ଭିତରେ ବାସ୍ତବରେ ଏହି attitude (ମନୋଭାବ) ଥିବା ଦରକାର। ତାହା ଯଦି ନ ଥାଏ, ଆଉ ଲୋକ ଠକାଇବାର ଚାଲ ହିସାବରେ ଯଦି କେହି ସେହି ଧରଣର ଅଭିନୟ କରେ, ସେଇଟା କିନ୍ତୁ ତା ପକ୍ଷରେ hypocrisy (ଭଣ୍ଡାମି) ହେବ। ଆତ୍ମସ୍ୱାର୍ଥୀ ଧନ୍ଦା ଠାରୁ hypocrisy (ଭଣ୍ଡାମି) ଆହୁରି



ଖରାପ ଜିନିଷ। ଏହା ଏକ ରକମର distortion(ବିକୃତି)। ଇଷ୍ଟକାର୍ଯ୍ୟ ignore (ଉପେକ୍ଷା) କରି ଯିଏ କେବଳ ନିଜ ପାଇଁ ବୁଦ୍ଧି ଖଟାଇ, ନିଜକୁ ନେଇହିଁ ବ୍ୟସ୍ତ ଥାଏ, ସେଇଟା ହେଲା ନିଜର ଧନ୍ଦା, ଆତ୍ମସ୍ୱାର୍ଥୀ ଧନ୍ଦା। ଏହି ଧନ୍ଦା ରହିଲେ ପ୍ରତ୍ୟାଶାଶୂନ୍ୟ ହୋଇ ଇଷ୍ଟଙ୍କର କାର୍ଯ୍ୟ କରିବାହିଁ ମୁସ୍କିଲ ହୋଇଉଠେ। ଅନ୍ୟ ଧନ୍ଦା ଥିବା ଯୋଗୁଁ ଇଷ୍ଟଙ୍କର କାର୍ଯ୍ୟ ମଧ୍ୟ ଯଥାଯଥ ଭାବରେ କରାଯାଏ ନାହିଁ। ସେଥିପାଇଁ ସେହି କାର୍ଯ୍ୟରେ success (ସାଫଲ୍ୟ) ମଧ୍ୟ ଆସେ ନାହିଁ। ଫଳରେ ଶେଷ ପର୍ଯ୍ୟନ୍ତ ନିଜକୁହିଁ ଫାଙ୍କି ଦିଆହୁଏ। ମୁଁ ବୁଝେ existence of mine (ମୋର ଅସ୍ତିତ୍ୱ) ମୋ ପାଖରେ indispensable (ଅପରିହାର୍ଯ୍ୟ) ହେଉ ସେଥିରେ କୌଣସି କ୍ଷତି ନାହିଁ, କିନ୍ତୁ ତା'ର ଉଦ୍ଦେଶ୍ୟ ଯେପରି ହୁଏ to fulfil the existence of thine (ତୁମର ଅର୍ଥାତ୍ ଇଷ୍ଟଙ୍କର ଅସ୍ତିତ୍ୱକୁ ପରିପୂରଣ କରିବା)। ଇଷ୍ଟ ଓ ପରିବେଶକୁ sacrifice କରି (ବିସର୍ଜନ ଦେଇ) ନିଜ ସ୍ୱାର୍ଥର କଥା ବଡ଼ କରି ଭାବିବା ମାନେହିଁ ନିଜର ଦୁର୍ଭାଗ୍ୟର ପଥ ପ୍ରଶସ୍ତ କରି ତୋଳିବା। ଆ.ପ୍ର. ୧୧/୨୦.୫.୧୯୪୮

**ପ୍ର. – ଇଷ୍ଟାନୁସରଣ ପଥରେ ମନର ଉତ୍‌ଥାନ-ପତନ ସମ୍ଭାଳିବାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଏହା ଯେପରି ଢେଉ ପରି। ଉଠିବା ସହିତ ପଡ଼ିବା ଅଛି, ପଡ଼ିବା ସହିତ ଉଠିବା ଅଛି। ଉଠିବା ଓ ପଡ଼ିବା ଏକ ସଙ୍ଗରେ ଚାଲେ। ଏହାପାଇଁ ଭାବିବା ଦରକାର ନାହିଁ। ଦେଖିବାକୁ ହୁଏ ଉଠା-ପଡ଼ା ସବୁଟାର ସହିତ, ସବୁଟାର ମଧ୍ୟରେ ଯେପରି ମୋର Lord (ପ୍ରଭୁ) ମୋ ମଧ୍ୟରେ unaffected (ଅବ୍ୟାହତ) ରହନ୍ତି। ସେ ଯଦି ମୋ ଭିତରେ ଚିରଜାଗ୍ରତ ରହନ୍ତି, ତେବେ ଆମକୁ ଆଉ ଅଟକାଇବ କିଏ ? ତାଙ୍କରି ପାଇଁହିଁ ତ ମୁଁ, ତାଙ୍କରି ପାଇଁହିଁ ତ ମୋର ଯାହା-କିଛି ସବୁ। ଦୁଃଖର ଭିତରେ ମଧ୍ୟ ଯଦି ତାଙ୍କୁ ଅନ୍ତରରେ ନେଇ ନିମଗ୍ନ ହୋଇ ରହିପାରୁ, ସେହି ତ ଆମର ପରମ ସୁଖ। କୌଣସି ଅବସ୍ଥାରେ କ୍ଷଣିକ ପାଇଁ ମଧ୍ୟ ଯେପରି ଆମେ ତାଙ୍କୁ ନ ଭୁଲୁ, ଅନ୍ୟ କିଛି ଯେପରି ଆମର ମନକୁ ଅଧିକାର କରି ନ ପାରେ। ଏହି steady unrepelling love (ସ୍ଥିର ଅଚ୍ୟୁତ ଭଲପାଇବା) – ଟିକକହିଁ ଆମ୍ଭମାନଙ୍କର ସମ୍ବଳ। ...ମୋର ମନେ ହୁଏ, ଇଷ୍ଟନିଷ୍ଠାହିଁ ହେଲା ସେଇ universal tonic (ସାର୍ବଜନୀନ ବଳକାରକ ଔଷଧ) ଯାହା ଆମ୍ଭମାନଙ୍କର ଅସ୍ତିତ୍ୱକୁ ସବୁ ରକମର ଘାତ ପ୍ରତି-ଘାତ, ଉତ୍‌ଥାନ-ପତନ ଓ ବିପର୍ଯ୍ୟୟ ମଧ୍ୟରେ ଅଟୁଟ ଭାବରେ ଧରି ରଖେ।

ଆ.ପ୍ର. ୧୧/୨୦.୫.୧୯୪୮

**ପ୍ର. – ଇଷ୍ଟାନୁସରଣର ବିହିତ ପଥରେ ଯଦି ଧନ-ଐଶ୍ୱର୍ଯ୍ୟର ସୃଷ୍ଟି ହୁଏ ତାହା କ'ଣ ଅନର୍ଥର କାରଣ ହୋଇ ଉଠିବ ନାହିଁ ?**

ଶ୍ରୀଶ୍ରୀଠାକୁର – ଇଷ୍ଟଙ୍କ ପାଇଁ ଯେଉଁ-ଧନ ସେ-ଧନ ଧନ ନୁହେଁ, ଇଷ୍ଟସେବା

ପାଇଁ ଯେଉଁ-ଐଶ୍ୱର୍ଯ୍ୟ ସେ-ଐଶ୍ୱର୍ଯ୍ୟ ଐଶ୍ୱର୍ଯ୍ୟ ନୁହେଁ। କାରଣ, ତାହା ଧନଗର୍ବ ସୃଷ୍ଟି କରିପାରେ ନାହିଁ। ଯେଉଁ-ଅର୍ଥ ଇଷ୍ଟଙ୍କ ସେବାରେ ଲାଗେ ତାହା କେବେବେଳେ ବି ଅନର୍ଥର କାରଣ ହୁଏ ନାହିଁ, ବରଂ ତାହା ପରମାର୍ଥର ପଥହିଁ ପ୍ରଶସ୍ତ କରେ। ଏହିପରି ଅର୍ଥ ଯେତେହିଁ ବଢ଼ୁ ସେଥିରେ ଦୋଷ ନାହିଁ। ହିଡ଼ିମିଞ୍ଚା ଶାଗ ଯେପରି ଶାଗ ଭିତରେ ନୁହେଁ, କାରଣ ତାହା ଭଲ ଛଡ଼ା କ୍ଷତି କମ୍‌ହିଁ କରେ। ଇଷ୍ଟ ମଙ୍ଗଳ ସ୍ୱରୂପ, ଇଷ୍ଟ ପବିତ୍ରତା ସ୍ୱରୂପ। ତେଣୁ ସବୁ-କିଛି ତାଙ୍କୁ ନିବେଦନ କରି, ତାଙ୍କରି ସେବାରେ ଲଗାଇ ହିତୀପ୍ରତୁଳ ଓ ପରିଶୁଦ୍ଧ କରି ଚୋଳିବାକୁ ହୁଏ। ଆଉ, ଇଷ୍ଟଙ୍କୁ ଯାହା ଦେବ ତାହା ମଧ୍ୟ ଯେପରି ସର୍ବତୋଭାବରେ ପୂତ ଓ ଶୁଦ୍ଧ ହୁଏ। ଯେଉଁ-ଧନ ଇଷ୍ଟଙ୍କ ସେବା କରେ ତାହା ପ୍ରତ୍ୟେକଙ୍କର ଜୀବନୀଶକ୍ତିକୁ ପୁଷ୍ଟ କରେ। ସର୍ବଦା ଇଷ୍ଟଙ୍କୁ ଭଲପାଅ, ସେବା କର, ଇଷ୍ଟାର୍ଥେ କର, ତାହାହିଁ ତୁମକୁ ଜୀବନୀଶକ୍ତିରେ ସମୃଦ୍ଧ କରିଚୋଳିବ।

ଆ.ପ୍ର. ୧୨/୨୧.୫.୧୯୪୮

**ପ୍ର. – ଇଷ୍ଟାନୁସରଣର ପଥରେ ବାସ୍ତବଭାବରେ ଅନ୍ୟର ଭଲକରିବାର ଚେଷ୍ଟା ନେଇ ଚାଲିଲେ ମଧ୍ୟ ସେ ଯେତେବେଳେ କ୍ଷତି କରିବାକୁ ଚେଷ୍ଟା କରେ ସେତେବେଳେବି କ'ଣ ସେହି ଭାବରେ ଚାଲି କୌଣସି ଲାଭ ଅଛି ?**

**ଶ୍ରୀଶ୍ରୀଠାକୁର –** ଏପରି ବୁଦ୍ଧି ଭଲ ନୁହେଁ। ଉପକାରର ପରିବର୍ତ୍ତେ ମଣିଷ ଆପଣଙ୍କ ସହିତ ଯେଉଁ ଆଚରଣହିଁ କରୁନା କାହିଁକି, ସେ ଦିଗକୁ ଭ୍ରୂକ୍ଷେପ ନ କରି, ନିଜର ଅସ୍ତିତ୍ୱ ଅବ୍ୟାହତ ରଖି ସାଧ୍ୟମତ ଅନ୍ୟର ଭଲ କରିବାର ଚେଷ୍ଟା କରିବାହିଁ ଭଲ – କୌଣସି ପ୍ରତ୍ୟାଶା ନ ରଖି ଏବଂ ଇଷ୍ଟସ୍ୱାର୍ଥପ୍ରତିଷ୍ଠାକୁ ଲକ୍ଷ୍ୟ ରଖି। ଏଥିରେ ଅକୃତଜ୍ଞତାବଶତଃ କିଛି-କିଛି ଲୋକ ଆପଣଙ୍କ ଦ୍ୱାରା ଉପକୃତ ହୋଇ ଆପଣଙ୍କ ଅପକାର କରିଲେ ମଧ୍ୟ on the whole (ମୋଟ ଉପରେ) ଆପଣଙ୍କର ଭଲହିଁ ହେବ। ବିଧାତାଙ୍କ ରାଜ୍ୟରେ Divine economy (ଭାଗବତ ଅର୍ଥନୀତି/ନିୟମନୀତି) ବୋଲି ଗୋଟିଏ ଜିନିଷ ଅଛି। ଯାହାଫଳରେ ବୃହତ୍ତର ପରିବେଶର ଅନେକେହିଁ ଅନାହୂତ ଭାବରେ ଆପଣଙ୍କର ଆନୁକୂଲ୍ୟ କରିବେ। ଆପଣ ଯେଉଁମାନଙ୍କ ପାଇଁ କିଛି କରି ନାହାନ୍ତି ସେହିପରି କେତେ ଲୋକ ଆଗେଇ ଆସି ଆପଣଙ୍କର ଭଲ କରିବେ। ତେବେ ଆପଣ ସେହି ଧରଣର ପ୍ରତ୍ୟାଶା ମନରେ ପୋଷି ରଖିବେ ନାହିଁ। ପ୍ରତ୍ୟାଶାପୀଡ଼ିତ ହୋଇ ରହିଲେ ନିଜର କରଣୀୟହିଁ ଠିକ୍ ଭାବରେ କରିପାରିବେ ନାହିଁ। ପୁଣି, ପ୍ରତ୍ୟାଶା ବ୍ୟାହତ ହେଲେ ମନରେ କଷ୍ଟ ପାଇବେ। ପ୍ରତ୍ୟାଶା କିନ୍ତୁ ପ୍ରାପ୍ତି ଆଣେ ନାହିଁ, ବିହିତ ଭାବରେ କରିବା ପ୍ରାପ୍ତି ଆଣିଥାଏ। ସେଥିପାଇଁ ପରମପିତାଙ୍କ ଦିଗକୁ ମନ ରଖି ତାଙ୍କରହିଁ ପ୍ରୀତି ପାଇଁ ଯାହା କରିବାର ତାହା କରି ଚାଲିବାକୁ ହୁଏ। ଏହାକୁହିଁ କହନ୍ତି ନିଷ୍କାମ କର୍ମ।

ଆ.ପ୍ର. ୧୨/୩୦.୫.୧୯୪୮



**ପ୍ର. – ଇଷ୍ଟାନୁସରଣର ପଥରେ ଅନ୍ୟର ଦୋଷ-ଦୁର୍ବଳତା ସଂଶୋଧନ କରି ଚାଲିବାର କଥା। କିନ୍ତୁ ସେଥିରେ ଯଦି ଦୋଷ ଦେଖି ଦୁଷ୍ଟ ହୋଇପଡ଼ିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର –** ଦୂର ପାଗଳ ! ତା' ହେବାକୁ ଦେବୁ କାହିଁକି ? ତୁ ତୋର ଇଷ୍ଟଙ୍କୁ ନେଇ ମତ୍ତ ହୋଇ ରହିବୁ। ଆଉ ଭିତରେ-ବାହାରେ ଭଲମନ୍ଦ ଯାହା ଦେଖିବୁ ତାକୁହିଁ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଅନୁକୂଳରେ ନିୟନ୍ତ୍ରିତ କରିବାକୁ ଚେଷ୍ଟା କରିବୁ – ଆତ୍ମସ୍ୱାର୍ଥପ୍ରତିଷ୍ଠାମୂଳକ ପ୍ରଚେଷ୍ଟା ଓ ପ୍ରତ୍ୟାଶାକୁ ବିଦାୟ ଦେଇ। ଏହାଦ୍ୱାରା ତୁମ ପ୍ରତି ଶ୍ରଦ୍ଧାର ଭିତର-ଦେଇ ଯିଏ ତୁମର ଇଷ୍ଟଙ୍କ ପ୍ରତି ଯେତେଟା ସକ୍ରିୟ ଭାବରେ ଆକୃଷ୍ଟ ହେବ, ତାହାର ସଂଶୋଧନର ପଥ ସେତେଟା ଖୋଲିଯିବ। କଥା ତ ଏଇ। ଏହା ନ କରି ମଧ୍ୟ ତୁମର ରିହାଇ ନାହିଁ। ଦେହରେ ଗୁହ ମାଖିଲେ ଯମ ଛାଡ଼ିବ ନାହିଁ। ପରିବେଶକୁ ବାଦ ଦେଇ ତୁମେ ଏକା ବଞ୍ଚିପାରିବ ନାହିଁ। ଆଉ ଯିଏ ଯାହା କରେ ସେ ତାହା କ'ଣ ପାଇଁ କରେ ତାହା ଯଦି ଗଭୀର ଭାବରେ ବୁଝିବାକୁ ଚେଷ୍ଟାକର – ତା'ହେଲେ ଦୋଷ-ଦର୍ଶନର ପରିବର୍ତ୍ତେ ତୁମର ବୋଧ ବର୍ଦ୍ଧନ ହେବ। ତା' ସହିତ ସହାନୁଭୂତି ଓ ସହନଶୀଳତା ବଢ଼ିବାକୁ ଲାଗିବ। ସବୁହିଁ ଅଭ୍ୟାସର ବ୍ୟାପାର। ନିଜର nerve କୁ (ସ୍ନାୟୁକୁ) ସଜ୍ଞାନ ପ୍ରଚେଷ୍ଟାରେ ଆହୁରି-ଆହୁରି ସହ୍ୟ ଓ ଧୈର୍ଯ୍ୟ ପରାୟଣ କରି ଚୋଳିବାକୁ ହୁଏ। ସେତେବେଳେ ତୁମକୁ ଦେଇ ଯେ ମଣିଷର କେତେ ଉପକାର ହେବ ତାହା କହି ଶେଷ କରାଯାଏ ନାହିଁ । ଆଉ, ମଣିଷର ଭଲ କରିବାକୁ ଗଲେ ଯେ କେବଳ ମଧୁର ବ୍ୟବହାର ଦେଇ କାମ ହୁଏ ତା' ନୁହେଁ। କେବେ-କେବେ ପ୍ରୀତି-ସମନ୍ୱିତ କଠୋର ବ୍ୟବହାର ମଧ୍ୟ ଦରକାର ହୁଏ। କିନ୍ତୁ ସାବଧାନ ! ଅହଙ୍କାର, ଅଭିମାନ, କ୍ରୋଧ, ବିରକ୍ତି, କ୍ଷୋଭ ଓ ବିଦ୍ୱେଷ ଦ୍ୱାରା ଅଭିଭୂତ ହୋଇ ଯେତେବେଳେ ରୁହ, ସେତେବେଳେ କାହାକୁ ଶାସନ କରିବାକୁ ଯାଅ ନାହିଁ। ସେଥିରେ ତୁମର ଲକ୍ଷେ କରିବା ବରବାଦ ହୋଇ ଯାଇପାରେ। ଏହି ମୁହୂର୍ତ୍ତରେ ତୁମର ଏକମାତ୍ର କରଣୀୟ ହେଲା ଆଗେ ନିଜକୁ ଶାସନରେ ସଂଯତ ଓ ସୁସ୍ଥ-ସ୍ୱସ୍ଥ କରି ଚୋଳିବା। ନହେଲେ 'ନିଜର ଶୋଇବାକୁ ଜାଗା ନାହିଁ ପୁଣି ଡାକେ ଶଙ୍କରାକୁ !' – ଏପରି ଅବସ୍ଥା ହେବ। ତୁମେ ଲୋକଙ୍କ ପାଖରେ ହାସ୍ୟାସ୍ପଦ ହୋଇଉଠିବ। ସେଥିପାଇଁ କଥାରେ କହନ୍ତି – Physician! heal thyself (ଚିକିତ୍ସକ ! ତୁମେ ଆଗେ ନିଜକୁ ସୁସ୍ଥ କର)।

ଆ.ପ୍ର. ୧୨/୩.୬.୧୯୪୮

**ପ୍ର. – ଇଷ୍ଟାନୁସରଣର ପଥରେ ମଣିଷ କେତେବେଳେ ଜୀବନର ପ୍ରକୃତ ତାତ୍ପର୍ଯ୍ୟ ଖୋଜି ପାଏ ?**

**ଶ୍ରୀଶ୍ରୀଠାକୁର –** ଯେଉଁମାନେ ଆନ୍ତରିକ ଭାବରେ ଭଗବାନଙ୍କୁ ଚାହାଁନ୍ତି, ସେମାନଙ୍କର ରକମହିଁ ଅଲଗା। ପରମପିତାଙ୍କ ଦୟାରୁ ସେମାନଙ୍କର ଯୋଗାଯୋଗ ମଧ୍ୟ ଭଲ ହୁଏ ଆଉ

ଠିକ୍ ପଥ ବାଛି ନେବା ପାଇଁ ସେମାନଙ୍କର ଭୁଲ ମଧ୍ୟ କମ୍ ହୁଏ । ଏକମାତ୍ର ତାଙ୍କୁ ଯେଉଁମାନେ ଚାହାଁନ୍ତି, ସେମାନଙ୍କର ଆଉ କୌଣସି ଭାବନା ନ ଥାଏ । ସେମାନଙ୍କର ଆବିଳତା କମିଯାଏ । ସେମାନେ ତାଙ୍କୁ ନେଇ ସୁଖ-ଦୁଃଖ ସବୁ ଅବସ୍ଥା ମଧ୍ୟରେ ଆନନ୍ଦରେ ରହନ୍ତି । ଯେଉଁମାନେ ତାଙ୍କୁ ମଧ୍ୟ ଚାହାଁନ୍ତି ପୁଣି ତା' ସହିତ ବିଭିନ୍ନ ଧରଣର କାମନାର ପରିପୂରଣ ମଧ୍ୟ ଚାହାଁନ୍ତି, ଶତ ସୁଖଐଶ୍ୱର୍ଯ୍ୟର ମଧ୍ୟରେ ବି ଜ୍ୱାଳାଯନ୍ତ୍ରଣା ଓ ଅଶାନ୍ତି କିନ୍ତୁ ସେମାନଙ୍କର ଅଙ୍ଗ ବହୁତ ଲାଗି ରହିଥାଏ । ନିରଖ-ପରଖ ଓ ଇଷ୍ଟନିଶା ଠିକ୍ ରହିଲେ ମଣିଷ ଏକ ସମୟରେ ବୁଝିପାରେ ଯେ ଇଷ୍ଟସ୍ୱାର୍ଥପ୍ରତିଷ୍ଠା ଛଡ଼ା ତା'ର ଆଉ ଚାହିଁବାର କିଛି ନାହିଁ । ଏହି ବୁଝିବା ଯାହାର ପକ୍କା ହୋଇଯାଏ ଏବଂ ଏହି ଅନୁଯାୟୀ ଯିଏ ଚାଲିପାରେ, ସେ ସେତେବେଳେ ଜୀବନର ପ୍ରକୃତ ତାତ୍ପର୍ଯ୍ୟ ଖୋଜି ପାଏ ।

ଆ.ପ୍ର. ୧୨/୩.୬.୧୯୪୮

**ପ୍ର. – ଇଷ୍ଟାନୁସରଣ ମଣିଷ ଯେତେହିଁ କରୁ, କର୍ମଫଳ ନା କ'ଣ ତାକୁ ଭୋଗ କରିବାକୁ ହୁଏ । ତା'ହେଲେ ମଣିଷର ଶାନ୍ତି କେଉଁଠି ?**

**ଶ୍ରୀଶ୍ରୀଠାକୁର** – ଶାନ୍ତି ଅଛି ଇଷ୍ଟୈକଲକ୍ଷ୍ୟ ହେବାରେ, ଇଷ୍ଟସର୍ବସ୍ୱ ହେବାରେ । ସୁଖ-ସ୍ୱାଚ୍ଛନ୍ଦ୍ୟ ବା ଦୁଃଖ-ଦୁର୍ଭୋଗ ଯାହାକୁ ଇଷ୍ଟଙ୍କଠାରୁ ବିଚ୍ୟୁତ କରିପାରେ ନାହିଁ, ଏହି ସବୁ-କିଛିକୁ ଯିଏ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଉପାଦାନ କରିଚୋଲେ, ଅଶାନ୍ତି ତା'ର ମନକୁ କମ୍ହିଁ ଛୁଇଁ ପାରେ । ଯେ-ମନ ପୁରାପୁରି ଇଷ୍ଟମଉ, ବାହ୍ୟିକ ପ୍ରତିକୂଳ ଅବସ୍ଥାର ଚାପ ତାକୁ କମ୍ ଘାଏଲ କରିପାରେ । ତେବେ ପରିସ୍ଥିତି ଓ ପରିବେଶର ପ୍ରଭାବ ମଣିଷକୁ କିଛି-କିଛି ପ୍ରଭାବିତ କରେହିଁ । ଏହି ଅବସ୍ଥାରେ ମନ ମଧ୍ୟ ଟଳିଯାଏ । ମନ ଟଳିଯାଏ ମାନେ ଇଷ୍ଟଙ୍କର ସ୍ମୃତି ଓ ଚେତନା କିଛିଟା ସ୍ତିମିତ ହେବା । କିନ୍ତୁ ଇଷ୍ଟପ୍ରେମୀ ଯିଏ ତା' ପାଖରେ ଏହି ଦୂରତ୍ୱ ଟିକକ ଦୁଃସହ ବିରହବେଦନା ସୃଷ୍ଟି କରେ । ଇଷ୍ଟଙ୍କଠାରେ ଗଭୀର ଭାବରେ ନିମଜ୍ଜିତ ହେବା ପାଇଁ ତା'ର ମନପ୍ରାଣ ବ୍ୟାକୁଳ ହୋଇଉଠେ । ଏହିଭାବରେ ନିଜକୁ ଇଷ୍ଟଙ୍କଠାରେ ନିମଜ୍ଜିତ ନ କଲା ପର୍ଯ୍ୟନ୍ତ ସେ ତିଳେ ମାତ୍ର ସ୍ୱସ୍ତି ପାଏ ନାହିଁ । ଯେନ ତେନ ପ୍ରକାରେଣ ତାହା ତାକୁ କରିବାକୁ ହୁଏ । ଫଳକଥା କ୍ଷଣିକର ଶୈଥିଲ୍ୟ ତା'ର ସମ୍ବେଗକୁ ତୀବ୍ରତର କରି ତୋଳିବାକୁହିଁ ସାହାଯ୍ୟ କରେ । ଏହିପରି କରି ଉଠାପଡ଼ାର ଭିତର ଦେଇ ସେ ଆଗେଇହିଁ ଚାଲେ । ସେଥିପାଇଁ କର୍ମଫଳ ତାକୁ ଇଷ୍ଟଙ୍କଠାରୁ ବିଚ୍ୟୁତ ତ କରିପାରେ ନାହିଁ ବରଂ ତାଙ୍କଠାରେ ଅଚ୍ୟୁତ ହେବାକୁ ପ୍ରେରଣା ଯୋଗାଏ । ଗୋଟିଏ କଥାରେ, ଅଭିଶାପ ଆଶୀର୍ବାଦରେ ପରିଣତ ହୁଏ ।

ଆ.ପ୍ର. ୧୨/୩.୬.୧୯୪୮

**ପ୍ର. – ଇଷ୍ଟାନୁସରଣର ପଥରେ କେତେବେଳେ ପ୍ରବୃତ୍ତିକୁ ସହଜରେ ଚିହ୍ନି ହୁଏ ଓ ତାକୁ ଅତିକ୍ରମ କରାଯାଏ ?**



**ଶ୍ରୀଶ୍ରୀଠାକୁର** – ଇଷ୍ଟାନୁରାଗ ମଣିଷର ସତ୍ତାରେ ଯେତେଟା ଗୁନ୍ଥିଯାଏ, ସେତେହିଁ ସିଏ ପ୍ରବୃତ୍ତିକୁ ସହଜରେ ଚିହ୍ନିପାରେ ଓ ଅତିକ୍ରମ କରିପାରେ ।

ଆ.ପ୍ର. ୧୨/୨୮.୬.୧୯୪୮

**ପ୍ର. – ଇଷ୍ଟାନୁସରଣରେ ପାରିପାର୍ଶ୍ୱିକର ପ୍ରତିକୂଳତାରେ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ତୁମର ପାରିପାର୍ଶ୍ୱିକ ନିର୍ମମ । ସିଏ ଆଘାତ ଦେବାର ସେ ଆଘାତ ଦେବହିଁ । ତୁମେହିଁ ହେଲ only agent (ଏକମାତ୍ର ଲୋକ) ଯିଏ adjust, digest ଓ assimilate (ନିୟନ୍ତ୍ରଣ, ହଜମ ଓ ଆତ୍ମୀକରଣ) କରିବ । ଏହା ଭିତର ଦେଇହିଁ ଜ୍ଞାନ ବଢ଼େ, ଶକ୍ତି ବଢ଼େ, ସହନଶୀଳତା ବଢ଼େ । ...ଇଷ୍ଟଙ୍କ ଉପରେ ଆମର ଏତେଟା ଟାଣ ଗଢ଼େଇବା ଦରକାର ଯାହାଦ୍ୱାରା ତାହା କୌଣସି ଅବସ୍ଥାରେ ବିଚ୍ଛିନ୍ନ ନ ହୁଏ । ସବୁ ପ୍ରତିକୂଳତାର ମଧ୍ୟରେ ସେହି ଟାଣହିଁ ଆମକୁ ବଞ୍ଚାଏ ।

ଆ.ପ୍ର. ୧୨/୨୮.୬.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ସକ୍ରିୟ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେବା ବ୍ୟକ୍ତିଗତ ଚେଷ୍ଟା ଉପରେହିଁ ନିର୍ଭର କରେ କ'ଣ ପାଇଁ ?**

**ଶ୍ରୀଶ୍ରୀଠାକୁର** – ଆମ୍ଭମାନଙ୍କୁହିଁ ତ କରିବାକୁ ହେବ । ଆମ୍ଭେମାନେ ଖାଦ୍ୟ ଖାଉ, ହଜମ କରୁ, ସେଥିରୁ ଶରୀର ପୁଷ୍ଟି ସଂଗ୍ରହ କରେ, ଅପ୍ରୟୋଜନୀୟ ଯାହା ତାହା ମଳ-ମୂତ୍ର ହୋଇ ବାହାରିଯାଏ । ସବୁ ଶରୀରକୁହିଁ କରିବାକୁ ହୁଏ । ସେହିପରି ଭାବରେ ମନ ମଧ୍ୟ ବିଭିନ୍ନ ସାଡ଼ା ଓ ଉପାଦାନକୁ ଯେତେଟା ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ସହାୟକ କରି ଗ୍ରହଣ କରିପାରେ ଓ ଅବାନ୍ତର ଯାହା ତାହାକୁ ବର୍ଜନ କରିପାରେ, ସେତେହିଁ ପୁଷ୍ଟ ହୋଇ ଉଠିଥାଏ । ଏହା ସତ୍ତାରହିଁ ପ୍ରୟୋଜନ ଓ ସତ୍ତାରହିଁ ସ୍ୱାର୍ଥ । ...ଭୋକ ଲାଗିଲେ ଯେପରି ଖାଦ୍ୟ ଗ୍ରହଣ କର, ବସି ରୁହ ନାହିଁ, ସେହିପରି ତାଙ୍କ ପାଇଁ କରିବାଟା ମଧ୍ୟ ତୁମର ଇଚ୍ଛା ଓ ଚେଷ୍ଟା ଉପରେ ନିର୍ଭର କରିଥାଏ । Urge (ସମ୍ବେଗ) ରହିଲେ ସବୁ କିଛିରହିଁ ସଦ୍‌ବ୍ୟବହାର କର । ତୁମେ ତ ଗୋଟିଏ sperm (ଶୁକ୍ରକୀଟ) ଛଡ଼ା ଆଉ କିଛି ନୁହଁ, କିନ୍ତୁ ତାହାହିଁ ମା'ର ଗର୍ଭଠାରୁ ଆରମ୍ଭ କରି ସବୁ-କିଛିର ସାହାଯ୍ୟ ନେଇ ଆଜି ଏହିପରି ହୋଇଅଛ । ଏହାର ମୂଳରେ ଅଛି life-urge (ଜୀବନ ସମ୍ବେଗ) ଆଉ life-urgeର (ଜୀବନ-ସମ୍ବେଗ)-ର best fulfilment (ସର୍ବୋତ୍ତମ ପରିପୂରଣ) ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଭିତର ଦେଇ ହୁଏ । କାରଣ, ଇଷ୍ଟହିଁ ଜୀବନସ୍ୱରୂପ ।

ଆ.ପ୍ର. ୧୨/୨୮.୬.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ଧର୍ମ କାହା ଜୀବନରେ ଜାଗ୍ରତ ଅଛି, ଏହା କ'ଣ ଦେଖି ବୁଝାଯିବ ?**

**ଶ୍ରୀଶ୍ରୀଠାକୁର** – ଧର୍ମ ଯାହାର ଜୀବନରେ ଜାଗ୍ରତ ଅଛି ତା' ମଧ୍ୟରେ ଅସତ୍-ନିରୋଧୀ ପରାକ୍ରମ ସକ୍ରିୟ ହୋଇ ମୁଣ୍ଡ ଟେକିବ ହିଁ ଟେକିବ। ନହେଲେ ଧରିନିଅ ଧର୍ମ ତା' ପାଖରେ କଥାର କଥା ମାତ୍ର। ସେ ଅଛି ଅନ୍ୟ ମତଲବରେ। ବାହାରେ ଚାଲିଛି ଧର୍ମର ବାହାନା ନେଇ। ଅସତ୍-ନିରୋଧୀ ହେବାମାନେ ବାଘ-ଭାଲୁ ସାଜିବା ନୁହେଁ। ଇଷ୍ଟପ୍ରେମୀ ଯିଏ, ସିଏ ହୁଏ ମଙ୍ଗଳଲିପ୍ସୁ ମଣିଷ। ସମସ୍ତଙ୍କର ଭଲ ଚାହିଁବା, ସମସ୍ତଙ୍କର ଭଲ କରିବା – ଏହା ତା'ର ନିଶା ହୋଇଉଠେ। ଏବଂ କାହାରି ପ୍ରତି ଦ୍ରୋହ ବା ବିଦ୍ୱେଷ ଭାବ ପୋଷଣ ନ କରି କ୍ଷେତ୍ର-ବିଶେଷରେ ସେ ମଣିଷର ମଙ୍ଗଳ ଚାହିଁ ତା'ପ୍ରତି ପ୍ରୟୋଜନ ଓ ମାତ୍ରାନୁସାରେ କଠୋର ହୁଏ। ଏହି କଠୋରତା ପ୍ରଦର୍ଶନ କିନ୍ତୁ ମଙ୍ଗଳ-ବୁଦ୍ଧିର ଅଚ୍ଛେଦ୍ୟ ଅଙ୍ଗ। ମା' ଯେପରି ସନ୍ତାନକୁ ଅନିବାର୍ଯ୍ୟ କ୍ଷେତ୍ରରେ ଶାସନ କରେ, ତାର ରକମଟା ମଧ୍ୟ ହୁଏ ସେହିପରି। ଏହାଦ୍ୱାରା ମଣିଷ ସୁଧାରି ଉଠେ। ଅସତ୍‌କୁ ପ୍ରଶ୍ରୟ ଦେଲେ ଯିଏ ଅସତ୍ କର୍ମରେ ଲିପ୍ତ ତା'ର ଯେପରି କ୍ଷତି କରାହୁଏ, ନିଜର ଓ ପରିବେଶର ମଧ୍ୟ ସେହିପରି କ୍ଷତି କରାହୁଏ। ତେଣୁ ଏହା ଅପରାଧ। ...ଅସତ୍-ନିରୋଧ ଏକ ଚିକିତ୍ସା ବିଶେଷ। ନିଜେ ଆତ୍ମସ୍ଥ ଥାଇ ଯିଏ ଯେତେ ନିଖୁଁତ ଓ ନିପୁଣ ଭାବରେ କୁଶଳ-କୌଶଳର ସହିତ ଏହା କରିପାରେ, ସେ ଜୀବନରେ ସେତେ ଜୟୀ ହୁଏ।

ଆ.ପ୍ର. ୧୨/୮.୭.୧୯୪୮

**ପ୍ର. – ଇଷ୍ଟାନୁସରଣରେ କିପରି ଭାବରେ ସାର୍ଥକ ହୋଇ ହୁଏ ?**

**ଶ୍ରୀଶ୍ରୀଠାକୁର** – ଯଦି ସାର୍ଥକ ହେବାକୁ ଚାହଁ, ଠାକୁରଙ୍କୁ ଖୁବ୍ ଭଲପାଅ – ଅକାଟ୍ୟ, ଅଚ୍ୟୁତ ଭଲପାଇବା ଦେଇ। ତେଣୁ ମନର ପ୍ରତ୍ୟେକଟି କଣିକା, ତୋର ଶରୀରର ପ୍ରତ୍ୟେକଟି ଅଣୁପରମାଣୁ ତାଙ୍କର ରଙ୍ଗରେ ରଙ୍ଗାଇ ତୋଳୁ – ଦେଖ ଠାକୁର ତୋତେ ଦେଇ କ'ଣ କରାନ୍ତି। ଦୁନିଆର କିଛିକୁ ଯଦି ଭଲପାଇବାକୁ ହୁଏ ଦେଖିବୁ ଯାହାଦ୍ୱାରା ସେ-ଭଲପାଇବା, ତାଙ୍କଠାରେ ସାର୍ଥକତା ଲାଭ କରେ – ନହେଲେ କାହାକୁ ନୁହେଁ, କିଛିକୁ ନୁହେଁ। ଉତ୍କଣ୍ଠା ସହକାରେ ସେପରି କରିଚାଲିବୁ, ସେହିପରି କରି କହିବୁ, ସେହିପରି କରି ଭାବିବୁ – ଯାହାଦ୍ୱାରା ଠାକୁର ତୋର ପରିପୋଷିତ ହୁଅନ୍ତି, ପରିରକ୍ଷିତ ହୁଅନ୍ତି, ପରିବର୍ଦ୍ଧିତ ହୁଅନ୍ତି, ପ୍ରତିଷ୍ଠିତ ହୁଅନ୍ତି। ତୋର ପ୍ରତ୍ୟେକଟି କଣିକାରେ ସବୁ-କିଛିକୁ ନେଇ ଏକମାତ୍ର ସେ ହିଁ ରହିବେ। ଆଉ, ଏହିପରି କରିହିଁ ତୋର ଜୀବନକୁ ସାର୍ଥକ କରି ତୋଳ୍।

ଆ.ପ୍ର. ୧୨/୧୦.୭.୧୯୪୮

**ପ୍ର. ଇଷ୍ଟାନୁସରଣରେ ପରିବାରର ସମସ୍ତଙ୍କୁ ଉଦ୍‌ବୁଦ୍ଧ କରି ତୋଳିବାପାଇଁ କ'ଣ କରଣୀୟ ?**

**ଶ୍ରୀଶ୍ରୀଠାକୁର** – ପରିବାରିକ ଜୀବନରେ ଆମର ଗୋଟିଏ ପ୍ରାତ୍ୟହିକ କରଣୀୟ ହେଉଛି



– ପରିବାରର ସମସ୍ତେ ପ୍ରତିଦିନ ସମବେତ ହୋଇ ସବୁ ବିଷୟରେ ଆଳାପ ଆଲୋଚନା କରିବା। ଏହାଦ୍ୱାରା conviction (ପ୍ରତ୍ୟୟ) ବଢ଼ିଯାଏ, ଭୁଲତ୍ରୁଟିଗୁଡ଼ିକ ସୁଧାରିଯାଏ। ପ୍ରତିଦିନହିଁ ଏହା କରିବା ଦରକାର। ଅନ୍ତରଙ୍ଗ ଭାବରେ ସମସ୍ତେ ମିଶି ଗଳ୍ପ କରିବାକୁ ହୁଏ। ଆଳାପ-ଆଲୋଚନା କରିବାକୁ ହୁଏ, ଭାବର ଆଦାନ ପ୍ରଦାନ କରିବାକୁ ହୁଏ। ...ଏହି ପାରିବାରିକ ଆଳାପ-ଆଲୋଚନା ଯଦି ନିୟମିତ ନ କରାଯାଏ, ତେବେ ପିଲାମାନେ ହୁଏତ ବୁଝିପାରନ୍ତି ନାହିଁ ବାପା କ'ଣ ପାଇଁ ଦୀକ୍ଷା ନେଲେ, କ'ଣ ପାଇଁ ମାଛ ଖାଆନ୍ତି ନାହିଁ, କ'ଣ ପାଇଁ ନାମ ଧ୍ୟାନ କରନ୍ତି, ହୁଏତ ଭାବିପାରନ୍ତି ଯେ ବାପା foolish (ବୋକା)। ତା'ର ଜୀବନର ମର୍ମହିଁ ବୁଝିପାରନ୍ତି ନାହିଁ। ମୂଳରୁ ନ ହେଲେ ନ-ଜାଣିବାଟା, ନ-ବୁଝିବାଟା ଜମାଟ ବାନ୍ଧିଯାଏ, ସେହି ନ-ଜାଣିବା ଓ ନ-ବୁଝିବା overcome (ଅତିକ୍ରମ) କରିବାହିଁ ମୁସ୍କିଲ ହୋଇପଡ଼େ।

ଆ.ପ୍ର. ୧୩/୧୫.୭.୧୯୪୮

**ପ୍ର. – ଇଷ୍ଟାନୁସରଣର ପଥରେ ଜୀବନରେ ଯେତେବେଳେ ଦୁଃଖ-କଷ୍ଟ ଆସେ ତାହା କ'ଣ ପରମପିତାଙ୍କର ଆଶୀର୍ବାଦ ?**

ଶ୍ରୀଶ୍ରୀଠାକୁର – ଦୁଃଖ-କଷ୍ଟ ଆଶୀର୍ବାଦ ହୁଏ, ଯଦି ତାହା ଆଦର୍ଶଙ୍କ ପାଇଁ ହୁଏ। ସେତେଟା ଅନୁରାଗ ଯଦି ଥାଏ, ଲୋକଦେଖାଣିଆ ନ ହୋଇ ପ୍ରକୃତ ଭଲପାଇବା ଯଦି ଥାଏ। ଧରନ୍ତୁ, ଏହି ରାତି ଏଗାରଟା ସମୟରେ ମୁଁ ଆପଣଙ୍କୁ ରାବିଡ଼ି ଆଣିବାର କଥା କହିଲି; – ଏହି ରାତିରେ ଏଠାରୁ ବଜାରକୁ ଯାଇ ରାବିଡ଼ି ଆଣିବା ତ କମ୍ ପରିଶ୍ରମର ବ୍ୟାପାର ନୁହେଁ, ରାସ୍ତାରେ ଆପଣଙ୍କର କଷ୍ଟ ତ ହେବହିଁ। ମୁଣ୍ଡର ଝାଳ ତୁଣ୍ଡରେ ମାରି ଆପଣ ଯେତେବେଳେ ରାବିଡ଼ିଟା ଆଣି ମୋତେ ଖାଇବାକୁ ଦେଲେ, ମୁଁ ଖାଇଲି। ସେତେବେଳେ ଆପଣଙ୍କର ମହାସୁଖ। କୌଣସି କଷ୍ଟ ବୋଧ ରହେ ନାହିଁ। ଏହି ପ୍ରଲୋଭନ ପାଇଁ ମଣିଷ ପାଖରେ କଷ୍ଟ ଆଉ କଷ୍ଟ ହୋଇ ରହେ ନାହିଁ। କିନ୍ତୁ ଭଲପାଇବା ନାହିଁ, ବାଧ୍ୟ ହୋଇ ଆପଣଙ୍କୁ ଯିବାକୁ ହେଲେ ପାଦ ଯେପରି ଆଉ ଆଗେଇବାକୁ ଚାହିଁବ ନାହିଁ। ବିରକ୍ତି ଓ କଷ୍ଟ ମନେହେବ। ହୁଏତ କିଛି ଦୂରରୁ ଘୁରିଆସି କହିବେ – ପାଇଲି ନାହିଁ। ତାହା କହିମଧ୍ୟ ଅବଶ୍ୟ ଶାନ୍ତି ପାଇବେ ନାହିଁ। ମନରେ ଗୋଟିଏ ଖୁଣ୍ଟକା ଲାଗିରହିବ। ତା' ଫଳରେ ଘରକୁ ଯାଇ ହୁଏତ ତିନିଦିନ ଅସୁସ୍ଥ ହୋଇ ପଡ଼ିରହିବେ। ଅସଲ ଜିନିଷ ହେଲା ଭଲପାଇବା, ନିଷ୍ଠା, ଅନୁରାଗ।

ଆ.ପ୍ର. ୧୩/୧୯.୭.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ସ୍ୱାଭାବିକ ଭାବରେହିଁ କ'ଣ ତାଙ୍କ ପ୍ରତି ଅନୁରାଗ ହୁଏ, ନା ତାହା ଗଜେଇ ତୋଳିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ଅନୁରାଗ ଅଛିହିଁ – ଇନ୍ଧନ ଦେଇ ନେବାକୁ ହୁଏ।

**ପ୍ର. – ଇନ୍ଧନ ଦେବା କ'ଣ ?**

**ଶ୍ରୀଶ୍ରୀଠାକୁର** – ଅନୁକୂଳ ବାକ୍ୟ, ଅନୁକୂଳ ବ୍ୟବହାର, ଅନୁକୂଳ ଚିନ୍ତା, ଅନୁକୂଳ ଚଳନହିଁ ହେଲା ଅନୁରାଗକୁ ଇନ୍ଧନ ଦେବା। ଅନୁରାଗ ହେଲା fire of life (ଜୀବନାଗ୍ନି)। ଏହି ଅନୁରାଗ ଯେତେ ବ୍ୟଭିଚାରିଣୀ ହୁଏ, ମଣିଷ ସେତେ ଶ୍ଲଥ ଓ ବିଚ୍ଛିନ୍ନ ହୋଇଯାଏ, callous (ଅନମନୀୟ ଓ ବୋଧହରା) ହୋଇପଡ଼େ।

**ପ୍ର. – ବ୍ୟଭିଚାରିଣୀ ଅନୁରାଗ ମାନେ କ'ଣ ?**

**ଶ୍ରୀଶ୍ରୀଠାକୁର** – ତୁମର ମୋ ଉପରେ ଟାଣ ଅଛି, ସେହି ସ୍ୱାର୍ଥ ପୁଷ୍ଟ ହେଉଛି ଯାହାଙ୍କ ଦେଇ ଓ ଯାହା-ଦ୍ୱାରା, ତାହାଙ୍କୁ ଏବଂ ତାହା ତୁମର ଭଲ ଲାଗୁଛି – ଏହା ହେଲା concentric love (ସୁକେନ୍ଦ୍ରିକ ଭାଲବାସା)। ଆଉ ଏହି ଭଲପାଇବା ବା ଭଲ ଲାଗିବାଟା ସେତେପର୍ଯ୍ୟନ୍ତ ରହୁଛି ଯେତେ ପର୍ଯ୍ୟନ୍ତ ତାକୁ ନେଇ ତୁମର ବାଞ୍ଛିତର ସ୍ୱାର୍ଥ ପୁଷ୍ଟ ହେଉଛି, ଯେଉଁ ମୁହୂର୍ତ୍ତରେ ତା' ମଧ୍ୟରେ ଓଲଟା ଭାବ ଦେଖିଲ, ସେହି ମୁହୂର୍ତ୍ତରେହିଁ ତୁମେ ତା ପ୍ରତି neutral (ନିରପେକ୍ଷ) ହୋଇଗଲ – ଭଲ ମଧ୍ୟ ନୁହେଁ, ମନ୍ଦ ମଧ୍ୟ ନୁହେଁ ଏହିପରି ଭାବ। ଆଉ ଏକରକମ ଅଛି, ତୁମର ଭଲପାଇବାର କୌଣସି ମୂଳ centre (କେନ୍ଦ୍ର) ନାହିଁ – ଯାହାର ମାପକାଠିରେ ତୁମେ ସବୁ ମାପି ଦେଖୁଛ। ତୁମର ବୃତ୍ତିର ଇନ୍ଧନ ଯିଏ ଯେତେବେଳେ ଯୋଗାଉଛି, ତା' ପ୍ରତି ସେତେବେଳେ ଟାଣ ହେଉଛି। ଏହିପରି ଅନୁରାଗ ବ୍ୟଭିଚାରିଣୀ ଅନୁରାଗ। ଏକରକମ ଅଛି – ମଠ-ମନ୍ଦିର, ଗଛ ତଳେ ଯାହା ଦେଖୁଛ ସବୁଜାଗାରେ ମଥା କୁଡ଼ଉଛ, ସାଧୁ ଦେଖୁଛତ ନାମ(ଦୀକ୍ଷା) ନେଇ ରଖୁଛ, ନିଷ୍ଠାର ନାମଗନ୍ଧ ନାହିଁ। ଗୋଟିଏ କଥାରେ ବହୁନୈଷ୍ଠିକ, ସେମାନଙ୍କର କିନ୍ତୁ ରକ୍ଷା ନାହିଁ। ପ୍ରକୃତ ଜିନିଷ ହେଲା – ଅକାଟ୍ୟ, ଅଚ୍ଛେଦ୍ୟ, ଅବିଚ୍ଛିନ୍ନ, ଅନୁରାଗ ଜଣଙ୍କ ପ୍ରତି ରହିବ – ଆଉ ତା'ର ଅନୁକୂଳ ଯାହା – ଏପରିକି ଗୋଟାଏ ଗଛ କିମ୍ବା ଗୋଟାଏ କୁଟା ମଧ୍ୟ ଯଦି ପ୍ରେମାସ୍ପଦର ଅନୁକୂଳ ହୁଏ, ତାହା ମଧ୍ୟ ତା' ପାଖରେ ପ୍ରୀତିକର ମନେହେବ। ଏହାଫଳରେ "ଯତ୍ର-ଯତ୍ର ଦୃଷ୍ଟି ପଡ଼େ ତତ୍ର-ତତ୍ର ଇଷ୍ଟ ସ୍ଫୁରେ" ଏହି ରକମ ହୋଇଉଠେ। ...ସଚ୍ଚା ଅନୁରାଗ ଯାହାର ଜାଗ୍ରତ ହୁଏ ପ୍ରେଷ୍ଠଙ୍କ ଛଡ଼ା ତା'ର ଗୋଟିଏ କ୍ଷଣ ମଧ୍ୟ କାଟେ ନାହିଁ, ପ୍ରତିଟି ନିଃଶ୍ୱାସରେ ତା'ର ପ୍ରେଷ୍ଠ ପ୍ରୀତି ଝରି ପଡ଼େ। ଏହାର ଟିକିଏ ସ୍ୱାଦ ମଧ୍ୟ ଯିଏ ପାଏ, ତା'ର ଜୀବନ ଧନ୍ୟ ହୋଇଯାଏ, ଦୁନିଆର କୌଣସି ପ୍ରଲୋଭନ, କୌଣସି ତାଡ଼ନ, ପୀଡ଼ନ, ନିର୍ଯ୍ୟାତନ ତାକୁ ଟଳାଇ ପାରେ ନାହିଁ। ନିଷ୍ଠାର ଚରିତ୍ରହିଁ ଏହିପରି।

ଆ.ପ୍ର. ୧୩/୨୩.୭.୧୯୪୮

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ପରିପନ୍ଥୀ ଯାହା-କିଛିକୁ ବିରୋଧଶୂନ୍ୟ ଭାବରେ ନିରୋଧ କରିବାର ବ୍ୟାପାରଟା କିପରି ? ଏହା ନ କରିଲେ ବା କ'ଣ ହୁଏ ?**



**ଶ୍ରୀଶ୍ରୀଠାକୁର** – ଯେପରି, କାହାରିଦ୍ୱାରା ମୋର କ୍ଷତି ହେଉଛି। ସେ ଯେପରି ତାହା ନ କରେ, ଆପଣ ତାହା କରୁଛନ୍ତି। ଏପରି ଭାବରେ ଆପଣ କାମଟା କରୁଛନ୍ତି, ଯାହାଦ୍ୱାରା tussle (ଦ୍ୱନ୍ଦ) ସୃଷ୍ଟି ନ ହୁଏ, ଅଥଚ effective (କାର୍ଯ୍ୟକାରୀ) ହୁଏ। ବାହାର ଲୋକହିଁ ହୁଅନ୍ତୁ ବା ନିଜର ଲୋକହିଁ ହୁଅନ୍ତୁ, ଯିଏ ବି ଏପରି କରୁ, ସେ-କ୍ଷେତ୍ରରେ ସଂଯତ ଭାବରେ, ସୁକୌଶଳରେ, ନିର୍ଭିକ ଚିତ୍ତରେ ସାଧ୍ୟାନୁସାରେ ଏହିପରି ନ କରିଲେ ଯେପରି ଇଷ୍ଟସ୍ୱାର୍ଥପ୍ରତିଷ୍ଠା ବ୍ୟାହତ ହୁଏ, ସେହିପରି ଇଷ୍ଟପ୍ରାଣତା ମଧ୍ୟ କ୍ଷୁର୍ଣ୍ଣ ହୁଏ। ଯିଏ ଇଷ୍ଟପ୍ରାଣ, ତାର କାହାରି ସତ୍ତା ପ୍ରତି କିନ୍ତୁ ଦ୍ରୋହଭାବ ରହେ ନାହିଁ। ସେ ସମସ୍ତଙ୍କୁ ଭଲପାଏ ସମସ୍ତଙ୍କର ମଙ୍ଗଳ ଚାହେଁ। ପୁଣି ସିଏ ଆପୋଷରଫା ମଧ୍ୟ କରେ ନାହିଁ। ଆ.ପ୍ର. ୧୩/୩.୮.୧୯୪୮

**ପ୍ର. – ଇଷ୍ଟାନୁସରଣରେ ସନ୍ତୋଷର ଅଭାବ ଯଦି ଦେଖାଯାଏ ତାର ପ୍ରତିକାର କ'ଣ ?**

**ଶ୍ରୀଶ୍ରୀଠାକୁର** – ଆମେ ଯେ କ'ଣ ଚାହୁଁ, ତାହାହିଁ ଜାଣୁନା। ସେଥିପାଇଁ ପରମପିତାଙ୍କର ଶତଦୟା ସତ୍ତ୍ୱେ ମଧ୍ୟ ସନ୍ତୋଷର ସନ୍ଧାନ ଜୀବନରେ କମ୍‌ହିଁ ପାଉ। ଇଷ୍ଟସ୍ୱାର୍ଥପ୍ରତିଷ୍ଠା ଛଡ଼ା ଆମ୍ଭମାନଙ୍କର ଚାହିଁବାର ମଧ୍ୟ ଆଉ କିଛି ନାହିଁ, କରିବାର ମଧ୍ୟ ଆଉ କିଛି ନାହିଁ। ସେଥିପାଇଁ ସବୁଅବସ୍ଥାରେ ନାମପରାୟଣ ରହି ମନ ଓ ମୁଣ୍ଡ ଥଣ୍ଡା ରଖି ଭାବି ଦେଖିବାକୁ ହୁଏ ଏହି ଅବସ୍ଥା ମଧ୍ୟରେ ଇଷ୍ଟସ୍ୱାର୍ଥପ୍ରତିଷ୍ଠା ପାଇଁ କ'ଣ କରାଯାଏ, ଆଉ ସାଧମତ ତାହା କରିବାକୁ ହୁଏ। ସେତେବେଳେ ପ୍ରାଣେ-ପ୍ରାଣେ ବୋଧ କରାଯାଏ ଏକମାତ୍ର ପରମପିତାହିଁ ଆମ ଜୀବନରେ ନାନାଭାବରେ, ନାନାରୂପରେ ଆସିଛନ୍ତି। ଆତ୍ମସମର୍ପଣ ସେତେବେଳେ ଆପେ-ଆପେ ହୁଏ। ଦୁଶ୍ଚିନ୍ତା ଓ ଅଶାନ୍ତି ସେତେବେଳେ ଆମମାନଙ୍କର ତ୍ରିସୀମାକୁ ମଧ୍ୟ ଛୁଇଁପାରେ ନାହିଁ। ଆ.ପ୍ର. ୧୩/୪.୮.୧୯୪୮

**ପ୍ର. – ଇଷ୍ଟାନୁସରଣର ସୁବିଧା ପାଇଁ ଉପଯୁକ୍ତ ଶ୍ରେୟଙ୍କଠାରେ ନିଜର ଦୋଷ-ତ୍ରୁଟି ସ୍ୱୀକାର କଲେ କ'ଣ ଭଲ ହୁଏ ? ପରିବର୍ତ୍ତନ ହୁଏ ?**

**ଶ୍ରୀଶ୍ରୀଠାକୁର** – ଉପଯୁକ୍ତ ଶ୍ରେୟଙ୍କ ପାଖରେ confession (ସ୍ୱୀକାରୋକ୍ତି) କରିବାକୁ ଯାଇ ଏହି ଟିକକ ଫଳ ମିଳେ ଯେ, ତାଙ୍କର କଥାରେ ଭୁଲ-ତ୍ରୁଟି ଓ ଦୋଷର କାରଣ ଓ ନିରାକରଣର ସୂତ୍ରଟା ନିଜ ପାଖରେ ଆହୁରି ଭଲକରି ଧରା ପଡ଼େ। ସେଥିପାଇଁ ଖ୍ୟାପନର କଥା ଅଛି। ତେବେ ଆତ୍ମବିଚାର ଓ ଆତ୍ମବିଶ୍ଳେଷଣର ଭିତର ଦେଇ ସୂତ୍ରଟା ଯଦି ନିଜେ ଧରାଯାଏ, ତା'ହେଲେ ସବୁଠାରୁ ଭଲ ହୁଏ। କେବଳ ଧରିଲେ ହେବ ନାହିଁ, ଲାଗିପଡ଼ି ନିଜକୁ ସଂଶୋଧନ କରିବାକୁ ହେବ। ଏହାଦ୍ୱାରା ଭଲ ହେବାର ପଥ ତ୍ୱରାନ୍ୱିତ ହୁଏ। ଏହା ସାଧନାର

ଗୋଟିଏ ଅପରିହାର୍ଯ୍ୟ ଅଙ୍ଗ। ନହେଲେ ନିଜର ଦୋଷ-ତ୍ରୁଟିର ଦେହରେ ହାତ ଦେଉନାହିଁ, ଅଥଚ ନାମକା ୱାସ୍ତେଜପଧ୍ୟାନ କରିଯାଉଛି, ସେଥିରେ ଚିତ୍ତଶୁଦ୍ଧି କମ୍ ହୁଏ। ତଥାପି ତାହା ମନ୍ଦରେ ଭଲ।

ଆ.ପ୍ର. ୧୩/୬.୮.୧୯୪୮

**ପ୍ର – ଇଷ୍ଟାନୁସରଣରେ ନିୟମିତ ନାମ-ଧ୍ୟାନ କରିବାକୁ ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର** – ନିୟମିତ ନାମଧ୍ୟାନ କରି ଚାଲିଲେ ଇଷ୍ଟଙ୍କର ପ୍ରତିକୂଳ ପ୍ରବୃତ୍ତି ଯେଉଁଗୁଡ଼ିକ ଅଛି, ପ୍ରଥମରେ ସେଗୁଡ଼ିକ ମନ ମଧ୍ୟରେ ଘୂରପାକ ଖାଏ ଓ ମନକୁ ଇଷ୍ଟଙ୍କଠାରେ ତନ୍ମୟ ହେବାକୁ ଦିଏ ନାହିଁ। ସେଗୁଡ଼ିକ ସେତେବେଳେ ଧରା ପଡ଼େ ଓ ଗୋଟିଏ ଅସ୍ୱସ୍ତି ବୋଧ ଜାଗ୍ରତ ହୁଏ। ପୁଣି ଅଭ୍ୟାସ ଫଳରେ ନାମଧ୍ୟାନର ଯେଉଁ ସାମାନ୍ୟ ରସ ଓ ଆନନ୍ଦ ପାଏ, ସେଥିପାଇଁ ତା'ର ଲୋଭ ବଢ଼ିଚାଲେ। ସେତେବେଳେ ଏହି ଆକର୍ଷଣରେ ସେ ଅନ୍ତରାୟଗୁଡ଼ିକୁ ଉପେକ୍ଷା କରିହିଁ ହେଉ, ଅତିକ୍ରମ କରିହିଁ ହେଉ ବା ନିୟନ୍ତ୍ରଣ କରିହିଁ ହେଉ ପରମପିତାଙ୍କ ଦିଗକୁ ଆଗେଇ ନ ଯାଇ ରହିପାରେ ନାହିଁ। ସେଥିପାଇଁ ଯାହା ଭିତରେ ଯେତେ ଭୁଲ-ତ୍ରୁଟି ଥାଉ ନା କାହିଁକି ସେ ଯଦି ନଛୋଡ଼ବନ୍ଧା ହୋଇ ଯଜନ, ଯାଜନ, ଇଷ୍ଟଭୃତି ନେଇ ଲାଗିରହେ, ସମୟକ୍ରମେ ତା'ର ପରିବର୍ତ୍ତନ ହେବାକୁ ବାଧ୍ୟ।

ଆ.ପ୍ର. ୧୩/୬.୮.୧୯୪୮

**ପ୍ର – ଇଷ୍ଟାନୁସରଣରେ ନୀତି ଅନୁସାରେ ବହୁଦିନ ଧରି ଯଜନ, ଯାଜନ, ଇଷ୍ଟଭୃତି କରେ ଅଥଚ ଚରିତ୍ରରେ କୌଣସି ପରିବର୍ତ୍ତନ ନାହିଁ – ଏପରି କାହିଁକି ହୁଏ ?**

**ଶ୍ରୀଶ୍ରୀଠାକୁର** – ହୁଏତ ତା'ର କରିବାରେ ତ୍ରୁଟି ଅଛି। ପୁଣି ହୁଏତ ତା'ର ବଦ୍‌ଅଭ୍ୟାସ ଗୁଡ଼ିକ ଏତେ ପ୍ରବଳ ଯେ, ସେ ଚେଷ୍ଟା କରି ମଧ୍ୟ ସେଗୁଡ଼ିକ ସହିତ ପାରି ଉଠେ ନାହିଁ। ତା' ଛଡ଼ା ବାହାରେ କୌଣସି ପରିବର୍ତ୍ତନ ଧରା ନ ପଡ଼ିଲେ ମଧ୍ୟ, ଦୋଷ କରିଲେହିଁ ତା' ଭିତରେ ହୁଏତ ଏପରି ଗୋଟିଏ ଯନ୍ତ୍ରଣା ହୁଏ, ଯାହା ଆଗରୁ ତା'ର ହେଉ ନଥିଲା। ତା'ର ମାନେ ସେ ସଚେତନ ହେଉଛି, ଏହାହିଁ ଗୋଟିଏ ଶୁଭଲକ୍ଷଣ। ଏହାଦ୍ୱାରା ବୁଝାଯାଏ ଯେ, ସିଏ ସଂଶୋଧନର ପଥରେ ପାଦ ଦେଇଛି। କେତେଜନ୍ମର ସଂସ୍କାର ଥାଏ, ହଠାତ୍ କ'ଣ ଯାଏ ? ତେବେ ଇଷ୍ଟଙ୍କ ପ୍ରତି ବୁକୁଫଟା ଟାଣ ହେଲେ କେଉଁ ଫାଙ୍କରେ ଯେ କ'ଣ ଘଟିଯାଏ ଟେର ପାଇ ହୁଏନାହିଁ। ପୁଣି ଯଜନ, ଯାଜନ, ଇଷ୍ଟଭୃତି କରୁ-କରୁ ମଣିଷର ଜନ୍ମଗତ ଗୁଣ ଗୁଡ଼ିକ ଖୁବ୍ ପୁଷ୍ଟ ହେବାକୁ ଲାଗେ, ସେଗୁଡ଼ିକ ଯେତେ ବିସ୍ତାର ଲାଭ କରେ ତାର ପରୋକ୍ଷ ଫଳସ୍ୱରୂପ ଅବଗୁଣ ଗୁଡ଼ିକର କିନ୍ତୁ ସେତେ ନିରସାନ ହେବାକୁ ଲାଗେ। ଶେଷକଥା, ମଣିଷ ତାର ଦୋଷଗୁଣ ସବୁ ଯଦି ଆତ୍ମକେନ୍ଦ୍ରିକତାର ଧନ୍ଦାରେ ନ ରଖି ବିଧି ଅନୁସାରେ ଇଷ୍ଟଙ୍କର ସେବାରେ



ବା ଇଷ୍ଟସ୍ୱାର୍ଥପ୍ରତିଷ୍ଠାରେ ଲଗାଇପାରେ, ତାହାହେଲେହିଁ ତ ବାଜିମାତ୍। ଏହାକୁହିଁ ତ କହନ୍ତି ଗୁଣାତୀତ ଅବସ୍ଥା ବା ମୁକ୍ତି। ଏହା ସତ୍ତା-ଭକ୍ତିର ସହଚର। ସେଥିପାଇଁ ବାହାରୁ ମଣିଷକୁ କ'ଣ ବା ବୁଝିବ, କ'ଣ ବା ବିଚାର କରିବ ? ପ୍ରବୃତ୍ତିର ତାଗିଦ୍‌ରେ ସେ ଯେପରି ଭୁଲ କରେ, ବଞ୍ଚିବାର ତାଗିଦ୍‌ରେ ସେ ପୁଣି ସେହିପରି ଭୁଲ ଏଡ଼ାଇବାକୁ ମଧ୍ୟ ଚେଷ୍ଟା କରେ। ସେଥିପାଇଁ କାହାରି ସମ୍ବନ୍ଧରେ ମୋର ହତାଶ ହେବାକୁ ଇଚ୍ଛା ହୁଏନାହିଁ। କାରଣ, ମୁଁ ଜାଣେ, ସବୁ ଅବସ୍ଥା ମଧ୍ୟରେ ମଣିଷର ଅମୃତର ପିପାସା ଅନ୍ତଃଶାୟୀ ହୋଇଥାଏହିଁ। ଆତ୍ମା ଯେ ଚିର ଚଳତ୍‌ଶୀଳ – ଅମର। ସେଥିପାଇଁ ମଣିଷର ବିକାରଟାକୁ ବଡ଼ କରି ନ ଧରି ତା'ର ଭିତରର ସଦ୍‌ଭାବ କ୍ରମାଗତ ଚେତାଇ ତୋଳିବାକୁ ହୁଏ – ଉତ୍ସାହ ଦେଇ ଓ ତାରିଫ କରି।

ଆ.ପ୍ର. ୧୩/୬.୮.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ତାଙ୍କୁ ପ୍ରୀତ କରିବାର କାମନା ଯେତେବେଳେ ଆମକୁ ପାଇ ବସେ ସେତେବେଳେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ପରମପିତାଙ୍କୁ ପ୍ରୀତ କରିବାର କାମନା ଯେତେବେଳେ ଆମମାନଙ୍କର ଦେହ ମନ ପ୍ରାଣ ବୁଦ୍ଧି ଓ ଚେତନାକୁ ଷୋହଳଅଣା ଅଧିକାର କରି ବସେ, ସେତେବେଳେ ଆତ୍ମସ୍ୱାର୍ଥୀ ବାସନା-କାମନା ଆମମାନଙ୍କୁ ଆଉ ଉତ୍ୟକ୍ତ ଓ ଅତିଷ୍ଠ କରି ଇଷ୍ଟସେବାରେ ବ୍ୟାଘାତ ଘଟାଇ ପାରେ ନାହିଁ। ଅସମ୍ଭବ ସେତେବେଳେ ସମ୍ଭବ ହୋଇଯାଏ। ସାଧାରଣ ମଣିଷ ତାଙ୍କର ଦୟାରେ ଅସାଧ୍ୟ ସାଧନ କରି ବସେ। ପୁରାପୁରି ତାଙ୍କର ହୋଇ ନ ପାରିଲେ ଟଣା ଓଟରାରେ ଜୀବନ ଶେଷ। ଲକ୍ଷେ ଚେଷ୍ଟା ସତ୍ତ୍ୱେ ମଧ୍ୟ ଶାନ୍ତିର ସନ୍ଧାନ ମିଳେ ନାହିଁ।

ଆ.ପ୍ର. ୧୩/୮.୮.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ପୁରାପୁରି ତାଙ୍କର ହୋଇଯିବା ବଡ଼ କଠିନ ନା କ'ଣ ?**

**ଶ୍ରୀଶ୍ରୀଠାକୁର** – ତା' କାହିଁକି ? ବରଂ ଏହିଟାହିଁ ସବୁଠାରୁ ସହଜ ଓ ସ୍ୱାଭାବିକ। ଯିଏ ନିଜର ପ୍ରକୃତ ମଙ୍ଗଳ ଚାହେଁ, ସେ ଏହା କରିବା ପାଇଁ ବାଧ୍ୟ। ମଣିଷ ଷଡ଼ରିପୁର କିଣା ଗୋଲାମ ହୋଇ ଜୀବନସାରା କଷ୍ଟ ସହିପାରେ। ଆଉ ଇଷ୍ଟଙ୍କର ଦାସାନୁଦାସ ହୋଇ ଜୀବନଟା ସାର୍ଥକ କରିବା ବେଳକୁ ଯେତିକି ଓଜର ଆପତ୍ତି ! ଭାବି ଦେଖିପାର କେଉଁଟା ଆମର କାମ୍ୟ ! ଅଶାନ୍ତି ? ନା ଶାନ୍ତି ? ଜ୍ୱାଳା-ଯନ୍ତ୍ରଣା ? ନା ଆନନ୍ଦ ?

ଆ.ପ୍ର. ୧୩/୮.୮.୧୯୪୮

**ପ୍ର. – ଇଷ୍ଟକର୍ମରେ କେଉଁ ଭାବରେ ସାଫଲ୍ୟ ଆସେ ?**

**ଶ୍ରୀଶ୍ରୀଠାକୁର** – ନିଜର କଥାବାର୍ତ୍ତା, ଚାଲିଚଳନ, ଆଚାର-ବ୍ୟବହାର ଓ ବ୍ୟକ୍ତିତ୍ୱ ଏପରି କରିତୋଳିବା ଦରକାର ଯାହାଦ୍ୱାରା ମଣିଷ ସ୍ୱତଃହିଁ ତୁମ ପ୍ରତି ଆକୃଷ୍ଟ ହୁଏ। ତୁମେ ଯେତେହିଁ ଇଷ୍ଟଙ୍କ ପ୍ରତି ଅଟୁଟ ଓ ଗଭୀର ଆକର୍ଷଣରେ ବିଧୃତ ଓ ବିମୁଗ୍ଧ ହୋଇ ରହିବ ସକ୍ରିୟ ଭାବରେ, ସେତେହିଁ ତୁମର magnetic power (ଚୁମ୍ବକୀୟ ଶକ୍ତି) ବଢ଼ିଯିବ। ମଣିଷ ତୁମ ପ୍ରତି ସେତେହିଁ ସଶ୍ରଦ୍ଧ ହୋଇଉଠିବ। ଇଷ୍ଟନିଶାରେ ସମାହିତ ରହି ଇଷ୍ଟକର୍ମ କରି ଚାଲିବା ହିଁ ସଫଳତାର ଚାବିକାଠି। ଏଥିରେ ଲୋକଙ୍କ ପାଖରୁ ସମ୍ମାନ ପାଇଲେ ବି ଅହଙ୍କାର ଆସେ ନାହିଁ, ପୁଣି ନିନ୍ଦା ଭର୍ତ୍ସନାରେ ମଧ୍ୟ ମନ କମ୍ ଟଳେ। ଯିଏ ଇଷ୍ଟଙ୍କୁ ମନଟା ସମର୍ପଣ କରିଦିଏ, ଦୁନିଆରେ ସେ ହିଁ ଚାଲାକ ଲୋକ। ସେ ସୁଖ-ଦୁଃଖର ମଧ୍ୟରେ ରହିଲେ ବି, ସେଗୁଡ଼ିକ ତା'ର ମନକୁ ଖୁବ୍ ଗୋଟିଏ ଅଭିଭୂତ କରିପାରେ ନାହିଁ ବା କାବୁ କରିପାରେ ନାହିଁ।

ଆ.ପ୍ର. ୧୩/୧୦.୮.୧୯୪୮

**ପ୍ର. – ଇଷ୍ଟଙ୍କର ଯାଜନ କେତେବେଳେ ଅନ୍ୟ ପାଖରେ ଜବରଦସ୍ତି ବୋଲି ମନେ ହେବ ନାହିଁ?**

**ଶ୍ରୀଶ୍ରୀଠାକୁର** – ପ୍ରତ୍ୟେକଙ୍କର interest-ର (ଅନ୍ତରାସର) ଉପରେ ଛିଡ଼ା ହୋଇ ଆଳାପ ଆରମ୍ଭ କରି ଯଦି ପ୍ରସଙ୍ଗତଃ ଇଷ୍ଟଙ୍କ ଠାରେ ଆସି ଉପନୀତ ହୋଇପାର, ତେବେ ମଣିଷ normally (ସ୍ୱାଭାବିକ) ଭାବରେ ତୁମ ପ୍ରତି ଓ ତୁମର ଇଷ୍ଟଙ୍କ ପ୍ରତି interested (ଅନ୍ତରାସୀ) ହେବ। ତୁମର ଯାଜନ ଜବରଦସ୍ତି ଭଳି ତା ପାଖରେ ମନେ ହେବ ନାହିଁ। ସେ ତୁମକୁ ଅନ୍ତରଙ୍ଗ ନିଜର ଲୋକ ବୋଲି ମନେ କରିବ। ନାମମୟ ହୋଇ ରହିବ, ସେତେବେଳେ ପରମପିତା ତୁମର ମୁହଁ ଦେଇ କଥା କହିବେ। ସେହି କଥାରେ ବକ୍ତା ଓ ଶ୍ରୋତା ଉଭୟଙ୍କରହିଁ ସତ୍ତା ତୁଷ୍ଟପୁଷ୍ଟ ହେବ। ଯେଉଁଠାରେ ଯେତେବେଳେ ଯାହାକୁ ଯେପରି କହିବାର କଥା, ଆପେ-ଆପେ ସେହିପରି ସେତେ ଠିକ୍ କୁହାହେବ।

ଆ.ପ୍ର. ୧୩/୧୦.୮.୧୯୪୮

**ପ୍ର. – ଇଷ୍ଟାନୁସରଣର କିପରି ଚଳନ ଅନ୍ୟକୁ କପଟ ଧର୍ମାଚାରୀ କରି ତୋଳିବ?**

**ଶ୍ରୀଶ୍ରୀଠାକୁର** – ତୁମମାନଙ୍କ ମଧ୍ୟରେ ଯଦି ସକ୍ରିୟ ସେବା ଓ ସହାନୁଭୂତି ମୁଣ୍ଡ ନ ଟେକେ ଏବଂ କେବଳ ତତ୍ତ୍ୱ କଥାର ଫୁଲଝରି ଉଡ଼ାଅ, ତେବେ ମଣିଷ ତୁମ ସଂସ୍ପର୍ଶରେ ଆସି ତୁମମାନଙ୍କର ସ୍ୱଭାବହିଁ ଆୟତ୍ତ କରିବ, ଅର୍ଥାତ୍ ସେମାନେ କରିବେ ନାହିଁ, କେବଳ କହିବେ ଅର୍ଥାତ୍ କପଟ ହେବେ। ଅଥଚ ସେମାନେ ଭାବିବେ ଯେ ସେମାନେ ଖୁବ୍ ଧର୍ମ କରୁଛନ୍ତି। ଏହିପରି ଧର୍ମରେ ସେମାନଙ୍କର ମଧ୍ୟ କିଛି ହେବନାହିଁ, ଅନ୍ୟର ମଧ୍ୟ ଦୁଃଖ ଘୁଞ୍ଚିବ ନାହିଁ। ...ଧର୍ମ ମାନେହିଁ ପୁରାପୁରି ଇଷ୍ଟଙ୍କର ହୋଇଯିବା, ଇଷ୍ଟଙ୍କ ପାଇଁହିଁ ଯାହା-କିଛି କରବା।

ଆ.ପ୍ର. ୧୩/୧୨.୮.୧୯୪୮



**ପ୍ର. – ଇଷ୍ଟାନୁସରଣର ପଥରେ ସବୁ ସମୟରେ ତାଙ୍କ ଠାରେ ଦୃଷ୍ଟି ନିବଦ୍ଧ ରଖିବାର ଉପାୟ କ'ଣ?**

**ଶ୍ରୀଶ୍ରୀଠାକୁର** – ଜାଣିବେ, ଇଷ୍ଟହିଁ ଯାହା-କିଛି ହୋଇ ଅଛନ୍ତି। ସେ ହିଁ ତୁମର ପ୍ରାଣ-ପୁରୁଷ। ନାମ ଓ ନାମୀଙ୍କୁ ନେଇ ରହିବ, ପ୍ରବୃତ୍ତି ଚାହିଦାକୁ ନିର୍ମମ ଭାବରେ ଉପେକ୍ଷା କରି, ଶରୀର-ମନକୁ ଇଷ୍ଟଙ୍କର ଇଚ୍ଛାପୂରଣରେ ଓ ତାଙ୍କର ଇପ୍ସିତ ଚଳନରେ ବାସ୍ତବ ଭାବରେ ବ୍ୟାପୃତ ରଖିବ। ଏହି ହେଲା ମୋକ୍ଷମ କୌଶଳ। କରି ଦେଖ, ଏହାଦ୍ୱାରା ଶତ ଦୁଃଖର ମଧ୍ୟରେ ମହାଆନନ୍ଦରେ ରହିବ। ତୁମର ପ୍ରକୃତ ସ୍ୱାର୍ଥ କ'ଣ, ତାହା ତୁମେମାନେ ନ ଜାଣିଲେ ମଧ୍ୟ ପରମ ପିତାଙ୍କଦୟାରୁ ଏହି ବେକୁବ ବ୍ରାହ୍ମଣ ଭଲଭାବରେହିଁ ଜାଣେ। ସେଥିପାଇଁ ତାଙ୍କର କଥା ବେକୁବ ପରି ମାନି ଚାଲିବାହିଁ ବୁଦ୍ଧିମାନର କାମ। ଆ.ପ୍ର. ୧୩/୧୨.୮.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ଇଷ୍ଟଙ୍କର ଦାୟଟା ଯଦି ନିଜର ଦାୟ ନ ହୁଏ ତେବେ କ'ଣ ହୁଏ? କରଣୀୟ କ'ଣ?**

**ଶ୍ରୀଶ୍ରୀଠାକୁର** – ମୋର ଦାୟଟା ଯଦି ଆପଣଙ୍କର ଦାୟ ନ ହୁଏ ତା'ହେଲେ ଆପଣମାନଙ୍କ ସ୍ୱାର୍ଥ ଓ ପରମାର୍ଥ ଦୁଇଟାହିଁ କିନ୍ତୁ ନଷ୍ଟ ହେଉଥାଏ। ଯଦି ଭଲ ଚାହାଁନ୍ତି ତାହାହେଲେ ବ୍ୟକ୍ତିଗତ ସବୁପ୍ରକାର ଖିଆଲ ଓ ସ୍ୱାର୍ଥାନ୍ଧତା ଛାଡ଼ି ଇଷ୍ଟସର୍ବସ୍ୱ ହୋଇ ଉଠନ୍ତୁ। ଏହାହିଁ ହେଲା ଶକ୍ତି, ସାମର୍ଥ୍ୟ ଓ ସାଫଲ୍ୟର ଏକମାତ୍ର ଚାବିକାଠି। ...ମୋ ଆଡ଼କୁ ଯଦି ଦୃଷ୍ଟିଟା ଥାଏ, ମୋର ସୁଖ ଓ ସ୍ୱସ୍ତି ଯଦି ଆପଣଙ୍କର ଏକମାତ୍ର କାମ୍ୟ ହୁଏ, ତାହାହେଲେ ସେସବୁ ଜଞ୍ଜାଳ ଘୁଞ୍ଚିଯିବ। ମୋତେ ଖୁସି କରିବା ପାଇଁ ତ ଏଠାକୁ ଆସିଛନ୍ତି। ସେହିଟା ଯଦି ଭୁଲିଯାଆନ୍ତି ଏବଂ ମୋ ପାଖରେ ରହି ମଧ୍ୟ ଯଦି ନିଜର ଖିଆଲି ଚଳଣରେ ଚଳନ୍ତି, ତା'ହେଲେ ମୁଁ ଆପଣଙ୍କର ଭଲ କରିବାକୁ ଚାହିଁଲେ ମଧ୍ୟ ଆପଣ ମୋତେ ସୁଯୋଗ ନ ଦେବା କାରଣରୁ ମୁଁ ନିରୁପାୟ ହୋଇ ପଡ଼ିବି। ଆମର ଏଠାରେ ବହୁତ ମଣିଷ ଅଛନ୍ତି କିନ୍ତୁ ସେମାନଙ୍କ ମଧ୍ୟରୁ ପୂରାପୂରି ମୋ ହାତକୁ ଆସିଛନ୍ତି, ଏପରି ମଣିଷ କମ୍‌ହିଁ ଦେଖିବାକୁ ପାଏ। ସେଥିପାଇଁ ଆପଣମାନଙ୍କର, ଦେଶର, ଦଶର, ଦୁନିଆ ପାଇଁ ପରମପିତା ମୋତେ ଦେଇ ଯାହା କରାଇବାକୁ ଚାହାଁନ୍ତି, ତାର ଭଗ୍ନାଂଶ ମଧ୍ୟ ବାସ୍ତବରେ ରୂପାୟିତ କରିବା ସମ୍ଭବ ହେଉନାହିଁ। ଅଥଚ ଅନେକେହିଁ ଭାବନ୍ତି ସେମାନେ ଭକ୍ତ ଏବଂ ସେମାନେ ମୋ ପାଇଁ ଜୀବନ ଉତ୍ସର୍ଗ କରିଛନ୍ତି।

ଆ:ପ୍ର. ୧୪/୧୪.୮.୧୯୪୮

**ପ୍ର. – ଇଷ୍ଟାନୁସରଣର ଲକ୍ଷ୍ୟରେ ନିଜର ପ୍ରୟୋଜନର କଥା ଅନ୍ୟ ପାଖରେ କେଉଁ ଭାବରେ କହିବାକୁ ହେବ?**

**ଶ୍ରୀଶ୍ରୀଠାକୁର** – କହିବାକୁ ହୁଏ – ମୋର ଏହା ପ୍ରୟୋଜନ, ଯଦି ତାର ଗୋଟିଏ

ବ୍ୟବସ୍ଥା କରିଦିଅ, କଷ୍ଟ ବା ଅସୁବିଧା କରି କିଛି କରିବା ଦରକାର ନାହିଁ। ପରମପିତାଙ୍କ ଦୟାରେ ଏବଂ ତୁମମାନଙ୍କ ଆଶୀର୍ବାଦରେ ଗୋଟିଏ ବ୍ୟବସ୍ଥା ଠିକ୍‌ହିଁ ହୋଇଯିବ। ଚାହିଁବାକୁ ହୁଏ ସହଜ ଭାବରେ, ମନ ସଙ୍କୋଚ କରି ଚାହିଁଲେ ହୁଏନାହିଁ। ଜାଣିବ, ଦେନେ ୱାଲା ପରମପିତା ଏବଂ ସେ ହିଁ ଦିଅନ୍ତି ମଣିଷ ମାଧ୍ୟମରେ। ଯାହା ଠାରୁ କିଛି ପାଇଲେ ତା'ର ଶତଗୁଣ ତାକୁ ଦେବାର ଧନ୍ଦା ନେଇ ଚାଲିବ। ଏହାଦ୍ୱାରା ତୁମର ଯୋଗ୍ୟତା ବଢ଼ିଯିବ। Beggar (ଭିକ୍ଷୁକ) ବା pauper (ଦୈନ୍ୟ ବ୍ୟାଧିଗ୍ରସ୍ତ) କେବେହେଲେ ହେବନାହିଁ। ତୁମେମାନେ ରାଜାର ପୁଅ। ରାଜା ପରି ହୃଦୟ ନେଇ ଚାଲିବ। ହୀନସ୍ୱାର୍ଥପର ହେଲେ ଅମଣିଷ ହୋଇଯିବ। ଶତଶତ ଗୁଣ ଥିଲେ ମଧ୍ୟ ତୁମମାନଙ୍କର ବ୍ୟକ୍ତିତ୍ୱ କୌଣସି ଦିନ ଫୁଟି ଉଠିବ ନାହିଁ। ଭୟ ଓ ସଙ୍କୋଚ ତୁମକୁ ପାଇ ବସିବ। ଲୋକଙ୍କର ପ୍ରକୃତ ଶ୍ରଦ୍ଧା କେବେ ବି ଆକର୍ଷଣ କରିପାରିବ ନାହିଁ।

ଆ.ପ୍ର. ୧୪/୧୪.୮.୧୯୪୮

**ପ୍ର. – ଇଷ୍ଟାନୁସରଣରେ ଶରୀରର ସହଯୋଗିତା ମଧ୍ୟ ତ ପ୍ରୟୋଜନ ? ଶରୀର ବିକଳ ହେଲେ ମନ ମଧ୍ୟ ବିକଳ ହୋଇପଡ଼େ। କେଉଁ ଭାବରେ ଚଳିଲେ ଶରୀର ଓ ମନ ଭଲ ରହେ ?**

**ଶ୍ରୀଶ୍ରୀଠାକୁର** – ଶରୀରଟାର ଯତ୍ନ ନିଅ, ଏହିଟିହିଁ ଆମ୍ଭମାନଙ୍କର ପ୍ରଥମ ଠାକୁର ଘର। ଏହାକୁ ସୁସ୍ଥ, ସବଳ, ସୁନ୍ଦର ଓ ପରିଚ୍ଛନ୍ନ ରଖିବାକୁ ହୁଏ। ସଦାଚାର ଠିକ୍ ଭାବରେ ପାଳନ କରିବା ଦରକାର। ଖାଇବା-ଦାଇବା ଖୁବ୍ ହିସାବ କରି କରିବାକୁ ହୁଏ। ନାମ ସବୁ ସମୟରେ ଚଳାଇବାକୁ ହୁଏ ଆଉ ଶରୀରରେ ଶକ୍ତି ପାଇଲେ ଝଡ଼ ପରି କାର୍ଯ୍ୟ କରିବାକୁ ହୁଏ। ମନ ଖରାପ କରି କ'ଣ ହେବ ? ...ଯେପରି କରି ହେଉ ମନର ସ୍ଫୂର୍ତ୍ତି ସମୀଚୀନ ଭାବରେ ବଜାୟ ରଖିବା ଦରକାର। ଭଲ-ଭଲ ବହି ପଢ଼ିବାକୁ ହୁଏ। ଘରେ ବସି ମଧ୍ୟ ଘରର ସମସ୍ତଙ୍କ ସହ ଇଷ୍ଟ-ପ୍ରସଙ୍ଗ କରିବାକୁ ହୁଏ। ସବୁ ସମୟରେ ଗୋଟିଏ ଖିଆଲ ରଖି ଚାଲିବ ଯେପରି ପରିବେଶକୁ ଆନନ୍ଦରେ ମତାଇ ତୋଳିପାର। ଏହିପରି ଗୋଟିଏ ସକ୍ରିୟ ନିଶା ରହିଲେ ଦେଖିବ ମନ କିଛି ପ୍ରକାରରେ ବି ଅବସାଦଗ୍ରସ୍ତ ହେବାକୁ ସୁଯୋଗ ପାଇବ ନାହିଁ। ତୁମର ଶରୀର-ମନ ତ ତୁମେ ପରମପିତାଙ୍କୁ ଦେଇ ଦେଇଛ। ଏଗୁଡ଼ିକର ବ୍ୟବହାର ଏପରିଭାବରେ କରିବାକୁ ହେବ ଯାହାଦ୍ୱାରା ସେ ନନ୍ଦିତ ହୁଅନ୍ତି। ତୁମେ ଯଦି ନିଜକୁ ଦୁଃଖ-ପୀଡ଼ିତ ହୋଇ ରହିବାକୁ ଦିଅ ତାହାହେଲେ ତୁମର ସତ୍ତାରୂପୀ ପରମପିତାଙ୍କୁ ଯେ କଷ୍ଟ ଦେବା ହୁଏ। ତାହା କରିବା କ'ଣ ଠିକ୍ ?

ଆ.ପ୍ର. ୧୪/୧୫.୮.୧୯୪୮

**ପ୍ର. – ଇଷ୍ଟାନୁସରଣର ନାମରେ ମଣିଷ ଅନେକ ସମୟ ପ୍ରବୃତ୍ତିର ଝୁଙ୍କରେ ଚାଲିଲେ ବି ମନେ କରେ ଇଷ୍ଟାନୁସରଣର ପଥରେ ଚାଲିଛି, ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ପଥରେହିଁ ଚାଲିଛି**



**ଏବଂ ସେହିଭାବରେ ହିଁ ନିଜର ଭୁଲ ଚଳନର ସମର୍ଥନ କରେ। ଏହି ସବୁ କ୍ଷେତ୍ରରେ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ଯିଏ ଇଷ୍ଟାନୁରାଗୀ ସିଏ କେତେବେଳେ ବି ନିଜର ଭୁଲ ସମର୍ଥନ କରେ ନାହିଁ। ଭୁଲ କରିବାଟା ସେତେ ଦୋଷାବହ ନୁହେଁ ଯେତେ ଦୋଷ ଭୁଲ ସମର୍ଥନ କରିବାଟା। ଭୁଲକୁ ଯେଉଁମାନେ ନିଜ ତରଫରୁ ଭୁଲ ବୋଲି ବୁଝିପାରନ୍ତି ନାହିଁ ସେମାନଙ୍କର ଭୁଲ ସୁଧାରିବା କଠିନ ବ୍ୟାପାର। କିନ୍ତୁ କେହି ଧରାଇ ଦେଲେ ସେ ଯଦି ତାହା ବୁଝିପାରେ ଓ ସଂଶୋଧନ ତତ୍ପର ହୋଇଉଠେ ତାହାହେଲେ ମଧ୍ୟ ଅନେକ ବଞ୍ଚିଯାଏ। ଅନେକେ ଅଛନ୍ତି ଯେଉଁମାନେ ଜ୍ଞାତସାରରେହିଁ ଭୁଲ କରନ୍ତି ଏବଂ ଯୁକ୍ତି ବିଚାର ସହକାରେ ଲୋକଙ୍କୁ ବୁଝାଇବାକୁ ଚେଷ୍ଟା କରନ୍ତି ଯେ ସେମାନଙ୍କର ଚଳଣୀଟି ଠିକ୍, ସେମାନେ କିନ୍ତୁ କପଟ। ସେମାନଙ୍କଠାରୁ ଦୂରରେ ରହିବାହିଁ ଭଲ।

ଆ.ପ୍ର. ୧୪/୧୫.୮.୧୯୪୮

**ପ୍ର. – ଇଷ୍ଟାନୁସରଣରେ କେବଳ ହେବା ବା କୈବଲ୍ୟ ଲାଭ ମଣିଷର କେତେବେଳେ ହୁଏ ?**

**ଶ୍ରୀଶ୍ରୀଠାକୁର** – ଯୁଗ-ପୁରୁଷୋତ୍ତମଙ୍କ ଦୀକ୍ଷାରେ ଦୀକ୍ଷିତ ହୋଇ ଯଜନ, ଯାଜନ, ଇଷ୍ଟଭୃତି ଓ ସଦାଚାର ପାଳନ କରି ଚାଲିବାକୁ ହେବ। ତାଙ୍କର ସେବା ଓ ତାଙ୍କର ଇଚ୍ଛା ପୂରଣକୁ ଜୀବନରେ ମୁଖ୍ୟ କରି ଚାଲିବାକୁ ହେବ। ଜୀବନଟା ଠାକୁରଙ୍କର ସେବାର ଉପକରଣ ବା ଉପାଦାନ ଏବଂ ଠାକୁରଙ୍କ ପାଇଁ ମୁଁ ଏହି ବୋଧ ପ୍ରବଳ ନ ହେଲେ, ଆତ୍ମକେନ୍ଦ୍ରିକ ଭାବ ବଜାୟ ରଖି ତାହାର ପୁଷ୍ଟି ପାଇଁ ଯେ ଯେତେହିଁ ସାଧନ-ଭଜନ କରୁ ନା କାହିଁକି, ସେଥିରେ ଅହଙ୍କାର ଓ ହୀନ କାମନା-ବାସନା କାବୁ ହୁଏନାହିଁ। ସେତେବେଳେ ତପୋବଳ ଅବାଞ୍ଛିତ ସ୍ୱାର୍ଥପୂଜାରେ ନିୟୋଜିତ ହୋଇ ଅନର୍ଥ ସୃଷ୍ଟି କରିପାରେ। ଅବଶ୍ୟ ନାମର ଏପରି ଗୁଣ ଅଛି ଯେ ଠିକ୍ ଭାବରେ କରିବାକୁ ଲାଗିଲେ ନାମ ଓ ନାମୀଙ୍କ ଠାରେ ବିଶୁଦ୍ଧ ଅନୁରାଗ ଧୀରେ-ଧୀରେ ଗଜାଇ ଉଠେ। ସେତେବେଳେ ସେ ଓ ତତ୍‌ପରିପୋଷଣୀ ଯାହା, ତା' ଛଡ଼ା ଆଉ ସବୁକିଛିକୁ ଅଳ୍ପ ବହୁତ ସ୍ୱାଦହୀନ ଲାଗେ। ଆଉ ଗୋଟିଏ କଥା ବିଶେଷ ଭାବରେ ମନେରଖିବା ଦରକାର। ସେହିଟା ହେଉଛି ଇଷ୍ଟାନୁରାଗର ପରିପନ୍ଥୀ ଦୋଷଦୁର୍ବଳତା ବା ଝୁଙ୍କକୁ କେବେ ବି ପ୍ରଶ୍ରୟ ଦେବା ଉଚିତ ନୁହେଁ। ତପସ୍ୟା ବି କରୁଛି। ପୁଣି ତା'ର ବିରୁଦ୍ଧ ଦୁର୍ବଳତାଗୁଡ଼ିକୁ ଖାତିର କରି ପୋଷି ରଖୁଛି, ଏହାଦ୍ୱାରା କିନ୍ତୁ ଏହି ଛିଦ୍ର ଦେଇ ଆମ୍ଭମାନଙ୍କର ସାତ୍ୱତ ଶକ୍ତି ଖର୍ଚ୍ଚ ହୋଇ ଯିବାକୁ ଲାଗେ। ଇଷ୍ଟ ଓ ପ୍ରେମୀ ଭକ୍ତମାନଙ୍କର ସଙ୍ଗ ଖୁବ୍ କରିବାକୁ ହୁଏ ଆଉ ତାଙ୍କର ଦାୟିତ୍ୱ ନେଇ ସକ୍ରିୟ ଭାବରେ ବ୍ୟାପୃତ ରହିବାକୁ ହୁଏ। ଏହିସବୁ ଯାହା କହିଲି ଏହି ଗୁଡ଼ିକ ଏକ ସଙ୍ଗରେ କରିଚାଲିଲେ ଇଷ୍ଟହିଁ ଆମ୍ଭମାନଙ୍କ ପାଖରେ ଯଥାସର୍ବସ୍ୱ

ହୋଇଉଠନ୍ତି। ଏହାକୁହିଁ କହନ୍ତି କେବଳ ହେବା ବା କୈବଲ୍ୟ ଲାଭ।

ଆ.ପ୍ର. ୧୪/୧୭.୮.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ କେତେବେଳେ ଆତ୍ମୋପଲବ୍ଧି ହୁଏ ?**

**ଶ୍ରୀଶ୍ରୀଠାକୁର** – କରିବାରେ, କହିବାରେ ଓ ଭାବିବାରେ ତାଙ୍କଠାରେ ସମାହିତ ରହି ନିଜକୁ ଭୁଲିଯାଇ ବିଲକୁଲ୍ ତାଙ୍କର ହୋଇଯାଇ ଅର୍ଥାତ୍ ତାଙ୍କର ଉପଭୋଗ୍ୟ ହୋଇ ଜୀବନର ମାଧୁର୍ଯ୍ୟ ଆସ୍ୱାଦନ କରିବାର ମଧ୍ୟରେହିଁ ଲୁଚି ଅଛି ଆତ୍ମୋପଲବ୍ଧି।

ଆ.ପ୍ର. ୧୪/୧୭.୮.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ କେତେବେଳେ ମଣିଷର ରୂପାନ୍ତର ଘଟେ ?**

**ଶ୍ରୀଶ୍ରୀଠାକୁର** – ମୂଳକଥା ହେଲା ସଚ୍ଚା ଅନୁରାଗ, ତାଙ୍କ ପ୍ରତି ଯାହାର ଏତେଟିକିଏ ପ୍ରକୃତରେ ଟାଣ ଗଜାଏ,ସେ ଭୁଲତ୍ରୁଟି ପୋଷି ରଖିବାକୁ ଚାହେଁ ନାହିଁ। ଭଲପାଇବାରେ ଚରିତ୍ରରେ ରଙ୍ଗ ଧରେ ଏବଂ କୃତ୍ରିମତା ଓ କପଟତା କମିଯାଏ। ସଦ୍‌ଗୁରୁଙ୍କର ସାନଧ୍ୟରେ ଅନେକଙ୍କର ଚାପି ରହିଥିବା ଦୋଷ ବାହାରିଆସେ। ସେଥିରେ କିନ୍ତୁ ଭୟର କାରଣ ନାହିଁ। ବିକୃତି ଯେତେ କଟିଯାଏ, ସେତେହିଁ ମଙ୍ଗଳ। ନିଜ ଭିତରେ ଭଲମନ୍ଦ ଯାହା ବି ଥାଉ ବା ନ ଥାଉ, ତା'ନେଇ ବେଶି ମୁଣ୍ଡ ନ ଖେଳାଇ, ସବୁସମୟ ତାଙ୍କୁ ଖୁସି କରିବାର ଧନ୍ଦା ନେଇ ଚାଲିବାକୁ ହୁଏ। ପ୍ରୀତି ଓ ସେବା ତାଙ୍କଠାରେ କେନ୍ଦ୍ରାୟିତ ହେଲେ, ଇଷ୍ଟ ହିଁ ଜୀବନରେ ପ୍ରଧାନ ହୋଇ ଉଠିଲେ ସେଥିରେ ମଙ୍ଗଳ ଅବଧାରିତ। ଯେନ ତେନ ପ୍ରକାରେଣ ଏହି ଟିକକ ବାସ୍ତବରେ କରିପାରିଲେ ହୁଏ। ନିଜେ ମଧ୍ୟ ସେହି ନିଶାରେ ମସ୍‌ଗୁଲ ହୋଇ ଚାଲିବାକୁ ହୁଏ – ଆଉ ଅପରକୁ ମଧ୍ୟ ସକ୍ରିୟ ଭାବରେ ଏହି ନିଶାରେ ମତାଇ ତୋଳିବାକୁ ହୁଏ।

ଆ.ପ୍ର. ୧୪/୧୮.୮.୧୯୪୮

**ପ୍ର. – ଇଷ୍ଟାନୁସରଣ ସହିତ ତାଙ୍କୁ କେତେବେଳେ ବହୁ ଲୋକଙ୍କ ମଧ୍ୟରେ ସଞ୍ଚାରିତ କରାଯାଏ ?**

**ଶ୍ରୀଶ୍ରୀଠାକୁର** – ଆତ୍ମସଂରକ୍ଷଣର ଆକୂତିରୁ ଯେପରି ମଣିଷ ଗୁଣିତ ହୁଏ, ଏହି ରକମ ଆକୂତି ରହିବା ଦରକାର। ଇଷ୍ଟ ଯେପରି ତୁମର ସତ୍ତା। ତାଙ୍କୁ ବହୁର ମଧ୍ୟରେ ସଞ୍ଚାରିତ କରିଦେଇ ନ ପାରିଲେ, ତୁମର ନିଜର ସତ୍ତାହିଁ ଯେପରି ସଙ୍କୁଚିତ ହୋଇ ପଡ଼େ ଏହିପରି ଏକ ବୋଧ ରହିବା ଦରକାର। ଇଷ୍ଟଙ୍କୁ ସଞ୍ଚାରିତ କରିବାର ଗୋଟିଏ ତୀବ୍ର କ୍ଷୁଧା ରହିବା ଦରକାର। ସେହି କ୍ଷୁଧା ରହିଲେ ମଣିଷ ଚୁପ୍ କରି ବସି ରହିପାରେ ନାହିଁ।

ଆ.ପ୍ର. ୧୪/୧୯.୮.୧୯୪୮



**ପ୍ର. – ଇଷ୍ଟାନୁସରଣରେ ଅନ୍ୟକୁ ଉତ୍ସାହିତ କରିବାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ନିଜେ ସାଧନଶୀଳ ହେଲେ ନିଜ ମଧ୍ୟରୁ, ସେହି ରକମଟା ଫୁଟି ଉଠିବ। ଯେଉଁଠାକୁ ଯିବେ, ଚାଲି-ଚଳନ, କଥାବାର୍ତ୍ତା, କାମଦାମ ସେହି ରକମ ହେବାକୁ ଲାଗିବ ଏବଂ ତାଦ୍ୱାରା ଅଜ୍ଞାତସାରରେ receptive (ଗ୍ରହଣଶୀଳ) ଲୋକ ଯେଉଁମାନେ, ସେମାନେ influenced (ପ୍ରଭାବିତ) ହେବାକୁ ଲାଗିବେ। ଲଗାତର ଲାଗି ରହିବାକୁ ହୁଏ। ଢିଲା ଦେଲେ ଖସିଯିବାକୁ ହୁଏ। କେତେଟା ପାହାଚ ଖସିଗଲେ ଉଠିବା ବଡ଼ ମୁସ୍କିଲ।

ଆ.ପ୍ର. ୧୪/୨୦.୮.୧୯୪୮

**ପ୍ର. – ଇଷ୍ଟନିଶା କମି ଗଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର** – ସାଧନ ଜଗତରେ ଇଷ୍ଟନିଶା କମି ଗଲେ ପରିବେଶକୁ ଇଷ୍ଟଙ୍କ ଠାରେ ଗ୍ରଥିତ ଓ ସଂହତ କରି ତୋଳିବାର ଆଗ୍ରହ ମଧ୍ୟ କମିଯାଏ। ଏହି ସଂହତି-ସନ୍ଦୀପୀ ଆଗ୍ରହ ଯେତେ କମିଯାଏ, ବାସ୍ତବ କର୍ମୋତ୍ସାହ ମଧ୍ୟ ସେତେ କମିଯାଏ। ଏହିପରି କରୁ-କରୁ ଆସେ ଏକ ଆତ୍ମକେନ୍ଦ୍ରିକ, ଆଜଗବି ଅଳସ ଇଚ୍ଛା ବିଳାସ, ଯାହା ମଣିଷକୁ ନିଥର କରି ତୋଳେ। ତା'ପରେହିଁ ଦେଖାଦିଏ, ଏକ pessimistic attitude (ନୈରାଶ୍ୟ ମୂଳକ ମନୋଭାବ)।

ଆ.ପ୍ର. ୧୪/୨୦.୮.୧୯୪୮

**ପ୍ର. – ଇଷ୍ଟାନୁସରଣ ପଥରେ କାହାରି ଯଦି ତାଙ୍କୁ ଅନୁକରଣ କରିଚାଲିବାର ବୁଦ୍ଧି ମଧ୍ୟ ହୁଏ – ସେହିଟା କ'ଣ ଭଲ ?**

**ଶ୍ରୀଶ୍ରୀଠାକୁର** – ଅନୁକରଣ ମଧ୍ୟରେ ଅନୁସରଣ ଭାବ ଯେମିତି ଅଛି, ସେମିତି ଏକାପରି ଜଣକର ଭାବଭଙ୍ଗୀ ସବୁକିଛି ନକଲ କରିବାର ଭାବ ମଧ୍ୟ ଅଛି, ସେଥିରେ ସବୁସମୟ ଠିକ୍ ହୁଏ ନାହିଁ। ଶ୍ରଦ୍ଧାର ସହିତ ନିଜର ବୈଶିଷ୍ଟ୍ୟ ଅନୁଯାୟୀ ଉପଯୁକ୍ତ କାହାକୁ ଅନୁସରଣ କରିବା ମଧ୍ୟରେ କୌଣସି ବିପଦ ନାହିଁ। ତାହାଦ୍ୱାରା ଧୀରେ-ଧୀରେ ଭିତରର ପରିବର୍ତ୍ତନ ଆସେ। କିନ୍ତୁ inferiority (ହୀନମନ୍ୟତାର) କାରଣରୁ ଅନୁକରଣ କରିପାରେ, ଯେପରି ଶୁଣିଛି ଶିଶୁପାଳ କୃଷ୍ଣ ଠାକୁରଙ୍କୁ କରୁଥିଲେ, ଏହିପରି ହେଲେ ଓଲଟା ଫଳ ହୁଏ। ...ଅନୁସରଣରୁ ପ୍ରତ୍ୟେକଙ୍କର ପ୍ରକୃତି ଅନୁଯାୟୀ pose, attitude ଓ expression (ଭାବ, ଭଙ୍ଗୀ ଓ ଅଭିବ୍ୟକ୍ତି) ଯାହା ଉଦ୍ଭିନ୍ନ ହୁଏ, ତାହା ତଦନୁପାତିକ ଉନ୍ନତିର ପରିଚାୟକ, ତାହା ବୈଶିଷ୍ଟ୍ୟରହିଁ ଉତ୍କର୍ଷ। ସେଥିପାଇଁ ଅଛି ''ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ''। ହୀନମନ୍ୟତା-ପ୍ରସୂତ ଯାନ୍ତ୍ରିକ ଅନୁକରଣରେ ବୈଶିଷ୍ଟ୍ୟ ଉଦ୍ଭିନ୍ନ ହୁଏନାହିଁ।

ଆ.ପ୍ର. ୧୪/୩.୯.୧୯୪୮

**ପ୍ର. – ଇଷ୍ଟପ୍ରାପ୍ତିର କଥା ଯେ କୁହାଯାଏ ତାହା କ'ଣ ?**

**ଶ୍ରୀଶ୍ରୀଠାକୁର –** ପ୍ରାପ୍ତି ମାନେ ଆପ୍ତି। ତାଙ୍କର ହୋଇଯିବା। ତାଙ୍କୁ ନିଜର କରିନେବା, ତାଙ୍କୁ ସେବା କରିବା, ସୁଖୀ କରିବା, ତାଙ୍କର ନୀତି ବିଧି, ଚଳନ-ଚରିତ୍ର, ନିଜର ବୈଶିଷ୍ଟ୍ୟ-ଅନୁଯାୟୀ ଆୟତ୍ତ କରିବା, ଆଉ ଏଥିରେହିଁ ଉତ୍କର୍ଷ ହୁଏ। ଆ.ପ୍ର. ୧୪/୧୦.୯.୧୯୪୮

**ପ୍ର. – ଇଷ୍ଟଙ୍କଠାରେ ଟାଣ ହେଲେହିଁ ମଣିଷ କିପରି ହୁଏ ?**

**ଶ୍ରୀଶ୍ରୀ ଠାକୁର –** ଇଷ୍ଟଙ୍କଠାରେ ଟାଣ ହେଲେହିଁ, ତାଙ୍କଠାରେ ଲାଗି ରହିବାକୁ ଇଚ୍ଛା କରେ, ଯୁକ୍ତ ରହିବାକୁ ଇଚ୍ଛା କରେ। ତାର ଅନ୍ତରାୟ ଯାହା ତାକୁ ମଣିଷ କିଛି ପ୍ରକାରେ ବି ପ୍ରଶ୍ରୟ ଦିଏନା। ଭକ୍ତ ସର୍ବଦା ତାଙ୍କର ପରିପାଳନ, ପରିପୋଷଣ ଓ ପରିପୂରଣରେ ବ୍ୟାପୃତ ରହି ନ ପାରିଲେ ଅସ୍ୱସ୍ତି ବୋଧ କରେ। ଆଉ ଏଗୁଡ଼ିକ ସେ କରେ କାୟମନୋବାକ୍ୟରେ। ସତୀ ସ୍ତ୍ରୀ ଯେପରି ସ୍ୱାମୀମୟ ହୋଇ ସ୍ୱାମୀ ଓ ତା'ର ପରିବେଶର ସେବା କରେ, ସେ ମଧ ସେହିପରି ଇଷ୍ଟମୟ ହୋଇ ଯେପରି ଇଷ୍ଟ ସେବା କରେ, ସେହିପରି ସେବା, ସହାନୁଭୂତି ଓ ଯାଜନରେ ପରିବେଶକୁ ମୁଗ୍ଧ କରି ସମସ୍ତଙ୍କୁ ଇଷ୍ଟଙ୍କଠାରେ ଯୁକ୍ତ କରି ତୋଳିବା ପାଇଁ ଆପ୍ରାଣ ହୁଏ। ଭକ୍ତିରେ ଯୋଗ, କର୍ମ, ଜ୍ଞାନ ଆପେ-ଆପେ ହୁଏ। ଆତ୍ମନିୟନ୍ତ୍ରଣ ପାଇଁ କସରତ କରିବା ଦରକାର ନାହିଁ। ସମସ୍ତ ବାଧାକୁ ସେ ଅତିକ୍ରମ କରି ଚାଲେ – କି ଭିତରର କି ବାହାରର।

ଆ.ପ୍ର. ୧୪/୧୦.୯.୧୯୪୮

**ପ୍ର. – ଇଷ୍ଟାନୁସରଣର ସହିତ ଯଦି go-between ବା (ଦ୍ୱନ୍ଦ୍ୱିବୃତ୍ତି) ମଧ ମଣିଷର ଥାଏ ?**

**ଶ୍ରୀଶ୍ରୀଠାକୁର –** କାର୍ଯ୍ୟରେ ସଫଳ ହେବାକୁ ହେଲେ go-between (ଦ୍ୱନ୍ଦ୍ୱିବୃତ୍ତି) ତ୍ୟାଗ କରିବାକୁ ହେବ। ଧରାଯାଉ ତୁମେ ଗୋଟିଏ ଗାଡ଼ି କିଣିବା ପାଇଁ ଟଙ୍କା ସଞ୍ଚୟ କରିଛ। ଗାଡ଼ି କିଣିବାଟା ହେଲା ତୁମର ପ୍ରୟୋଜକ ପ୍ରବୃତ୍ତି। ଯାହାହେଉ ହଠାତ୍ ତୁମେ ସେହି ଗାଡ଼ି କିଣିବାର ଟଙ୍କା ଦେଇ ପାଟ କିଣିଲ ତାର ମାନେ ତୁମେ ଉଦ୍ଦେଶ୍ୟଭ୍ରଷ୍ଟ ହେ ଇଗଲ, ବିକ୍ଷିପ୍ତ ହୋଇଗଲ। ତା'ଦ୍ୱାରା ତୁମେ ପଛେଇ ଗଲ, ତୁମର ପ୍ରବୃତ୍ତି ଗୁଡ଼ିକ ଏତେ ମାତ୍ରାରେ ଏପଟସେପଟ ହୋଇପଡ଼ିଲା। ସେଇ ଟଙ୍କାରୁ ପୁଣି ଥରେ ହୁଏତ ଧାର ଦେଲ। ଏହାଦ୍ୱାରା ଗୋଟିଏ ପରେ ଗୋଟିଏ ଲୋକସାନର ବ୍ୟାପାର ହୋଇଯାଏ। ନଷ୍ଟ ହେବହିଁ। ରିହାଇ ନାହିଁ। ତାହା ହୁଏ ଟିକିଏ ଆଗରୁ ବା ଟିକିଏ ପରେ। ସେଥିପାଇଁ ସଂକଳ୍ପ, କଥା, କାର୍ଯ୍ୟର ମେଳ ରହିବା ଦରକାର। ...ଦ୍ୱନ୍ଦ୍ୱିବୃତ୍ତିରେ ମଣିଷ ପରିଶ୍ରମ ସତ୍ତ୍ୱେ ମଧ ଯେତେ ଅକୃତକାର୍ଯ୍ୟ ହୁଏ, ଏତେ ଆଉ କିଛିରେହିଁ ହୁଏନାହିଁ। ଗଳତିଟା ଯେ ନିଜ ଭିତରେହିଁ ପ୍ରବେଶ କରେ।

ଆ.ପ୍ର. ୧୪/୧୧.୯.୧୯୪୮



**ପ୍ର. – ଇଷ୍ଟାନୁସରଣରେ ନିଖୁଣ ହେବାପାଇଁ ପ୍ରତ୍ୟେକଙ୍କରହିଁ କ'ଣ କ'ଣ କରିବା ଦରକାର ?**

**ଶ୍ରୀଶ୍ରୀଠାକୁର –** ନିତ୍ୟ ସାଧନା ଦରକାର। ପ୍ରଥମ ଜିନିଷ ହେଲା ଯଜନ। ଭକ୍ତିର ସହିତ ଇଷ୍ଟଙ୍କର ମନନ, ନାମଜପ, ଧ୍ୟାନ, ତାଙ୍କର ନୀତିବିଧିଗୁଡ଼ିକ ପରିପାଳନ କରିବା, ଚରିତ୍ରଗତ କରିବା। ଗୋଟିଏ କଥାରେ ନିଜକୁ ଇଷ୍ଟଙ୍କୁ ଭାବରେ ଭାବିତ, ଅନୁରଞ୍ଜିତ ଓ ନିୟନ୍ତ୍ରିତ କରିବାହିଁ ଯଜନ। ଯାଜନ ମାନେ ସେବା-ସହଚର୍ଯ୍ୟ-ବାକ୍ୟ-ବ୍ୟବହାରରେ ଅପରକୁ ପ୍ରବୁଦ୍ଧ କରି ଇଷ୍ଟସ୍ୱାର୍ଥପ୍ରତିଷ୍ଠାପ୍ରାଣ କରି ତୋଳିବା। ନିଜେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ନହେଲେ କିନ୍ତୁ ଅନ୍ୟ ଭିତରେ ଏହି ଭାବଟା ସଞ୍ଚାରିତ କରାଯାଏ ନାହିଁ। ଇଷ୍ଟଭୃତି ହେଲା ନିତ୍ୟ ଅନ୍ନଜଳ ଗ୍ରହଣ ପୂର୍ବରୁ ଇଷ୍ଟଙ୍କୁ ନିତ୍ୟ ବାସ୍ତବରେ ଯଥାସମ୍ଭବ ନିବେଦନ କରିବା। ନିୟମିତ ଭାବରେ ତାଙ୍କୁ ଦେବା ଓ ତାଙ୍କ ପାଇଁ କରିବାର ଭିତର ଦେଇ ତାଙ୍କ ଉପରେ ଟାଣ ବଢ଼େ। ଦେଶ ଓ ଦଶକୁ ଜଗାଇବାକୁ ହେଲେ ଆମ୍ଭମାନଙ୍କୁ ଯାଜନବୈଚିତ୍ର ହେବାକୁ ହେବ। ଆମ୍ଭମାନଙ୍କର ପ୍ରତ୍ୟେକଟି ଚାଲିବା, କହିବା ଯେପରି ମଣିଷକୁ ଇଷ୍ଟଙ୍କଠାରେ ଉଦ୍‌ବୁଦ୍ଧ କରିତୋଳେ। ମଣିଷ ହୁଏତ ଈଶ୍ୱରମୁଖୀ ହେବ, ନହେଲେ ପ୍ରବୃତ୍ତି ମୁଖୀହେବ। ନିଜେ ଈଶ୍ୱରମୁଖୀ ହେବା ଓ ଅନ୍ୟକୁ ଈଶ୍ୱରମୁଖୀ କରିତୋଳିବାହିଁ ମଙ୍ଗଳର ପଥ। ଏହାହିଁ ପ୍ରତ୍ୟେକଙ୍କର କରଣୀୟ।

ଆ.ପ୍ର. ୧୪/୧୫.୧୦.୧୯୪୮

**ପ୍ର. – ଇଷ୍ଟାନୁସରଣର ମଧ ଦେଇ ମଣିଷ କେତେବେଳେ ଇଷ୍ଟପ୍ରାଣ ହୋଇଉଠେ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟାର୍ଥ ଯେତେବେଳେ କାହାର ନିଜର ସ୍ୱାର୍ଥ ହୁଏ, ସେତେବେଳେହିଁ ସେ ଇଷ୍ଟପ୍ରାଣ ହୁଏ। ଆଉ, ଯେତେକ୍ଷଣ ତା' ନିଜର କାମନାପୂରଣ ପାଇଁ ଇଷ୍ଟ, ସେତେକ୍ଷଣ ସେ ଆର୍ତ୍ତ ବା ଅର୍ଥାର୍ଥୀ ଥାଏ। ଆ.ପ୍ର. ୧୪/୧୫.୧୦.୧୯୪୮

**ପ୍ର. – ଇଷ୍ଟ ।ନୁସରଣରେ ପରିବେଶର ପ୍ରଭାବ ଯଦି ଖୁବ୍ ମୁସକିଲରେ ପକାଇ ଦିଏ ?**

**ଶ୍ରୀଶ୍ରୀଠାକୁର –** ମୁସକିଲ୍ ସବୁ ନିଜ ଭିତରେ। ବାହାରେ କେଉଁଠି ମୁସକିଲ୍ ନାହିଁ।

ଆ.ପ୍ର. ୧୪/୧୭.୧୦.୧୯୪୮

**ପ୍ର. – ଇଷ୍ଟାନୁସରଣର ସ୍ୱାର୍ଥରେ ଘରର ଲୋକମାନଙ୍କ ସହିତ କିପରି ଭାବରେ ଚଳିବାକୁ ହେବ ?**

**ଶ୍ରୀଶ୍ରୀଠାକୁର –** ଏପରି ଭାବରେ ଚଳିବ ଯେ ଘରର ବିଲେଇଟା ପର୍ଯ୍ୟନ୍ତ ଯେପରି ତୁମକୁ ଶ୍ରଦ୍ଧା କରେ। ଆଉ ଟିକିନିଖି ନଜର ଦେଇ energy (ଶକ୍ତି) ନଷ୍ଟ ନ କରି ଆଗେ mission work (ସଞ୍ଚାରଣର କାମ) କର। ଆ.ପ୍ର. ୧୪/୧୯.୧୦.୧୯୪୮

**ପ୍ର. – ଇଷ୍ଟଙ୍କ ପାଇଁ ଭିକ୍ଷା ଚାହିଁବାକୁ ହେଲେ କିପରି ଭାବରେ ଚାହିଁବା ଭଲ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କ ପାଇଁ ଭିକ୍ଷା ଚାହିଁବାକୁ ହେଲେ ମଧ୍ୟ 'ମୋତେ ଦିଅ' କହିବା ଭଲ। ଠାକୁର ଚାହିଁଛନ୍ତି କହି ଆଣିଲେ ଠାକୁରଙ୍କୁ ଭଙ୍ଗାଇବା ହେଲା। ପାରିପାର୍ଶ୍ୱିକଙ୍କ ମଧ୍ୟରେ ତୁମର କେତେଟା ପ୍ରତିଷ୍ଠା ହୋଇଛି ଏବଂ ସେ-ପ୍ରତିଷ୍ଠା ତୁମର ଠାକୁରଙ୍କର ସ୍ୱାର୍ଥପ୍ରତିଷ୍ଠାରେ କେତେଟା ଲାଗେ ତାର ପରଖ ହୁଏ ତୁମର ନିଜର କଥା କହି ଭିକ୍ଷା କରିବାର କ୍ଷମତା ଦ୍ୱାରା। ନିଜର କଥା କହି ଅନେକେ ସିଧାସିଧି ଭିକ୍ଷା ଚାହିଁବାକୁ ଭରଷା ପାଆନ୍ତି ନାହିଁ, ସେଥିପାଇଁ ଠାକୁରଙ୍କୁ ଭଙ୍ଗାନ୍ତି। ତୁମ ଉପରେ ଶ୍ରଦ୍ଧା ଯଦି ନ ହେଲା, ତାହାହେଲେ ମୋର ହେଲା କ'ଣ ? ଆଉ, ସେଥିରେ ମୋର ବା ଲାଭ କ'ଣ ? ଟଙ୍କା ତ ମୋ ପାଖରେ କିଛି ବି ନୁହେଁ, ତୁମ୍ଭମାନଙ୍କର ଚାରିତ୍ରିକ ଉତ୍କର୍ଷହିଁ ମୋ ପାଖରେ ଲୋଭନୀୟ। ଆ.ପ୍ର. ୧୪/୧.୧୧.୧୯୪୮

**ପ୍ର. – ଇଷ୍ଟାନୁସରଣର ପଥରେ ଦୁଷ୍ଟ ପ୍ରକୃତିର ଲୋକଙ୍କ ସହିତ କିପରି ବ୍ୟବହାର କରିବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – ଏମିତି କିଛି କର ନାହିଁ, ଯାହାଦ୍ୱାରା ତୁମ ପ୍ରତି ତା'ର ବା ଅନ୍ୟ କାହାର ଶ୍ରଦ୍ଧା ନଷ୍ଟ ହୁଏ। ସହ୍ୟ, ଧୈର୍ଯ୍ୟ, ଅଧ୍ୟବସାୟ ନେଇ ନିଷ୍ଠା ସହକାରେ ଏପରି ଭାବରେ ଚାଲିବାକୁ ହୁଏ ଯାହାଦ୍ୱାରା ତୁମ ପ୍ରତି ପ୍ରତ୍ୟେକେ ଆହୁରି ଆକୃଷ୍ଟ ହୁଅନ୍ତି। ଗୋଟିଏ ମଣିଷକୁ ମଣିଷ କରିବାକୁ ଗଲେ ତା'ପାଇଁ କେତେ କଷ୍ଟ କରିବାକୁ ହୁଏ, କେତେ ତ୍ୟାଗ ସ୍ୱୀକାର କରିବାକୁ ହୁଏ। ସେଥିରେ ମଧ୍ୟ ଅନେକେ ଫେରନ୍ତି ନାହିଁ। ତଥାପି ନିଜର ଅସ୍ତିତ୍ୱ ବଞ୍ଚାଇ ଯଥାସମ୍ଭବ କରିବା ଦରକାର। ...ତୁମ ପ୍ରତି ଯାହାର ଶ୍ରଦ୍ଧା ଯେତେଟା ଗଭୀର ହୁଏ, ତୁମ ପ୍ରତି ଅନୁବର୍ତ୍ତିତା ଓ ସେହି ସଙ୍ଗେ ସଙ୍ଗେ ଇଷ୍ଟାନୁବର୍ତ୍ତିତା ମଧ୍ୟ ତା'ର ସେତେ ଗଭୀର ହେବାକୁ ଲାଗିବ। ସେଥିପାଇଁ, ଯାହାଦ୍ୱାରା ମଣିଷର ଶୁଭ ଶ୍ରଦ୍ଧା ବଞ୍ଚି ରହେ ତାହା କରିବାକୁ ହୁଏ। ''ଶ୍ରଦ୍ଧାବାନ ଲଭତେ ଜ୍ଞାନମ୍''। ସେହି ଶ୍ରଦ୍ଧା ଦେଇହିଁ ମଣିଷ ପ୍ରାଜ୍ଞ ହୁଏ, ଅଜ୍ଞାନତା ଠାରୁ, ଅଶାନ୍ତି ଠାରୁ, ବିନାଶ ଠାରୁ ବଞ୍ଚେ। ....ଚାଲିଚଳନ, କଥାବାର୍ତ୍ତା ଗୋଟିଏ କଥାରେ ସେବା-ସମ୍ବର୍ଦ୍ଧନା ଯେତେ ଶ୍ରଦ୍ଧା-ଉଦ୍ଧାରିଣୀ ହୁଏ, ସେତେ ତୁମର ମଧ୍ୟ ଭଲ, ଅନ୍ୟର ମଧ୍ୟ ଭଲ। ଯେତେ କଷ୍ଟ ହେଉ ତୁମ୍ଭମାନଙ୍କୁ ଭଲ କରିତୋଳିବାହିଁ ଦରକାର। ...ମାନବ-ସମାଜକୁ ସୁସ୍ଥ ଓ ଉନ୍ନତ କରିବା ପାଇଁ ମୁଁ ଯାହା-ଯାହା କହୁଛି, ତାହାର ପ୍ରତ୍ୟେକଟି ଯଦି କଣ୍ଠାରେ-କଣ୍ଠାରେ ନ କର, ତାହାହେଲେ ଦେଖିବାକୁ ପାଇବ ଅଦୂର ଭବିଷ୍ୟତରେ ଏପରି ଦିନ ଆସି ଉପସ୍ଥିତ ହେବ, ଯେତେବେଳେ ଜନସାଧାରଣର ଅସ୍ତିତ୍ୱ ରକ୍ଷାହିଁ ଦୂରୂହ ହୋଇଉଠିବ। ତୁମମାନଙ୍କର ମଧ୍ୟ ସେ ଆବର୍ତ୍ତରୁ ରକ୍ଷା ପାଇବା କଠିନ ହେବ।

ଆ.ପ୍ର. ୧୫/୧୮.୧୧.୧୯୪୮



**ପ୍ର. – ଇଷ୍ଟାନୁସରଣରେ ଚାଲିଲେ ବି ଆତ୍ମପ୍ରତିଷ୍ଠାର ବୁଦ୍ଧିଟା ଶେଷ ପର୍ଯ୍ୟନ୍ତ କ'ଣ ପାଇଁ ଯାଏ ନାହିଁ ? ଏହାଠାରୁ ବଞ୍ଚିବାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ମଣିଷ ଯଦି ବୁଝେ ଯେ ସେ ଯେଉଁ-ପଥରେ ଆତ୍ମପ୍ରତିଷ୍ଠା କରିବା ପାଇଁ ଚାହେଁ, ସେ-ପଥରେ ଆତ୍ମପ୍ରତିଷ୍ଠା ହୁଏନାହିଁ ବରଂ ଓଲଟା ଫଳ ହୁଏ, resistance (ପ୍ରତିରୋଧ) ବଢ଼ିଯାଏ, ତାହା ଆତ୍ମପ୍ରତିଷ୍ଠା ବ୍ୟାହତ ହେବାରହିଁ ପଥ ଏବଂ ପ୍ରତିଷ୍ଠାର ପ୍ରକୃତ ପଥହିଁ ହେଲା ଇଷ୍ଟପ୍ରତିଷ୍ଠା, ସେତେବେଳେ ନିଜର ଭୁଲ ନିଜ ପାଖରେ କ୍ରମେହିଁ ଆହୁରି-ଆହୁରି ଧରା ପଡ଼େ ଏବଂ ତାହା ସୁଧାରି ନେଇପାରେ। ଇଷ୍ଟପ୍ରତିଷ୍ଠାର ଗୋଟିଏ ମସ୍ତ ସୁବିଧା ଏହା ଯେ ଏହିଭାବରେ ତନ୍ମୟ ହୋଇ ଏହି ବୁଦ୍ଧି ନେଇ, ନିରଭିମାନ, ଅକପଟ ଅନ୍ତରରେ ଯେତେବେଳେ ଆପଣ କାହା ପାଖକୁ ଗଲେ, ସେତେବେଳେ ତା'ର ଶ୍ରଦ୍ଧାର କବାଟ ଖୋଲିଗଲା, ଆପଣଙ୍କ ମାଧ୍ୟମରେ ସେ ଆପଣଙ୍କର ଇଷ୍ଟଙ୍କର ସ୍ପର୍ଶହିଁ ପାଇଲା। ଅଜ୍ଞାତସାରରେ ଆପଣଙ୍କ ଇଷ୍ଟଙ୍କର ଛାପ ତା' ମୁଣ୍ଡରେ ପଡ଼ିଲା, ଆପଣ ଯେପରି ଇଷ୍ଟବାହୀ ଗୋଟିଏ ଯନ୍ତ୍ର ମାତ୍ର, ସେ ହିଁ ସଞ୍ଚାରିତ ଓ ପ୍ରତିଫଳିତ ହେଉଛନ୍ତି ଆପଣଙ୍କ ଭିତର ଦେଇ। ଏହି ସଞ୍ଚାରଣାର ଫଳରେ ଆପଣଙ୍କର ଇଷ୍ଟଙ୍କ ଉପରେ ତା'ର ଟାଣ ଯେତେ ଗଭୀର ହେବ, ଆପଣ ମଧ୍ୟ ତା' ପାଖରେ ସେତେ ପ୍ରତିଷ୍ଠିତ ହେବେ। ଇଷ୍ଟପ୍ରତିଷ୍ଠା ଯେଉଁମାନେ ଚାହାଁନ୍ତି ସେମାନେ କମ୍‌ହିଁ ବିଧ୍ୱସ୍ତ ହୁଅନ୍ତି, ଯେଉଁମାନେ ଆତ୍ମପ୍ରତିଷ୍ଠା କରିବାକୁ ଯାଆନ୍ତି, ସେମାନେ ସହଜରେହିଁ ବିଧ୍ୱସ୍ତ ହୁଅନ୍ତି। ...ଇଷ୍ଟସ୍ୱାର୍ଥପ୍ରତିଷ୍ଠାରେ ଯିଏ ଯେତେ ସ୍ୱାର୍ଥପର ହୋଇଉଠେ, ସେ ସେତେ ଅନାଶକ୍ତ ହୁଏ, ତା'ର ପ୍ରବୃତ୍ତି ଓ ଅହମିକାର resistance (ବାଧା) ସେତେ କମିଯାଏ। ଆଉ ତା'ର ଚଳଣୀ ମଧ୍ୟ ସେତେ accelerated (ତୀବ୍ରଗତିସମ୍ପନ୍ନ) ହୋଇଉଠେ। ସେତେବେଳେ ''ନିରାଶୀର୍ନିର୍ମମୋ ଭୂତ୍ୱା ଯୁଦ୍ଧସ୍ୱ ବିଗତଜ୍ୱରଃ'' ହୁଏ। ଏହା ଯେତେ ଟିକକ ହୁଏ, ଧର୍ମ, ଅର୍ଥ, କାମ, ମୋକ୍ଷ ସେତେଟିକକ ତାକୁ ଆଲିଙ୍ଗନ କରିବହିଁ। ...ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନତାରେ କଥା ଏପରି ହେବ, ବ୍ୟବହାର ଏପରି ହେବ ଯେ ମଣିଷ ଦେବାପାଇଁ ଉଦଗ୍ର ହୋଇଉଠିବ। ସେତେବେଳେ ଠାକୁରଙ୍କର ଏକ ପଇସା ଏକ ଲକ୍ଷ ଟଙ୍କା ପରି ମନେହେବ। ତାଙ୍କର ସ୍ୱାର୍ଥହିଁ ପ୍ରବଳ, କିଛି ପ୍ରକାରେ ବି ତାଙ୍କର ଏତେ ଟିକିଏ କ୍ଷତି ଯେପରି ନ ହୁଏ। ଆ.ପ୍ର. ୧୫/୧୫.୧.୧୯୪୯

**ପ୍ର. – ଇଷ୍ଟାନୁସରଣ ଠିକ୍ ରଖି ଅନାସକ୍ତ ହୋଇ କିପରି ଭାବରେ କର୍ମ କରାଯାଏ ? ଆସକ୍ତି ତ ରହିଥାଏ !**

**ଶ୍ରୀଶ୍ରୀଠାକୁର** – ଆପଣଙ୍କ ଆସକ୍ତି ଯଦି ଇଷ୍ଟଙ୍କୁ ନେଇ ହୁଏ ଏବଂ ତାଙ୍କର ପ୍ରୀତି, ତୃପ୍ତି, ସ୍ୱାର୍ଥ ଓ ପ୍ରତିଷ୍ଠାର ପାଇଁ ଯଦି ଆପଣ ସବୁ କାର୍ଯ୍ୟ କରନ୍ତି ତେବେ ତାକୁହିଁ କୁହାଯାଏ

ଅନାସକ୍ତ ହୋଇ କର୍ମ କରିବା । ଏହାଦ୍ୱାରା ବନ୍ଧନ ହୁଏନା, ବରଂ ଚିତ୍ତଶୁଦ୍ଧି ଓ ମୁକ୍ତିର ପଥ ଖୋଲିଯାଏ । ଆତ୍ମସ୍ୱାର୍ଥ ଓ ଆତ୍ମପ୍ରତିଷ୍ଠା ବାଦ ଦେଇ ଇଷ୍ଟଙ୍କର ସ୍ୱାର୍ଥ ଓ ପ୍ରତିଷ୍ଠାକୁ ଯଥାସର୍ବସ୍ୱ କରିନେବାକୁ ହୁଏ । ଏହା ହେଲା କୌଶଳ । ପୁଣି, କାହାର ବୁଦ୍ଧିଭେଦ କରିବା ଉଚିତ ନୁହେଁ। ନିଜେ ଇଷ୍ଟାର୍ଥରେ କର୍ମରତ ରହି ସମସ୍ତଙ୍କୁ କର୍ମରତ କରିତୋଳିବାକୁ ହେବ । ଆଳସ୍ୟ ଠାରୁ କର୍ମ ଭଲ । କେହି ଯଦି ସମ୍ୟକ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ନ ବି ହୋଇପାରେ ଏବଂ ଇଷ୍ଟକୁ ଅବଲମ୍ବନ କରି ସକାମ ଭାବରେ ଅର୍ଥାତ୍ ନିଜର ମଙ୍ଗଳ ପାଇଁ ଯଜନ-ଯାଜନ-ଇଷ୍ଟଭୃତି କରେ, ସେ ମଧ୍ୟ କିନ୍ତୁ ତୁଚ୍ଛ ନୁହେଁ। ଏହା କରୁ-କରୁ ତା'ର ଇଷ୍ଟଙ୍କ ଉପରେ ଯେତେ ଟାଣ ଜାଗିବ, ସେତେହିଁ ଇଷ୍ଟାର୍ଥେ କାର୍ଯ୍ୟ କରିବାର ସାର୍ଥକତା ସେ ବୁଝିପାରିବ । ଇଷ୍ଟାର୍ଥୀ ହେଲେ ନିଜର ସ୍ୱାର୍ଥ ଆହୁରି ଭଲ କରି ପୂରଣ ହୁଏ । ଅବଶ୍ୟ ସେହି ବୁଦ୍ଧି ନେଇ ପ୍ରକୃତ ଇଷ୍ଟାର୍ଥପରାୟଣ ହୁଆଯାଏ ନାହିଁ। ମୂଳ ଜିନିଷ ହେଲା ତାଙ୍କୁ ଭଲପାଇବା, ତାଙ୍କୁ ସ୍ୱାର୍ଥ କରି ନେବା ।

ଆ.ପ୍ର. ୧୫/୧୯.୧.୧୯୪୯

**ପ୍ର. – ଇଷ୍ଟ ାନୁସରଣରେ ତାଙ୍କର ପୂଜା ବୋଲି କିଛି ନାହିଁ ?**

**ଶ୍ରୀଶ୍ରୀଠାକୁର** – ପ୍ରତ୍ୟେକଟି କାର୍ଯ୍ୟ ସୁନ୍ଦର ଓ ସୁଶୃଙ୍ଖଳଭାବରେ କରୁ କରୁ ବୋଧ ଓ ଚରିତ୍ର ମଧ୍ୟ ସୁଚାରୁ ଓ ସ୍ୱଚ୍ଛ ହୋଇଉଠେ । ନିରନ୍ତର ଏହି ଭାବରେ ଚାଲିବାଟା, କରିବାଟାହିଁ ପୂଜା । ତା'ଦ୍ୱାରା ସଭାରୂପି ପରମପିତା ପ୍ରୀତ ହୁଅନ୍ତି । ସୁଷ୍ଠ, ସୁନ୍ଦର ଓ ସୁନିପୁଣଭାବରେ ପ୍ରତ୍ୟେକଟି ଚାଲିବା, କହିବା, କରିବା ଓ ଭାବିବାର ଭିତରେ ଦେଇ ପରମପିତାଙ୍କୁ ପ୍ରୀତ କରିବାହିଁ ଆମମାନଙ୍କର ଜୀବନ-ତପ ।

ଆ.ପ୍ର. ୧୫/୨୦.୧.୧୯୪୯

**ପ୍ର. – ଇଷ୍ଟାନୁସରଣ ପାଇଁ ତାଙ୍କର ଅବର୍ତ୍ତମାନରେ ଯେଉଁମାନେ ଦୀକ୍ଷା ନେବେ ସେମାନେ ତ ତାଙ୍କୁ ପ୍ରତ୍ୟକ୍ଷରେ ପାଇବେ ନାହିଁ – ସେମାନଙ୍କର ଉପାୟ କ'ଣ ହେବ ?**

**ଶ୍ରୀଶ୍ରୀଠାକୁର** – ଯେଉଁ ଋତ୍ୱିକ୍ ତାଙ୍କୁ ଦେଖିଛନ୍ତି, ଯିଏ ତାଙ୍କର ଅନୁଜ୍ଞାପ୍ରାପ୍ତ, ଯିଏ ଇଷ୍ଟାନୁରାଗୀ ଓ ସାଧନଶୀଳ, ତା' ଭିତରେ ତାଙ୍କର living impression (ଜୀବନ୍ତ ଛାପ) କିଛି ନା କିଛି ଥାଏ । ଦୀକ୍ଷା ପାଇ ଯାହା କରଣୀୟ ତାହା ଯଦି ସେ ନିଷ୍ଠା ସହକାରେ କରେ ତେବେ ସେ ଅଜ୍ଞାତସାରରେ ଇଷ୍ଟଙ୍କ ଉପସ୍ଥିତି ଭିତରେ-ଭିତରେ କିଛି-କିଛି ବୋଧ କରିପାରେ ।

ଆ.ପ୍ର. ୧୫/୨୦.୧.୧୯୪୯

**ପ୍ର. – ଇଷ୍ଟାନୁସରଣ ପାଇଁ ଉଦ୍‌ବୁଦ୍ଧ କରି ତାଙ୍କର ଅବର୍ତ୍ତମାନରେ ଯେଉଁମାନେ ଦୀକ୍ଷା ଦେବେ ସେମାନଙ୍କର ବା ସେହିମାନଙ୍କର ଋତ୍ୱିକଙ୍କର ମଧ୍ୟ ଯଦି ଇଷ୍ଟଙ୍କୁ ଦେଖିବାର ସୌଭାଗ୍ୟ ନ ହୋଇଥାଏ ତେବେ ତାଙ୍କ ମାଧ୍ୟମରେ ଦୀକ୍ଷିତ ମାନେ କେତେଟା ଲାଭବାନ ହେବେ ?**



**ଶ୍ରୀଶ୍ରୀଠାକୁର** – ଋତ୍ୱିକ୍‌ଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତିର ସୂତ୍ରର ଭିତର ଦେଇ ମୂଳ ଶକ୍ତି ବିଧି-ଅନୁଯାୟୀ ଯେଉଁଠାରେ ଯେତେବେଳେ ଯେତେଟା ସମ୍ଭବ କ୍ରିୟା କରିଚାଲେ ।

ଆ.ପ୍ର. ୧୫/୨୦.୧.୧୯୪୯

**ପ୍ର. – ଇଷ୍ଟାନୁସରଣର ସ୍ୱାର୍ଥରେ କେଉଁଟାର ମହତ୍ତ୍ୱ ବେଶୀ – ମୃତ୍ୟୁବରଣର ନା ବଞ୍ଚି ରହିବାର ?**

**ଶ୍ରୀଶ୍ରୀଠାକୁର** – ବାହାବାର ଲୋଭରେ ବା ଝୁଙ୍କ ବଶତଃ କୌଣସି ଗୋଟିଏ ମହତ୍ ଆଦର୍ଶଙ୍କ ପାଇଁ ମୃତ୍ୟୁବରଣ ସତ୍‌ସାହସ ବା ଆତ୍ମତ୍ୟାଗର ଗୋଟିଏ ଐତିହାସିକ ଜ୍ୱଳନ୍ତ ଦୃଷ୍ଟାନ୍ତ ହୋଇପାରେ, କିନ୍ତୁ ଦିନ ପରେ ଦିନ ସାରା ଜୀବନର ସବୁଗୁଡ଼ିକ ବ୍ୟକ୍ତିଗତ ପ୍ରବୃତ୍ତି, ଖିଆଲ, ବାସନା, କାମନା, ଅର୍ଥ, ସ୍ୱାର୍ଥ, ପ୍ରଭୁତ୍ୱସ୍ପୃହା, ସଂସାରର ଶତ ପ୍ରଲୋଭନ ଏବଂ ଆତ୍ମପ୍ରତିଷ୍ଠାର ଆକର୍ଷଣ ଉପେକ୍ଷା କରି ନୀରବରେ ଈଶ୍ୱର-ପରାୟଣ (ଇଷ୍ଟପରାୟଣ) ହୋଇ ତତ୍‌ସୁଖ-ସୁଖୀତ୍ୱର ପାଇଁ ତାଙ୍କରି ଇଚ୍ଛାପୂରଣାର୍ଥେ ସକ୍ରିୟ ଭାବରେ ବଞ୍ଚିରହିବା ଜଣେ ଜୀବନ୍ମୁକ୍ତ ମହାପୁରୁଷଙ୍କ ପକ୍ଷରେହିଁ ସମ୍ଭବ ।

ଆ.ପ୍ର. ୧୫/୨୧.୧.୧୯୪୯

**ପ୍ର. – ଇଷ୍ଟାନୁସରଣରେ କିପରି ବୁଦ୍ଧି ନେଇ ଚାଲିବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – ମୋର ଶିଷ୍ୟ ହେଉ, ସନ୍ତାନ ହେଉ, ପ୍ରିୟବନ୍ଧୁ ହେଉ – ସମସ୍ତଙ୍କୁହିଁ ମୁଁ କୁହେ – ମଣିଷ ନିଜର ଟଙ୍କା ଅଟେ ପର, ଯେତେ ପାରୁଅଛ ମଣିଷଙ୍କୁ ଧର – ଏହି ବୁଦ୍ଧି ନେଇ ଚାଲ । ଆଉ, ମଣିଷ ଧରିବାର ମୂଳ ଉଦ୍ଦେଶ୍ୟ ହେବ ଇଷ୍ଟାର୍ଥପୂରଣ । ଏହା ଯଦି କରିଚାଲିପାର, ତୁମେମାନେ ପ୍ରତ୍ୟେକେହିଁ ରାଜାଧିରାଜ । ତୁମମାନଙ୍କର ମଧୁସୂଦନର ହାଣ୍ଡି ଶୂନ୍ୟ ହେଉ ନ ହେଉଣୁ ପୂର୍ଣ୍ଣ ହୋଇ ଉଠିବ । This is the Divine economics of Parampita. Rejoice, resort, resound and be perennially resourceful. (ଏହାହିଁ ପରମପିତାଙ୍କର ସ୍ୱର୍ଗୀୟ ଅର୍ଥନୀତି । ଆନନ୍ଦ କର, ଏହି ନୀତି ନିଜ ଜୀବନରେ ପ୍ରୟୋଗ କର, ଚତୁର୍ଦ୍ଦିଗରେ ଘୋଷଣା କର ଏବଂ ନିରନ୍ତର ଐଶ୍ୱର୍ଯ୍ୟଶାଳୀ ହୋଇ ଚାଲ) ।

ଆ.ପ୍ର. ୧୫/୨୩.୧.୧୯୪୯

**ପ୍ର. – ଇଷ୍ଟାନୁସରଣରେ ଯାଜନର ପ୍ରୟୋଜନ କାହିଁକି ?**

**ଶ୍ରୀଶ୍ରୀଠାକୁର** – ମଣିଷକୁ manipulation (ନିୟନ୍ତ୍ରଣ)ର ଭିତର ଦେଇ ଆଦର୍ଶଙ୍କ ଠାରେ ଉନ୍ନୀତ କରି ତୋଳିବାହିଁ ଯାଜନ । ଯାଜନ ଆସିଛି ଯଜ୍-ଧାତୁରୁ, ଯଜ୍-ଧାତୁ ମାନେ ସମ୍ବର୍ଦ୍ଧନା । ଅନୁରାଗର ଉସାରଣାରେ ଇଷ୍ଟଙ୍କଠାରେ ସମ୍ବର୍ଦ୍ଧିତ ବା ସମୁନ୍ନତ କରି ତୋଳିବାହିଁ ଯାଜନର ପ୍ରାଣ । ଏହାକୁ psycho-therapy (ମାନସିକ ଚିକିତ୍ସା) ମଧ୍ୟ କୁହାଯାଇପାରେ ।

ଇଷ୍ଟାନୁରାଗର ଭିତର ଦେଇ ଯାବତୀୟ ମାନସିକ କ୍ଷତ ଓ ବ୍ୟାଧିର ନିରସନ ହୁଏ, ତା' ଦ୍ୱାରା ଶରୀର ମଧ୍ୟ ତାଜା ହୋଇଉଠେ । ଯାଜନରେ ଯେପରି ଅନ୍ୟର ଭଲ ହୁଏ, ସେହିପରି ନିଜର ମଧ୍ୟ ଭଲ ହୁଏ । ଏହାଦ୍ୱାରା ଅନେକ କିଛି ବୋଧ ନୂତନ କରି ଫୁଟି ଉଠେ, ପରିଷ୍କାର ହୁଏ । ଯାହା କହିଛି ବା ଶୁଣିଛି ଅଥଚ feel (ବୋଧ) କରିନାହିଁ, ତାହା feel (ବୋଧ) କରାଯାଏ, ଏହାଦ୍ୱାରା ସେହି ବୋଧ ଚରିତ୍ରରେ ପ୍ରତିଫଳିତ ହୁଏ, ତାହାଦ୍ୱାରା ମଣିଷ ବଡ଼ ହୋଇ ଉଠେ – ସଦ୍‌ଗୁଣ ବିକାଶର ଭିତର ଦେଇ । ତିନୋଟି ଜିନିଷ ଏକାସହିତ ଦରକାର – ତାହା ହେଲା ଯଜନ, ଯାଜନ, ଇଷ୍ଟଭୃତି । ଯଜନ ମାନେ ନିଜକୁ ମନନ ଓ କରଣରେ ଇଷ୍ଟୀପୂତ କରି ତୋଳିବା । ଯାଜନ ମାନେ ପରିବେଶକୁ ଇଷ୍ଟଚେତନାରେ ସମ୍ବୁଦ୍ଧ ଓ ସମୃଦ୍ଧ କରି ତୋଳିବା, ଇଷ୍ଟଭୃତି ମାନେ ଜୀବନ ଉସକୁ ପୁଷ୍ଟ କରି ନିଜର ଇଷ୍ଟାନୁରାଗକୁ ପ୍ରତିଦିନ ଆହୁରି ଆହୁରି ସଞ୍ଜିବିତ ଓ ସନ୍ଦିପ୍ତ କରି ତୋଳିବା । ଯଜନ, ଯାଜନ, ଇଷ୍ଟଭୃତି ଠିକ୍ ଭାବରେ କରିଲେ ଚରିତ୍ର ସ୍ୱ-ସ୍ୱ ବୈଶିଷ୍ଟ୍ୟ ଅନୁଯାୟୀ ଇଷ୍ଟଙ୍କ ଭାବରେ ରଙ୍ଗୀନ ହୋଇଉଠିବହିଁ । ଏପରିକି ଚେହେରାରେ ମଧ୍ୟ ଗୋଟିଏ ଦେବଭାବର ଦୀପ୍ତି ଫୁଟି ଉଠିବ ।

ଆ.ପ୍ର. ୧୫/୩୦.୧.୧୯୪୯

**ପ୍ର. – ଇଷ୍ଟକାର୍ଯ୍ୟ ଓ ଇଷ୍ଟୀଚଳନଠାରୁ ମଣିଷ ଅପ୍ରୀତିକର ଅବସ୍ଥାର ଚାପରେ ବିଚ୍ୟୁତ ହୋଇପଡ଼େ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଅପ୍ରୀତିକର ଅବସ୍ଥାର ଚାପରେ ପଡ଼ି ଯଦି କେହି ଇଷ୍ଟକାର୍ଯ୍ୟ ଓ ଇଷ୍ଟୀଚଳନ ଠାରୁ ବିଚ୍ୟୁତ ହୋଇପଡ଼େ, ବୁଝିବାକୁ ହେବ ତା'ର ସତ୍ତାର ଗୋଟିଏ portion (ଅଂଶ) ସେତେବେଳେ ମଧ୍ୟ self-centric (ଆତ୍ମକେନ୍ଦ୍ରିକ) ହୋଇ ରହିଛି । ତାହା କାଟିଗଲେ ମଣିଷ ସବୁ ଅବସ୍ଥା ମଧ୍ୟରେହିଁ ସାଧ୍ୟମତ ଇଷ୍ଟକାର୍ଯ୍ୟ କରିଚାଲେ, କେତେବେଳେ ତୀବ୍ର ଗତିରେ, କେତେବେଳେ ବି ଧୀରେ । ଇଷ୍ଟକାର୍ଯ୍ୟରେ ଉତ୍ସାହ ଯେତେ ବଢ଼େ, ସ୍ଥିରତା ମଧ୍ୟ ସେତେ ବଢ଼େ । Unbalanced stage (ସାମ୍ୟହରା ଅବସ୍ଥା) ମଧ୍ୟ ସେତେ କଟିଯାଏ, ଏହା ଧିରେ ଧିରେ ହୁଏ । କଷ୍ଟ ମଧ୍ୟରେ ନିଷ୍ଠା ଯେତେ ତାଜା ଥାଏ, ମଣିଷ ସେତେ ପ୍ରସ୍ଫୁଟିତ ଓ ଉଜ୍ଜୀବିତ ଥାଏ ।

ଆ.ପ୍ର. ୧୫/୪.୨.୧୯୪୯

**ପ୍ର. – ଇଷ୍ଟଙ୍କଠାରେ ପ୍ରତ୍ୟେକଙ୍କରହିଁ କ'ଣ ଅଚ୍ୟୁତ ଅନୁରାଗ ହୋଇପାରେ ?**

**ଶ୍ରୀଶ୍ରୀଠାକୁର** – ମୋର ମନେହୁଏ – It is given to every man (ଏହା ପ୍ରତ୍ୟେକଙ୍କୁ ଦିଆ ହୋଇଛି) । ଇଚ୍ଛା ରହିଲେହିଁ ଫୁଟି ଉଠେ । ....ଆବୋଲ-ତାବୋଲ କରେ, ଆଉ ତାହା କରି କଷ୍ଟ ପାଏ । କାମ-କ୍ରୋଧ ଇତ୍ୟାଦି ପ୍ରବୃତ୍ତି ଅବ୍ୟାହତ ରଖି ତାହା ଆୟତ୍ତ



କରିବାକୁ ଚାହେଁ according to the call of complexes (ପ୍ରବୃତ୍ତିର ଆହ୍ୱାନ ଅନୁଯାୟୀ), ଯେଉଁଟାକି ଏହିଭାବରେ କେବେବି ଲାଭ କରିବା ସମ୍ଭବ ନୁହେଁ । ହୁଏତ ଲୋଭର ତାଡ଼ନାରେ କୁକୁଡ଼ା କାଟୁଛି ଏବଂ ତାକୁହିଁ କେତେ ରକମାରି ଭାବରେ ସମର୍ଥନ କରୁଛି । ଭାବର ଘରେ ଚୋରିର କି ଅନ୍ତ ଅଛି ? ତେବେ unrepelling attachment (ଅଚ୍ୟୁତ ଅନୁରାଗର)ର କଥା ବେଶି ନ ଭାବି ନିରନ୍ତର ପ୍ରେଷ୍ଠଙ୍କୁ ନେଇ actively engaged (ସକ୍ରିୟ ଭାବରେ ବ୍ୟାପୃତ) ରହୁ ରହୁ ଯାହା ହେବାର ତାହା ହୋଇଥାଏ । ଇଷ୍ଟସ୍ୱାର୍ଥପ୍ରତିଷ୍ଠା ଚାହିଁବା ଏବଂ ତା'ର ଅନ୍ତରାୟ ପ୍ରବୃତ୍ତିକୁ ପ୍ରଶ୍ରୟ ଦେଇ ଚାଲିବା – ଏହି ଦୁଇଟି ଏକ ସଙ୍ଗରେ ଚଳେ ନାହିଁ ।

ଆ.ପ୍ର. ୧୫/୪.୨.୧୯୪୯

**ପ୍ର. – ଇଷ୍ଟାନୁସରଣରେ ଚାଲିଲେହିଁ ତ ହୁଏ ? ନାମଧ୍ୟାନର ପ୍ରୟୋଜନ କ'ଣ ?**

**ଶ୍ରୀଶ୍ରୀଠାକୁର** – ନାମଧ୍ୟାନ ମସ୍ତିଷ୍କର କୋଷ ଓ ସ୍ନାୟୁକୁ ସାଡ଼ାପ୍ରବଣ ଓ ଗ୍ରହଣକ୍ଷମ କରିତୋଳେ । ଅନେକ ସୁପ୍ତ କୋଷକୁ ସକ୍ରିୟ କରେ । ଇଷ୍ଟସ୍ୱାର୍ଥପ୍ରତିଷ୍ଠାମୂଳକ କର୍ମ ଭିତର ଦେଇ ଅର୍ଜିତ ଉପଲବ୍‌ଧିକୁ ପୁଣି concentric ଓ adjusted (ସୁକେନ୍ଦ୍ରିକ ଓ ସୁନିୟନ୍ତ୍ରିତ) କରିବାକୁ ହୁଏ । ଏହାଦ୍ୱାରା wisdom (ପ୍ରଜ୍ଞା) ଲାଭ ହୁଏ । ତା'ଛଡ଼ା ଇଷ୍ଟଙ୍କର କାର୍ଯ୍ୟ କରିବାକୁ ଗଲେ ମସ୍ତିଷ୍କ ଯେତେ ବିକଶିତ ହୁଏ, ସେତେ ତାହା ଭଲ କରି କରାଯାଏ । ...ନାମ କରୁ କରୁ intercellular combustion (ଅନ୍ତଃକୌଷିକ ବିସ୍ଫୋରଣ) ହୁଏ, ମିଶ୍ରି କାମୁଡ଼ି ଦେଲେ ଯେପରି ଆଲୋକର ଝଲକ ବାହାରେ । କେଉଁଠାରେ ହୁଏତ ତାହା ହୁଏ ନାହିଁ । ବିଭୂତି ବଢ଼େ । ସ୍ନାୟୁଶକ୍ତି, ମସ୍ତିଷ୍କଶକ୍ତି ବଢ଼େ । ଅବଶ୍ୟ ତାହା final (ଚରମ) ନୁହେଁ । ସେଗୁଡ଼ିକ ସୁକେନ୍ଦ୍ରିକ କର୍ମର ଭିତର ଦେଇ apply (ପ୍ରୟୋଗ) କରି ପ୍ରେଷ୍ଠଙ୍କର ଇଚ୍ଛାଗୁଡ଼ିକୁ materialise (ବାସ୍ତବାୟିତ) କରି adjust (ନିୟନ୍ତ୍ରଣ) କରିବା ଦରକାର । ସେଥିରୁ ଆସେ knowledge and wisdom (ଜ୍ଞାନ ଓ ପ୍ରଜ୍ଞା) । Love with knowldge always keeps us balanced (ଅନୁରାଗ ଓ ଜ୍ଞାନ ଆମ୍ଭମାନଙ୍କୁ ସର୍ବଦା ସାମ୍ୟଭାବାରୂଢ଼ କରି ରଖିଥାଏ) ।

ଆ.ପ୍ର. ୧୫/୫.୨.୧୯୪୯

**ପ୍ର.ଇଷ୍ଟାନୁସରଣରେ ଯଜନ ତ ନିତ୍ୟ ଅବଶ୍ୟ-କରଣୀୟ । ଏହି ଯଜନ ମାନେ କ'ଣ ନାମ-ଧ୍ୟାନ କରିବା ?**

**ଶ୍ରୀଶ୍ରୀଠାକୁର** – ଯଜନ ମାନେ କେବଳ ନାମ-ଧ୍ୟାନ ନୁହେଁ । ନୀତିଗୁଡ଼ିକ ଚରିତ୍ରରେ ଫୁଟାଇ ତୋଳିବା ଏବଂ ସଂସାରର ପ୍ରତି ପଦକ୍ଷେପରେ ସେଗୁଡ଼ିକୁ ପାଳନ କରିବା । ଚରିତ୍ର ଏପରି ହେବ ଯେ ତୁମକୁ ଦେଖି ଭଲ-ଖରାପ ସବୁ ଲୋକ କହିବେ – sweet man – a man of bliss (ମଧୁର ମଣିଷ, ସ୍ୱର୍ଗୀୟ ମଣିଷ) – ଏପରି ଲୋକ ଦେଖି ନାହିଁ । ଶୁଧୁ

ଭଲ ମଣିଷ ହେଲେହିଁ ହେବ ନାହିଁ। ଆଦର୍ଶଙ୍କ ଠାରେ ଅଚ୍ୟୁତ ରହି ମୁଣ୍ଡ ଖଟାଇ ଚାଲିବା ଦରକାର – ଯେଉଁଠାରେ ଯାହା ସହିତ ଯେଉଁ ଭାବରେ ଯେପରି ପ୍ରୟୋଜନ ସେହିପରି, ଯାହାଦ୍ୱାରା ପ୍ରତ୍ୟେକଙ୍କର ଅନ୍ତରର ସିଂହଦ୍ୱାର ତୁମ ସାନିଧରେ ଆସି ଉନ୍ମୁକ୍ତ ହୋଇଯାଏ। ତୁମ ମଧରେ ତୁମ ଠାକୁରଙ୍କୁ ଦେଖିବାକୁ ପାଏ। ତେବେ ତ ହୁଏ !

ଆ.ପ୍ର. ୧୫/୬.୨.୧୯୪୯

**ପ୍ର. – ଇଷ୍ଟାନୁସରଣ କେତେବେଳେ ଅନ୍ୟକୁ ମଧ୍ୟ ଇଷ୍ଟଙ୍କ ପ୍ରତି ଶ୍ରଦ୍ଧାନ୍ୱିତ କରି ତୋଳେ ?**

**ଶ୍ରୀଶ୍ରୀଠାକୁର –** ଆଗ ତୁମ ଉପରେ ଶ୍ରଦ୍ଧା ହେବା ଦରକାର। ତୁମକୁ ଶ୍ରଦ୍ଧା ନ କଲେ ତୁମର ଠାକୁରଙ୍କୁ ଶ୍ରଦ୍ଧା କରିବେ କ'ଣ ଦେଇ ? ତୁମର ଚରିତ୍ରହିଁ ଯଦି ଇଷ୍ଟସ୍ୱାର୍ଥ-ପ୍ରତିଭୂ ହୁଏ, ତୁମକୁ ଦେଖି ତାର ହୃଦୟ ଭରିଯିବ, ସତ୍ତା ଡଗମଗ ହୋଇଉଠିବ ! ତୁମେ ଯଦି ଇଷ୍ଟଙ୍କର ହୁଅ, ତୁମର ଚଳଚଟା ମଧ୍ୟ ଇଷ୍ଟଙ୍କର ହେବ। କାୟମନୋବାକ୍ୟରେ ଏହିପରି ହୋଇ ଉଠିବାହିଁ ପ୍ରଧାନ କଥା। ଆ.ପ୍ର. ୧୫/୬.୨.୧୯୪୯

**ପ୍ର. – ଇଷ୍ଟଙ୍କ କାର୍ଯ୍ୟରେ ମାତି ରହିଲେ ଦେଖାଯାଏ ପରିବାରର ଲୋକ କ୍ଷୁବ୍ଧ ହୁଅନ୍ତି। କାହିଁକି ?**

**ଶ୍ରୀଶ୍ରୀଠାକୁର –** ତାର ମାନେ ତୁମର ବ୍ୟବହାରରେ gap (ଫାଙ୍କ) ଅଛି। ତୁମର ବ୍ୟବହାରରେ ସେମାନେ ତୁମକୁ ହରାଇଛନ୍ତି ବୋଲି ଭାବିବାର ସୁଯୋଗ ତୁମେ ଦେଇଛ। ଆଉ ଟଙ୍କା-ପଇସା ଦିଗରୁ, ଉପାର୍ଜନର ଦିଗରୁ ଯଦି ତୁମର ଅଭିଭାବକ ଦେଖନ୍ତି ଯେ ସେ ସାରା ଜୀବନ କଲମ ଚଳାଇ ଶେଷ ଜୀବନରେ ମାସକୁ ୫୦୦ ଟଙ୍କା ପାଉଛି, ଆଉ ତୁମେ ଜଣକ ଘରକୁ ଯାଇ ଛିଡ଼ା ହେବା ମାତ୍ରେ ହଜାର-ହଜାର ଟଙ୍କାର ଉପଢୌକନ ଚାଲିଆସୁଛି, ସେତେବେଳେ ସେମାନଙ୍କର ନିଃଶ୍ୱାସ ଅଟକି ଆସେ, ବାବା କହିବେ କି ନ କହିବେ ଟେର ପାଆନ୍ତି ନାହିଁ। ତୁମେମାନେ କଥା କୁହ, କିନ୍ତୁ କଥାଗୁଡ଼ିକ material shape (ବାସ୍ତବରୂପ) ନିଏ ନାହିଁ, ସପାରିପାର୍ଶ୍ୱିକ ନିଜକୁ profitable (ଲାଭବାନ) କରିତୋଳେ ନାହିଁ materially (ବାସ୍ତବରେ), ଆଉ ତୁମର ଚଳନ ଦେଖି ମୋ ପ୍ରତି ମଣିଷର love (ଭଲପାଇବା) ଏତେଟା overflowing (ଉଚ୍ଛଳ) ହୁଏ ନାହିଁ – ଯାହାଦ୍ୱାରା ମଣିଷ ସେତେଟା dedicated (ସମର୍ପିତ) ହୋଇ ଖୁସି ହୁଏ। ସେହିପରି ହେଲେ ପରିବାରକୁ ମଧ୍ୟ materially fulfil (ବାସ୍ତବରେ ପରିପୂରଣ) କରି ପାରିଥା'ନ୍ତ।

ଆ.ପ୍ର. ୧୫/୬.୨.୧୯୪୯



**ପ୍ର. – ଇଷ୍ଟଙ୍କର କଥା ତ ସବୁ ସମୟରେ ମୁଣ୍ଡରେ ରହେ ନାହିଁ। ତାଙ୍କର ଭାବଟା continuous କିପରି ହୋଇପାରେ ?**

**ଶ୍ରୀଶ୍ରୀଠାକୁର –** ନିରନ୍ତର ଅଭ୍ୟାସ ଦ୍ୱାରା ଠାକୁରଙ୍କୁ ତୁମ ଇଷ୍ଟଙ୍କୁ ତୁମର ଭାବରେ, ତୁମର ଚରିତ୍ରରେ, ଚାଲିବାରେ, କଥାରେ, ବ୍ୟବହାରରେ, ମୂର୍ତ୍ତ କରିତୋଳ। କଣ୍ଟିନିୟୁଟି କଥାର ମାନେ ତୁମର ଚରିତ୍ରହିଁ ତାଙ୍କୁ ବହନ କରୁଛି। କାର୍ଯ୍ୟକର୍ମରେ, ମଣିଷ ସହିତ ମିଳାମିଶାରେ, ସବୁ ମଧରେ ତାହା ପ୍ରାଞ୍ଜଳ ହୋଇ ଫୁଟି ଉଠିବ। ... ତୁମ ମଧରେ ଠାକୁରଙ୍କୁ ଦେଖିବେ। ଭାବିବେ ଏହି ଯେ ଠାକୁରଙ୍କୁ ଦେଖୁଛି, ତାହାହିଁ ତ ଅନେକ। ଜାଣେ ନା ସେ କେମିତି ! ...ଅଚ୍ୟୁତ ଆଦର୍ଶୀ ଶ୍ରଦ୍ଧାକର୍ଷକ ସେବାପ୍ରାଣ ବ୍ୟବହାର ଦରକାର।

ଆ.ପ୍ର. ୧୫/୬.୨.୧୯୪୯

**ପ୍ର. – ଇଷ୍ଟାନୁସରଣର ଲକ୍ଷ୍ୟରେ ମଣିଷ ସହିତ ସହଯୋଗିତାର ଧାରା କିପରି ହେବ ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେବା ଦରକାର କଞ୍ଜୁସ ପରି। ସେତେବେଳେ ମଣିଷ ପ୍ରବୃତ୍ତିସ୍ୱାର୍ଥ ପାଇଁ କାହା ସହିତ identified (ଏକୀଭୂତ) ହୁଏନା। ବିଶ୍ୱାସ କରି ଠକିଲି, ଏକଥା କୁହେ ନାହିଁ। ତା'ମାନେ ବିଶ୍ୱାସ କରିନାହିଁ। ବିହିତ କରଣୀୟ ଗୁଡ଼ିକ ନ କରି ନିଜକୁ ଠକାଇ ଠକିଛି। ପ୍ରକୃତରେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେଲେ ସେ unfavourable (ପ୍ରତିକୂଳ)କୁ ମଧ୍ୟ ସେହି ଗରଜରେ favourable (ଅନୁକୂଳ) କରିନିଏ। କୌଣସି ପ୍ରକାରରେ ବ୍ୟାହତ ନ ହୋଇ ଯେଉଁଠାରେ ଯାହାର co-operation (ସହଯୋଗିତା) ପ୍ରୟୋଜନ, ତାହା ସେ କୌଶଳ କରି ଯୋଗାଣ କରେହିଁ। ଭାତ ଖାଇବାକୁ ହେଲେ ଜମି ଚାଷ କରିବା ଦରକାର। ସାର ଦେବା ଦରକାର, ଧାନ ବୁଣିବା ଦରକାର, ତାହା ନହେଲେ ଭାତ ଖାଇବାରେ ସୁବିଧା ହୁଏନାହିଁ। ସେହିପ୍ରକାର କାର୍ଯ୍ୟ କ୍ଷେତ୍ରରେ ମଧ୍ୟ ପରିବେଶର ସହିତ co-operation (ସହଯୋଗିତା) କରିବା ଦରକାର, ତା' ନହେଲେ ପରିବେଶର ସାହାଯ୍ୟ ପାଇ ହୁଏନାହିଁ, ଯେଉଁଟାକି ବଞ୍ଚିବା ପାଇଁ ଅପରିହାର୍ଯ୍ୟ। ତେବେ real co-operation (ପ୍ରକୃତରେ ସହଯୋଗିତା) ହୁଏ ଏକ ଆଦର୍ଶଙ୍କଠାରେ କଞ୍ଜୁସ୍ ପରି ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ଯେଉଁମାନେ ସେମାନଙ୍କ ଭିତରେ। ତାକୁହିଁ କହନ୍ତି ଏକତା। ସେମାନେ ପରସ୍ପର normally inter-interested (ସ୍ୱଭାବତହିଁ ପାରସ୍ପରିକ ଭାବେ ସ୍ୱାର୍ଥାନ୍ୱିତ) ହୋଇ ଉଠନ୍ତି।

ଆ.ପ୍ର. ୧୫/୭.୨.୧୯୪୯

**ପ୍ର. – ଇଷ୍ଟାନୁସରଣ ମଧରେ ବି ଅନେକଙ୍କର ସ୍ୱାର୍ଥବୁଦ୍ଧି ଥାଏ। ଏହା କିପରି ଯାଏ ?**

**ଶ୍ରୀଶ୍ରୀଠାକୁର** – ଯିବାର ଦରକାର ନାହିଁ। ସେହିଟିକୁହିଁ self (ସ୍ୱ) କରି ନେଲେହିଁ ହୁଏ। ଇଷ୍ଟଙ୍କର ସ୍ୱାର୍ଥହିଁ ଆତ୍ମସ୍ୱାର୍ଥ। ଧରାଯାଉ ତୁମେ କେମେଷ୍ଟ୍ରିକୁହିଁ ତୁମର self (ସ୍ୱ)ର ସହିତ ଜଡ଼ାଇ ନେଲ। ତା'ଦ୍ୱାରାହିଁ ତୁମେ ଭଲ କେମିଷ୍ଟ ହୋଇପାରିବ। ତା'ଦ୍ୱାରା ତୁମର ଆତ୍ମସ୍ୱାର୍ଥ ସୁସିଦ୍ଧ ହେବ। ସେଥିପାଇଁ self (ସ୍ୱ ବା ନିଜ)କୁ surrendered (ସମର୍ପିତ) କରିବା ଛଡ଼ା self-interest (ଆତ୍ମସ୍ୱାର୍ଥ) ଅଧିଗତ କରାଯାଏ ନାହିଁ। ଆଉ ଆତ୍ମସମର୍ପଣ ମାନେହିଁ ସର୍ବତୋମୁଖୀ ଇଷ୍ଟନିଷ୍ଠା।

ଆ.ପ୍ର. ୧୫/୭.୨.୧୯୪୯

**ପ୍ର. – ଇଷ୍ଟାନୁସରଣରେ କୌଣସି ପ୍ରକାରେ ବି ବିଚଳିତ ନ ହେବା କିପରି ଆସେ?**

**ଶ୍ରୀଶ୍ରୀଠାକୁର** – ତାହା ଆସେ କଞ୍ଜୁସ୍ ପରି, ନିଷ୍ଠୁର ପରି, ଆନ୍ତରିକ ଭାବରେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେବାଠାରୁ। ଦେଖିନାହଁ କି କୃପଣ ଟଙ୍କା ବିଷୟରେ ନିଜର ଲୋକସାନ ହେବ ଏପରି ଭାବରେ କୌଣସି ପ୍ରକାରେ ରାଗାନ୍ୱିତ ହୁଏନାହିଁ। ଅପମାନ ମଧ୍ୟ ତା' ଦେହକୁ ଲାଗେ ନାହିଁ। ତା'ମାନେ ଟଙ୍କାର interest (ସ୍ୱାର୍ଥ) ତା' ପାଖରେ prominent ପ୍ରଧାନ)। ...ଇଷ୍ଟସ୍ୱାର୍ଥ ପ୍ରତିଷ୍ଠାପନ୍ନତାହିଁ ଏକମାତ୍ର ଜିନିଷ ଯାହା ଆମ୍ଭମାନଙ୍କର ଚଳନକୁ ଯଥା-ପ୍ରୟୋଜନ ନିୟନ୍ତ୍ରିତ କରେ। ବିଚଳିତ ହେବ ବା ହେବନାହିଁ, ସେଇଟା ବଡ଼କଥା ନୁହେଁ। ପ୍ରଧାନ କଥା ହେଲା ଇଷ୍ଟସ୍ୱାର୍ଥପ୍ରତିଷ୍ଠା ଯାହାଦ୍ୱାରା ଅକ୍ଷୁର୍ଣ୍ଣ ରହେ, ସେହିପରି ଭାବରେ ଚଳିବ। ସେହି ବୁଦ୍ଧି ରହିଲେ, ଯେଉଁଠାରେ ତାଙ୍କ ଦେହରେ ହାତ ପଡ଼ିବ, ସେଠାରେ ଆମର ମର୍ମଦଗ୍ଧ ହୋଇଯିବ। ମୁଁ ଚୁପ୍ କରି ରହିବି ନାହିଁ। ବିହିତ ପରାକ୍ରମ ନେଇ ଦୃଢ଼ତାର ସହିତ ପ୍ରତିରୋଧ କରିବି। ଗୋରୁ-ଗାଈ ବେଳକୁ ଦେଖିନାହଁ, ତା'ର ବାଛୁରୀ ପାଇଁ କେମିତି କରେ? ବିଚଳିତ ହେବା ନ ହେବାର ବ୍ୟାପାର ନାହିଁ। ଇଷ୍ଟସ୍ୱାର୍ଥପ୍ରତିଷ୍ଠାକୁ ଜୀବନର ବ୍ରତ କରିଚାଲିବ – ଏହା ହେଲା ମୂଳକଥା। ଇଷ୍ଟସ୍ୱାର୍ଥପ୍ରତିଷ୍ଠା କଥାଟି ବଡ଼ accurate (ଠିକ୍) କଥା।

ଆ.ପ୍ର. ୧୫/୭.୨.୧୯୪୯

**ପ୍ର. – ଇଷ୍ଟାନୁସରଣରେ କିପରି ହେଲେ ଅନ୍ୟର ମଧ୍ୟରେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଭାବଟା ସଞ୍ଚାରିତ ହୋଇପାରେ?**

**ଶ୍ରୀଶ୍ରୀଠାକୁର** – ତୁମେ ଯଦି କଞ୍ଜୁସ୍ ପରି, ନିଷ୍ଠୁର ପରି ବାସ୍ତବରେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହୁଅ, ତୁମର ଚାହିଁବା, ଚାଲିବା, ଭାବିବା, କଥା, ଭଲ, ମନ୍ଦ, ସୁଖ, ଦୁଃଖ ଉନ୍ନତି, ଅବନତି, ଯଦି ଏକମାତ୍ର ଏହାହିଁ ହୁଏ, ତେବେ ତାହା ଅନ୍ୟ ମଧ୍ୟରେ ସଞ୍ଚାରିତ ହେବହିଁ। ତେବେ ସେହି ମଣିଷଟାର gate (ଦରଜା)ଟା open (ଉନ୍ମୁକ୍ତ) କରିବାପାଇଁ, ତା'ର ଗ୍ରହଣୋନ୍ମୁଖ ମନୋଭାବଟା ସୃଷ୍ଟି କରିବାପାଇଁ, ତା' ଉପରର ମଇଳାଟା ଆଡ଼େଇ ଦେବାପାଇଁ ଯେଉଁଟା manipulation (ସଞ୍ଚାଳନା) ଦରକାର, ତାହା tactfully (ସୁକୌଶଳରେ) କରିବାକୁ ହୁଏ। ତୁମେ ତ magnet (ଚୁମ୍ବକ) ହୋଇହିଁ ଅଛ, ସେତେବେଳେ ସେହି ଲୁହା ଆସି ଟକ୍ କରି ତୁମଠାରେ ଲାଗିଯିବ। ନିଜେ ବାସ୍ତବରେ ସେହିପରି ହେବା ଆଉ ତା'ର କ୍ଷୁଧାଟା ଜଗେଇବା, ଏହାହିଁ ତ ଯାଜନ। ଚରିତ୍ରଟା ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେଲେ ମଣିଷର ସବୁ ବୃତ୍ତିହିଁ ତାଙ୍କର ପ୍ରତିଷ୍ଠାର ସହାୟକ ହୁଏ। ....Self (ହୀନସ୍ୱାର୍ଥ) ରହିଲେ ମଣିଷର ego (ଅହଂ) ଥାଏ। Tussle (ଦ୍ୱନ୍ଦ) ହୁଏ। ମଣିଷ ସହିତ ଟଣାହିଞ୍ଚଡ଼ା ହୁଏ। ତାହା ପୁଣି ଶରୀର ଓ ମନର ସ୍ୱାସ୍ଥ୍ୟପକ୍ଷରେ ମଧ୍ୟ କ୍ଷତିକର। ତାହାଦ୍ୱାରା ତୁମର ସେହି ପବିତ୍ର ମହିମାମୟ ରୂପ ଖୋଲିବ ନାହିଁ, ଯେଉଁ ରୂପ ଦେଖି ମଣିଷ ଅନିବାର୍ଯ୍ୟ ଭାବରେ ତୁମ ପ୍ରତି ଓ ତୁମର ଇଷ୍ଟଙ୍କ ପ୍ରତି ଆକୃଷ୍ଟ ହେବ। ନିର୍ମଳ ହୁଅ, ନିଷ୍କଳୁଷ ହୁଅ, ପ୍ରବୃତ୍ତି ମେଘ ମୁକ୍ତ ହୁଅ। ମଣିଷ ମଧ୍ୟରେ ଭଗବତ୍ତା ଅଛିହିଁ। ତୁମର ଭଗବତ୍ତା ବିକଶିତ ହେଲେ ମଣିଷ ସ୍ୱତଃହିଁ ତୁମ ପ୍ରତି ଆକୃଷ୍ଟ ହେବ। 'ଠାକୁର ଭଗବାନ' କହି ଭୋ-ଭୋ କରି କାନ୍ଦିଲେ ବା ଭିରିକିଟି ଦେଖାଇଲେ ମଣିଷର ମନ ଭିଜିବ ନାହିଁ, ଯେତେପର୍ଯ୍ୟନ୍ତ ପ୍ରକୃତରେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନତା ତୁମର ବାସ୍ତବ ଚରିତ୍ରରେ ପ୍ରକଟ ନ ହୋଇଛି। ''ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ / ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ।'' ଏହାଛଡ଼ା ଜିନିଷ ନାହିଁ। ''ମୟି ସର୍ବାଣି କର୍ମାଣି ସଂନ୍ୟସ୍ୟାଧ୍ୟାତ୍ମଚେତସା / ନିରାଶୀର୍ନିର୍ମମୋ ଭୂତ୍ୱା ଯୁଦ୍ଧସ୍ୱ ବିଗତଜ୍ୱରଃ।'' Actively (ସକ୍ରିୟ ଭାବରେ) ଏହିପରି ହୋଇଉଠ। ମାମଲା ତ ଏହି ଟିକକ। କଠିନ କିଛିହିଁ ନୁହେଁ।

ଆ.ପ୍ର. ୧୫/୭.୨.୧୯୪୯

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ଠିକ୍-ଠିକ୍ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପ୍ରାଣ ହେବାକୁ ହେଲେ କିପରି ଭାବରେ ଚଳିବାକୁ ହୁଏ?**

**ଶ୍ରୀଶ୍ରୀଠାକୁର** – ପାଞ୍ଚଜଣ ମଣିଷ କଞ୍ଜୁସ୍ ପରି ଇଷ୍ଟସ୍ୱାର୍ଥପ୍ରତିଷ୍ଠାପ୍ରାଣ ହେଲେ ଦୁନିଆ ତାର ଚାପ ସହିବା ମୁସ୍କିଲ। ସେମାନେ ଓଲଟ-ପାଲଟ କରିଦେଇ ପାରନ୍ତି। ମନକୁ ଦୁଇଟଣା କରିବ ନାହିଁ, ହୁଏତ ମୁଁ ନହେଲେ ସଂସାର ଗୋଟିଏକୁ ଧରିବ। ମୁଁ କହିବାକୁ ଚାହେଁ, ଆପଣଙ୍କ ପଛରେ କେହି ଅଛି ବା ନାହିଁ, ତା' ନେଇ ଆଦୌ ବିବ୍ରତ ହେବେ ନାହିଁ। ଏକମାତ୍ର ଇଷ୍ଟଙ୍କୁ ନେଇ ଯଦି ରହନ୍ତି, ସେତେବେଳେ ସବୁ ଠିକ୍ ରହିବ। ....ଏପରି ହେବା ଦରକାର ଯେ, ଇଷ୍ଟସ୍ୱାର୍ଥପ୍ରତିଷ୍ଠା ଛଡ଼ା ଅନ୍ୟ କିଛି ପାଇଁ ଗୋଟିଏ ନିଃଶ୍ୱାସ ମଧ୍ୟ ବୋହିବ ନାହିଁ। କଞ୍ଜୁସ୍ ପରି, ମହୁମାଛି ପରି, ଦୁନିଆର ପ୍ରତ୍ୟେକଟି ଜିନିଷରୁ ଇଷ୍ଟସ୍ୱାର୍ଥପ୍ରତିଷ୍ଠା ଚୁସି ନେବେ, ଏହାଛଡ଼ା କିଛି ଚାହିଁବେ ନାହିଁ, ଜାଣିବେ ନାହିଁ। ଚଳନ-ଚରିତ୍ର, ଆଚାର-ବ୍ୟବହାର, କଥା-କାୟଦା କେବଳ ତାଙ୍କୁହିଁ ଜାହିର କରିବ। ଠାକୁର ମୋର ଅଛନ୍ତି, ଏହା ପ୍ରତ୍ୟେକଟି ପଦକ୍ଷେପରେ

ଭକ୍ତି-ଆପ୍ଲୁତ ଭଙ୍ଗୀରେ ଯଦି ଫୁଟି ନ ଉଠେ, ତାହାହେଲେ ମଣିଷ ମଜ୍ଜିବ କ'ଣ ପାଇଁ? ବାହାରକୁ ଯିବେ ଯଦି, ସେହିପରି ଅକାଟ୍ୟ ହୋଇଯାଆନ୍ତୁ, କାର୍ଯ୍ୟ କରିବେ ତ ଭଲକରି କରନ୍ତୁ – ଘରଦ୍ୱାର, ପିଲାପିଲି, ଅଭାବ-ଅଭିଯୋଗ, ଟଙ୍କା-ପଇସା, ରୋଗ-ଶୋକ, କୌଣସିଟିକୁହିଁ ଖାତିର ନ କରି।

ଆ.ପ୍ର. ୧୫/୮.୨.୧୯୪୯

**ପ୍ର. – ଇଷ୍ଟାନୁସରଣ, ଇଷ୍ଟନିଶା ଛଡ଼ା ବି ତ ମଣିଷ ଭଲ ହୁଏ, ଟଙ୍କାପଇସାବାଲା ହୁଏ, ଶିକ୍ଷିତ ହୁଏ, ସତ୍‌କାର୍ଯ୍ୟ ମଧ କରେ। ତେବେ ଇଷ୍ଟାନୁସରଣ କ'ଣ ପାଇଁ ଦରକାର?**

**ଶ୍ରୀଶ୍ରୀଠାକୁର** – ତୁମେ ଭଲ ଥାଅ, ମନ୍ଦ ଥାଅ, ସେଥିରେ କିଛି ଆସେ ଯାଏ ନାହିଁ– ଯାହା ଅଛ ତାହାହିଁ ଯଦି ଇଷ୍ଟଙ୍କଠାରେ adjusted (ନିୟନ୍ତ୍ରିତ) ହୁଏ। ଏହା ଯଦି ଘଟାଇ ପାର ତାହାହେଲେ ତୁମେ ରତ୍ନାକର ଥିଲେ ମଧ ବାଲ୍ମିକୀରେ ପରିଣତ ହେବ। ଅଚ୍ୟୁତ ଆନତି ଦରକାର, ତୁମର କିଛିହିଁ ତାଙ୍କ ଠାରୁ ଅଧିକ ରହିବ ନାହିଁ। ପୁଣି ଇଷ୍ଟନିଶା ନାହିଁ, ତୁମେ ସତ୍-ଚରିତ୍ର, ଟଙ୍କାପଇସାବାଲା ଶିକ୍ଷିତ ମଣିଷ, ସତ୍‌କାର୍ଯ୍ୟ କର, ଅଥଚ ଏକ ରସ୍ତାର ଭିକାରୀ ଯିଏ କିଛି ବି ଜାଣିନି, ସେ ଯଦି ସବୁ କିଛିକୁ ଅତିକ୍ରମ କରି ଇଷ୍ଟଙ୍କଠାରେ ଆକୂଳ ଟାଣ ନେଇ ଜାଗି ଉଠେ, ତା'ହେଲେ ସେ ହିଁ ତୁମ ଠାରୁ ଗୋଟିଏ ମୁହୂର୍ତ୍ତରେ superior (ଉନ୍ନତତର) ହୋଇଯିବ।

ଆ.ପ୍ର. ୧୫/୧୩.୨.୧୯୪୯

**ପ୍ର. – ଇଷ୍ଟାନୁସରଣରେ ତ ନାମଧ୍ୟାନର ଗୁରୁତ୍ୱ ଅସୀମ। ଏହି ନାମଧ୍ୟାନ ଅଭ୍ୟାସକାଳୀନ ଅବସ୍ଥାରେ କିପରି ଭାବରେ ଚାଲିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ଧ୍ୟାନରେ suppressed (ନିରୁଦ୍ଧ) ବହୁତ କିଛି ଜାଗି ଉଠେ। ପୁଣି ଅନେକ କିଛି ମଧ ସ୍ଥିର ହୋଇ ଆସିଥାଏ। ଧ୍ୟାନ କରୁ କରୁ concentration (ଏକାଗ୍ରତା) ହୁଏ, ସେତେବେଳେ ସାଧାରଣ ମଣିଷ ଠାରୁ conception (ବୋଧ) ଅନେକ ଉନ୍ନତ ହୋଇଯାଏ। ଧ୍ୟାନ ସମୟରେ ନିଜକୁ ପରିବେଶ ଠାରୁ ବିଚ୍ଛିନ୍ନ ଓ ସେହି ଦିଗରୁ କିଛିଟା ନିସଙ୍ଗ ମନେ ହେଲେ ମଧ ଇଷ୍ଟଙ୍କ ଉପରେ ଭଲପାଇବା ରହିଲେ, ତାଙ୍କର ସଙ୍ଗସୁଖ ଉପଭୋଗ କରାଯାଏ ଏବଂ କୌଣସି କଷ୍ଟ ହୁଏ ନାହିଁ। ଲୋକସଙ୍ଗ ପରିହାର କରି ସର୍ବଦା ନିର୍ଜନ ରହିବାର ଚେଷ୍ଟା ନ କରି କେତେବେଳେ ନିର୍ଜନ ବାସ ଓ କେତେବେଳେ ବି ଯାଜନରେ ବ୍ୟାପୃତ ରହିଲେ କଷ୍ଟ ହୁଏ ନାହିଁ। ଯାଜନ କରିବାକୁ ଗଲେ ପରିବେଶର ଊର୍ଦ୍ଧ୍ୱରେ ରହିବାକୁ ହୁଏ ଏବଂ ସେମାନଙ୍କର influence-ରେ (ପ୍ରଭାବରେ) ଅଭିଭୂତ ନ ହୋଇ, ସେମାନଙ୍କୁ ଇଷ୍ଟଙ୍କ ଦିଗକୁ mould (ନିୟନ୍ତ୍ରଣ) କରିବାକୁ ହୁଏ। ଇଷ୍ଟଙ୍କ ପ୍ରତି ଟାଣ concentrated (ଏକାଗ୍ର ବା ଘନିଭୂତ) ହେଲେ, ତାହା sublimation-ରେ (ଭୂମାୟିତରେ) ଭରି ଯାଏ। ସେତେବେଳେ



ମଣିଷ ସମସ୍ତଙ୍କୁ ନିଜର କରି ନିଏ। ନାମଧ୍ୟାନରେ nerve-system (ସ୍ନାୟୁତନ୍ତ୍ର) ଶକ୍ତିଶାଳୀ ଓ ସମର୍ଥତର ହୁଏ। ହଠାତ୍ ମାତ୍ରା ଖୁବ୍ ବଢ଼ାଇ ଦେବା ଉଚିତ ନୁହେଁ। Gradually (କ୍ରମଶଃ) ବଢ଼ାଇବାକୁ ହୁଏ, ସେତେବେଳେ system (ଶରୀର-ବିଧାନ) ଧିରେ ଧିରେ ଅଭ୍ୟସ୍ତ ହୁଏ। ସ୍ନାୟୁବିଧାନ ଶାନ୍ତ ରଖିବା ପାଇଁ ଏପରି ଖାଦ୍ୟ ଖାଇବାକୁ ହୁଏ ଯେପରି ମାଖନ, କ୍ଷୀର, ମଧୁ, କଦଳୀ। ସଙ୍ଗ ମଧ ତପସ୍ୟାର ଅନୁକୂଳ ହେବା ଦରକାର। ନାମଧ୍ୟାନରେ nervous system (ସ୍ନାୟୁତନ୍ତ୍ର) ଅତ୍ୟନ୍ତ sensitive ଓ receptive (ସାଡ଼ାପ୍ରବଣ ଓ ଗ୍ରହଣମୁଖର) ହୁଏ, just like a powerful camera (ଠିକ୍ ଗୋଟିଏ ଶକ୍ତିଶାଳୀ କ୍ୟାମେରା ପରି) ଯାହା ସୂକ୍ଷ୍ମାତିସୂକ୍ଷ୍ମ ଜିନିଷ ଧରି ନେଇପାରେ।

ଆ.ପ୍ର. ୧୫/୧୭.୨.୧୯୪୯

**ପ୍ର. – ଇଷ୍ଟାନୁସରଣ ପାଇଁ ତାଙ୍କୁ ନ ଦେଖି ଥିବା ମଣିଷ ଯଦି ତାଙ୍କର ନାମ (ଦୀକ୍ଷା) ନିଏ, ସେଥିରେ କ'ଣ କାମ ହୁଏ ?**

**ଶ୍ରୀଶ୍ରୀ ଠାକୁର** – କମ୍ ହୁଏ। ପୁଣି ତାଙ୍କ ସହିତ କିଛିଟା concentric tuning (ସୁକେନ୍ଦ୍ରିକ ଏକତାନତା) ବାଲା ଲୋକର ସାନ୍ନିଧ ଯଦି ପାଏ, ତା'ଉପରେ ଛିଡ଼ା ହୋଇ ତା'ଠାରୁ ମଧ ଉନ୍ନତ ହୋଇଯାଇପାରେ। ....ଏହି concentric agent (ସୁକେନ୍ଦ୍ରିକ ପ୍ରତିନିଧି) କିନ୍ତୁ ଦରକାରହିଁ।

ଆ.ପ୍ର. ୧୫/୧୭.୨.୧୯୪୯

**ପ୍ର. – ଇଷ୍ଟାନୁସରଣରେ ଓ ଇଷ୍ଟକର୍ମରେ କେଉଁମାନେ କୃତକାର୍ଯ୍ୟ ହୋଇପାରନ୍ତି ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କ ଛଡ଼ା ଅନ୍ୟ କୌଣସି ସ୍ୱାର୍ଥବୁଦ୍ଧି ରହିଲେ ସେମାନଙ୍କ ଦେଇ ଏହି କାର୍ଯ୍ୟ ହେବ ନାହିଁ, ହେବାର ନୁହେଁ। ଇଷ୍ଟଙ୍କ ପାଇଁ ନିଜର ଦେହ-ମନ-ପ୍ରାଣ, ଅର୍ଥ-ସାମର୍ଥ୍ୟ-ସମୟ, ପୁରାପୁରି ସମର୍ପଣ କରିଦେବାକୁ ହୁଏ। ସେତେବେଳେ ଭକ୍ତର ଭିତର-ଦେଇ ପରମପିତାଙ୍କ ଶକ୍ତିହିଁ କାର୍ଯ୍ୟ କରେ। ହନୁମାନ ପରି ସେ ଅସାଧ୍ୟ ସାଧନ କରିପକାଏ। ....ଏହି ରାସ୍ତାରେ ସ୍ୱାର୍ଥଭେଦୀ, ପ୍ରବୃତ୍ତିଭେଦୀ, ଇଷ୍ଟନିଶାହିଁ ପ୍ରଧାନ ସମ୍ବଳ। ତାହା ରହିଲେ ପଛଟାଣ, ଦୁଃଖ, କଷ୍ଟ, ମାନ-ଅପମାନ ତାକୁ କମ୍ କାବୁ କରିପାରେ। ....ଯିଏ ପଛଟାଣକୁ ignore (ଉପେକ୍ଷା) କରି ନ ପାରେ, ସେ ଚିରଦିନ suffer କରେ (ଦୁର୍ଭୋଗ ଭୋଗେ)।

ଆ.ପ୍ର. ୧୫/୧୭.୨.୧୯୪୯

**ପ୍ର. – ଇଷ୍ଟାନୁସରଣରେ ନିଜକୁ ପୁରାପୁରି ସମର୍ପଣ କରିଦେବା ପାଇଁ ବିବାହ ନ କରି ସନ୍ୟାସୀ ହେବା କ'ଣ ଭଲ ନୁହେଁ ?**

**ଶ୍ରୀଶ୍ରୀଠାକୁର** – ସନ୍ୟାସୀ ହେଲେ ସଂସାରୀମାନଙ୍କ ପାଖରୁ aloof (ଅଲଗା) ହୋଇଯାଏ। ଯେମିତି ରାମକୃଷ୍ଣ ମିଶନରେ ସନ୍ୟାସୀ ମାନେ ଅଛନ୍ତି। କିନ୍ତୁ ଗୃହସ୍ଥମାନଙ୍କ

ମଧ୍ୟରେ ରହି ଯଦି ସନ୍ୟାସୀ ହୁଏ, ସେମାନଙ୍କ ସଂସର୍ଗରେ ଆସି ଗୃହସ୍ଥ ମାନେ ଉନ୍ନତ ହୁଅନ୍ତି, ସମାଜ ଉନ୍ନତ ହୁଏ। ଏଇଥିପାଇଁହିଁ ଯତି ଆଶ୍ରମର ପରିକଳ୍ପନା। ...କେତେଗୁଡ଼ିଏ ସନ୍ୟାସୀ ଦରକାର, ଯେଉଁମାନେ କି ମଣିଷର ସର୍ବାଙ୍ଗୀନ ସ୍ୱାର୍ଥ ଦେଖିବେ। ସେମାନେ ନ ରହିଲେ ସମସ୍ତଙ୍କର ଭଲମନ୍ଦ ଦେଖିବ କିଏ ? ସମସ୍ତଙ୍କୁ inter interested (ପାରସ୍ପରିକ ଭାବରେ ସ୍ୱାର୍ଥାନ୍ୱିତ) କରି ତୋଳିବ କିଏ ? ...ପରମପିତାଙ୍କ ଦୟାରୁ ତୁମେମାନେ ଯେଉଁ ଜିନିଷ ପାଇଛ, ତାର ତୁଳନା ହୁଏ ନାହିଁ। ଦୟାଲ ତୁମକୁ ଶତ ହସ୍ତରେ ଆକଟ କରି ରଖିଛନ୍ତି, ରକ୍ଷା କରୁଛନ୍ତି। ତୁମମାନଙ୍କର କାମ ହେଲା ସମସ୍ତଙ୍କୁ ଏହି ମହାମଙ୍ଗଳର ଅଧିକାରୀ କରି ତୋଳିବା। ସେଥିପାଇଁ କୁହେ ଅନନ୍ୟମନା, ଅନନ୍ୟକର୍ମା ହୋଇ ପରମପିତାଙ୍କୁ ପରିବେଷଣ କର, ତାଙ୍କର ମଙ୍ଗଳ ଇଚ୍ଛାକୁ ଚାରିଦିଗରେ ମୂର୍ତ୍ତ କରି ତୋଳ। କିଛି ଲୋକ

"ମୟି ସର୍ବାଣି କର୍ମାଣି ସଂନ୍ୟସ୍ୟାଧ୍ୟାତ୍ମଚେତସା।
ନିରାଶୀନିର୍ମମୋ ଭୂତ୍ୱା ଯୁଦ୍ଧସ୍ୟ ବିଗତଜ୍ୱରଃ ।।"

– ଏହିପରି ହୋଇ ଲାଗ। ଦେଖ କ'ଣ ହୁଏ, କରିହିଁ ଦେଖ।

ଆ.ପ୍ର. ୧୫/୨୩.୨.୧୯୪୯

**ପ୍ର. – ଇଷ୍ଟଙ୍କ ପ୍ରତି ଖୁବ୍ ଭଲପାଇବା କିପରି ହୁଏ ?**

**ଶ୍ରୀଶ୍ରୀଠାକୁର** – ପୂଅକୁ ମଣିଷ କରୁ। ଖୁଆଉ-ପିଆଉ, ଯତ୍ନ କରୁଁ। ଇଷ୍ଟଙ୍କ ପାଇଁ ସେହି ରକମ କରିବାକୁ ପଡ଼େ। ତାଙ୍କର କଥାଟି ଭାବିବାକୁ ହୁଏ। ତାଙ୍କର କଥାହିଁ କହିବାକୁ ହୁଏ; ତାଙ୍କର ତୁଷ୍ଟି-ପୁଷ୍ଟି, ସ୍ୱାର୍ଥପ୍ରତିଷ୍ଠା ପାଇଁହିଁ ଯାହାକିଛି କରିବାକୁ ହୁଏ, ଏହା ନିରବଚ୍ଛିନ୍ନ ଭାବରେ। ଏହିପରି ଭାବରେ କରୁ କରୁ ଆପେ ଆପେ ଟାଣ ଆସେ।

**ପ୍ର. – ସେପରି ତ କରିପାରୁ ନା ?**

**ଶ୍ରୀଶ୍ରୀଠାକୁର** – ଯିଏ ଯେତେଟା ପାରେ। ଯାହା କରଣୀୟ ସେହି ବ୍ୟାପାରରେ ନା କହିବାକୁ ମଧ୍ୟ ହୁଏନାହିଁ, ଭାବିବାକୁ ମଧ୍ୟ ହୁଏନାହିଁ ବରଂ ଯାହା କରଣୀୟ ତାହା କରିବାରେ ଯଥାସାଧ ଲାଗି ରହିବାକୁ ହୁଏ। ତାଙ୍କୁ ନ ହେଲେ ତ ମୋର ଚଳିବ ନାହିଁ। ସୁତରାଂ ନେତିବାଚକ ଭାବର ପ୍ରଶ୍ରୟ ଦେଇ ଆମର ଲାଭ କ'ଣ ? ବରଂ ଯେପରି କହିବାରେ, ଯେପରି ଭାବିବାରେ, ଯେପରି କରିବାରେ ଟାଣ ଅଚ୍ୟୁତ ହୁଏ, ସେହିପରି କହିବା, ସେହିପରି ଭାବିବା ଓ ସେହିପରି କରିବାର ସ୍ରୋତ ମଧ୍ୟରେ ନିଜକୁ ପକାଇ ରଖିବାକୁ ହୁଏ। ହେବହିଁ, କରିବିହିଁ ଏହିପରି ଜିଦ୍ ଦରକାର। ମନ୍ତ୍ର ପରି କହିବାକୁ ହୁଏ – ମୁଁ ଇଷ୍ଟଙ୍କର, ମୁଁ ଇଷ୍ଟଙ୍କର। ଇଷ୍ଟଙ୍କ ପାଇଁହିଁ ମୁଁ ଓ ମୋର ଯାହାକିଛି। ମୋର ଦେହ-ମନ-ପ୍ରାଣ ତାଙ୍କରହିଁ ସେବାର ଉପକରଣ ମାତ୍ର।



ଏହି ଭାବରେ କରୁଁ କରୁଁ ମନପ୍ରାଣ ସକ୍ରିୟ ଅନୁରାଗର ଆବେଗରେ ଉତ୍ତାଳ ହୋଇଉଠେ।

ଆ.ପ୍ର. ୧୫/୨୫.୨.୧୯୪୯

**ପ୍ର. – ଇଷ୍ଟାନୁସରଣରେ ସାଧନଭଜନ ଯେତେବେଳେ ଆପେ ଆପେ ହୁଏ ନାହିଁ ଯେତେବେଳେ ଜୋର କରି କରିଲେ କ'ଣ କିଛି ହୁଏ ?**

**ଶ୍ରୀଶ୍ରୀଠାକୁର** – ଜୋର କରି କରୁ କରୁ ପରେ ହୁଏତ, spontaneous (ସ୍ୱତଃ ବା ଆପେ ଆପେ) ହୁଏ।

**ପ୍ର. – ଇଷ୍ଟାନୁସରଣରେ ସାଧନା ପାହାଡ଼-ପର୍ବତକୁ ଯାଇ ନିର୍ଜନରେ କରିବାଟା କେମିତି ?**

ଶ୍ରୀଶ୍ରୀଠାକୁର – ଗୁରୁଭକ୍ତି ନ ରହିଲେ ଯେଉଁ ଠାକୁ ବି ଯାଇ ସାଧନା କର କିଛିହିଁ ହେବନାହିଁ। ଅଭ୍ୟାସ କରିବା ମାତ୍ର ହୁଏ। ଅଭ୍ୟାସରେ ପ୍ରାଣର କ୍ଷୁଧା ମେଣ୍ଟେ ନାହିଁ। ...ଶ୍ରେୟଙ୍କ ପ୍ରତି ପ୍ରୀତି, ଆତ୍ମନିୟୋଗ, ସେବାସଂରକ୍ଷଣୀ ଚର୍ଯ୍ୟା, ଏହା ଭିତର ଦେଇ ଯେଉଁ ଆଗ୍ରହ-ଉନ୍ମାଦନା ଆସେ, ପ୍ରାଣର କ୍ଷୁଧାର ଔଷଧହିଁ ସେହିଠାରେ।

ଆ.ପ୍ର. ୧୫/୨୫.୨.୧୯୪୯

**ପ୍ର. – ଇଷ୍ଟାନୁସରଣ ମଧ୍ୟ ଦେଇ ମଣିଷ ହୁଏତ ଇଷ୍ଟପ୍ରାଣ ହୋଇ ଉଠିଲା, କିନ୍ତୁ ସେଥିରେ ତା'ର ଲାଭ କ'ଣ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟପ୍ରାଣତାରେ ମଣିଷର being-ଟା (ସତ୍ତାଟା) moulded(ବିନ୍ୟସ୍ତ ହୁଏ), ବୃତ୍ତିଗୁଡ଼ିକ adjusted (ନିୟନ୍ତ୍ରିତ) ହୁଏ। Personality(ବ୍ୟକ୍ତିତ୍ୱ) integrated (ସଂହତ) ହୁଏ, ପ୍ରଜ୍ଞାର ଉଦ୍ଭବ ହୁଏ। ତୁମେ ଅଲଗା ମଣିଷ ହୋଇଯିବ। ସାଧାରଣ ମଣିଷ ପରି ତୁମର ଜାଣିବା ଗୁଡ଼ିକ ବିଚ୍ଛିନ୍ନ ହୋଇ ରହିବ ନାହିଁ, ସେଗୁଡ଼ିକ ପରସ୍ପର ପରସ୍ପରର ପରିପୂରକ ହୋଇ ତୁମକୁ ଶକ୍ତିମାନ କରି ତୋଳିବ। ସେହି ଶକ୍ତି ବଳରେ ତୁମର ଏହି ବିଦ୍ୟା ନେଇହିଁ ବହୁତ କଠିନ କାର୍ଯ୍ୟ କୃତିତ୍ୱର ସହିତ କରିପାରିବ।

ଆ.ପ୍ର. ୧୫/୫.୩.୧୯୪୯

**ପ୍ର. – ଇଷ୍ଟଙ୍କଠାରେ କିଛିଟା ସ୍ୱାର୍ଥାନ୍ୱିତ ହେବା ସତ୍ତ୍ୱେ ମଧ୍ୟ ଅନେକ ସମୟରେ ପରସ୍ପର ସ୍ୱାର୍ଥାନ୍ୱିତ ହୋଇ ହୁଏ ନାହିଁ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଏତେ ଟିକିଏ ଫାଙ୍କ୍।

ଆ.ପ୍ର. ୧୫/୧୧.୩.୧୯୪୯

**ପ୍ର. – ଇଷ୍ଟଙ୍କର କାର୍ଯ୍ୟ ପ୍ରତ୍ୟେକେ ନିଜେ ହୁଏତ କରିବାକୁ ଚାହାଁନ୍ତି, କିନ୍ତୁ ପରସ୍ପରକୁ ସାହାଯ୍ୟ କରନ୍ତି ନାହିଁ କାହିଁକି ?**

**ଶ୍ରୀଶ୍ରୀଠାକୁର** – ତା'ର ମାନେ ଅହଙ୍କରେ ସ୍ୱାର୍ଥାନ୍ୱିତ।

ଆ.ପ୍ର. ୧୫/୧୧.୩.୧୯୪୯

**ପ୍ର. – ଇଷ୍ଟାନୁସରଣ କ୍ଷେତ୍ରରେ – "ଯିଏ କରେ ମୋର ଆଶ, ତାର କରେ ସର୍ବନାଶ" – ଏ କଥାର ଅର୍ଥ କ'ଣ ହେବ ?**

**ଶ୍ରୀଶ୍ରୀଠାକୁର** – ଯିଏ ଇଷ୍ଟାର୍ଥରେ କାର୍ଯ୍ୟ କରେ ତା'ର ଧର୍ମ, ଅର୍ଥ, କାମ, ମୋକ୍ଷ ଆପେହିଁ ଆସେ। ମୋର ମନେହୁଏ, ଯିଏ କରେ ମୋର ଆଶ ତାର କାଟେ ବୃତ୍ତି ଫାସ – ଏହି ହେଲା ଠିକ୍ କଥା। ....ବୃତ୍ତିଫାସ ଗୁଡ଼ିକ ତା ମଧ୍ୟରେ ଅଟକି ରହିଥାଏ। ତା' ଛଡ଼ା ଆଉ କିଛିହିଁ ବୁଝେ ନାହିଁ। ତାହା adjusted (ନିୟନ୍ତ୍ରିତ) ହୁଏ ଗୁରୁଙ୍କ ପ୍ରତି ଟାଣରେ।

ଆ.ପ୍ର. ୧୫/୧୨.୩.୧୯୪୯

**ପ୍ର. – ଇଷ୍ଟାନୁସରଣ ପାଇଁ ଦୀକ୍ଷା ନେବାକୁ ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର** – ଦୀକ୍ଷା ନେବାକୁ ହୁଏ concentric (ସୁକେନ୍ଦ୍ରିକ) ହେବା ପାଇଁ। ତା'ର ଚିନ୍ତା, ଚଳନ, କର୍ମ ସେତେବେଳେ ଧୀରେ ଧୀରେ adjusted (ନିୟନ୍ତ୍ରିତ) ହୁଏ। ଦୀକ୍ଷା ନ ନେଇ ତାହା ହୁଏନାହିଁ। ଯେପରି ବିବାହ କରି ଜଣଙ୍କ ସହିତ ବୋହୂ ପରି ରହିବା, ଆଉ ବିବାହ ନ କରି ଜଣକ ସହିତ ବୋହୂ ପରି ରହିବା – ଦୁଇଟା ମଧ୍ୟରେ ତଫାତ୍ ନାହିଁକି ?

ଆ.ପ୍ର. ୧୫/୨୦.୩.୧୯୪୯

**ପ୍ର. – ଇଷ୍ଟାନୁସରଣର ଆନନ୍ଦ ପାଇ ମଧ୍ୟ ମଣିଷ କ'ଣ ପାଇଁ କାମିନୀ-କାଞ୍ଚନର ଆଡ଼କୁ ଝୁଙ୍କେ ?**

**ଶ୍ରୀଶ୍ରୀଠାକୁର** – ଅନେକ ସମୟରେ ମଣିଷ ସଂସାରରେ ବ୍ୟର୍ଥ ହୋଇ ହୁଏତ ଇଷ୍ଟାନୁସରଣ କରେ। ସେତେବେଳେ ତପସ୍ୟା କରି ହୁଏତ ଏପରି ସ୍ତରକୁ ଆସିଲା ଯେତେବେଳେ କାମିନୀ-କାଞ୍ଚନ ତା' ପାଖରେ ସହଜଲଭ୍ୟ, ସେତେବେଳେ ହୁଏତ ସେହି ଦିଗକୁ ମନ ଘୁରାଇଲା। ସେହିଟା suppressed (ଚାପା) ଥାଏ। ସେ superior enjoyment (ଉନ୍ନତ ଆନନ୍ଦ) ପାଇ ଥାଇ ପାରେ, କିନ୍ତୁ supreme enjoyment (ପରମାନନ୍ଦ) ପାଇନାହିଁ। ତାହାହେଲେ ସେ ଦିଗକୁ ଆଉ ଝୁଙ୍କନ୍ତା ନାହିଁ। ...ଅନେକର ପୁଣି ଅନ୍ୟ ଆକାଂକ୍ଷା ଥିଲେ ମଧ୍ୟ, ପ୍ରକୃତ ଅନୁରାଗର ଆସ୍ୱାଦନ ପାଇ ସେ ସବୁ ତୁଚ୍ଛ ହୋଇଯାଏ। ଯେମିତି ହନୁମାନ ରାମଚନ୍ଦ୍ରଙ୍କ ପାଖକୁ ମନ୍ତ୍ରୀ ହେବାର ଆଶାରେ ଆସିଥିଲେ। କିନ୍ତୁ ପରେ ରାମଚନ୍ଦ୍ରଙ୍କୁ ଏତେ ଭଲ ଲାଗିଲା ଯେ ମନ୍ତ୍ରୀ ହେବାର କଥା ତାଙ୍କର ଆଉ ଭଲ ଲାଗିଲା ନାହିଁ। ଭାବିଲେ – "ଦୂର ! ପ୍ରଭୁଙ୍କୁ ବାଦ୍ ଦେଇ ପୁଣି କାହାର ମନ୍ତ୍ରୀ ହେବାକୁ ଯିବି ?" ସେହିଟାହିଁ ତାଙ୍କ ପାଖରେ ବଡ଼ ହେଲା – ବାଜେ ଆଶା ଦୂର ହେଲା।

ଆ.ପ୍ର. ୧୬/୨୮.୩.୧୯୪୯



**ପ୍ର. – ଇଷ୍ଟାନୁସରଣରେ ସର୍ବଦା ସଚେତନ ଓ ଚଳତଶୀଳ ରହିବା ସତ୍ତ୍ୱେ କିଛି ଦୁର୍ବଳତାତ ମଣିଷର ରହିଯାଏ। ସେଇ ଟିକକ ମାପ୍ ହେବ ତ ?**

**ଶ୍ରୀଶ୍ରୀଠାକୁର** – ମୁଁ କିଛିହିଁ ଚାହେଁ ନାହିଁ। ମୁଁ ତୁମର ସତ୍ତା ଟିକକ ଚାହେଁ। ମୋ ପାଖରେ ତୁମ ପୂର୍ଣ୍ଣ ସତ୍ତାଟା ଉପଢୌକନ ହେବ। ମୁଁ ଏତେଟା ଲୋଭୀ। ତୁମ ମଧ୍ୟରେ ଏତେଟିକିଏ ଅପୂର୍ଣ୍ଣତା ଯଦି ରୁହେ, ମୁଁ ବଞ୍ଚିତ ହେବି ସେତେଟା। ତୁମେ ମୋର ସମ୍ପଦ, ତୁମେ ମୋର ସ୍ୱାର୍ଥ, ତୁମେ ଯଦି ସମ୍ବର୍ଦ୍ଧିତ ନ ହୁଅ, ଭଲ ହୋଇ ଛିଡ଼ା ନ ହୁଅ, ତୁମେ ଯଦି ଏକ ଅଣା ଭାଙ୍ଗି ପଡ଼, ମୁଁ ହିଁ କ୍ଷୁର୍ଣ୍ଣ ହେବି, ଦୁର୍ବଳ ହେବି ସେତିକି। ସେଥିପାଇଁ ତୁମେ ତୁମର ଦୁର୍ବଳତାର ସମର୍ଥନ କରିବାକୁ ଯାଅ ନାହିଁ। ...ତୁମ ମଧ୍ୟରେ ଯେଉଁ ଶିଥିଳତା ଅଛି, ତାକୁ ମୋ ଅପେକ୍ଷା ବଡ଼ କରି ଧରିଛ। ତାହା ତୁମକୁ ସୁଖୀ କରିବ ନାହିଁ, ସମ୍ବର୍ଦ୍ଧିତ କରିବ ନାହିଁ। ମୋ ଅପେକ୍ଷା ପ୍ରବୃତ୍ତିକୁ ବଡ଼ କରି ଧର କ'ଣ ପାଇଁ ? ତାହା କ'ଣ ତୁମକୁ ଖାଇବାକୁ ଦେବ ନା ପିନ୍ଧିବାକୁ ଦେବ ? ଆତ୍ମବିଶ୍ଳେଷଣ କର ନାହିଁ କାହିଁକି ? ଦୁର୍ବଳତାକୁ ବନ୍ଧୁ କରି ତୁମର ଲାଭ କ'ଣ ? ନିଜକୁ କେବେ ବି ଖାତିର କରନାହିଁ। ଦୁର୍ବଳତା ତୁମକୁ କୃତଜ୍ଞ ହେବାକୁ ଦେବ ନାହିଁ, ତୃପ୍ତ ହେବାକୁ ଦେବ ନାହିଁ, ଦୀପ୍ତ ହେବାକୁ ଦେବ ନାହିଁ। ମୋର ଲାଭ ତୁମର ସତ୍ତା। ମୋତେ ଯଦି ଲାଭବାନ କର, ତୁମେ ଲାଭବାନ ହେବ ଅଜସ୍ର। ଆ.ପ୍ର. ୧୬/୩୦.୩.୧୯୪୯

**ପ୍ର. – ଇଷ୍ଟାନୁସରଣର ଚେଷ୍ଟା ସତ୍ତ୍ୱେ ମଧ୍ୟ ଅନେକ ସମୟରେ ସଫଳତା ଆସେ ନାହିଁ କାହିଁକି ?**

**ଶ୍ରୀଶ୍ରୀଠାକୁର** – ନିଜର ତ୍ରୁଟି କେଉଁଠି ଦେଖିବାକୁ ହୁଏ। ନିଜେ ଭଲ ହେବାକୁ ଚାହିଁଲେହିଁ ଭଲ ହୁଆଯାଏ। ନିଜକୁ ନିଜେ ନ ସୁଧାରିଲେ, କେହି କରି ଦେଇ ପାରେ ନାହିଁ। ନିଜକୁ ସଂଶୋଧନ କରି ପକାଅ, ସବୁ ସଂଶୋଧନ ହୋଇଯିବ। ନହେଲେ ନିଜକୁ ମାରିଲି ଦଶଜଣକୁ ମଧ୍ୟ ମାରିଲି। ନିଜର glow (ଦୀପ୍ତି) ନ ବଢ଼ାଇଲେ, ମଣିଷକୁ glow (ଦୀପ୍ତି) ଦେବେ କିପରି ? ଯେଉଁମାନେ ସମର୍ଥ ଓ ସକ୍ଷମ, ଯେଉଁମାନେ ପାରନ୍ତି, ସେହିମାନେହିଁ ଦୁନିଆରେ ତିଷ୍ଠି ରହନ୍ତି। ...ଦୁନିଆର ବୁକୁରେ ତିଷ୍ଠିରହିବାକୁ ଗଲେ ଦକ୍ଷତା ଦରକାର।

ଆ.ପ୍ର. ୧୬/୩୧.୩.୧୯୪୯

**ପ୍ର. – ଇଷ୍ଟାନୁସରଣରେ ଯିଏ ଚାଲିବ ତାର ସାଧାରଣ ଚାଲିବା କହିବା କେମିତି ହେବା ଦରକାର ?**

**ଶ୍ରୀଶ୍ରୀଠାକୁର** – ଚାଲିବା-ବୁଲିବା ଖୁବ୍ କ୍ଷୀପ୍ର ହେବ, ସେହି କ୍ଷୀପ୍ରତାର ସହିତ କଥାବାର୍ତ୍ତା, ଚାଲି-ଚଳନ, ସବୁଟାର ମଧ୍ୟରେ ଏକ ସ୍ଥୈର୍ଯ୍ୟ ଓ ମିଷ୍ଟତା ରହିବା ଦରକାର।

ଆ.ପ୍ର. ୧୬/୪.୪.୧୯୪୯

**ପ୍ର. – ଇଷ୍ଟାନୁସରଣରେ ପ୍ରକୃତ ଧ୍ୟାନ କାହାକୁ କହନ୍ତି ?**

**ଶ୍ରୀଶ୍ରୀଠାକୁର –** ଧ୍ୟାନ ମାନେ ଇଷ୍ଟ ସମ୍ବନ୍ଧୀୟ ଚିନ୍ତା, ଇଷ୍ଟସ୍ୱାର୍ଥପ୍ରତିଷ୍ଠା ପାଇଁ କ'ଣ କରିବି, କିପରି କରିବି, କେଉଁ ଭାବରେ ନିଜକୁ ନିୟନ୍ତ୍ରିତ କରିବି, କେଉଁ ଚଳନରେ ଚାଲିବି ଇତ୍ୟାଦି ଚିନ୍ତା। ମନ ତ ନିଶ୍ଚଳ ରହେ ନା, ମନନ ଚାଲେହିଁ। ସର୍ବପ୍ରକାରର ମନନ ଯେତେବେଳେ ଇଷ୍ଟାର୍ଥୀ ଓ ଇଷ୍ଟାନୁଗ ହୁଏ, ତାକୁହିଁ ପ୍ରକୃତ ଧ୍ୟାନ କହନ୍ତି। ଏହାହିଁ ହେଲା ଏକାଗ୍ରତା। ଏକାଗ୍ରତା ମାନେ ନିଥର ଅବସ୍ଥା ନୁହେଁ। ନିଷ୍ଠାନନ୍ଦିତ ଏକମୁଖି ଚିନ୍ତା, ଚଳନହିଁ ଏକାଗ୍ରତା। ଆଉ ଗୋଟିଏ ଜିନିଷ ମନେରଖିବେ। ଯଜନ ଯେମିତି ନିତ୍ୟକର୍ମ, ଯାଜନ ମଧ୍ୟ ସେମିତି ନିତ୍ୟକର୍ମ। ଗୋଟିଏକୁ ବାଦ ଦେଇ ଆଉ ଗୋଟିଏ ନୁହେଁ। ଆଉ ଇଷ୍ଟଭୃତି ହେଲା ଇଷ୍ଟପ୍ରାଣତାର spine ଅର୍ଥାତ୍ ମେରୁଦଣ୍ଡ। ଆ.ପ୍ର. ୧୬/୫.୪.୧୯୪୯

**ପ୍ର. – ଇଷ୍ଟାନୁସରଣ ମଧ୍ୟ ଦେଇ ମଣିଷକୁ ଇଷ୍ଟାନୁରାଗ ପାଇ ବସିଲେ କ'ଣ ହୁଏ ?**

**ଶ୍ରୀଶ୍ରୀଠାକୁର –** ଯଜନ, ଯାଜନ, ଇଷ୍ଟଭୃତି, ସ୍ୱସ୍ତ୍ୟୟନୀ, ସଦାଚାର ପାଳନ କରୁଛନ୍ତି, ଅଥଚ ମଣିଷ ଆପଣମାନଙ୍କର ସାନ୍ନିଧ୍ୟକୁ ଆସି ଅଳ୍ପ ବହୁତ ଇଷ୍ଟସ୍ପର୍ଶ ପାଉ ନାହାଁନ୍ତି; ତା'ର ମାନେ ସେତେବେଳ ପର୍ଯ୍ୟନ୍ତ ଆପଣମାନେ ତାଙ୍କର ରଙ୍ଗରେ ରଙ୍ଗିନ ହୋଇ ଉଠି ନାହାଁନ୍ତି। ଇଷ୍ଟାନୁରାଗ ଯେତେବେଳେ ମଣିଷକୁ ପାଇ ବସେ, ସେତେବେଳେ ତା'ର ଚାଲିଚଳନ, ରକମ-ସକମ, କଥାବାର୍ତ୍ତା ସବୁ କିଛିର ଭିତର ଦେଇ ତାହା ଫୁଟି ବାହାରେ। ଲୋକେ ତା' ପାଖକୁ ଆସି ସତ୍ତାର ଖୋରାକ ପାଆନ୍ତି। ତାକୁ ଦେଖି ପ୍ରାଣ ଶାନ୍ତ ହୁଏ।

ଆ.ପ୍ର. ୧୬/୬.୪.୧୯୪୯

**ପ୍ର. – ଇଷ୍ଟାନୁସରଣରେ ସଂସାର ଚିନ୍ତା ବାଧା ହୋଇ ଛିଡ଼ା ହେଲେ ପାର ହେବାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର –** ଗୋପାଳ (ସ୍ୱର୍ଗୀୟ ଶ୍ୟାମାଚରଣ ମୁଖୋପାଧ୍ୟାୟ) କହୁଥିଲେ ନା' କ'ଣ – ମୁଁ ଭାବେ ମୁଁ ବର୍ତ୍ତମାନ ଏଠାରେ ଜନ୍ମଗ୍ରହଣ କରିଛି, ସେଥିପାଇଁ ଏମାନଙ୍କୁ ମୁଁ ନିଜର ମନେକରେ, ଆଉ ଏମାନେ ମଧ୍ୟ ମୋତେ ନିଜର ଭାବନ୍ତି। ମୁଁ ମରିଯାଇ ଯେତେବେଳେ ଆଉ ଗୋଟିଏ ଜାଗାରେ ଜନ୍ମଗ୍ରହଣ କରିବି, ସେତେବେଳେ ସେମାନେହିଁ ନିଜର ହେବେ। ଏମାନଙ୍କ ସହିତ କୌଣସି ସମ୍ପର୍କ ରହିବ ନାହିଁ। ଏହି ଭାବରେ ଦେଖାଯାଏ ସଂସାରରେ କେହି ଆମର ଚିରନ୍ତନ ନିଜର ନୁହଁନ୍ତି। ସେଥିପାଇଁ ଆମର ଚିର କାଳର ନିଜର ଯିଏ, ତାଙ୍କ ସହିତ ସମ୍ପର୍କଟା ଅତୁଟ ରହିବାହିଁ ଭଲ। ବେଶୀ ଜଡ଼ାଇ ଲାଭ କ'ଣ ? – କଥାଟା ଖୁବ୍ ଠିକ୍।

ଆ.ପ୍ର. ୧୬/୭.୪.୧୯୪୯



**ପ୍ର. – ଇଷ୍ଟାନୁସରଣରେ ମନର ସହଯୋଗ ତ ଦରକାର। କିନ୍ତୁ ଆମ୍ଭମାନଙ୍କର ମନ ତ ସବୁ ସମୟରେ ଠିକ୍ ନଥାଏ ! ଏହି ମନକୁ କିପରି ଠିକ୍ ଭାବରେ ଠିକ୍ ରଖାଯାଏ ?**

**ଶ୍ରୀଶ୍ରୀଠାକୁର –** ପ୍ରଧାନ ଜିନିଷ ହେଲା ଇଷ୍ଟନିଷ୍ଠା। ଇଷ୍ଟଚିନ୍ତା ଠାରୁ କେବେ ବି ଚ୍ୟୁତ ହେବ ନାହିଁ, ସର୍ବଦା ନାମ କରିବାକୁ ହୁଏ। ଇଷ୍ଟାନୁଗ ଚିନ୍ତା, ଆତ୍ମନିୟନ୍ତ୍ରଣ ଓ ବାସ୍ତବ କର୍ମରେ ସବୁ ସମୟ ନିଜକୁ ବ୍ୟାପୃତ ରଖିବାକୁ ହୁଏ। ଏଥିରେ ମନ ସ୍ୱଭାବତଃହିଁ ଭଲ ଥାଏ। ଇଷ୍ଟପୂରଣୀ କର୍ମୋଦ୍ୟମ ଓ ଉତ୍ସାହ କମି ଗଲେ ମନରେ depression (ଅବସାଦ) ଆସେ। ପ୍ରବୃତ୍ତି ଯେତେବେଳେ ଚାପି ଧରେ ସେତେବେଳେ ତାର ପ୍ରଭାବରେ ମନ ଚଞ୍ଚଳ ଓ ମଳିନ ହୋଇଉଠେ। ସେତେବେଳେ ଔଷଧ ହେଲା ଇଷ୍ଟାନୁରାଗ ଯେପରି ପ୍ରବଳ ହୁଏ ସେହିପରି ଭାବରେ ଭାବିବା, କହିବା ଓ କରିବା। ଭାବମୁଖୀ ରହିବାକୁ ହୁଏ, ଇଷ୍ଟଝୁଙ୍କା ହୋଇ ରହିବାକୁ ହୁଏ। ଏହିପରି କେତେଗୁଡ଼ିଏ କଥା ମନେ ମନେ ଦୋହରାଇବାକୁ ହୁଏ, ଗୁଣୁଗୁଣୁ କରି ଏପରି କେତେଗୁଡ଼ିଏ ଗୀତ ଗାଇବାକୁ ହୁଏ, ଯାହାଦ୍ୱାରା ମନ ଚାଙ୍ଗା ହୋଇଉଠେ। ଆଉ ମନ ଠିକ୍ ରଖିବାର ଗୋଟିଏ ମସ୍ତ ଉପାୟ ହେଲା ଯାଜନ।

ଆ.ପ୍ର. ୧୬/୧୦.୪.୧୯୪୯

**ପ୍ର. – ଇଷ୍ଟକର୍ମରେ ଅନନ୍ୟମନା ହେବାକୁ ଗଲେ ସଂସାରର ଅଭାବ, ଅନଟନ ବା ପ୍ରୟୋଜନର ତାଗିଦରେ କ'ଣ କରଣୀୟ ?**

**ଶ୍ରୀଶ୍ରୀଠାକୁର –** ଅଭାବ ସମୟରେ ପରିବାରର ଲୋକମାନେ ଯେତେବେଳେ କିଛି ଚାହାଁନ୍ତି ସେତେବେଳେ ସେମାନଙ୍କୁ କିଛି କିଛି ଦେବାକୁ ହୁଏ, ନଚେତ୍ ଇଷ୍ଟକର୍ମହିଁ ବ୍ୟାହତ ହୁଏ। ....ନିଜର ଆବଶ୍ୟ କ୍ଲେଶସୁଖପ୍ରିୟତା ଆଉ ପରିବାରବର୍ଗଙ୍କୁ ମଧ୍ୟ ଏହିପରି ଭାବରେ ଉଦ୍‌ବୁଦ୍ଧ କରିତୋଳିବା ଦରକାର, ଯାହାଦ୍ୱାରା ସେମାନଙ୍କ ଭିତରେ ମଧ୍ୟ କ୍ଲେଶସୁଖପ୍ରିୟତା ଗଜାଇ ଉଠେ। ସେତେବେଳେ ସେମାନେ କଷ୍ଟ ଦ୍ୱାରା କମ୍‌ହିଁ କାବୁ ହୁଅନ୍ତି। ତେବେ ନିତ୍ୟାନ୍ତ ଯାହା ପ୍ରୟୋଜନ, ତାହା ଯୋଗାଇବା ଦରକାର। କେହି ଯଦି ନିଷ୍ଠା ନେଇ ଉପଚୟୀ ଭାବରେ ଇଷ୍ଟକର୍ମ କରି ଚାଲେ ତାହାହେଲେ ତା'ର ଅଭାବ-ଅଭିଯୋଗ ବେଶୀ ଦିନ ରହେ ନାହିଁ।

ଆ.ପ୍ର. ୧୬/୧୧.୪.୧୯୪୯

**ପ୍ର. – ଇଷ୍ଟାନୁସରଣରେ ଅସଲ କଥାଟା କ'ଣ ଚରିତ୍ର ନା ଅନ୍ୟ କିଛି ?**

**ଶ୍ରୀଶ୍ରୀଠାକୁର –** Urge (ଆକୂତି) ନ ରହିଲେ କେବଳ ଚରିତ୍ରରେ କିଛି ହେବ ନାହିଁ। Urge (ଆକୂତି) ରହିଲେହିଁ ଚରିତ୍ର ଜୀବନ୍ତ ହୁଏ। କାହାର ଭଲମନ୍ଦର ଧାର ଧାରିଲିନାହିଁ, ନିଜ ଅନୁସାରେ ନିଜେ ଭଲମଣିଷଟି ହୋଇ ରହିଲି, ସେଥିରେ କିଛି ହୁଏନାହିଁ। ଇଷ୍ଟଙ୍କର

ଇଚ୍ଛା ଅନୁଯାୟୀ ଲୋକଙ୍କର ମଙ୍ଗଳ ସାଧନ ପାଇଁ ଅଦମ୍ୟ ଆବେଗ ଦରକାର। ଏହାପାଇଁ ଯେ-କୌଣସି ଦୁଃଖ-କଷ୍ଟ ଆସୁ ତାକୁ ସାଦରେ ଓ ସାନନ୍ଦେ ମୁଣ୍ଡପାତି ନେବାକୁ ହେବ। ତାହା ବୋଲି ଆମେ ଯେପରି ଅଯଥା ଦୁଃଖ କଷ୍ଟକୁ ଡାକି ନ ଆଣୁ। ପୁଣି, ଦୁଃଖ-କଷ୍ଟକୁ ଏଡ଼ାଇବା ପାଇଁ ଯେପରି compromising (ଆପୋଷରଫା ମୂଳକ) ଚଳନରେ ନ ଚାଲୁ। ଗୋଟିଏ ଲକ୍ଷ୍ୟ ନ ହେଲେ କୌଣସି ବଡ଼ କାମ କରାଯାଏ ନାହିଁ। ମାତାଲ ପରି ଲାଗିରହିବାକୁ ହୁଏ। ନିଜର ଭିତରଟିକୁ ଉନ୍ନତ କରି ତୋଳିବାକୁ ହୁଏ। ଏହି mood (ଭାବ) ସୃଷ୍ଟି କରି ନେଇ ଚାଲିବାକୁ ହୁଏ।

ଆ.ପ୍ର. ୧୭/୨୭.୪.୧୯୪୯

**ପ୍ର. – ଇଷ୍ଟାନୁସରଣରେ ସଂସାରୀ ମଣିଷର ବିଚ୍ୟୁତି ତ ଆସିହିଁ ଯାଏ, ସେଥିପାଇଁ ସଂସାର ନ କରିବାହିଁ କ'ଣ ଭଲ ?**

**ଶ୍ରୀଶ୍ରୀଠାକୁର –** ପ୍ରଧାନ କଥା ହେଉଛି ଆମର ସବୁ କିଛିହିଁ ହେବା ଦରକାର ଇଷ୍ଟଙ୍କ ପାଇଁ। ଇଷ୍ଟଙ୍କଠାରୁ ଅନ୍ୟକିଛିହିଁ ଯଦି ବଡ଼ ହୁଏ, ତା'ହେଲେ ସେହିଟାହିଁ ଆମ ଜୀବନର ପ୍ରତିବନ୍ଧକ ସ୍ୱରୂପ ହୋଇ ଛିଡ଼ାହୁଏ। ମୁଁ ତ କହିଛି – ଇଷ୍ଟଙ୍କଠାରୁ ରହିଲେ ନିଜର, ଛିନ୍ନଭିନ୍ନ ଜୀବନ ତାର। ...ଯେଉଁ-ସବୁ ମଣିଷ ଇଷ୍ଟାର୍ଥେ ସଂସାର କରନ୍ତି, ସେମାନଙ୍କ ଘରେହିଁ ଦେବତାଙ୍କ ପରି ମଣିଷ ଜନ୍ମଗ୍ରହଣ କରିପାରନ୍ତି। ...ମଣିଷ ସଂସାରୀ ହେବା ସମ୍ବନ୍ଧରେ ମୋର କୌଣସି ଆପତ୍ତି ନାହିଁ। କିନ୍ତୁ ସଂସାର ଭିତରେ ରହି ମଧ୍ୟ ସେମାନଙ୍କର ସଂସାରର ଊର୍ଦ୍ଧ୍ୱରେ ରହିବା ଦରକାର। ପ୍ରବଳ ଇଷ୍ଟନିଷ୍ଠା ଛଡା ତାହା ହେବାର ନୁହେଁ। ମୁଁ ଜନକ ଚାହେଁ, ନିତାଇ ଚାହେଁ।

ଆ.ପ୍ର. ୧୭/୨୮.୪.୧୯୪୯

**ପ୍ର. – ଇଷ୍ଟାନୁସରଣ ପଥରେ ନାନାବିଧ ଦୁର୍ଭୋଗଠାରୁ ରିହାଇ ପାଇବାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର –** ମଣିଷର ନିଶା, ଅନୁରାଗ ଯଦି concentric (ସୁକେନ୍ଦ୍ରିକ) ନ ହୁଏ ଏବଂ ସେହି-ନିଶା ଯଦି ପୁଣି ପ୍ରବୃତ୍ତି ଉପରେ ଥିବା ନିଶା ଠାରୁ ପ୍ରବଳତର ନ ହୁଏ, ତେବେ, ପ୍ରବୃତ୍ତି-ପ୍ରସୂତ ନାନାବିଧ ଦୁର୍ଭୋଗର ହାତରୁ ରିହାଇ ପାଇବା କଠିନ। ଇଷ୍ଟଙ୍କ ପଥରେ ଚାଲିବାକୁ ଯାଇ ମଧ୍ୟ ମଣିଷର ଅନେକ ଦୁଃଖ-କଷ୍ଟ ଆସିପାରେ କିନ୍ତୁ ପ୍ରେଷ୍ଠ-ପୂରଣ ପାଇଁ ମଣିଷର ଜୀବନରେ ଯେଉଁ କଷ୍ଟ ଆସେ, ସାତ୍ୱତ ଚଳନ ଅକ୍ଷୁର୍ଣ୍ଣ ଥିବା କାରଣରୁ ସେ-କଷ୍ଟ ମଣିଷକୁ କମ୍‌ହିଁ କାବୁ କରିପାରେ। ସେତେବେଳେ କଷ୍ଟ ମଧ୍ୟରେ ପଡ଼ି ବି ଇଷ୍ଟଙ୍କର ଇଚ୍ଛା ପୂରଣର ସମ୍ବେଗ ଦୁର୍ବାର ହୋଇଉଠେ। ସେ ସେତେବେଳେ ମ୍ରିୟମାଣ ନ ହୋଇ ଉଲ୍ଲାସଦୀପ୍ତ ହୋଇଉଠେ। ତାକୁ ଦେଖିଲେ ବୁଝାଯାଏ, ତା'ପାଖରେ ଯେପରି – ''ଜୀବନ-



ମୃତ୍ୟୁ ପାଦତଳର ଭୃତ୍ୟ ଚିତ୍ତ ଭାବନାହୀନ।'' କଷ୍ଟ ସତ୍ତ୍ୱେ ମଧ୍ୟ ତା' ଜୀବନର ଜେଲ୍ଲା (ଔଜ୍ଜଲ୍ୟ) ଦେଖି ମଣିଷ ଉଦ୍ଦୀପ୍ତ ହୋଇଉଠେ। କଷ୍ଟ ଯେପରି ତା'ର ଜୟଟିକା।

ଆ.ପ୍ର. ୧୭/୧.୫.୧୯୪୯

**ପ୍ର. – ଇଷ୍ଟଙ୍କର ଅବର୍ତ୍ତମାନରେ ମଧ୍ୟ କ'ଣ ଇଷ୍ଟାନୁସରଣର ମଧ୍ୟ ଦେଇ ତାଙ୍କର ସେବା ଓ ତାଙ୍କୁ ତୃପ୍ତ କରାଯାଇପାରେ ?**

**ଶ୍ରୀଶ୍ରୀଠାକୁର –** ବିରହର ଯେଉଁ-ବେଦନା ସେ-ବେଦନା ମଧ୍ୟରେ ବି ପ୍ରିୟର ସ୍ମୃତି ବହନ କରି ମଣିଷ ଚାଲେ। ତାହାର-ମଧ୍ୟ ଗୋଟିଏ ଦିଗ ଅଛି। ପ୍ରିୟ ତ ହେଲେ ମଣିଷର ଅସ୍ତିତ୍ୱର ଅସ୍ତିତ୍ୱ। ସେଥିପାଇଁ ତାଙ୍କୁ ଭୁଲି ହୁଏ ନାହିଁ। ଆଜିକାଲି ମୁଁ କାମଦାମ ଯାହା ବି କରେ, ମା' ଯେପରି ମୋର ପ୍ରାଣରେ ଅପରିତ୍ୟାଜ୍ୟ ବ୍ୟଥା ରୂପରେ ଜାଗି ଅଛନ୍ତି। ଏହା ମଧ୍ୟ ଏକ ପ୍ରକାର ଯୁକ୍ତ ରହିବା। ଭଲପାଇବାହିଁ ତ ଆମ୍ଭମାନଙ୍କର ଜୀବନ। ଏବେ ବି ମୁଁ ବିଶ୍ୱାସ କରେ – ମୋର ଚଳଣୀ ଦେଇ ମୁଁ ମା'ଙ୍କୁ ପୂଜା କରି ଚାଲିଛି। ଇଷ୍ଟଙ୍କର ଅବର୍ତ୍ତମାନରେ ବି ମଣିଷ ସେହିପରି ବିରହ-ବିଦଗ୍ଧ ଅନ୍ତରରେ ସତତ ତାଙ୍କୁ ସେବା କରେ ଓ ତୃପ୍ତ କରେ।

ଆ.ପ୍ର. ୧୭/୧.୫.୧୯୪୯

**ପ୍ର. – ଇଷ୍ଟଙ୍କର ଅବର୍ତ୍ତମାନରେ ମଧ୍ୟ ମଣିଷ ତାଙ୍କର ଉପସ୍ଥିତି ବୋଧ କରିବାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର –** ଭକ୍ତି ମଧ୍ୟରେ ଯାଜନ, ଇଷ୍ଟପ୍ରସଙ୍ଗ, ଇଷ୍ଟଙ୍କର ସ୍ମରଣ, ମନନ, ଇଷ୍ଟଙ୍କର ଗୁଣଗାନ ଇତ୍ୟାଦି ଥାଏହିଁ। ଆଉ ଏହିଗୁଡ଼ିକ ଯେଉଁଠାରେ ଥାଏ, ସେଠାରେ ତାଙ୍କର ଉପସ୍ଥିତି ବୋଧ କରାଯାଏ। ଭକ୍ତ ତା'ର ସମସ୍ତ ସତ୍ତା ଦେଇ ଇଷ୍ଟସେବାରେ ବିଭୋର ହୋଇ ରହିବାକୁ ଚାହେଁ। ଏହା ମଧ୍ୟରେ ଗୋଟିଏ ସାନୁକମ୍ପି ସଙ୍ଗତି ଥାଏ। ଇଷ୍ଟଙ୍କର ଚାଲିବା, କହିବା, ବୋଧ ଓ ଅନୁଭବର ଗୋଟିଏ ଅନୁକମ୍ପନ ସ୍ପଷ୍ଟତଃ ଭକ୍ତର ସଂସ୍ପର୍ଶରେ ଆସିଲେ ଅନୁଭବ କରାଯାଏ। ଏହା ଅବଶ୍ୟ ପ୍ରତ୍ୟେକଙ୍କ ଭିତରେ ବୋଧ କରାଯାଏ, ତା'ର ବୈଶିଷ୍ଟ୍ୟ ଅନୁଯାୟୀ।

ଆ.ପ୍ର. ୧୭/୩.୫.୧୯୪୯

**ପ୍ର. – ଇଷ୍ଟଙ୍କ ପ୍ରତି କାହାର ଭକ୍ତି ଜାଗ୍ରତ ହୋଇଛି ତାହା କ'ଣ ଦେଖି ବୁଝାଯାଏ ?**

**ଶ୍ରୀଶ୍ରୀଠାକୁର –** ଭକ୍ତକୁ ଦେଖିଲେ ତା'ର ଉପାସ୍ୟଙ୍କର ସ୍ମୃତିର ଉଦ୍ଦୀପନ ହୁଏହିଁ ହୁଏ। ତାର କାରଣ, ତା'ର ଅସ୍ତିତ୍ୱଟା ପ୍ରେଷ୍ଠର ପରିପୋଷଣ, ପରିପୂରଣ ଓ ପରିରକ୍ଷଣ ନେଇ ବ୍ୟାପୃତ ଥାଏ। ଭକ୍ତ ଚାହେଁ ଇଷ୍ଟଙ୍କର ଇଚ୍ଛାଗୁଡ଼ିକ ନିଜର ଜୀବନ ଦେଇ ପରିପୂରଣ କରିବାକୁ। ସ୍ୱଭାବତଃହିଁ ତା' ମଧ୍ୟରେ ସର୍ବଜୀବ ପ୍ରତି ଶୁଭେଚ୍ଛା ଓ ସମ୍ପ୍ରୀତିର ଭାବ ପ୍ରବଳ

ହୋଇଉଠେ। ସେ ଚାହେଁ ସମସ୍ତେ ବଞ୍ଚି ରୁହନ୍ତୁ, ପୁଷ୍ଟ ହୁଅନ୍ତୁ, ତୁଷ୍ଟ ହୁଅନ୍ତୁ। କାରଣ, ସେଥିରେ ସତ୍ତାରୂପୀ ପ୍ରିୟପରମ ଖୁସି ହୁଅନ୍ତି। ଖୁବ୍ ଭଲପାଏ, ଅଥଚ ତଦନୁଯାୟୀ motor action (କର୍ମ ପ୍ରବୋଧୀ ସ୍ନାୟୁ-କ୍ରିୟା) ନାହିଁ, ତାର ମାନେ ସେଠାରେ ଭଲପାଇବା ନାହିଁ। ସ୍ତ୍ରୀ, ପିଲାପିଲି ଯେଉଁମାନଙ୍କୁ ଭଲପାଉ, ସେମାନଙ୍କ ବେଳକୁ କିନ୍ତୁ କେବେବି inactive (ନିଷ୍କ୍ରିୟ) ହୋଇ ବସିରହୁନା। ସେମାନଙ୍କ ଭଲ ପାଇଁ ଯାହା କରଣୀୟ ବୋଲି ମୁଣ୍ଡରେ ଆସେ, ତାହା ବାସ୍ତବରେ କରିବାପାଇଁ ଲାଗିହିଁ ଥାଉ। ଇଷ୍ଟଙ୍କ ପ୍ରତି ଭଲପାଇବା ରହିଲେ ଆମମାନଙ୍କର କାମ, କ୍ରୋଧ, ଲୋଭ, x. y. z ଯେତେରକମର ପ୍ରବୃତ୍ତିହିଁ ଥାଉ ନା କାହିଁକି, ସେଗୁଡ଼ିକ ତାଙ୍କଠାରେ କେନ୍ଦ୍ରାୟିତ ହୋଇ ଅନ୍ୱିତ ହୋଇଉଠେ। ସେତେବେଳେ ସେଗୁଡ଼ିକ ଆଉ ରିପୁ ହୋଇ ରହେ ନାହିଁ, ମିତ୍ର ହୋଇଯାଏ। ସୁକେନ୍ଦ୍ରିକ ହୋଇ ସେଗୁଡ଼ିକ ପୋକ-ମାଛି ପର୍ଯ୍ୟନ୍ତ ଧାରଣ-ପାଳନରେ ସକ୍ରିୟ ହୁଏ – ଇଷ୍ଟପ୍ରୀତ୍ୟାର୍ଥେ। ଏହା ଯାହା ମଧ୍ୟରେ ଯେତେ ହୁଏ, ତାହା ଦେଖି ବୁଝାଯାଏ ତା'ର ଅନ୍ତର୍ନିହିତ ଈଶ୍ୱରତ୍ୱ ବା ଠାକୁରତ୍ୱ ସେତେ ଜାଗି ଉଠୁଛି ଏବଂ ଈଶ୍ୱରଲାଭର ପଥରେ ସେତେଟା ଅଗ୍ରସର ହେଉଛି। ଇଷ୍ଟଙ୍କର ଚରିତ୍ର ସ୍ୱ-ସ୍ୱ ବୈଶିଷ୍ଟ-ଅନୁଯାୟୀ ଯାହା ଭିତରେ ଯେତେଟା ସକ୍ରିୟ ସ୍ଫୁରଣ ଲାଭ କରେ, ତାହା ଦେଖି ବୁଝାଯାଏ ତା' ଭିତରେ ଭକ୍ତି କେତେଟା ଜାଗ୍ରତ ହୋଇଛି। ଆ.ପ୍ର. ୧୭/୩.୫.୧୯୪୯

**ପ୍ର. – ଇଷ୍ଟାନୁସରଣରେ ଜପଧ୍ୟାନାଦି ସାଧନ ଭଜନ ସମୟରେ ଖାଇବା-ପିଇବା କିପରି ହେବା ଦରକାର?**

**ଶ୍ରୀଶ୍ରୀଠାକୁର –** ଖାଇବା-ପିଇବା ହାଲୁକା ଓ ପୁଷ୍ଟିକର ହେବ ଏବଂ ମାତ୍ରା ମଧ୍ୟ କମ୍ ହେବ।

**ପ୍ର. – ଇଷ୍ଟାନୁସରଣରେ ମାଛ-ମାଂସ ଇତ୍ୟାଦି ଆମିଷ-ଆହାର ତ ବର୍ଜନୀୟ। କିନ୍ତୁ ତାହାଦ୍ୱାରା କ'ଣ ଶରୀର-ସ୍ୱାସ୍ଥ୍ୟର ହାନି ହୁଏ ନାହିଁ?**

**ଶ୍ରୀଶ୍ରୀଠାକୁର –** ତୁମେ ବୁଝ ବା ନ ବୁଝ ଭଲ କରିଲେ ତାର effect (ଫଳ) ହେବହିଁ। ମାଛ-ମାଂସ ଯଦି ଜୋର କରି ବି ଛାଡ଼ି ଦିଆଯାଏ, ତାଦ୍ୱାରା ଫଳ ଭଲହିଁ ହୁଏ। ଭଲ ଯାହା, ତାହା ନ ବୁଝି କରିଲେ ମଧ୍ୟ ଭଲ ହୁଏ, କରିବାର ଫଳ ଅଛିହିଁ।

ଆ.ପ୍ର. ୧୭/୪.୫.୧୯୪୯

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ସ୍ୱାଭାବିକ ଭାବରେ ଇଷ୍ଟ, ଅହଂ ଓ ପରିବେଶର ସମନ୍ୱୟ କେତେବେଳେ ସମ୍ଭବ ହୁଏ?**

**ଶ୍ରୀଶ୍ରୀଠାକୁର –** ତୁମେ ଯେପରି ତାଙ୍କ ପାଇଁ, ତୁମର ସେବା ଓ ବ୍ୟବହାର ଭିତର-ଦେଇ ତୁମର ପାରିପାର୍ଶ୍ୱିକଙ୍କୁ ମଧ୍ୟ ସେହିପରି ଭାବରେ ତାଙ୍କର ସୁନିଷ୍ଠ ସେବକ କରି ତୋଳିବାକୁ ହେବ। ତାଙ୍କର ସେବା, ପାଳନ, ପୋଷଣ ଓ ପୂରଣର ଭିତର ଦେଇ ତୁମର ଯେଉଁ ଜ୍ଞାନ ଲାଭ ହେଉଛି, ତାହା ସେମାନଙ୍କ ଭିତରେ ପରିବେଷଣ କରିବାକୁ ହେବ – ତୁମର ଆଚରଣର ଭିତର ଦେଇ ତୁମ ପ୍ରତି ସେମାନଙ୍କୁ ସଶ୍ରଦ୍ଧ କରି ତୋଳିବାକୁ ହେବ। ଏହି ଭାବରେ ତାଙ୍କର ଇଚ୍ଛା ପୂରଣ କରିବାକୁ ଯାଇ normally (ସ୍ୱାଭାବିକ ଭାବରେ) ଇଷ୍ଟ, ଅହଂ ଓ ପରିବେଶ ମଧ୍ୟରେ coordination (ସମନ୍ୱୟ) ଆସିଯିବ। କିନ୍ତୁ ଗୋଟିଏ କଥା ମନେରଖିବାକୁ ହେବ, ଆତ୍ମପ୍ରତିଷ୍ଠାର ବୁଦ୍ଧି ନେଇ ଯଦି ଏହା କରିବାକୁ ଯାଅ ତାହାହେଲେ ତୁମେ କିଛି ପ୍ରକାରେ ବି କୃତକାର୍ଯ୍ୟ ହୋଇପାରିବ ନାହିଁ। ପ୍ରତ୍ୟେକ ସତ୍ତାର ସାର୍ଥକତା ଓ ପରିପୂରଣ ଇଷ୍ଟଙ୍କ ମଧ୍ୟରେ ନିହିତ ଥାଏ, ତାହା ତୁମର ଯେମିତି, ଅନ୍ୟର ବି ସେମିତି। ତୁମେ କୌଣସି ମଣିଷକୁ ଯଦି ତୁମଠାରେ ଆବଦ୍ଧ କରି ରଖିବାକୁ ଚାହଁ, ତା'ଦ୍ୱାରା ତା'ର ସତ୍ତା ସମ୍ୟକ୍ ସାର୍ଥକତା ଓ ପରିପୂରଣ ଲାଭ କରିବାର ସୁଯୋଗ ନ ପାଇବାରୁ ଦିନେ ସେ ତୁମ ବିରୁଦ୍ଧରେ ଦୃଢ଼ଭାବରେ ଛିଡ଼ା ହେବ। ପ୍ରବୃତ୍ତିର ପୋଷଣ ଯୋଗାଇ ଚିରକାଳ ତୁମେ କୌଣସି ମଣିଷକୁ ତୁମର ବଶରେ ରଖିପାରିବ ନାହିଁ। ଏହି ଚେଷ୍ଟା ନେଇ ଚାଲିଲେ, ତୁମେ ନିଜେହିଁ ନିଜର କବର ଖୋଳିବ। ତୁମ ଅଧୀନରେ ନିକୃଷ୍ଟ ମଣିଷ ପାଇପାର, କିନ୍ତୁ ତାଜା ଉତ୍ସାହୀ, ପ୍ରାଣବନ୍ତ ମଣିଷ ଗୋଟିଏ ବି ପାଇବ ନାହିଁ। ଆ.ପ୍ର. ୧୭/୧୨.୫.୧୯୪୯

**ପ୍ର. – ଇଷ୍ଟାନୁସରଣ ପଥରେ ଅନ୍ୟ ଭିତରେ ଇଷ୍ଟପ୍ରତିଷ୍ଠାର ବ୍ୟାପାରରେ କେତେବେଳେ ଦକ୍ଷତା ଆସେ ନାହିଁ?**

**ଶ୍ରୀଶ୍ରୀଠାକୁର –** ଇଷ୍ଟଙ୍କ ପ୍ରତି ଟାଣର ଭିତର ଦେଇ ଆତ୍ମନିୟନ୍ତ୍ରଣର ପଥ ଅବଲମ୍ବନ କରି ଆମ୍ଭେମାନେ ଯେତେକ୍ଷଣ ଅନ୍ତର୍ଜୀବନରେ କିଛିଟା ସୁପ୍ରତିଷ୍ଠିତ ନ ହୋଇପାରୁ, ସେତେକ୍ଷଣ ଅନ୍ୟ ଭିତରେ ଇଷ୍ଟପ୍ରତିଷ୍ଠାର ବ୍ୟାପାରରେ ଆମ୍ଭେମାନେ କମ୍‌ହିଁ ଦକ୍ଷତା ଅର୍ଜନ କରିପାରୁ।

ଆ.ପ୍ର. ୧୭/୧୫.୫.୧୯୪୯

**ପ୍ର. – ଇଷ୍ଟାନୁସରଣ ପାଇଁ ବିବାହିତ ଜୀବନ ଠାରୁ ଅବିବାହିତ ଜୀବନ କ'ଣ ଭଲ ନୁହେଁ?**

**ଶ୍ରୀଶ୍ରୀଠାକୁର –** ତାର କୌଣସି କଥା ନାହିଁ। ବିବାହ କରି ମଧ୍ୟ ହୋଇପାରେ, ତେବେ ବିବାହ ନ କରିଲେ ପଛଟାଣ ରହେ ନାହିଁ ସେହି ଯାହା ସୁବିଧା।

**ପ୍ର. – ସ୍ତ୍ରୀ ଯଦି ସହାୟକ ହୁଏ?**

**ଶ୍ରୀଶ୍ରୀଠାକୁର –** ତାହା ତ ଭଲହିଁ। କିନ୍ତୁ ସହାୟକ ନ ହେଲେ ତା' ପାଇଁ ତୁମକୁ କିଛିଟା କଷ୍ଟ ଭୋଗିବାକୁ ହେବ।

**ପ୍ର. – ସ୍ତ୍ରୀ ଯଦି ଇଷ୍ଟକାର୍ଯ୍ୟରେ ସହାୟତା କରେ, ସେ କ୍ଷେତ୍ରରେ ବିବାହିତ ଜୀବନ ତ ଅବିବାହିତ ଜୀବନ ଠାରୁ ଭଲ।**

**ଶ୍ରୀଶ୍ରୀଠାକୁର** – ଠାରୁ କୁହ ନାହିଁ। ଏହା ବି ଭଲ, ତାହା ବି ଭଲ। ଦୁଇଟାହିଁ ଭଲ ହୋଇପାରେ। ଜଣ-ଜଣଙ୍କର ଗୋଟିଏ-ଗୋଟିଏ ବୈଶିଷ୍ଟ୍ୟ। ...ଅବିବାହିତ ଅବସ୍ଥାରେ ଗୋଟିଏ 'ଯଦି', ବିବାହିତ ଅବସ୍ଥାରେ ଦୁଇଟି 'ଯଦି'। ଅବିବାହିତ ଅବସ୍ଥାରେ ସେ ନିଜେ 'ଯଦି' ଭଲ ଥାଏ ତା' ହେଲେ ହେଲା। ବିବାହିତ ଅବସ୍ଥାରେ ସେ ନିଜେ 'ଯଦି' ଭଲଭାବରେ ଚଳେ, ସେହି ସଙ୍ଗେ ତା'ର ସ୍ତ୍ରୀ ବି 'ଯଦି' ଇଷ୍ଟମୁଖୀ ପରିପୋଷଣୀ ହୋଇ ଚଳେ, ତେବେ ହୁଏ। ଏଠାରେ ଦୁଇଟି 'ଯଦି'। ଅବିବାହିତ ଜୀବନ ଏକ ସାର୍ବଜନୀନ ଆଦର୍ଶ ହୋଇ ପାରେ ନାହିଁ। ଅବିବାହିତ ଯେଉଁମାନେ ରହିବେ, ସେମାନେ ବରଂ ଚେଷ୍ଟା କରିବେ, ସମାଜରେ ବିବାହିତ ଯେଉଁମାନେ, ସେମାନେ ଯେପରି ଆଦର୍ଶ ଦାମ୍ପତ୍ୟ-ଜୀବନ ଯାପନ କରିପାରନ୍ତି।

ଆ.ପ୍ର. ୧୭/୨୦.୬.୧୯୪୯

**ପ୍ର. – ସବୁ ବାଧା-ବିପତ୍ତିକୁ ଏଡ଼ାଇ ଇଷ୍ଟଙ୍କର କାର୍ଯ୍ୟ କେତେବେଳେ ଆଗେଇ ନିଆ ଯାଇପାରେ?**

**ଶ୍ରୀଶ୍ରୀଠାକୁର** – କିଛିହିଁ ନୁହେଁ। ଗୋଟିଏ ମଣିଷ ଠିକ୍ ରହିଲେ ହୁଏ। ତା'ର ଚରିତ୍ର ମଧ୍ୟ ଦେଇ ଆଲୋକ ଛିଟିକି ବାହାରିବ, ତା'ର ପରିସର ସେତେବେଳେ ବଢ଼ିଚାଲିବ। ସେମାନଙ୍କ ମଧ୍ୟ ଦେଇ କାର୍ଯ୍ୟ ଅଗ୍ରସର ହେଉଥାଏ। ଯାହାର ଜୀବନରେ ଠାକୁର ନିରନ୍ତର ଜାଗ୍ରତ ରହିଥିବେ, ଆଉ ସେହି ଜାଗ୍ରତ ରହିବାଟା ଯାହାର ଆଚରଣର ଭିତର ଦେଇ ଫୁଟି ବାହାରେ, ସେ ହିଁ ପାରିବ। ସବୁ ସମୟରେ ତା'ର ମନେ ରହିବା ଦରକାର – ମୋ ଜୀବନ ମୋ ଠାକୁରଙ୍କର ଆସନ, ଯଦି କେହି ମୋତେ ଭଲ ନ ପାଏ, ନିଜର ବୋଲି ମନେ ନ କରେ, ମୋର ଚରିତ୍ର ଦେଖି ମୋତେ ଶ୍ରଦ୍ଧା ନ କରିପାରେ, ମୋର ଠାକୁରଙ୍କୁ ସିଏ ପାଇବ ନାହିଁ। ସେଥିପାଇଁ ପ୍ରତି ପଦକ୍ଷେପରେ ମୋର ସେହି ଭାବରେ ଚାଲିବା ଦରକାର, ଯାହାଦ୍ୱାରା ପ୍ରତ୍ୟେକେ ମୋତେ ତାଙ୍କ ଜୀବନରେ ଅମୃତ ପରି ପାଆନ୍ତି। ମୋତେ ଯଦି କେହି insult (ଅପମାନ) କରେ, ଅଶ୍ରଦ୍ଧା କରେ, ତାର ମାନେ ସେ ମୋର ଚରିତ୍ରରୁ ସେହି ଭାବର ଖୋରାକ ପାଉଛି। ଏହିପରି କରି ମୁଁ ହିଁ ମୋର ଠାକୁରଙ୍କୁ ଅନ୍ୟ ପାଖରେ ହେୟ କରେ। ଘରୁ ଠାକୁର ପ୍ରଣାମ କରି ଯେତେବେଳେ ବାହାରିଲି, ସେତେବେଳେ ମୋର ଠାକୁରଙ୍କୁ ନେଇହିଁ ବାହାରିଲି – ଯେପରି ମୁଁ ଠାକୁରଙ୍କୁ ବହନ କରି ନେଇ ସର୍ବତ୍ର ଘୁରି ବୁଲୁଛି।

ଆ.ପ୍ର. ୧୮/୧୦.୮.୧୯୪୯



**ପ୍ର. – ଇଷ୍ଟଙ୍କ ପାଇଁ ବ୍ୟାକୁଳତା, ଆକୁଳତା, ତାଙ୍କ ପ୍ରତି ନିଷ୍ଠା ଇତ୍ୟାଦି ବଜାୟ ରଖିବା ପାଇଁ କ'ଣ ବିଧିଅନୁସାରେ ଯମ, ନିୟମ ଏହିସବୁ ମାନି ଚାଲିବାର ପ୍ରୟୋଜନ ନାହିଁ?**

**ଶ୍ରୀଶ୍ରୀଠାକୁର** – ଆମର ଗୋଟିଏ ଦିଗରେ ଥାଏ ଇଷ୍ଟଙ୍କ ପ୍ରତି ନିଶା, ଝୁଙ୍କ, ପୁଣି ଥାଏ କେତେ ଗୁଡ଼ିଏ ପ୍ରବୃତ୍ତି। ଇଷ୍ଟଙ୍କ ପ୍ରତି ପ୍ରକୃତରେ ଏତେ ଟିକିଏ ଅନୁରାଗ ଥିଲେ ମଧ୍ୟ ଯମ, ନିୟମ ଇତ୍ୟାଦି ଆପେ-ଆପେ ଆସେ । ଆମେ ସେତେବେଳେ ସ୍ୱଭାବତଃହିଁ ଚେଷ୍ଟା କରୁ ତାଙ୍କ ପ୍ରତି ବାସ୍ତବ ଝୁଙ୍କ, ଟାଣ ଯାହାଦ୍ୱାରା ବଢ଼େ ତାହାହିଁ କରିବାକୁ ଏବଂ ତାର ଅନ୍ତରାୟୀ ପ୍ରବୃତ୍ତିଗୁଡ଼ିକୁ ଜୟ କରିବାକୁ। ଯମ-ନିୟମ ଇତ୍ୟାଦିର ତାତ୍ପର୍ଯ୍ୟହିଁ ଏଇଠି। ମୋର ଯଦି ଇଷ୍ଟଙ୍କ ପ୍ରତି ପ୍ରକୃତ ଟାଣ ଥାଏ ଏବଂ ଗୋଟିଏ ଝିଅ ପିଲାକୁ ଦେଖି ଅସଂଯମ ଭାବ ଉଦୟ ହୁଏ, ସେତେବେଳେହିଁ କିନ୍ତୁ ମନେ ହେବ, ଏହାଦ୍ୱାରା ମୋର ଇଷ୍ଟଙ୍କର କ'ଣ ସ୍ୱାର୍ଥ ? ଏହାଠାରୁହିଁ ଆସେ ବିଚାର, ବୁଦ୍ଧି, ସଂଯମ, ପ୍ରତ୍ୟାହାର ଇତ୍ୟାଦି। ସେତେବେଳେ ମୁଁ ଧର୍ମବିରୁଦ୍ଧ କାମକୁ କାମ ବୋଲି ଚିହ୍ନିବାକୁ ଶିଖେ ଏବଂ ତାହା ଅତିକ୍ରମ ମଧ୍ୟ କରିପାରେ। ଏହିଭାବରେ ଆମମାନଙ୍କର ଜ୍ଞାନବୋଧ ଫୁଟି ଉଠେ। ଦୁନିଆର ପ୍ରତ୍ୟେକଟି ଜିନିଷକୁ ସେତେବେଳେ ଏହି ଦୃଷ୍ଟିଭଙ୍ଗି, ଏହି ବିବେଚନାରୁ ମାପି-ମାପି ପରୀକ୍ଷା କରି କରି-ଚାଲୁ। ପ୍ରତ୍ୟେକଟିର ସ୍ୱରୂପ ଆମ ପାଖରେ ଉଦ୍‌ଭାସିତ ହୋଇଉଠେ। ଯାହା-କିଛି ଇଷ୍ଟାର୍ଥେ ବ୍ୟବହାର କରିପାରୁ, କୌଣସି ଜିନିଷଟା ଆମମାନଙ୍କୁ ଭସାଇ ନେଇ ଯାଇ ପାରେ ନାହିଁ। କିନ୍ତୁ ଆମ୍ଭେମାନେ ଯଦି ପ୍ରବୃତ୍ତି ଝୁଙ୍କା ହୋଇପଡୁ, ପ୍ରବୃତ୍ତିର କାରଣରୁ ଇଷ୍ଟ ଆମ୍ଭମାନଙ୍କ ଜୀବନରେ ଗୌଣ ହୋଇ ପଡ଼ନ୍ତି, ସେତେବେଳେ ଆମ୍ଭେମାନେ ବୃତ୍ତି ସାରୂପ୍ୟ ଲାଭ କରୁ। ବିବେକ, ବିଚାର, ବୁଦ୍ଧି, ଯମ, ନିୟମ ଇତ୍ୟାଦି ସେଠାରେ ଆଉ ରହେ ନାହିଁ। ସେଥିପାଇଁ କୌଣସି ଗୋଟିଏ ଜାଗାରେ ସମଗ୍ର ସତ୍ତାର concentric (ସୁକେନ୍ଦ୍ରିକ) ଝୁଙ୍କ ନ ହେଲେ ସେ-ସବୁ ଆସେ ନାହିଁ। ଆଉ, ଏହା କିନ୍ତୁ ଅତି ସହଜ। ଏହାପରି ସୁବିଧା ଜିନିଷ ଆଉ କିଛି ନାହିଁ। କୌଣସି ଅନୁରାଗ ସତ୍ତାକୁ ଯଦି ଥରେ ଅନୁରଞ୍ଜିତ କରିତୋଳେ, ସେତେବେଳେ normally (ସହଜରେ) ଏହା ହୁଏ। ସେତେବେଳେ ବାସୁଦେବହିଁ (ଇଷ୍ଟହିଁ) ତା'ର ସବୁକିଛି ହୁଅନ୍ତି। ସେହି ଦୃଷ୍ଟିଭଙ୍ଗିରୁ ସେ ଦେଖେ, ବୁଝେ, ଭାବେ, ଚାଲେ ଏବଂ ନିଜକୁ ନିୟନ୍ତ୍ରଣ କରେ। ଏହା ଯେପରି ଇଷ୍ଟଙ୍କୁ ନେଇ concentric (ସୁକେନ୍ଦ୍ରିକ) ହେବାର କଥା କହୁଛି, ସେଥିପାଇଁ କଠିନ ମନେ ହେଉଛି। କିନ୍ତୁ ଜଣେ କୃପଣର କଥାହିଁ ଧରନ୍ତୁ। ତା'ର ଅର୍ଥ ଲୋଭହିଁ ତା'ର ସମଗ୍ର ଚରିତ୍ର, ଚଳଣୀ, ବୁଦ୍ଧି, ବିଚାରର ନିୟାମକ ହୋଇଅଛି। ସେଥିପାଇଁ କୁହେ, ଏହାପରି ସହଜ ଆଉ କିଛି ନାହିଁ। ପ୍ରାଣର ଗଭୀରରେ ଥରେ ଏହା ପାଇବସିଲେହିଁ ହୁଏ।

ଆ.ପ୍ର. ୧୮/୬.୯.୧୯୪୯

**ପ୍ର. – ଇଷ୍ଟାନୁସରଣରେ ଆମ୍ଭମାନଙ୍କର ପୂର୍ବକର୍ମଫଳହିଁ କ'ଣ ଅତୁଟ ଭାବରେ ଚାଲିବାକୁ ଦିଏ ନାହିଁ ?**

**ଶ୍ରୀଶ୍ରୀଠାକୁର** – ଅନୁରାଗ ହେଲେ, ତାଙ୍କୁହିଁ ଚାହିଁଲେ କିଛି ହିଁ କିଛି କରି ପାରେନା। ଇଷ୍ଟଙ୍କୁ ବି ଚାହେଁ, ପ୍ରବୃତ୍ତିକୁ ବି ଚାହେଁ, ଏହିପରି ହେଲେ ଦୁଇଟି ନୌକାରେ ପାଦ ଦେଇ ଚାଲିବା ପରି ହୁଏ । ଆଉ, ସେତେବେଳେହିଁ କଠିନ ଲାଗେ । ତାର ମାନେ, ସେତେବେଳେ ମଧ୍ୟ ତାଙ୍କ ଉପରେ ଟାଣ ହୋଇନାହିଁ। ଚେଷ୍ଟା କରା ହେଉଛି, କସରତ୍ କରା ହେଉଛି, ତେବେ ଏହା ମଧ୍ୟ ଭଲ।

ଆ.ପ୍ର. ୧୮/୬.୯.୧୯୪୯

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ଖୁବ୍ ଶୀଘ୍ର ନିର୍ମଳ ଓ ପବିତ୍ର କିପରି ଭାବରେ ହୋଇହେବ ?**

**ଶ୍ରୀଶ୍ରୀଠାକୁର** – ଆଗ୍ରହ ପ୍ରବଳ ହେଲେହିଁ ହୁଏ । ସବୁ ସମୟ ପରୀକ୍ଷା-ନିରୀକ୍ଷା କରିବା ଦରକାର ଆଉ ଭୁଲ ହେଲେହିଁ, ସଙ୍ଗେ-ସଙ୍ଗେ ତାହା ସଂଶୋଧନ କରିବା ଦରକାର। ...ମଣିଷର ଆତ୍ମପ୍ରତିଷ୍ଠାର ଆଗ୍ରହ ଯେତେ ବେଶୀ, ସେ ନିଜେହିଁ ନିଜର ଅପ୍ରତିଷ୍ଠା କରେ ସେତେବେଶୀ ।

ଆ.ପ୍ର. ୧୮/୨୫.୯.୧୯୪୯

**ପ୍ର. – ଇଷ୍ଟାନୁସରଣର ପଥରେ ଆତ୍ମବିଶ୍ଳେଷଣ ଯେତେ ବଢ଼ିଯିବ, ସେତେହିଁ ତ ନିଜର ଦୋଷ-ତ୍ରୁଟି ଆଖିରେ ପଡ଼ିବ । ତା'ଦ୍ୱାରା ମନର କଷ୍ଟ ବଢ଼ିଯିବ ନାହିଁକି ?**

**ଶ୍ରୀଶ୍ରୀଠାକୁର** – ଭଲହିଁ ତ । ପିଲାବେଳେ ଯେତେବେଳେ ପୁତୁଳା ଗଢୁଥିଲୁ, ସେତେବେଳେ ପୁତୁଳାର କୌଣସି ଅଂଶ ବିକୃତ ରହିଲେ ମନରେ କଷ୍ଟ ଲାଗୁଥିଲା । ସେଥିପାଇଁ ମୋର ମନେହୁଏ, ଆମେମାନେ ମଧ୍ୟ ତ ପରମପିତାଙ୍କ ପୁତୁଳା। ଆମମାନଙ୍କ ମଧ୍ୟରେ କୌଣସି ବିକୃତି ରହିଲେ ପରମପିତାଙ୍କ ପ୍ରାଣରେ ମଧ୍ୟ ସେହିପରି ବ୍ୟଥା ଲାଗେ । ତାଙ୍କ ପ୍ରାଣରେ ଯେଉଁଥିରେ ବ୍ୟଥା ଲାଗେ, ସେଥିରେ ବ୍ୟଥା ବୋଧ କରିବା ଓ ତାର ନିରସନ କରିବାହିଁ ତ ଉଚିତ ।

ଆ.ପ୍ର. ୧୮/୮.୧୦.୧୯୪୯

**ପ୍ର. – ଇଷ୍ଟାନୁସରଣ ପଥରେ ତାଙ୍କ ପାଇଁ ବାସ୍ତବରେ ଯାହା ପାରୁ କରିଲେ ମଧ୍ୟ ପ୍ରୟୋଜନ-ପୀଡ଼ିତମାନଙ୍କ ପାଇଁ କିଛି କରିବାକୁ ଇଚ୍ଛା ହୁଏ ନାହିଁ – ଏପରି କାହିଁକି ହୁଏ ?**

**ଶ୍ରୀଶ୍ରୀଠାକୁର** – ତାର ମାନେ ମୁଁ ତୁମ ମଧ୍ୟରେ ଜୀବନ୍ତ ନାହିଁ। ମୁଁ ତୁମର ପ୍ରବୃତ୍ତି ପୂରଣର ଇନ୍ଧନ । ...ମୋ ଉପରେ ଟାଣ ଥିଲେ କେହି ପ୍ରୟୋଜନ-ପୀଡ଼ିତ ହୋଇ ମାଗିଲେ, ସାମର୍ଥ୍ୟ ଥିଲେ ସେତେବେଳେ ତାକୁ ନ ଦେଇ ରହି ପାରିବ ନାହିଁ। ଏହି ବୋଧିରୁହିଁ ତୁମେ ଦେବ ଯେ ପରମ ସତ୍ତାହିଁ ତା'ର ସତ୍ତା ରୂପେ ବିଦ୍ୟମାନ । ଠାକୁରଙ୍କୁ ଭଲପାଇବା ମାନେହିଁ



ନିଜର ଓ ସମସ୍ତଙ୍କର ସତ୍ତାକୁ ଭଲପାଇବା ଓ ପୁଷ୍ଟ କରିବା । ଯାହା-କିଛି କରିବ, କରିବ ମୋର ପ୍ରୀତ୍ୟର୍ଥେ । ମୋତେ ବା ଲୋକଙ୍କୁ ଦେଖାଇ କରିବାର ବୁଦ୍ଧି ଯଦି ହୁଏ, ତେବେ ବୁଝିବାକୁ ହେବ ତୁମେ ମୋତେ ଭଲପାଅ ନାହିଁ। ମୋ ସମ୍ବନ୍ଧରେ କୌଣସି ବୋଧ ବା ଦରଦ ତୁମର ସୃଷ୍ଟି ହୋଇନାହିଁ। ସେଥିପାଇଁ, ମୋ ଚଳନ ମଧ୍ୟ ତୁମ ଚରିତ୍ରରେ କମ୍ ଫୁଟି ଉଠୁଛି। ଯିଏ ପରମପିତାଙ୍କୁ ଭଲପାଏ, ତା'ର ପ୍ରତିଟି ନିଃଶ୍ୱାସ ମଧ୍ୟ ଅଜ୍ଞାତସାରରେ ସମସ୍ତଙ୍କର କଲ୍ୟାଣ କରେ। କାରଣ, ପରମପିତା ପ୍ରତ୍ୟେକଙ୍କର ସାତ୍ୱତ କଲ୍ୟାଣ ଚାହାଁନ୍ତି । ...ଯେତେବେଳେ ମଣିଷ ପାଇଁ ଏହିରକମ ବୋଧ ଓ ସେବା ଜାଗ୍ରତ ହୁଏ, ସେତେବେଳେ ପ୍ରକୃତରେ ଆତ୍ମପ୍ରସାଦ ଜିନିଷଟା ଆସେ, ମୋ ଠାକୁର ଯେପରି ସେତେବେଳେ ମୋ ଭିତରେ ଜାଗ୍ରତ ହୋଇଥାନ୍ତି – ମୋର ବିକଶିତ ହୃଦପଦ୍ମରେ – ଶାନ୍ତିରେ, ସୁଖରେ, ହସରେ। ମୋର ସ୍ୱତଃ-ଉତ୍ସାରିତ ଇଷ୍ଟପ୍ରାଣ ସେବା ତାଙ୍କୁ ନିତ୍ୟନିୟତ ନନ୍ଦିତ କରେ। ଆମେମାନେ ତୃପ୍ତି ପାଉ। ପରିବେଶ ତୃପ୍ତି ପାଏ । ସେତେବେଳେ ଜୀବନଟା ଯେପରି ଆନନ୍ଦରେ ଫୁଟି ଉଠେ । ଏହାଦ୍ୱାରା ଆତ୍ମପ୍ରସାଦ ହୁଏ, କିନ୍ତୁ ସେବାର ଅହଂ ଆସେ ନାହିଁ। ଶକ୍ତି ଆସେ, ସଂହତି ଆସେ, ସମ୍ବର୍ଦ୍ଧନା ଆସେ। କ୍ଷୁଦ୍ର ସ୍ୱାର୍ଥ ଦୂର ହେଲେ ପରେ ଦେଖିବେ, ଅଳ୍ପ ଚେଷ୍ଟାରେ କେତେ ଯୋଗାଡ଼ ପାରି ହୋଇଯିବ। ...ଆମମାନଙ୍କର ଦାନ, ସେବା, ସବୁଟାହିଁ ଇଷ୍ଟପ୍ରାଣ ହେବା ଉଚିତ୍ । ତା' ମଧ୍ୟରେ ଠାକୁର ରହିବା ଦରକାର। ଠାକୁର ଖୁସି ହେବେ – ଠାକୁରଙ୍କ ସ୍ୱାର୍ଥ ପରିପୂରିତ ହେବ। ତୁମଠାରୁ ସାହାଯ୍ୟ ନେଇ ଠାକୁରଙ୍କର ସର୍ବନାଶ କରିଲା – ତାହା ହେଲେ କିନ୍ତୁ ଗୋଳମାଳ ପଶିଯିବ।

ଆ.ପ୍ର. ୧୮/୧୮.୧୦.୧୯୪୯

**ପ୍ର. – ଇଷ୍ଟାନୁସରଣ ପଥରେ ନିୟମିତ ନାମଧ୍ୟାନାଦି ସାଧନା କରିଲେ କେତେଦିନରେ ଶବ୍ଦ-ଜ୍ୟୋତିର ଅନୁଭୂତି ହେବ ?**

**ଶ୍ରୀଶ୍ରୀଠାକୁର** – ଶବ୍ଦ-ଜ୍ୟୋତିର ଲୋଭ କର ନାହିଁ। ନାମ କରିଯାଅ, ନାମ ବଢ଼ାଇଲେ ଆପେ-ଆପେ ସବୁ ଆସିବ । ଆଉ ନିରଖ-ପରଖ କରିବାକୁ ହୁଏ, ନିଜକୁ ନିୟନ୍ତ୍ରଣ କରିବାକୁ ହୁଏ। ଅନୁଭୂତିର ପ୍ରଲୋଭନ, ବ୍ରହ୍ମଲାଭର ପ୍ରଲୋଭନ, ଏଗୁଡ଼ିକ ଲାଭର ପଥରେ ଅନ୍ତରାୟ ସ୍ୱରୂପ। ସେହିପରି, କାହାରି ମନରେ ଯଦି ଏପରି ଧାରଣା ଥାଏ ଯେ, ଅତୀନ୍ଦ୍ରିୟ ଅନୁଭୂତି, ବ୍ରହ୍ମ ବା ଭଗବାନ ଲାଭ ଅସମ୍ଭବ, ତା ମଧ୍ୟ ସାଧନା ପକ୍ଷରେ ଅନ୍ତରାୟ। ତାଙ୍କ ପ୍ରତି ପ୍ରୀତି ନେଇ କରିଯାଅ। କରୁ-କରୁ ସହଜ ଭାବରେ ହେବ।

ଆ.ପ୍ର. ୧୮/୧୮.୧୧.୧୯୪୯

**ପ୍ର. – ଇଷ୍ଟାନୁସରଣ ମଧ୍ୟରେ ତ୍ୟାଗବାଦର କୌଣସି ବ୍ୟାପାର ନାହିଁ କାହିଁକି ?**

**ଶ୍ରୀଶ୍ରୀଠାକୁର** – ତ୍ୟାଗବାଦ କହିଲେ ମୁଁ କିଛି ବୁଝେନା। ମୋର କଥା ହେଲା

ଜୀବନବୃଦ୍ଧିବାଦ। ଆଉ, ତାହାର ଅନ୍ତରାୟ ଯାହା ତାହାକୁ ବାଦଦେଇହିଁ ଚଳିବ। ତ୍ୟାଗବାଦ ଗୋଟିଏ negative (ନାସ୍ତିବାଚକ) କଥା। ଇଷ୍ଟାନୁରାଗବାଦ କୁହ, ସେଥିରେ ମୁଁ ରାଜି ଅଛି। ସେଠାରେ ଧରିବାର କଥାଟା ବଡ଼, ଛାଡ଼ିବାର କଥାଟା ନୁହେଁ। ବଡ଼ଟା ଧରିବାକୁ ଗଲେ ଛୋଟଟା ଛାଡ଼ିବାକୁ ହୁଏ। ଏହା ମଧ୍ୟରେ ତ୍ୟାଗଟା କେଉଁଠି ? ଯାହା କରୁ, ତାହା ଆମର ସାତ୍ତ୍ୱତ ସ୍ୱାର୍ଥ ପାଇଁ କରୁ। ଏହା ମଧ୍ୟରେ ବାହାଦୁରି ନେବାର କ'ଣ ଅଛି ?

ଆ.ପ୍ର. ୧୮/୨୧.୧୧.୧୯୪୯

**ପ୍ର. – ଇଷ୍ଟାନୁସରଣ ସ୍ୱାର୍ଥରେ ବାସ୍ତବରେ ଆଉ କ'ଣ କ'ଣ କରି ଚାଲିବାକୁ ହେବ ?**

**ଶ୍ରୀଶ୍ରୀଠାକୁର –** ନିଜର ଅସ୍ତିତ୍ୱକୁ ସଲୀଳ କରି ସମସ୍ତଙ୍କୁ ଉଚ୍ଛଳ କରି ତୋଳ। ସାଗର ସୈକତରେହିଁ ଛିଡ଼ା ହୁଅ ବା ପର୍ବତ ଶିଖରରେହିଁ ଆରୋହଣ କର, ସବୁ ସ୍ଥାନରୁ ଅମୃତ ଆହରଣ କରି ଚାଲ। କର, ଓହ୍ଲାଇ ପଡ଼, ଆଉ ଡେରି କର ନାହିଁ। କେଉଟ ଯେପରି ମାଛ ସଂଗ୍ରହ କରେ; ଚାଷୀ ଯେପରି ଜମି ହଳ କରି ବୀଜ ବୁଣେ, ଜମି ତିଆରି କରେ, ଫସଲ ଫଳାଏ, ଶସ୍ୟ ସଞ୍ଚୟ କରେ; ମେଷ ପାଳକ ଯେପରି ମେଷ ଚରାଏ ଏହି ଭାବଦ୍ୱେର ମଣିଷ ପଛରେ ଲାଗି ରହି ସେମାନଙ୍କୁ ମଙ୍ଗଳରେ ସମାରୁଢ଼ କରିଦିଅ। ତୁମମାନଙ୍କର ଗୋଟିଏ ମୁହୂର୍ତ୍ତବି ଅବକାଶ ନାହିଁ। ସମସ୍ତଙ୍କର ମଙ୍ଗଳ ସାଧନ ପାଇଁ ଯେପରି ତୁମ ଅନ୍ତରରେ ଗୋଟିଏ ବ୍ୟସ୍ତତା ଲାଗି ରହେ। ତୁମେମାନେ ହେଲ ସାରା ଦେଶର ମା-ବାପା। ମଣିଷମାନଙ୍କ ଦୁଃଖରେ ଉଦାସୀନ ରହିବାର ଅଧିକାର ତୁମର କେଉଁଠି ? ...ଆମମାନଙ୍କ ଦେଶରେ ବିବାହ କ୍ଷେତ୍ରରେ ଯଥେଷ୍ଟ ପରିମାଣର ଗୋଳମାଳ ପ୍ରବେଶ କରିଛି। ସେ ବି ଏକ ସର୍ବନାଶର ବ୍ୟାପାର ହୋଇଛି। ସେଥିପାଇଁ ଆଜି ଦେଶରେ ଭଲ ମଣିଷର ଜନ୍ମ କମ୍ ହେଉଛି। ଏ-ସବୁର ପ୍ରତିକାର ତୁମମାନଙ୍କୁହିଁ କରିବାକୁ ହେବ। ପତ୍ର-ପତ୍ରିକା ପ୍ରକାଶ କର। ମଣିଷର କାନ ପାଖରେ ବାରମ୍ବାର ଢୋଲ ପିଟି କୁହ – କେଉଁଥିରେ କ'ଣ ହୁଏ, ଯେପରି ଅମଙ୍ଗଳର ପଥରେ ପାଦ ବଢ଼ାଇବାର ସ୍ପର୍ଦ୍ଧା କାହାର ବି ନ ହୁଏ।

ଆ.ପ୍ର. ୧୮/୨୧.୧୧.୧୯୪୯

**ପ୍ର. – ଇଷ୍ଟାନୁସରଣରେ ସକାମ ଭକ୍ତି ଆଉ ନିଷ୍କାମ ଭକ୍ତି ବ୍ୟାପାରଟି କ'ଣ ?**

**ଶ୍ରୀଶ୍ରୀଠାକୁର –** ସକାମ ଭକ୍ତି ହେଲା ମୋର ଇଚ୍ଛା ପୂରଣ ପାଇଁ ସିଏ। ଆଉ, ନିଷ୍କାମ ଭକ୍ତି ହେଲା ତାଙ୍କ ପାଇଁ ମୁଁ। ଏହି ଦୃଷ୍ଟିକୋଣ ଉପରେ ଛିଡ଼ା ହେଲେହିଁ ଧର୍ମକୁ ଧରା ହୁଏ। ସକାମ ସ୍ତରରେ ସଚ୍ଚା ଇଷ୍ଟାନୁରାଗର ଆବିର୍ଭାବ ହୁଏ ନାହିଁ। ତଥାପି ତାହା ମନ୍ଦରେ ଭଲ, ଚେଷ୍ଟା କରୁ-କରୁ ଯଦି ଲାଗିଯାଏ। ନିଷ୍କାମ ଭକ୍ତିର ଜାଗରଣ ଯେତେବେଳେ ହୁଏ, ସେତେବେଳେ ଧର୍ମ-ଅର୍ଥ-କାମ-ମୋକ୍ଷ ସବୁହିଁ ଆପେ-ଆପେ ଆସେ। ସକାମ ହେଲେ କାମନାଟିହିଁ ଇଷ୍ଟ ହୋଇ ଛିଡ଼ା ହୁଏ। କାମନାଟା ଇଷ୍ଟ ଓ ଭକ୍ତଙ୍କ ମଧ୍ୟରେ ଗୋଟିଏ ପରଦା ପରି ଆଡୁଆଳ ହୋଇ ଛିଡ଼ା ହୁଏ। ତା'ଦ୍ୱାରା ଫଳ ଯାହା ହେବାର ତାହାହିଁ ହୁଏ। ମୁଁ ମୋ ରାଜ୍ୟରେହିଁ ଘୁରି ବୁଲେ। ଠାକୁରଙ୍କର ମଣିଷ ଆଉ ହୋଇପାରେ ନାହିଁ। ଚରିତ୍ର ମଧ୍ୟ ବଦଳାଏ ନାହିଁ। ସେଥିରେ ଇଷ୍ଟଙ୍କର ରଙ୍ଗ ମଧ୍ୟ ଧରେ ନାହିଁ। ଗୋଟିଏ ହଡ଼କଟା ଅବସ୍ଥାରେ ଜୀବନ ଚାଲେ। ସେମାନେ ନିଜେ ଯେପରି ହତାଶାର ଦାସତ୍ୱ କରନ୍ତି, ସେମାନଙ୍କର ଚଳନ ଦେଖି ମଣିଷ ମଧ୍ୟ ଧର୍ମାଚରଣର କାର୍ଯ୍ୟକାରିତା ସମ୍ବନ୍ଧରେ ହତାଶ ହୋଇପଡ଼େ। ସେମାନେ ମୁହଁରେ ଯେତେ ବଡ଼-ବଡ଼ କଥା କୁହନ୍ତୁ ନା କାହିଁକି, ସେମାନଙ୍କର ଭିତର ଦେଇ ମଣିଷ ଭିତରେ ପ୍ରାଣ ଆଉ ପ୍ରେରଣାର ସଞ୍ଚାର ହୁଏ କମ୍‌ହିଁ।

ଆ.ପ୍ର. ୧୮/୩୦.୧୧.୧୯୪୯

**ପ୍ର. – ଇଷ୍ଟାନୁସରଣ ପଥରେ ଅଯଥା ଦୁର୍ନାମ ଯଦି ରଟିଯାଏ ସେତେବେଳେ କରଣୀୟ କ'ଣ ?**

**ଶ୍ରୀଶ୍ରୀଠାକୁର –** 'ତୁମେ ଯଦି ନିର୍ଦ୍ଦୋଷ ତେବେ ଭୟ କାହାକୁ ?' ତୁମ ଚରିତ୍ରରେ ବା ମନରେ ଦୋଷର ଶିକୁଳି ନ ପଡ଼ିଲେହିଁ ହେଲା। ତୁମର ଚଳଣୀଟି ଯେପରି ଏପରି ହୁଏ, ଯାହାଦ୍ୱାରା ତୁମ ସମ୍ବନ୍ଧରେ ଦୁର୍ନାମ ରଟିଲେ ମଧ୍ୟ ଲୋକେ ବିଶ୍ୱାସ କରନ୍ତି ନାହିଁ। ଅବଶ୍ୟ, କୌଣସି ଷଡ଼ଯନ୍ତ୍ର ହେଲେ ତାର ନିରାକରଣ ଯାହାଦ୍ୱାରା ହୁଏ, ତାହା କିନ୍ତୁ କୁଶଳ-କୌଶଳୀ ହୋଇ କରିବା ଦରକାର।

ଆ.ପ୍ର. ୧୮/୩.୧୨.୧୯୪୯

**ପ୍ର. – ଇଷ୍ଟାନୁସରଣରେ ଅସତ୍-ନିରୋଧ ଉପରେ ଏତେ ଜୋର କାହିଁକି ? ଧର୍ମ ଜଗତରେ ଅନ୍ୟ କେଉଁଠି ତ ଏହାକୁ ଏତେ ଗୁରୁତ୍ୱ ଦେବାର ଦେଖାଯାଏ ନାହିଁ ?**

**ଶ୍ରୀଶ୍ରୀଠାକୁର –** ସେଇଥିପାଇଁ ତ ଦଳେ ମଣିଷ ଅସତ୍ ପ୍ରତି ଉଦାସୀନ ହୋଇ ଗୋଟିଏ ପାଖରେ ଧର୍ମ କରୁଛନ୍ତି, ଆଉ ସମାଜ ମଧ୍ୟରେ ଦୁଷ୍କୃତି ପ୍ରଶ୍ରୟ ପାଉଛି। ଫଳରେ, ସମାଜର ଅବସ୍ଥା ଏପରି ହୋଇ ଛିଡ଼ା ହୋଇଛି ଯେ, ସତ୍‌ବୁଦ୍ଧିସମ୍ପନ୍ନ ଯେଉଁମାନେ ସେମାନେ ଅତି ଦୁର୍ବଳ ଓ ବିଚ୍ଛିନ୍ନ ଏବଂ ସେମାନଙ୍କର ସଚ୍‌ଭାବରେ ବଞ୍ଚିରହିବାହିଁ ଦୁରୁହ ହୋଇ ଉଠୁଛି। ଆମ୍ଭେମାନେ ଯଦି ପୂର୍ଣ୍ଣାଙ୍ଗ ଧର୍ମ କରୁଥାନ୍ତୁ, ତାହାହେଲେ ସମାଜ-ସଂସାରରେ ଏହି ଦୈନ୍ୟଦଶାର ସୃଷ୍ଟି ହୁଅନ୍ତା ନାହିଁ।

ଆ.ପ୍ର. ୧୮/୪.୧୦.୧୯୪୯

ଯେଉଁମାନେ ଧର୍ମ ଓ ଅସତ୍-ନିରୋଧର ବିରୋଧି ସେମାନଙ୍କୁ ସବୁ ସମୟରେ ଏଡ଼ାଇ ଚାଲିବା ଭଲ।

ଆ.ପ୍ର. ୧୮/୧୦.୧୨.୧୯୪୯

**ପ୍ର. – ଇଷ୍ଟାନୁସରଣରେ ଚାଲେ, ଧାର୍ମିକ, ଅଥଚ ଯଦି ଅସତ୍‌-ନିରୋଧର ବିରୋଧି ହୁଏ ?**

**ଶ୍ରୀଶ୍ରୀଠାକୁର** – ଏହି ଜିନିଷଟା ଗୋଟିଏ ସୁନାର ପିତ୍ତଳର ଘୁ-ଘୁ। ଧାର୍ମିକ କେବେବି ଅସତ୍‌-ନିରୋଧର ବିରୋଧି ହୋଇପାରେ ନାହିଁ। ଏହିପରି କାହାକୁ ଯଦି ଦେଖ ତେବେ ବୁଝିନେବ, ସେ ଧର୍ମ ଜଗତର ଲୋକ ନୁହେଁ। ଆ.ପ୍ର. ୧୮/୧୦.୧୨.୧୯୪୯

**ପ୍ର. – ଇଷ୍ଟାନୁସରଣ ପାଇଁ କେବଳ ନାମଧ୍ୟାନ କରିବାକୁ ଯଦି ଏକମାତ୍ର କରଣୀୟ କରି ନିଆଯାଏ ?**

**ଶ୍ରୀଶ୍ରୀଠାକୁର** – ଆମେମାନେ ଯଦି ସର୍ବୋତ୍ତଭାବରେ ବାସ୍ତବ ଚଳନରେ ଇଷ୍ଟଙ୍କର ହୋଇ ନ ଉଠୁ, – ତା'ହେଲେ ଯେତେହିଁ ନାମଧ୍ୟାନ କରୁ ନା କାହିଁକି, ତାହା କିନ୍ତୁ ବନ୍ଧ୍ୟା। ପ୍ରତ୍ୟେକ ଜୀବନରେ ତାଙ୍କୁ ଜୀବନ୍ତ କରି ତୋଳିବା – ଏହାକୁହିଁ କହନ୍ତି ଇଷ୍ଟ-ପ୍ରତିଷ୍ଠା। ସେତେବେଳେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଆମମାନଙ୍କ ହାତରେ ଆସିଯାଏ। ମଣିଷ ଅର୍ଥାତ୍‌ ନର ହୋଇ ମଧ୍ୟ ଆମେମାନେ ନାରାୟଣ ହୋଇଉଠୁ – ସକ୍ରିୟଭାବରେ ତାଙ୍କର ସ୍ୱାର୍ଥ-ପ୍ରତିଷ୍ଠାରେ ମାତାଲ ହୋଇ ଉଠିବାର ମଧ୍ୟ ଦେଇ। ପ୍ରକୃତ ନାମଧ୍ୟାନ ସେତେବେଳେହିଁ ହୁଏ, ନାମଧ୍ୟାନ ସେତେବେଳେ ଇଷ୍ଟପ୍ରତିଷ୍ଠାର ଭିତର ଦେଇ ସାର୍ଥକ ହୁଏ, ଜୀବନ୍ତ ହୁଏ।

ଆ.ପ୍ର. ୧୮/୨୩.୧୨.୧୯୪୯

**ପ୍ର. – ଇଷ୍ଟାନୁସରଣରେ କେଉଁମାନେ କୃତି ନୁହନ୍ତି, କେଉଁମାନେ ବା ପ୍ରକୃତ କୃତି ?**

**ଶ୍ରୀଶ୍ରୀଠାକୁର** – ଯେଉଁମାନେ ଆଦର୍ଶ (ଇଷ୍ଟ)ଙ୍କ ଠାରେ ଅନୁରାଗ ଥିବା ସତ୍ତ୍ୱେ ବି ଆଦର୍ଶପୂରଣୀ ବାସ୍ତବ କର୍ମ ଉଦ୍‌ଯାପନରେ ସୁନିଷ୍ଟ ନୁହଁନ୍ତି, ସେମାନଙ୍କର ନାମ ଟାମ ହେଲେ ମଧ୍ୟ କୃତି ବୋଲି ଗଣ୍ୟ କରାଯାଏ ନାହିଁ। କିନ୍ତୁ ଯେଉଁମାନଙ୍କର ଆଦର୍ଶାନୁରାଗ ଓ ଆଦର୍ଶର ପରିପୂରଣୀ କର୍ମ-ପ୍ରଗତି ସମାନ ଚାଳରେ ଚାଲେ ସେହିମାନେହିଁ ପ୍ରକୃତ କୃତି।

ଆ.ପ୍ର. ୧୮/୨୩.୧୨.୧୯୪୯

**ପ୍ର. – ଇଷ୍ଟାନୁସରଣ କରି ଚାଲିଲେ ବି କାହା ମଧ୍ୟରେ ଯଦି ଅସହିଷ୍ଣୁତା ବା ଲୋକଙ୍କୁ ସହି ନ ପାରିବାର ଭାବ ଥାଏ ?**

**ଶ୍ରୀଶ୍ରୀଠାକୁର** – ଅସହିଷ୍ଣୁତା କାର୍ଯ୍ୟର ଖୁବ୍‌ କ୍ଷତି କରେ। ଜଣେ ହୁଏତ ଖୁବ୍‌ ବାଜେ କଥା କହୁଛି କିନ୍ତୁ ସେ ହିଁ ହୁଏତ ତୁମର ବିଶେଷ କାର୍ଯ୍ୟରେ ଲାଗି ପାରେ। ସେଥିପାଇଁ ଦୁର୍ବ୍ୟବହାର କରି ତାକୁ ଯଦି ହରାଅ ତାହାହେଲେ ତୁମେହିଁ ଠକିଯିବ। ଆଉ, କୌଣସି ମଣିଷ ସମ୍ବନ୍ଧରେହିଁ ତୁଚ୍ଛ-ତାଚ୍ଛିଲ୍ୟ ଭାବ ରହିବା ଉଚିତ୍‌ ନୁହେଁ। ଗୋଟିଏ ବଗାଳ ପିଲା ପାଖରୁ ଏପରି



ଜିନିଷ ପାଇପାର, ଯାହା ତୁମର ଜ୍ଞାନଚକ୍ଷୁ ଉନ୍ମୀଳନ କରିଦେଇପାରେ। ତେଣୁ, ପ୍ରତ୍ୟେକଙ୍କ ପ୍ରତି ଗୋଟିଏ ଯଥାଯୋଗ୍ୟ ଶ୍ରଦ୍ଧାର ଭାବ ରହିବା ଉଚିତ୍‌। ନହେଲେ ବଞ୍ଚିତ ହେବାକୁ ହୁଏ। କାହାକୁ ଯଦି ପର କରିଦିଅ, ତାର ମାନେ, ତୁମେ ନିଜକୁ ତା ଠାରୁ ବିଚ୍ଛିନ୍ନ କରିଲ। କିନ୍ତୁ ଏପରି ସମୟ ଆସିପାରେ ଯେ, ତାକୁ ନ ହେଲେ ତୁମର ଚଳିବ ନହିଁ। ସେଥିପାଇଁ, ଇଷ୍ଟଙ୍କଠାରେ ଅଟୁଟ ରହି ପ୍ରତ୍ୟେକଙ୍କ ସହିତ ଏପରି ବ୍ୟବହାର କରିବାକୁ ହୁଏ, ଯାହାଦ୍ୱାରା ସେ ପ୍ରବୁଦ୍ଧ ହୁଏ, ତୃପ୍ତ ହୁଏ, ଖୁସି ହୁଏ। ମଣିଷ ନେଇ ଯିଏ ଚାଲିବାକୁ ଜାଣେ, ଦୁନିଆରେ ତା'ର କୌଣସି ଭାବନା ନାହିଁ। ଜୀବନରେ ଏଇଟିହିଁ ପ୍ରଥମ ଶିକ୍ଷଣୀୟ। ଅନେକ ଜାଣେ, ଅନେକ ପାରେ, କିନ୍ତୁ ବିଭିନ୍ନ ପ୍ରକୃତିର ମଣିଷକୁ ନେଇ ଯିଏ ଚଳିବାକୁ ଜାଣେ ନାହିଁ, ଅସଲରେ କିନ୍ତୁ ସିଏ ଅଯୋଗ୍ୟ। ଆ.ପ୍ର. ୧୯/୧୬.୨.୧୯୪୯

**ପ୍ର. – ଇଷ୍ଟାନୁସରଣର ସାଧନାରେ ଖୁବ୍‌ ବେଶୀ ନାମ ଜପ କରିଲେ ଶୁଣିଛି ଶରୀର ମଧ୍ୟରେ ନା କ'ଣ ଜ୍ୱାଳା ଅନୁଭୂତ ହୁଏ। ଏମିତି କାହିଁକି ହୁଏ ?**

**ଶ୍ରୀଶ୍ରୀଠାକୁର** – ନାମ ଜପ କରିଲେ ଏହିପରି ହୁଏ। କାରଣ, ନାମ କରିଲେ ସ୍ନାୟୁ ଉପରେ ଗୋଟିଏ ଚାପ ପଡ଼େ। ...କିନ୍ତୁ ନାମ କରୁ-କରୁ ପରେ କମିଯାଏ। ତେବେ ଧିରେ-ଧିରେ ବଢ଼ାଇବା ଭଲ। ଯେତେକ୍ଷଣ ଭଲ ଲାଗେ ସେତେକ୍ଷଣ କରିବ, ପୁଣି ଟିକିଏ ଫାଙ୍କ ଦେବ, ପୁଣି କରିବ। ଖାଇବା-ପିଇବା ଏମିତି କରିବ, ଯାହାକି ପରିମିତ, ସହଜପାଚ୍ୟ ଓ ପୁଷ୍ଟିକର। ଆହାର-ବିହାର, ଚାଲି-ଚଳନ, କଥାବାର୍ତ୍ତା, କାମଦାମ, ସଙ୍ଗ-ସାହଚର୍ଯ୍ୟ ସବୁକିଛି ଯଦି ଇଷ୍ଟମୁଖୀ ନ ହୁଏ, ତାହାହେଲେ ନାମର ଫଳ ଠିକ୍‌-ଠିକ୍‌ ପାଇହୁଏ ନାହିଁ। ନାମର ସହିତ ଧ୍ୟାନ ଦରକାର, ପୁଣି ବାସ୍ତବ କର୍ମ ଦରକାର। ଏହା ସ୍ରୋତର ପ୍ରତିକୂଳରେ ଯିବା ପରି। ମନର ଗତିଟିକୁ ଊର୍ଦ୍ଧ୍ୱମୁଖୀ ରଖିବା ଦରକାର। ଯେତେବେଳେ ମଣିଷ ଠିକ୍‌ ଭବରେ ସାଧନ-ଭଜନ କରେ ସେତେବେଳେ ତାର ଯୌନ ସଂସ୍ରବରେ ଲିପ୍ତ ହେବା ସମ୍ବନ୍ଧରେ ମଧ୍ୟ ଖୁବ୍‌ ସାବଧାନ ରହିବାକୁ ହୁଏ। ଅବଶ୍ୟ, ପରମପିତାଙ୍କ ଦିଗକୁ ମନ ରହିଲେ ମନ ନୀଚ ଦିଗକୁ ଓହ୍ଲାଇବାକୁ ଚାହେଁ ନାହିଁ। ଆ.ପ୍ର. ୧୯/୧୨.୩.୧୯୫୦

**ପ୍ର. – ଇଷ୍ଟାନୁସରଣ ପଥରେ କାମକ୍ରୋଧ କେଉଁ ଭାବରେ ବଶ କରାଯାଏ ?**

**ଶ୍ରୀଶ୍ରୀଠାକୁର** – ସେଗୁଡ଼ିକ ଉପେକ୍ଷା କରିବା ଦରକାର। ଆଉ ଯଦି ଖୁବ ବେଗ ଆସେ, ସେତେବେଳେ ସଚେତନ ଭାବରେ ଭଲର ଦିଗକୁ ତାର ମୋଡ଼ ଫେରାଇ ଦେବାକୁ ହୁଏ। ଯେପରି, କାହା ଉପରେ ହୁଏତ ଖୁବ୍‌ ରାଗ ହେଲା ଏବଂ ତାକୁ କଟୁ କଥା କହିବାର ପ୍ରବୃତ୍ତି ହେଲା। ସେତେବେଳେ ଅତ୍ୟନ୍ତ ହୁସିଆର ହୋଇ ଚେଷ୍ଟା କରି ତାକୁ କଟୁ କଥା ନ କହି ପ୍ରିୟ

କଥା କହିବା ଆରମ୍ଭ କରିବାକୁ ହୁଏ । ଏହିଭାବରେ କରୁ-କରୁ କ୍ରୋଧର ସ୍ଥାନରେ ପରମପ୍ରୀତିର ପ୍ରବାହ ବାହାରି ଉଠେ । ସେତେବେଳେ ହୁଏତ ମଣିଷଟା ଶାନ୍ତ ହୋଇଯାଏ । ଯାହାକୁ ତୁମେ ହରାଇବାକୁ ବସିଥିଲ ସେ ହିଁ ତୁମର ପରମ-ମିତ୍ର ହୋଇଉଠେ । ଏହି ରକମ କରିବାକୁ ଲାଗିଲେ ଅନେକ (ପ୍ରଚୁର) ଆତ୍ମପ୍ରସାଦ ମନକୁ ପ୍ଳାବିତ କରିଦେବେ ।

ଆ.ପ୍ର. ୧୯/୧୨.୩.୧୯୫୦

**ପ୍ର. – ଇଷ୍ଟାନୁସରଣ ମଧ୍ୟ ଦେଇ ଜଣେ ଠିକ୍-ଠିକ୍ ଇଷ୍ଟପ୍ରାଣ ହୋଇ ଉଠିଛି ଏହା କ'ଣ ଦେଖି ବୁଝାଯିବ ?**

**ଶ୍ରୀଶ୍ରୀଠାକୁର** – ପ୍ରକୃତ ଇଷ୍ଟପ୍ରାଣତାର ଲକ୍ଷଣ ହେଉଛି, ସେ ଯାହା କିଛି କରୁ, ଯାହା-କିଛି ଭାବୁ, ଯାହା-କିଛି କହୁ, ତାହା ଇଷ୍ଟାର୍ଥେ ବିନାୟିତ ହୋଇ ଉଠିବ ହିଁ ଉଠିବ । ଏହି ଭାବରେ ଜୀବନର ଯାହା-କିଛି ଏକାର୍ଥରେ ଅନ୍ୱିତ ହୋଇ ନ ଉଠିଲେ ସତ୍ତା ମଧ୍ୟରେ ଅଖଣ୍ଡତ୍ୱ ଜିନିଷଟା ପ୍ରତିଷ୍ଠା ପାଏ ନାହିଁ । ଆଉ, ଯେତେକ୍ଷଣ ପର୍ଯ୍ୟନ୍ତ ଆମମାନଙ୍କର ସତ୍ତା ଖଣ୍ଡିତ ଥାଏ ସେତେ ସମୟ ଆମେମାନେ ଦ୍ୱନ୍ଦର ଆର ପାରିରେ ଯାଇ ଛିଡ଼ା ହୋଇପାରୁନା, ପ୍ରବୃତ୍ତି ଆମମାନଙ୍କ ଉପରେ ଆଧିପତ୍ୟ କରେହିଁ କରେ । ଆଉ, ଯେତେ ସମୟ ପ୍ରବୃତ୍ତି ଆମ୍ଭମାନଙ୍କ ଉପରେ ପ୍ରଭୁତ୍ୱ କରେ ସେତେ ସମୟ ଆମେମାନେ କିନ୍ତୁ ଅମୃତର ରାଜ୍ୟରେ ପହଞ୍ଚୁ ନାହିଁ, ଏବଂ ନିର୍ମଳ ଆନନ୍ଦ ଯାହା ତାକୁ ମଧ୍ୟ ଉପଲବ୍ଧି କରିପାରୁନା । ସତ୍ତାପ୍ଳାବୀ ଟାଣ ଯେତେବେଳେ ଇଷ୍ଟଙ୍କ ଉପରେ ହୁଏ, ସେତେବେଳେ ଆମ୍ଭେମାନେ ଇଷ୍ଟଙ୍କର ଲୀଳାସ୍ଥଣ୍ଡିଲ (ବେଦୀ) ରୂପରେ ପରିଣତ ହେଉ । ସେ ଯନ୍ତ୍ରୀ ମୁଁ ଯନ୍ତ୍ର, ଏହିପରି ଭାବଟା ସେତେବେଳେ ବାସ୍ତବାୟିତ ହୋଇ ଉଠେ । ଜୀବନଟା ଗୋଟିଏ ସୁଲୁସୁଲିଆ ଦକ୍ଷିଣା ପବନ ପରି ସ୍ୱଚ୍ଛନ୍ଦରେ ବହି ଚାଲେ ।

ଆ.ପ୍ର. ୧୯/୨୫.୩.୧୯୫୦

**ପ୍ର. – ଇଷ୍ଟାର୍ଥପରାୟଣ ନ ହୋଇ ମଣିଷ ଯଦି ପ୍ରବୃତ୍ତିପରାୟଣ ହୁଏ ସେଥିରେ ଅସୁବିଧା କ'ଣ ? ଏହି ପ୍ରବୃତ୍ତିପରାୟଣତା ଠାରୁ ବଞ୍ଚିବାର ଉପାୟ ବା କ'ଣ ?**

**ଶ୍ରୀଶ୍ରୀଠାକୁର** – ଆମ୍ଭମାନଙ୍କର ଅହଂ ଷଡରିପୁର ଗୋଟିଏ-ଗୋଟିଏ କୋଠରୀ ଭିତରେ ଆବଦ୍ଧ ରହି ପରସ୍ପର ବିରୋଧୀ ଆଚରଣ କରେ । ଆଉ, ପ୍ରବୃତ୍ତିଗୁଡ଼ିକ ଦ୍ୱାରା ରଞ୍ଜିତ ହେବାର କାରଣରୁ ସବୁ-କିଛିକୁ ପ୍ରବୃତ୍ତିରଙ୍ଗିନ୍ ଛନ୍ଦରେ ଗ୍ରହଣ କରେ । ଏବଂ ଯାହାକିଛିରେ ପ୍ରତିକ୍ରିୟା କରେ ସେହି ରକମରେ ଯେତେବେଳେ ଯେଉଁ ପ୍ରବୃତ୍ତି ଉତ୍ତେଜିତ ହୁଏ । ଫଳକଥା, କୌଣସି ମଣିଷ ପ୍ରବୃତ୍ତିପରାୟଣ ହେଲେ ଜଗତର କୌଣସି ଜିନିଷକୁହିଁ ଯଥାଯଥ ଭାବରେ ଦେଖି ଓ ବୁଝିପାରେ ନାହିଁ, ଏବଂ ମଣିଷ ସହିତ ତା'ର ବ୍ୟବହାର ମଧ୍ୟ ସହଜ, ଶୁଦ୍ଧ ଓ ସ୍ୱାଭାବିକ ହୁଏ





କମ୍‌ହିଁ । ଏହିଭାବରେ ଯେତେ ଚାଲେ, ସେତେ ପ୍ରବୃତ୍ତିର ବନ୍ଧନ ପକ୍କା ହୁଏ । ପ୍ରବୃତ୍ତିଗୁଡ଼ିକର ଗୋଲକଧନ୍ଦା ଭିତରେ ସେ ଘୁରେ । ତା' ମଧ୍ୟରୁ ବାହାରି ପାରେ ନାହିଁ । ସେଥିପାଇଁ ଚଳଣୀ ମଧ୍ୟରେ କ୍ରମାଗତ ଅସଙ୍ଗତି ହେବାକୁ ଲାଗେ । ଆଉ କେହି ଯେତେବେଳେ ତାହା ଧରାଇ ଦିଅନ୍ତି, ସେତେବେଳେହିଁ ପ୍ରବୃତ୍ତିର ଅନୁକୂଳରେ ତା'ର ଯୁକ୍ତିକୁ ଲଗାଇ ନିଜର ଭୁଲକୁହିଁ ସମର୍ଥନ କରେ । ଏହିଭାବରେ ତା'ର ପ୍ରତିମୂହୂର୍ତ୍ତର ଚଳଣୀ ସତ୍ତାବିରୋଧୀ ରକମରେ ଚାଲେ । ସେ ଅନେକ କିଛି ଜାଣିପାରେ କିନ୍ତୁ ସେଗୁଡ଼ିକ ମଧ୍ୟରେ କୌଣସି meaningful adjustment (ସାର୍ଥକ ବିନ୍ୟାସ) ହୁଏ ନାହିଁ । ତାହାର ବ୍ୟୁତ୍ପତ୍ତି ମଧ୍ୟ ହୁଏ ପ୍ରବୃତ୍ତି-ପରାମୃଷ୍ଟ । ଏହା ଫଳରେ ସେ ନିଜର ବା ଅନ୍ୟମାନଙ୍କ ପ୍ରତି କମ୍‌ହିଁ ନ୍ୟାୟ ସଙ୍ଗତ ଆଚରଣ କରିପାରେ । କାରଣ, ଏକ-ଏକ ସମୟରେ ଏକ-ଏକ ବୃତ୍ତିହିଁ ତା'ର ଚାଳକ ହୁଏ । ବୃତ୍ତିଗୁଡ଼ିକ ସତ୍ତାର ଶକ୍ତି ଚୋରି କରି ନେଇ ନିଜେହିଁ ଯେପରି ସତ୍ତା, ସେହିପରି ଭାବରେ ଚାଲେ । ଏହି ଧରଣର ମଣିଷ ତା'ର ସାତ୍ୱତ ସ୍ୱାର୍ଥ କ'ଣ କେବେବି ବୁଝିପାରେ ନାହିଁ ? ତାକୁ ମାୟା-ମୋହ ଯେପରି ଭାବରେ ଚଳାଏ ସେ ସେହିପରି ଭାବରେ ଚାଲେ । ହୁଏତ ତା'ର ସ୍ତ୍ରୀର ଗହଣା କରିବା ବେଳକୁ ଟଙ୍କା ଜୁଟେ, କିନ୍ତୁ ବୃଦ୍ଧ ପିତାମାତାଙ୍କ ପଇଁ ଟିକିଏ ଦୁଧ ଯୋଗାଡ଼ କରିବା ସମୟରେ ଅଭାବର କଥା କୁହେ । ଏହାର ଏକମାତ୍ର ଔଷଧ ହେଲା, ଅଚ୍ୟୁତ ଭାବରେ ଇଷ୍ଟସ୍ୱାର୍ଥପ୍ରତିଷ୍ଠାପନ୍ନ ହେବା । ସେତେବେଳେ ତା' ଜୀବନର କେନ୍ଦ୍ରହିଁ ହୁଅନ୍ତି ଇଷ୍ଟ । ପ୍ରତିମୂହୂର୍ତ୍ତରେ ସେ କ'ଣ ଚାହାଁନ୍ତି, କେଉଁଥିରେ ଖୁସି ହୁଅନ୍ତି, ଏହାହିଁ ତା'ର ବିବେଚନା ହୁଏ । ଏହି ଆଗ୍ରହ-ଆକୁଳ ଚିନ୍ତା ଓ ବିଚାର-ବିବେଚନା ଯଦି କାହାକୁ ପାଇ ବସେ ତାହାହେଲେ ସେ ନିଜର ବା ଅପରର ସାତ୍ୱତ ସ୍ୱାର୍ଥକୁ କେବେବି କ୍ଷୁର୍ଣ୍ଣ କରିପାରେ ନାହିଁ । ଜାଣେ, ସେମିତି କିଛି କଲେ ଇଷ୍ଟହିଁ ବ୍ୟଥା ପାଇବେ । ଏହିଭାବରେ ଚାଲୁ-ଚାଲୁ ସୁନିଷ୍ଠ ଇଷ୍ଟ-ଚେତନା ତା'ର ଶରୀରର ପ୍ରତ୍ୟେକଟି cell (କୋଷ) ମଧ୍ୟରେ ଢୁକି ଯାଏ । ତାକୁ ଯଦି କାଟି ମଧ୍ୟ ପକାଯାଏ, ସେତେବେଳେ ତା'ର ମାଂସଖଣ୍ଡ ଗୁଡ଼ିକ ମଧ୍ୟ ଯେତେ କ୍ଷଣ ତାଜା ଥାଏ ସେତେ କ୍ଷଣ ଇଷ୍ଟନିଷ୍ଠାର ଅନୁକୂଳହିଁ ଆଚରଣ କରେ ।

ମଣିଷର ଆତ୍ମା ଯେପରି ଅମର, ନିଷ୍ଠା ମଧ୍ୟ ସେହିପରି ଅମର । ଆମେମାନେ ଯେ ଅମୃତ-ଅମୃତ କହୁ ତାର ଚାବିକାଠି ହେଲା ଇଷ୍ଟନିଷ୍ଠା । ଇଷ୍ଟନିଷ୍ଠା ଯେତେବେଳେ ଜଣକୁ ପାଇ ବସେ, ସେତେବେଳେ ଗୋଟିଏ-ଗୋଟିଏ ପ୍ରବୃତ୍ତିର ସିନ୍ଦୁକର ଢାଙ୍କୁଣୀ ଖୋଲି ଯାଉଥାଏ ଏବଂ ବିଭିନ୍ନ ପ୍ରବୃତ୍ତି ଇଷ୍ଟମୁଖୀ ଅର୍ଥାତ୍ ଏକମୁଖୀ ହେବାକୁ ଲାଗେ । ସେତେବେଳେ ବୁଝାଯାଏ କାମର ସ୍ୱରୂପ କ'ଣ, କ୍ରୋଧର ସ୍ୱରୂପ କ'ଣ, ଲୋଭ, ମୋହ, ମାତ୍ସର୍ଯ୍ୟର ସ୍ୱରୂପ କ'ଣ ! ଏବଂ ଏହିଗୁଡ଼ିକର ପ୍ରତ୍ୟେକଟିର ସପରିବେଶ ନିଜର ସତ୍ତାପୋଷଣୀ ବିନିଯୋଗ କିପରି

ଭାବରେ କରାଯାଏ। ସେତେବେଳେ ମଣିଷ ପ୍ରବୃତ୍ତି ହାତରେ ପଡ଼େ ନାହିଁ, ବରଂ ପ୍ରବୃତ୍ତିଗୁଡ଼ିକ ତା' ହାତରେ ଖେଳର ପୁତୁଳା ଭଳି ହୋଇଯାଏ। ଓଲଟା ଚଳଣୀ ବନ୍ଦ ହୋଇଯାଏ। ଏହିଭାବରେ ମଣିଷ ଭିତରେ ଅଖଣ୍ଡ ବ୍ୟକ୍ତିତ୍ୱର ପ୍ରତିଷ୍ଠା ହୁଏ। ସେ ପ୍ରାଜ୍ଞ ହୋଇଉଠେ। ବୋଧିସତ୍ତ୍ୱ ହୋଇ ଉଠେ।

ଆ.ପ୍ର. ୧୯/୧୭.୪.୧୯୫୦

**ପ୍ର. – ଇଷ୍ଟଙ୍କୁ ଭଲପାଇବା ସତ୍ତ୍ୱେ ମଧ୍ୟ ପ୍ରବୃତ୍ତି ଥାଏହିଁ, ତାର ହାତରୁ ରକ୍ଷା ପାଇବାର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ହନୁମାନ ମନ୍ତ୍ରୀତ୍ୱ ପାଇବା ଲୋଭରେ ରାମଚନ୍ଦ୍ରଙ୍କ ପାଖକୁ ଆସିଥିଲେ। କିନ୍ତୁ ପରେ ରାମଚନ୍ଦ୍ରଙ୍କୁ ଏପରି ଭଲପାଇ ବସିଲେ ଯେ ତାଙ୍କର ସବୁ ଲୋଭ ତୁଚ୍ଛ ହୋଇଗଲା। ଏହିଟାହିଁ ଦରକାର। ଇଷ୍ଟଙ୍କୁ ଖୁସି କରିବାହିଁ ମୋର ଏକମାତ୍ର ସୁଖ – ଏହିପରି ଯଦି ହୋଇଯାଏ ତାହାହେଲେ ବଞ୍ଚିଗଲ। ଶୁଧୁ କର୍ତ୍ତବ୍ୟ ବୋଧରୁ ଯେଉଁମାନେ ଇଷ୍ଟଙ୍କର ଆଦେଶ ପାଳନ କରିବାକୁ ଯାଆନ୍ତି, ହୁଏତ କୌଣସି ପ୍ରବୃତ୍ତିର ଟାଣରୁ ସେ କର୍ତ୍ତବ୍ୟବୋଧ ଛାଡ଼ିଯାଇ ପାରେ। କିନ୍ତୁ ଇଷ୍ଟ ଯଦି ନିଶାର ବସ୍ତୁ ହୁଅନ୍ତି, ତାଙ୍କୁ ନ ହେଲେ ମୋର ପ୍ରାଣ ବଞ୍ଚେ ନାହିଁ, ଏହିପରି ଯଦି ହୁଏ, ତାହାହେଲେ ଆଉ ଭାବନା ନାହିଁ। ...ଯେତେ ପର୍ଯ୍ୟନ୍ତ ଆପଣଙ୍କ ଭଲପାଇବା ମଧ୍ୟରେ condition (ସର୍ତ୍ତ) ଥାଏ, ସେତେ ସମୟ ପର୍ଯ୍ୟନ୍ତ ଆପଣ ଭଲପାଇବାର ରାଜତ୍ୱରେ ପଶି ନାହାନ୍ତି। ଭଲପାଇବା ମଧ୍ୟରେ ଥାଏ ତତ୍‌ସୁଖ ସୁଖୀତ୍ୱ, ପ୍ରିୟଙ୍କ ସୁଖରେ ସୁଖୀ ହେବା। ଶତ କଷ୍ଟ ସତ୍ତ୍ୱେ ମଧ୍ୟ ଆମେମାନେ ଯଦି ସବୁ complex (ପ୍ରବୃତ୍ତି) ନେଇ ଇଷ୍ଟଙ୍କର ଚିତ୍ତବିନୋଦନ ପାଇଁ ତତ୍‌ପର ହେଉ ତାହା ହେଲେହିଁ ବଞ୍ଚିଗଲୁ। ନିଜର କୌଣସି ଚାହିଦା ରହିଲେ ଭଲପାଇବାଟା ବିଶୁଦ୍ଧ ହୁଏ ନାହିଁ। ଶୁଦ୍ଧ ଭକ୍ତି ଦରକାର।

ଆ.ପ୍ର. ୧୯/୧୭.୪.୧୯୫୦

**ପ୍ର. – ଇଷ୍ଟ-ଗ୍ରହଣର ମଧ୍ୟ ଦେଇ ମଣିଷ ହେବାକୁ ହେଲେ କି ଭାବରେ ଚାଲିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ମଣିଷ ହେବାକୁ ହେଲେ ପ୍ରଥମେ ଦରକାର ଆଦର୍ଶଙ୍କର ଅନୁସରଣ। ତାଙ୍କ ଠାରେ ସୁକେନ୍ଦ୍ରିକ ହେବାକୁ ହୁଏ। ପ୍ରବୃତ୍ତିଗୁଡ଼ିକୁ ଆଦର୍ଶଙ୍କର ସ୍ୱାର୍ଥ ଓ ପ୍ରତିଷ୍ଠାରେ ନିୟୋଜିତ କରିବା ଏବଂ ସକ୍ରିୟ ଭାବରେ ସେଗୁଡ଼ିକର ସାର୍ଥକ ନିୟନ୍ତ୍ରଣ, ସାମଞ୍ଜସ୍ୟ ଓ ସମାଧାନ କରିବା ଆବଶ୍ୟକ। ମୋଟ ଉପରେ, ତୁମର ବଞ୍ଚିବାଟା ଇଷ୍ଟଙ୍କ ପାଇଁ ଏହି ବୋଧଟା ତୁମ ଭିତରେ ଦୃଢ଼ ହେବା ଦରକାର। ଏହିଭାବରେ ଅନୁପ୍ରାଣିତ ହୋଇ ଚାଲିଲେ ତୁମର nerve (ସ୍ନାୟୁ), muscle (ପେଶୀ), intelligence (ବୁଦ୍ଧି) ଆଦର୍ଶମୁଖୀ ହୋଇ ବିନ୍ୟସ୍ତ



ହୋଇଉଠେ। ଏହା ଫଳରେ ଇଷ୍ଟାନୁରାଗ ଗଭୀର ହେବାକ ଲାଗେ। ଯେତେବେଳେ ଇଷ୍ଟପ୍ରାଣତା ସତ୍ତାର ଅଣୁ ପରମାଣୁରେ ଅନୁପ୍ରବିଷ୍ଟ ହୁଏ ସେତେବେଳେ ଯତ୍ର ଯତ୍ର ନେତ୍ର ପଡ଼େ, ତତ୍ର ତତ୍ର ଇଷ୍ଟ ସ୍ଫୁରେ – ଏହିପରି ରକମ ହୁଏ। ପାରିପାର୍ଶ୍ୱିକଙ୍କୁ ମଧ୍ୟ ଇଷ୍ଟଙ୍କରହିଁ ଭିନ୍ନ ମୂର୍ତ୍ତି ବୋଲି ବୋଧ କରାଯାଏ। ମଣିଷ ଯେତେବେଳେ ଏହି ଭାବରେ ମଣିଷକୁ ଦେଖେ ସେତେବେଳେ ତା'ର ସଂସ୍ପର୍ଶରେ ଆସି ଅନ୍ୟଭିତରେ ମଧ୍ୟ ଦେବଭାବ ଜାଗ୍ରତ ହୋଇଉଠେ। ତା'ର ସମଗ୍ର ସତ୍ତା ହୁଏ ସ୍ୱତଃ-ଯାଜନଶୀଳ। ସେତେବେଳେ ପରିବେଶର ସହଯୋଗିତା ଓ ସେବା ତା'ର ସ୍ୱଭାବଧର୍ମ ହୋଇଉଠେ। କେବଳ ସହଯୋଗିତା ହେଲେହିଁ ହେଲା ନାହିଁ। ସତ୍ତାନୁପାତିକ ସହଯୋଗିତା ଦରକାର। କାହାର ସତ୍ତାର କ'ଣ ପ୍ରୟୋଜନ ତାହା ବୁଝି ସହଯୋଗିତା ଓ ସେବା କରିବା ଦରକାର। ସେଥିରେହିଁ ପ୍ରକୃତ କାର୍ଯ୍ୟ ହୁଏ। ଯେତେବେଳେ ଇଷ୍ଟପ୍ରାଣତା ମଣିଷର ନିୟାମକ ପ୍ରବୃତ୍ତି ହୁଏ, ସେତେବେଳେ ମଣିଷର ଅନ୍ତର୍ଜଗତ ଓ ବହିର୍ଜଗତ ଏକୀକୃତ ହୋଇଉଠେ। ସେଇ ଏକ ହେଉଛନ୍ତି ଆଦର୍ଶ। ସେଥିପାଇଁ, ଭିତରର ଓ ବାହାରର ଚଳନ ଏକହିଁ ଉଦ୍ଦେଶ୍ୟରେ ଅନୁପ୍ରାଣିତ ହେବା ଫଳରେ ତା' ଭିତରେ ଶାନ୍ତି ଓ ସମତା ଜାଗିଉଠେ। ଶରୀରର ଚର୍ଚ୍ଚା କରୁ-କରୁ ଯେପରି ଶରୀର ବଢ଼େ, ସେହିପରି ଆଖି, ନାକ, କାନ, ଜିଭ, ତ୍ୱକ, ବୋଧ ଓ ମସ୍ତିଷ୍କର ଇଷ୍ଟାନୁଗ ତପଃପ୍ରାଣ ଅନୁଶୀଳନର ଫଳରେ ପ୍ରତ୍ୟେକଟି ଇନ୍ଦ୍ରିୟ ଓ ବୁଦ୍ଧିବୃତ୍ତି ତୀବ୍ର ଭାବରେ ସାଡ଼ା ପ୍ରବଣ ହୋଇଉଠେ। ସାଧାରଣତଃ ପ୍ରବୃତ୍ତିଗୁଡ଼ିକ ଆମ ମନକୁ ନାନା ଦିଗକୁ, ନାନା ଭାବରେ ଟାଣନ୍ତି। କିନ୍ତୁ ଯିଏ ଇଷ୍ଟଙ୍କୁ ଭଲପାଏ ସେ ପ୍ରତି ପଦକ୍ଷେପରେ ଭାବି ଦେଖେ କେଉଁଟା ଇଷ୍ଟାନୁଗ, କେଉଁଟା ସତ୍ତା ସମ୍ବର୍ଦ୍ଧନୀ ଏବଂ ସେହି ମାପକାଠିରେ ସେ ବିଚାର କରିକରି ଚାଲେ। ଯେତେବେଳେ ଏହି ଭାବ ମଣିଷ ମଧ୍ୟରେ ପ୍ରତିଷ୍ଠା ପାଏ ସେତେବେଳେ ପ୍ରତିକୂଳ ଅବସ୍ଥାରେ ପଡ଼ି ମଧ୍ୟ ସେ ଅଚ୍ୟୁତ ଥାଏ। ଏହି ଅଚ୍ୟୁତ ଇଷ୍ଟାନୁରକ୍ତିହିଁ ମଣିଷତ୍ୱର ମାନଦଣ୍ଡ।

ଆ.ପ୍ର. ୧୯/୧୮.୪.୧୯୫୦

**ପ୍ର. – ଇଷ୍ଟାନୁସରଣ ଅକ୍ଷୁର୍ଣ୍ଣ ରଖି ମଣିଷ ସହିତ କିପରି ଭାବରେ ଚଳିବାକୁ ହେବ ?**

**ଶ୍ରୀଶ୍ରୀଠାକୁର** – ନାନାଧରଣର ଲୋକ ଥାଆନ୍ତି। ମନ୍ଦ ଲୋକ ଯେଉଁମାନେ ସେମାନଙ୍କୁ ନେଇ ଚାଲିବାହିଁ ମୁସ୍କିଲ। ସେମାନେ ଭଲ ମଝିରେ ବି ମନ୍ଦ ଖୋଜି ବାହାର କରନ୍ତି। ସମୁଦ୍ରରେ ସ୍ନାନ କରିବା ପରି କେତେବେଳେ ବୁଡ଼ ଦେବ, ଢେଉ ମୁଣ୍ଡ ଉପର ଦେଇ ଚାଲିଯିବ, କେତେବେଳେ ଡେଇଁ ପଡ଼ିବେ, ପାଦ ତଳଦେଇ ଢେଉ ଚାଲିଯିବ। କୌଶଳରେ conflict (ଦ୍ୱନ୍ଦ) ଏଡ଼ାଇ ଚାଲିବାକୁ ହେବ। କଦର୍ଯ୍ୟ ଯାହା ତାହା ଯେପରି ନିରୁଦ୍ଧ ହୁଏ, ଏହା ଯେପରି ମନେଥାଏ। ତୁମମାନଙ୍କର ସତ୍ତାରେ ମଣିଷ ଯେପରି ସତ୍ତାବାନ ହୁଏ। ଆଉ, ତୁମମାନଙ୍କ ଉପସ୍ଥିତିରେ ଦୁଷ୍ଟମନ ଯେପରି ମଥା ନତ କରି ରହେ ଏବଂ ତା'ର ପ୍ରଭାବ ବିସ୍ତାର କରି ନ

ପାରେ। ଆଉ, ଏହା ଭିତରୁ-ବାହାରୁ ଦୁଇ ଦିଗରୁହିଁ । ଅର୍ଥାତ୍, ତୁମର ପ୍ରବୃତ୍ତିରୂପି ଦୂଷମନ ଏବଂ ବାହାରର ଦୁଷମନ ଏହି ଦୁଇ ଦିଗକୁ ସମ୍ଭାଳି ଚାଲିବାକୁ ହେବ। ନିଜର ପ୍ରବୃତ୍ତିକୁ ଯଦି ବଶରେ ଆଣି ନ ପାର ତାହେଲେ କିନ୍ତୁ ବାହାରର ଦୁଷ୍ଟ ଲୋକଙ୍କୁ ମଧ୍ୟ ବଶକୁ ଆଣିପାରିବ ନାହିଁ। ପ୍ରବୃତ୍ତିକୁ ଜୟ କରିବାର ଭିତର ଦେଇ ମଣିଷ ଯେଉଁ ଜ୍ଞାନ ଓ ଅଭିଜ୍ଞତା ଲାଭ କରେ ତାର ସୁଷ୍ଠୁ ପ୍ରୟୋଗରେ ସେ ଜଗତରେ ଯେ କୌଣସି କଠିନ କାର୍ଯ୍ୟ କରିପାରେ। ଆଉ, ଏହି ପ୍ରବୃତ୍ତି-ଜୟ କେତେବେଳେ ବି କସରତ କରି ହୁଏ ନାହିଁ। ଇଷ୍ଟଙ୍କ ଉପରେ ପ୍ରଚଣ୍ଡ ଟାଣ ଯଦି ଥାଏ ତାହା ହେଲେ ପ୍ରବୃତ୍ତିଗୁଡ଼ିକୁ ସହଜରେହିଁ ଆୟତ୍ତ କରାଯାଏ।

ଆ.ପ୍ର. ୧୯/୨୦.୪.୧୯୫୦

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ କେତେବେଳେ ମଣଇଷକୁ ନିୟନ୍ତ୍ରଣ କରାଯାଏ ?**

**ଶ୍ରୀଶ୍ରୀଠାକୁର** – ନିଜେ ଇଷ୍ଟଙ୍କଠାରେ ଅଚ୍ୟୁତ ରହି ଯଦି ମଣିଷର ଜୀବନ, ମନ, ଅନ୍ତର ଚୋରି କରିପାର – ଭଲପାଇବା ଦେଇ, ମମତା ଦେଇ, ସେବା ଦେଇ, ବ୍ୟବହାର ଦେଇ, ତେବେହିଁ ହୁଏ। ତାହା ପାରିଲେ ଆଉ ସବୁ ପାରିବ। ତୁମର ଚରିତ୍ର ଯେପରି ତୁମର ସମ୍ପଦ, ସେମିତି ପରିବେଶର ମଧ୍ୟ। ଚରିତ୍ର ମଧ୍ୟରେ ଅଛି ଆଚରଣ। କୁହ, କର ନାହିଁ, ତାହାହେଲେ ପରିବେଶର ତୁମ ପ୍ରତି ଅଶ୍ରଦ୍ଧା ହେବ। ସେତେବେଳେ ଭଲ କଥା ସମ୍ବନ୍ଧରେ ତାର ଗୋଟିଏ ଅରୁଚି ଜନ୍ମିଯିବ। ଏହିଭାବରେ ମଣିଷର କ୍ଷତିକରିବା ଠିକ୍ ନୁହେଁ। Concentric agent (ସୁକେନ୍ଦ୍ରିକତାର ହୋତା) ହେବାକୁ ଗଲେ ନିଜେହିଁ ଠିକ୍ ହେବା ଦରକାର। ତୁମେମାନେହିଁ ମୋର ଲୋଭର ଜିନିଷ, ମୋର ଉପଭୋଗର ଜିନିଷ। ତୁମେମାନେ ମଣିଷ ହୁଅ।

ଆ.ପ୍ର. ୧୯/୨୦.୪.୧୯୫୦

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ପ୍ରକୃତରେ ଆତ୍ମୋନ୍ନୟନ କେତେବେଳେ ହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କ ଠାରେ ଆମ୍ଭେମାନେ ଯେତେବେଳେ ଆତ୍ମୋତ୍ସର୍ଗ କରୁ, ସେତେବେଳେ ଯଦି condition (ସର୍ତ୍ତ) କରୁ, ତାହା ଆତ୍ମବିକାଶର ପଥରେ ବାଧା ହୋଇ ଛିଡ଼ା ହୁଏ। ଏପରିକି ଇଷ୍ଟଙ୍କର ଇଚ୍ଛାପୂରଣ ଛଡ଼ା ବ୍ୟକ୍ତିଗତ କୌଣସି ପ୍ରତ୍ୟାଶା ଯଦି ଥାଏ ତାହା ମଧ୍ୟ ଅନ୍ତରାୟ ହୋଇ ଛିଡ଼ା ହୁଏ। ଇଷ୍ଟଙ୍କ ସହିତ ଭାବଟା ଏପରି ହେବ ଯେ ମୁଁ ତୁମ ପାଇଁ ହିଁ ତୁମକୁ ଭଲପାଏ। କ'ଣ ପାଇଁ ଭଲପାଏ ତାହା ଜାଣେନା। ଭଲ ନ ପାଇଲେ ରହିପାରେ ନାହିଁ ସେଥିପାଇଁ ଭଲପାଏ। ଏହିପରି ହେଲେହିଁ ତାର ପ୍ରକୃତରେ ଆତ୍ମୋନ୍ନୟନ ହୁଏ।

ଆ.ପ୍ର. ୧୯/୨୩.୪.୧୯୫୦



**ପ୍ର. – ଇଷ୍ଟାନୁସରଣରେ ଯେଉଁମାନେ ସଂକଳ୍ପ କରି ଦୀକ୍ଷା ନିଅନ୍ତି ସେମାନଙ୍କ ମଧ୍ୟରେ କେଉଁମାନେ ଲାଭବାନ ହୁଅନ୍ତି ?**

**ଶ୍ରୀଶ୍ରୀଠାକୁର** – ଦୁଇଟି ଜିନିଷ ଅଛି। ଗୋଟିଏ ମୋ ପାଇଁ ଠାକୁର, ଆଉ ଗୋଟିଏ ଠାକୁରଙ୍କ ପାଇଁ ମୁଁ। ମୋ ପାଇଁ ଠାକୁର ହେଲେ ମଣିଷ ଠାକୁରଙ୍କଠାରେ ସୁକେନ୍ଦ୍ରିକ ହୁଏନା। ଠାକୁରଙ୍କୁ ଦେଇ ଆତ୍ମସ୍ୱାର୍ଥ, ଆତ୍ମପ୍ରତିଷ୍ଠା କିପରି ହୁଏ ସେହି ଧନ୍ଦା ନେଇ ଚାଲେ। ସେଥିରେ ଫଳ ହୁଏ ନାହିଁ। ଦୀକ୍ଷା କହିଲେ ମୁଁ ବୁଝେ seal of God (ଭଗବାନଙ୍କର ଛାପ) ମଣିଷର ମଥାରେ ଆଙ୍କି ଦେବା। ତା' ଜୀବନ ଯେ ଇଷ୍ଟଙ୍କ ପାଇଁ – ଏହାହିଁ ତାର ବୋଧରେ ଆଣି ଦେବା। ନାମ ନେଇଥିଲେ ଯଜନ, ଯାଜନ, ଇଷ୍ଟଭୃତି କରୁକରୁ – ତାଙ୍କ ପାଇଁ ମୁଁ, ଏହି ବୋଧ ଖୋଲିବାର ସମ୍ଭାବନା ଥାଏ। ଅନେକ ସମୟରେ ସକାମ ଠାରୁ ନିଷ୍କାମ ହୁଏ। ତାଙ୍କ ପାଇଁ ଯେତେବେଳେ ଭଲପାଇବା ଗଜାଏ ଏବଂ ନିଃସ୍ୱାର୍ଥ ସେବାଜନିତ ଆନନ୍ଦ ଯେତେବେଳେ ମଣିଷ ପାଏ, ସେତେବେଳେ ବ୍ୟକ୍ତିଗତ ସ୍ୱାର୍ଥର ଧନ୍ଦା ତା' ପାଖରେ ଯନ୍ତ୍ରଣା-ଦାୟକ ମନେହୁଏ।

ଆ.ପ୍ର. ୧୯/୨୬.୪.୧୯୫୦

**ପ୍ର – ଇଷ୍ଟଗ୍ରହଣ କରିବା ପରେ କର୍ମଫଳଗୁଡ଼ିକ କିପରି ଭାବରେ ନିୟନ୍ତ୍ରିତ ହୁଏ ?**

**ଶ୍ରୀଶ୍ରୀଠାକୁର** – ପ୍ରତ୍ୟେକଟି କର୍ମହିଁ ଆମମାନଙ୍କ ମଥାରେ ଗୋଟିଏ ଛାପ ପକାଏ, ଏବଂ ସେହି ଅନୁଯାୟୀ ବ୍ୟୁତ୍ପତ୍ତି ମଧ୍ୟ ସୃଷ୍ଟି ହୁଏ। ସେହି ବ୍ୟୁତ୍ପତ୍ତି ପୁଣି ପରେ ଆମ୍ଭମାନଙ୍କର କର୍ମକୁ ପରିଚାଳିତ କରେ। ସଦ୍‌ଗୁରୁ (ଇଷ୍ଟ) ଗ୍ରହଣ କରିବା ପରେ ଏହି ବ୍ୟୁତ୍ପତ୍ତି ମଧ୍ୟରେ ଯଦି ଏପରି ପରିବର୍ତ୍ତନ ସୃଷ୍ଟି ହୁଏ ଯାହା ଫଳରେ ଆମ୍ଭମାନଙ୍କର ପ୍ରବୃତ୍ତିମୁଖର ପ୍ରବଣତା ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଦିଗକୁ ପରିଚାଳିତ ହୁଏ ତାହାହେଲେହିଁ କର୍ମଫଳର କିଛିଟା ନିରସନ ହେଉଛି ବୋଲି ବୁଝାଯିବ। ନାମଧ୍ୟାନ ଖୁବ୍ କରିବାକୁ ହୁଏ। ସେତେବେଳେ ମସ୍ତିଷ୍କର ବହୁ ଗୁପ୍ତ ଓ ସୁପ୍ତ ପ୍ରବଣତା ଆତ୍ମପ୍ରକାଶ କରେ। ତାହାର ପ୍ରତ୍ୟେକଟିକୁ ଧରି-ଧରି ଇଷ୍ଟଙ୍କ ଦିଗକୁ ମୋଡ଼ ଫେରାଇବାକୁ ହୁଏ। ପ୍ରତ୍ୟେକଟି ଚିନ୍ତା, ବାକ୍ୟ ଓ କର୍ମ ଆତ୍ମକେନ୍ଦ୍ରିକ ନ ହୋଇ ଇଷ୍ଟକେନ୍ଦ୍ରିକ ହୋଇ ଉଠିବା ଦରକାର। ଗୋଟିଏ କଥାରେ, ସତ୍ତାର ଆମୂଳ ରୂପାନ୍ତର ନହେଲେ ହୁଏ ନାହିଁ। ଯେଉଁ ଜୀବନଟା ଏତେ ଦିନ 'ମୁଁ ମୋର, ମୁଁ ମୋର' କହି ଘୂରୁଥିଲା, ତାହା ଇଷ୍ଟସର୍ବସ୍ୱ ହୋଇ ଆବର୍ତ୍ତିତ ହେବା ଦରକାର। ଇଷ୍ଟଙ୍କ ପାଇଁ ମୁଁ ଏହି ବୋଧଟା ପକ୍କା ହେବା ଦରକାର।

ଆ.ପ୍ର. ୧୯/୩.୫.୧୯୫୦

**ପ୍ର. – ଇଷ୍ଟାନୁସରଣରେ ଅକପଟ ହେଲେ କୌଣସି ଖରାପ ପ୍ରବଣତା କେଉଁ ଭାବରେ ପ୍ରଶମିତ ହୁଏ ?**

**ଶ୍ରୀଶ୍ରୀଠାକୁର –** ଧରନ୍ତୁ, ଜଣକ ଭିତରେ ଚୌର୍ଯ୍ୟ ପ୍ରବଣତା ଅଛି। ସେ ଆପଣଙ୍କ ଘରକୁ ଯାଇ ଗୋଟିଏ ପେନ୍‌ସିଲ ଆଣିଲା, କହିବାର ପ୍ରୟୋଜନ ବୋଧ କଲା ନାହିଁ। ସେତେବେଳେ ସେ ଆତ୍ମବିଶ୍ଳେଷଣ କରି ଦେଖିଲା, ଚୌର୍ଯ୍ୟ ପ୍ରବୃତ୍ତି ଏହି କାର୍ଯ୍ୟ କରିଛି ଏବଂ ତାହା ବୁଝିବା ପରେହିଁ ସେ ଯାଇ ଆପଣଙ୍କୁ କହିଲା। ପୁଣି ହୁଏତ ଏପରି ମଧ୍ୟ ହୋଇପାରେ ଯେ ମୋ କାମ ପାଇଁ ଆଣିଛି ସେଥିପାଇଁ କହି ନାହିଁ। ସେତେବେଳେ ପୁଣି ଚିନ୍ତା କରି ଦେଖିଲା ଯେ, ଠାକୁରଙ୍କ କାମ ପାଇଁ ଆଣିଲେ ମଧ୍ୟ କହିବା ପ୍ରୟୋଜନ ନ ଥିଲା। ଆଉ, ଯଦି କାହାକୁ ନ ପାଏ ସେତେବେଳେ ଗୋଟିଏ କାଗଜରେ ଲେଖି ଏପରି ଜାଗାରେ ରଖି ଆସିବା ଉଚିତ୍ ଥିଲା ଯେପରି ସମସ୍ତଙ୍କର ନଜରରେ ପଡ଼େ। ଏହି ଭାବରେ ଯେତେ ସମୟ ପର୍ଯ୍ୟନ୍ତ ବିନ୍ଦୁ ମାତ୍ର ଦୁର୍ବଳତା ଥାଏ ସେତେ ସମୟ ପର୍ଯ୍ୟନ୍ତ ସେ ଯଦି ନିଜକୁ କ୍ଷମା ନ ଦିଏ ଏବଂ କ୍ରମାଗତ ଆତ୍ମସଂଶୋଧନରେ ତତ୍ପର ଥାଏ, ତାହାହେଲେହିଁ ଗୋଟିଏ-ଗୋଟିଏ ଖରାପ ଗ୍ରନ୍ଥିର ହାତରୁ ଉଦ୍ଧାର ପାଇବା ସମ୍ଭବ ହୋଇପାରେ। ନିଜର ଦୋଷ-ଦୁର୍ବଳତାକୁ ଆଦୌ କ୍ଷମା କରିବା ଉଚିତ ନୁହେଁ। ଆପଣ ହେବେ ଆପଣଙ୍କର ଦୁର୍ବଳତାର ସର୍ବପ୍ରଧାନ ଶତ୍ରୁ। ଏହିପରି ହେଲେ ଗୋଟିଏ -ଗୋଟିଏ ଧରି ଧରି ସଂଶୋଧନ କରାଯାଏ। ଆ.ପ୍ର. ୧୯/୩.୫.୧୯୫୦

**ପ୍ର. – କିପରି ଭାବରେ ଚାଲିଲେ ଇଷ୍ଟଙ୍କ ପ୍ରତି ଅନୁରାଗ ସହଜ ଭାବରେ ଜାଗେ ?**

**ଶ୍ରୀଶ୍ରୀଠାକୁର –** ମା ଯେପରି ସନ୍ତାନ ପାଇଁ କରେ, ସନ୍ତାନର ସ୍ୱାର୍ଥପ୍ରତିଷ୍ଠାହିଁ ନିଜର ସ୍ୱାର୍ଥପ୍ରତିଷ୍ଠା କରି ନିଏ ଏବଂ ସେହି ବ୍ୟାପାରରେ କୌଣସି ଦୁଃଖ-କଷ୍ଟକୁ ଦୁଃଖ-କଷ୍ଟ ବୋଲି ମନେ କରେ ନାହିଁ, ଠିକ୍ ଏହିପରି ମନୋଭାବ ନେଇ ବାସ୍ତବରେ କରିବା-କହିବା-ଭାବିବା ନିୟମିତ ଭାବରେ ଚଳାଇବାକୁ ହୁଏ। ତାର ମାନେ ଆମର ପ୍ରତ୍ୟେକଟି କରିବା, ପ୍ରତ୍ୟେକଟି ଭାବିବା, ପ୍ରତ୍ୟେକଟି କହିବା ଯେପରି ଇଷ୍ଟଙ୍କର ପ୍ରୀତି ଓ ସ୍ୱାର୍ଥପ୍ରତିଷ୍ଠା ପାଇଁହିଁ ହୁଏ। ଏହିଭାବରେ ଯଦି କେହି ସକ୍ରିୟ ପରିକ୍ରମା ସହ ଚାଲିବା ଆରମ୍ଭ କରେ, ତାହେଲେ ତାର ଟାଣ ଗଜେଇବହିଁ।

ଆ.ପ୍ର. ୧୯/୨୪.୭.୧୯୫୦

**ପ୍ର. – ଇଷ୍ଟାନୁସରଣ କ'ଣ ତାଙ୍କ ଦୟା ଛଡ଼ା କରିବା ସମ୍ଭବ ?**

**ଶ୍ରୀଶ୍ରୀଠାକୁର –** ଭଗବାନଙ୍କର ଦୟାତ ଅଛିହିଁ। ସେଥିପାଇଁ ଆପଣଙ୍କର ଭାବିବା ଦରକାର ନାହିଁ। ନିଜ ପ୍ରତି ଦୟା କରନ୍ତୁ – ତାହା ହେଲେହିଁ ହେବ।

ଆ.ପ୍ର. ୧୯/୧୫.୧୦.୧୯୫୦

**ପ୍ର. – ଇଷ୍ଟାନୁସରଣର କ୍ରମାଗତି କିପରି ଭାବରେ ଠିକ୍ ରଖାଯାଏ ?**

**ଶ୍ରୀଶ୍ରୀଠାକୁର –** ନିଜର ସ୍ୱାର୍ଥର knot (ଗଣ୍ଠି) ରହିଗଲେ ଆଗେଇବାକୁ ଦିଏ ନାହିଁ।



କବାଟ ପଡ଼ିଯାଏ। ତୁମର ସ୍ୱାର୍ଥଟିକୁ ପୋଛି ପକାଅ। ଇଷ୍ଟଙ୍କର ସ୍ୱାର୍ଥଟିହିଁ ଯେପରି ତୁମର ସ୍ୱାର୍ଥ ହୋଇଉଠେ। ତଥାକଥିତ ଭଲ-ମନ୍ଦ ଯାହା ବି କର ଇଷ୍ଟସ୍ୱାର୍ଥପ୍ରତିଷ୍ଠାକୁ ଯାହା ପୂରଣ କରେ, ତାହାହିଁ କର। ସେହିଟିକୁ ଯାହା ପୂରଣ କରେ ନାହିଁ ତା ସହିତ ସମ୍ପର୍କ ତୁଟାଇ ଦିଅ।

**ପ୍ର. – ଯଦି ସଂସାର ପାଇଁ ଦଶ ମାଣ ଜମି କିଣୁ, ସେଠାରେ ଇଷ୍ଟସ୍ୱାର୍ଥପ୍ରତିଷ୍ଠା କିପରି ଭାବରେ ଦେଖିବ ?**

**ଶ୍ରୀଶ୍ରୀଠାକୁର –** ଜମି କିଣିଲେ ଇଷ୍ଟଙ୍କ ନାମରେ କିଣିବା ଉଚିତ୍, ଯଦି ଖୁବ୍ ବେଶି ନିଷ୍ଠାବାନ ହୁଅନ୍ତି। ହଜୁର ମହାରାଜ ଦରମା ପାଇ ଗୁରୁଙ୍କୁ ସବୁ ଟଙ୍କା ଦେଇ ଦେଉଥିଲେ, ସ୍ୱାମୀଜୀ ମହାରାଜ ଦୟା କରି ଯାହା ଦେଉଥିଲେ, ତାହା ଦେଇହିଁ ସଂସାର ଚଳାଉଥିଲେ। ଆତ୍ମସ୍ୱାର୍ଥୀ ହେଲେହିଁ କାମର ବାର ବାଜିଗଲା। ଗୋଟିଏ କଳସୀ କ୍ଷୀରରେ ଗୋଟିଏ ଫଣ୍ଡା ଗୋମୂତ୍ର ପଡ଼ିବା ପରି ଅବସ୍ଥା ହେବ। ଆତ୍ମେନ୍ଦ୍ରିୟ ପ୍ରୀତି-ଇଚ୍ଛା ହେଲେହିଁ ସର୍ବନାଶ। ଭାବିଲେ ପିଲାର ଗୋଟିଏ ସୁବ୍ୟବସ୍ଥା କରିବା, ସେ ମଧ୍ୟ ଇଷ୍ଟସ୍ୱାର୍ଥରହିଁ ଅଙ୍ଗ, ତାହା ଦେଖିବ ନାହିଁ କାହିଁକି ? ଏହିଭାବରେ ସେହି ଦିଗକୁ ହୁଏତ ଢଳି ପଡ଼ିଲେ। ଏହିପରି କରି ମଣିଷ ଲକ୍ଷ୍ୟଭ୍ରଷ୍ଟ ହୁଏ। ଆ.ପ୍ର. ୧୯/୧୯.୧୦.୧୯୫୦

**ପ୍ର. – ଇଷ୍ଟାନୁସରଣ କ'ଣ ପୂର୍ବଜନ୍ମର ସୁକୃତି ନ ରହିଲେ ଠିକ୍-ଠିକ୍ ଭାବରେ କରାଯାଏ ?**

**ଶ୍ରୀଶ୍ରୀଠାକୁର –** ସୁକୃତି ଯେ ନାହିଁ ତାହା ଭାବ କାହିଁକି ? କିଛି ନ ରହିଲେ ଏଠାକୁ ଆସିଲ କାହିଁକି ? ଟିକିଏ ଅଗ୍ନି ରହିଲେହିଁ ହୁଏ। ଦିଆସିଲି କାଠିର ଏତେ ଟିକିଏ ଅଗ୍ନିରେ ମଧ୍ୟ ଦୁନିଆଟାକୁ ପୋଡ଼ି ଦିଆଯାଇପାରେ ନାହିଁକି ? ତୁମେ କ'ଣ ମନେ କର ଏତେଟିକିଏ ଅଗ୍ନି ବି ତୁମ ଭିତରେ ନାହିଁ ? ଆଉ, ମଣିଷ ଯେତେ ସୁକେନ୍ଦ୍ରିକ ହୁଏ, ସେତେହିଁ ଅଗ୍ନି (ତେଜ) ବଢ଼େ। ଉମର ଖୈୟାମ୍‌ରେ ଅଛି 'ଦୂରର ବାଦ୍ୟ ଶୁଣି ଲାଭ କ'ଣ, ମଝିରେ ଯେ ବିରାଟ ଫାଙ୍କ।' ପୂର୍ବ ଜନ୍ମ-ଟନ୍ମ ଟାଣି ଆଣି ଲାଭ କ'ଣ ? ହାତରେ ଯେଉଁଟା ଅଛି ସେହିଟିକୁ କାର୍ଯ୍ୟରେ ଲଗାଅ।

ଆ.ପ୍ର. ୨୦/୩.୧୨.୧୯୫୦

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ତାଙ୍କୁ ଗଭୀର ଭାବରେ ପାଇବାକୁ ଗଲେ କ'ଣ କରିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର –** ନାମଧ୍ୟାନ କରିବ। ଠିଆରି ହେବ। ଅଚ୍ୟୁତ ଅନୁରାଗ ନହେଲେ ହୁଏ ନାହିଁ। ମୁଁ ଅଛି, ମୋର ପରିବାର-ପରିବେଶ ଅଛି। ମୋର କୁକୁରଟିକୁ ପର୍ଯ୍ୟନ୍ତ ଯଦି ଭଲ ନ ପାଅ ତାହାହେଲେ ମୋତେ ଭଲପାଇବା ହେବ ନାହିଁ। କାହାକୁ ଭଲପାଇବାକୁ ଗଲେ ସେ ଯେଉଁଥିରେ ସ୍ୱାର୍ଥାନ୍ୱିତ ତାହା ଭଲପାଇବାକୁ ହେବ। ଆ.ପ୍ର. ୨୦/୨.୧.୧୯୫୧

**ପ୍ର. – ଇଷ୍ଟାନୁସରଣର ସାଧନା କ'ଣ ବିବାହିତ ଜୀବନ ଅପେକ୍ଷା ଅବିବାହିତ ଜୀବନରେ ବେଶି ଫଳପ୍ରସୂ ହୁଏ ?**

**ଶ୍ରୀଶ୍ରୀଠାକୁର** – ଅନ୍ତତଃ ମୁଁ ଏହି ଟିକକ କହିପାରେ ଯେ, ମୁଁ ଯେଉଁଗୁଡ଼ିକ ଦେଖିଛି, ବୁଝିଛି, ପାଇଛି, କହିଛି, ବିବାହ କରିଲେ ମଧ୍ୟ ତାହା ହେବାରେ କୌଣସି ବାଧା ନାହିଁ। ବିବାହ ସେ ପଥରେ କୌଣସି ଅନ୍ତରାୟ ସୃଷ୍ଟି କରେ ନାହିଁ। ଆ.ପ୍ର. ୨୦/୯.୧.୧୯୫୧

**ପ୍ର. – ଇଷ୍ଟାନୁସରଣର ମଧ୍ୟ ଦେଇ ସୁକେନ୍ଦ୍ରିକ ହେବା ମାନେ କ'ଣ ?**

**ଶ୍ରୀଶ୍ରୀଠାକୁର** – ସୁକେନ୍ଦ୍ରିକ କହିଲେ ଅନେକେ ମନେ କରନ୍ତି ସତ୍ ଚିନ୍ତାପରାୟଣ ହେବା। କିନ୍ତୁ ତାହା ନୁହେଁ। ସକ୍ରିୟ ଭାବରେ ବାସ୍ତବ ଇଷ୍ଟାର୍ଥସମ୍ବେଗୀ ହେବା ଦରକାର। ହଗିବା, ମୁତିବା, ଚାଲିବା, ଖାଇବା, ପିନ୍ଧିବା, କାମଦାମ ସବୁଟାର ମଧ୍ୟରେ ସେହି ଫନ୍ଦି ନେଇ ଚାଲିବା ଦରକାର। ଇଷ୍ଟାର୍ଥପୂରଣୀ ସମ୍ବେଗ ଓ ଇଷ୍ଟାର୍ଥପୋଷଣୀ ଚରିତ୍ର – ବାକ୍ୟରେ, ବ୍ୟବହାରରେ, କର୍ମରେ – ଏହାହିଁ ସାର କଥା। ଏହାର ନାମ ସୁକେନ୍ଦ୍ରିକ ହେବା।

ଆ.ପ୍ର. ୨୦/୧୮.୧.୧୯୫୧

**ପ୍ର. – ଇଷ୍ଟଙ୍କୁ ଭଲପାଇବାର ପ୍ରକୃତିଟା କିପରି ହେବା ଦରକାର ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟଙ୍କୁ ସମଗ୍ର ସତ୍ତା ଦେଇ, ଇଚ୍ଛା ଦେଇ ଏବଂ ଅଚ୍ୟୁତ ଭାବରେ ଭଲପାଇବାକୁ ହୁଏ। ଅବସାଦ ଆସିଲା, ରାଗ ଆସିଲା, ଦୁଃଖ ଆସିଲା, ଉତ୍ତେଜନା ଆସିଲା, କିମ୍ବା କେହି କୋଟିଏ ଟଙ୍କା ଦେଲା ଆଉ ତାଙ୍କୁ ଛାଡ଼ି ଦେଲି, ତାହା ହେବ ନାହିଁ। ଇଷ୍ଟାର୍ଥକୁହିଁ ନିଜର ସ୍ୱାର୍ଥ କରିଚାଲିବାକୁ ହେବ। ତୁମେ ବଡ଼ଲାଟ ହୁଅ, ଲାଟ ସାହେବ ହୁଅ, ରାଜା ହୁଅ, ବା କୁଲି ହୁଅ, ମୁଟିଆ-ମଜୁରୀ ହୁଅ, ଯାହା ହୁଅ, ସେଥିରେହିଁ ତୁମେ ଅଶେଷ ତୃପ୍ତି ନେଇ ଚାଲିବ। କାରଣ, ତାଙ୍କୁ ନେଇ ତୁମର ହୃଦୟ ଭରପୂର। ତାଙ୍କର ସ୍ୱାର୍ଥପ୍ରତିଷ୍ଠାରେହିଁ ବିଭୋର ହୋଇ ସୁଖରେ ରହିବ।

ଆ.ପ୍ର. ୨୦/୫.୨.୧୯୫୧

**ପ୍ର. – ଇଷ୍ଟାନୁସରଣର ସାଧନାରେ ଯେଉଁ ଧ୍ୟାନ କରିବାକୁ ହୁଏ ସେଥିରେ କି ଭାବରେ କ'ଣ ଚିନ୍ତା କରିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – ଆମେ ଯେଉଁ ଧ୍ୟାନ କରୁ ସେଥିରେ ଯଦି ଏହି ଭାବରେ ଚିନ୍ତା କରୁ ଯେ – କ'ଣ କରିଛି, କ'ଣ କରି ନାହିଁ, କ'ଣ କରିବାକୁ ହେବ, ଇଷ୍ଟ କ'ଣ କରିବାକୁ କହିଛନ୍ତି, କାହା ପାଖକୁ ଯିବି, କେଉଁ ଭାବରେ କରିବି, କେଉଁ ପ୍ରବୃତ୍ତିର କାରଣରୁ କାର୍ଯ୍ୟରେ ଅସୁବିଧା ହେଉଛି। ଏହି ଭାବରେ ସବୁଗୁଡ଼ିକ ଯଦି adjust (ନିୟନ୍ତ୍ରଣ) କରି concentric (ସୁକେନ୍ଦ୍ରିକ) କରି ତୋଳାଯାଏ ଏବଂ ସେହି ସିଦ୍ଧାନ୍ତ ଅନୁଯାୟୀ କାର୍ଯ୍ୟ କରାଯାଏ, ତେବେ



ଜଗତର ଜିନିଷ ହୁଏ। ଏହା ଭିତରେ ସବୁଗୁଡ଼ିକ ପ୍ରବୃତ୍ତି ମଧ୍ୟ ଖେଳ କରୁଥାଏ ଏବଂ ଇଷ୍ଟାନୁଗ ଚିନ୍ତାର ମଧ୍ୟ ଦେଇ ଗୋଟିଏ meaningful adjustment (ସାର୍ଥକ ବିନ୍ୟାସ) ହେଉଥାଏ। ଏହାହିଁ ହେଲା ସହଜ ପନ୍ଥା। ଏଥି ସହିତ ଅର୍ଥଭାବନା ସହ ଜପ କରିବାକୁ ହୁଏ। ଏହା ଭିତର ଦେଇ brain (ମସ୍ତିଷ୍କ) sensitive (ସାଡ଼ା ପ୍ରବଣ), receptive (ଗ୍ରହଣକ୍ଷମ), keen (ତୀକ୍ଷ୍ଣ) ଓ sharp (ଧାରୁଆ) ହୋଇ ଉଠେ। Habits-behaviour ମଧ୍ୟ (ଅଭ୍ୟାସ-ବ୍ୟବହାର ମଧ୍ୟ) adjusted (ନିୟନ୍ତ୍ରିତ) ହେଉଥାଏ। ଚରିତ୍ର ଉନ୍ନତିମୁଖୀ ରୂପ ନିଏ।

ଆ.ପ୍ର. ୨୦/୧୩.୨.୧୯୫୧

**ପ୍ର. – ଇଷ୍ଟାନୁସରଣର ଆହ୍ୱାନରେ ସାଡ଼ା କେତେବେଳେ ମିଳେ ?**

**ଶ୍ରୀଶ୍ରୀଠାକୁର** – ତୁମେ ଯଦି ଦୁଃଖ, କଷ୍ଟ, ଅନାହାର, ଲାଞ୍ଛନା, ଗଞ୍ଜନା ସବୁଟା ପାଇଁ ପ୍ରସ୍ତୁତ ନ ରୁହ, ତେବେ ତୁମର ଡାକରେ କେହି ସାଡ଼ା ଦେବେ ନାହିଁ। ତୁମର ମା, ବାପା, ଆତ୍ମୀୟ-ସ୍ୱଜନ ସେମାନେ ହୁଏତ ଦୁଃଖ-ଦାରିଦ୍ର୍ୟରେ ନିଷ୍ପେଷିତ ହୋଇଯିବେ। ତଥାପି ସେ ଦିଗକୁ ଭ୍ରୂକ୍ଷେପ ନ କରି, ତୁମକୁ ତୁମର mission (ଉଦ୍ଦେଶ୍ୟ) ନେଇ ଚାଲିବାକୁ ହେବ। ଯେପରି ବାଇବେଲରେ ଅଛି, ମୁଁ ତୁମମାନଙ୍କୁ ସୁଖ ଦେବାକୁ ଡାକି ନାହିଁ, ଦୁଃଖ-ଦୁର୍ଦ୍ଦଶାହିଁ ତୁମମାନଙ୍କ ପଥର ସାଥି ହେବ। ଖାଇବାକୁ ପାଇବ ନାହିଁ, ତୃଷ୍ଣାରେ ଛାତି ଫାଟିଯିବ, ହୁଏତ ଏକଗ୍ଲାସ ପାଣି ମଧ୍ୟ କେହି ଦେବେ ନାହିଁ, ପଥେ-ପଥେ ହୁଏତ ବିଘ୍ନହିଁ ତୁମକୁ ଶେଷ କରି ଦେବା ପାଇଁ ଚାହିଁବ, ତଥାପି ତୁମକୁ ଚାଲିବାକୁ ହେବ। – ଏହି ରକମ ଯଦି ରାଜି ଥାଅ ତେବେ ଆସ। ଆଉ, ତୁମ ପରି ଆହୁରି ଜୁଟାଇ ନେଇ ସେମାନଙ୍କୁ ମଧ୍ୟ ଏହି ଭାବରେ ମତାଇ ତୋଳ। ସମସ୍ତେ ମିଶି ଗୋଟାଏ ଆସ୍ଥାନ (ସ୍ଥାନ) କରି ନେଇ ଏହି ଭାବରେ କାର୍ଯ୍ୟ ଆରମ୍ଭ କରି ଦିଅ। ଦେଖିବ ସାରା ଦେଶ ଓଲଟ-ପାଲଟ ହୋଇଯିବ।

ଆ.ପ୍ର. ୨୦/୫.୩.୧୯୫୧

**ପ୍ର. – ଇଷ୍ଟାନୁସରଣର ପଥରେ ପ୍ରବୃତ୍ତିଗୁଡ଼ିକୁ ଦମନ କରି ଚାଲିବା ବ୍ୟତୀତ କ'ଣ ସେଗୁଡ଼ିକ ନିୟନ୍ତ୍ରିତ ହୁଏ ? ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – Suppression (ନିରୋଧ ବା ଦମନ) ଜିନିଷଟାହିଁ ବିଭିନ୍ନ ଗୋଳମାଳ ସୃଷ୍ଟି କରେ। ହୁଏତ ଗୋଟିଏ ଜାଗାରେ ଘୃଣା ସହକାରେ ଜୋର କରି ବାରମ୍ବାର ଖାଇଲି। ତାହା ହୁଏତ ରୋଗ ଆକାରରେ ରୂପ ନେଲା। Unhealthy sex suppression (ଅସ୍ୱାସ୍ଥ୍ୟକର ଯୌନ ଅବଦମନ)ରେ impotence (ନପୁଂସକତା) ପର୍ଯ୍ୟନ୍ତ ଆସେ। କିନ୍ତୁ କୌଣସି ଆଦର୍ଶଙ୍କ ପ୍ରତି ଯଦି ଟାଣ ଥାଏ, ଆଉ ତାଙ୍କର ପରିପନ୍ଥୀ ଯାହା, ତାହା ପରିହାର

କରି ଚାଲିଲେ, ଅନୁକୂଳ ଯାହା ତାହା ଗ୍ରହଣ କରି, ସେଠାରେ ବୋଧ ଫୁଟିଉଠେ, suppression (ଅବଦମନ) ହୁଏ ନାହିଁ । କହିବାକୁ ହୁଏ ମୁଁ ତୁମକୁ ଭଲପାଏ। ଇଷ୍ଟଙ୍କ ପଥରେ ଚାଲିବାକୁ ଯାଇ ଅନିୟନ୍ତ୍ରିତ ପ୍ରବୃତ୍ତିଗୁଡ଼ିକ ଜାଗି ଉଠେ, ସେଗୁଡ଼ିକ ବାଧା ସୃଷ୍ଟି କରିବାକୁ ଚାହେଁ। କିନ୍ତୁ ଭକ୍ତ ସେଗୁଡ଼ିକୁ ପ୍ରଶ୍ରୟ ଦେଇପାରେ ନାହିଁ। ଗୋଟିଏ ଝିଅ ପାଖକୁ ଯାଇ ପୂର୍ବଅଭ୍ୟାସ ବଶତଃ କାମନା ଜାଗି ଉଠିଲା, କିନ୍ତୁ ସେତେବେଳେହିଁ ସେ କହିବ, ମୁଁ କାମିନୀ ଚାହେଁ ନା, ମୁଁ ମା' ଚାହେଁ, ମୋ ଠାକୁର ତାହାହିଁ କହନ୍ତି। ମସ୍ତିଷ୍କ ଲେଖାଗୁଡ଼ିକ ଏହିଭାବରେ adjusted (ନିୟନ୍ତ୍ରିତ) ହୁଏ। ସେଥିପାଇଁ କୁହାଯାଏ ଆତ୍ମାରାମ ଅର୍ଥାତ୍ ଇଷ୍ଟଙ୍କୁହିଁ ଭଲପାଇ ସୁଖ ପାଏ। ତାଙ୍କ ପକ୍ଷରେ profitable (ଉପଚୟୀ) ଯାହା ତାହାହିଁ କରେ। ଅନ୍ୟ କୌଣସି ଉପଭୋଗ ତାକୁ ଆକର୍ଷଣ କରିପାରେ ନାହିଁ।

ଆ.ପ୍ର. ୨୦/୧୬.୬.୧୯୫୧

**ପ୍ର. – ଇଷ୍ଟାନୁସରଣର ପଥରେ ସଂହତି କିପରି ଭାବରେ ବଜାୟ ରହିବ ?**

**ଶ୍ରୀଶ୍ରୀଠାକୁର** – ସଂହତି ହେଲା ବଡ଼ ଜିନିଷ। ସମସ୍ତେ ଦଳ ବାନ୍ଧି ଚାଲିବା ଦରକାର। ଏକାନୁରକ୍ତିଠାରୁହିଁ ଐକ୍ୟ ଆସେ। ବ୍ୟକ୍ତି-ବୈଶିଷ୍ଟ୍ୟ ସେତେବେଳେ ସମଷ୍ଟି-ବ୍ୟକ୍ତିତ୍ୱରେ ଉଦ୍‌ଭିନ୍ନ ହୋଇଉଠେ। ଏହାପାଇଁ ଦରକାର ଇଷ୍ଟାର୍ଥପରାୟଣ ହେବା। ନିଜର ସ୍ୱାର୍ଥ ବା ଅର୍ଥ ଅବଜ୍ଞା କରି ମଧ୍ୟ ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠା କରିବାକୁ ହୁଏ। ଏଥିରେ ପ୍ରବୃତ୍ତିଗୁଡ଼ିକ ନିୟନ୍ତ୍ରିତ ହୁଏ। ତାହା ଭିତର ଦେଇ ଆସେ ଇଷ୍ଟାନୁବର୍ତ୍ତିତା। ଶ୍ୟାମ ରହିବ କି କୁଳ ରହିବ ଏହିପରି ଦୋଦୁଲ୍ୟମାନ ଭାବ ରଖିଲେ ଚଳିବ ନାହିଁ। ଉନ୍ନତିର କୀଳକ ହେଲା ଅଚ୍ୟୁତ ଇଷ୍ଟପ୍ରାଣତା। କଥାବାର୍ତ୍ତା, କାର୍ଯ୍ୟ, ବ୍ୟବହାରର ଭିତର ଦେଇ ଇଷ୍ଟପ୍ରାଣତାର ଝଲକ ଫୁଟି ଉଠିବା ଦରକାର। ଆମ୍ଭମାନଙ୍କ ଜୀବନରେ ଆଲୋକ, ଅନ୍ଧକାର, ବାଦଲ ଚାଲୁଥାଏ, ସଂଶୟ, ଅବସାଦ ଆସେ। ଇଷ୍ଟାର୍ଥହିଁ ସ୍ୱାର୍ଥ ହୋଇ ଉଠିଲେ କାମ ସିଦ୍ଧ। ...ସଂହତିରେ ଅଭାବ ରହିଲେ ବୁଝିବାକୁ ହେବ ଇଷ୍ଟାର୍ଥପ୍ରାଣତାରେ ଗଲତି ଅଛି। କାମ, କ୍ରୋଧ, ଲୋଭ – ଏହି ତିନୋଟିହିଁ ସଂହତିର ପ୍ରଧାନ ଅନ୍ତରାୟ।

ଆ.ପ୍ର. ୨୦/୧୬.୪.୧୯୫୧

**ପ୍ର. – ଇଷ୍ଟଙ୍କର ସ୍ୱାର୍ଥ ଓ ପ୍ରତିଷ୍ଠା ସମ୍ବନ୍ଧରେ କି ଭାବରେ ସଜାଗ ଓ ସଚେତନ ହୋଇହୁଏ ?**

**ଶ୍ରୀଶ୍ରୀଠାକୁର** – ଗୋଟିଏ ଝିଅପିଲା ଯେତେବେଳେ ସ୍ୱାମୀ ଘରକୁ ଯାଏ, ତା' ସହିତ ତା'ର ଆଗରୁ କୌଣସି ସଂପର୍କ ନ ଥାଏ। କିନ୍ତୁ ସେଠାକୁ ଯାଇ ଶ୍ୱଶୁର, ଶାଶୁ, ଦେଓର, ନଣନ୍ଦ, ସ୍ୱାମୀ ସମସ୍ତଙ୍କୁ ଦେଖୁ-ଦେଖୁ କିପରି ନିଜର କରିନିଏ। ତାପରେ ସେହି ଘର ଓ



ସେହି ଘରର ସବୁ ତାର ନିଜସ୍ୱ ହୋଇଯାଏ। ସେହିଟିହିଁ ତାର ସ୍ୱାର୍ଥ ହୁଏ। ସେହି ସ୍ୱାର୍ଥରେ ଟିକିଏ ଆଘାତ କରିଲେ ସେ ଆଉ ଛାଡ଼େନା। ପାନରୁ ଚୂନ ଟିକିଏ ବି ଖସିବାକୁ ଦିଏନା। ଏଇଟ ଏତେ ସହଜ ବ୍ୟାପାର। ଇଷ୍ଟଙ୍କୁ ନେଇ ପୁରୁଷର ଏହି ଟିକକ ହେଲେହିଁ ତ ହେଲା। ମୁଁ କହେ, ଝିଅପିଲା ମାନେ ଯାହା ପାରନ୍ତି, ଆମ୍ଭେମାନେ ତାହା ପାରିବା ନାହିଁ କାହିଁକି ? ଆମ୍ଭେମାନେ ତ ସେମାନଙ୍କ ପେଟରୁହିଁ ଜନ୍ମିଛୁ। ...ଯାହା କିଛି କରୁ, concentric (ସୁକେନ୍ଦ୍ରିକ) ହେବା ଦରକାର, ଇଷ୍ଟାର୍ଥପରାୟଣ ହେବା ଦରକାର। କଠିନ କିଛିହିଁ ନୁହେଁ, ଅନ୍ୟ ରକମ ନେଇ ଥାଉ, ସେଥିପାଇଁ ସହଜଟି କଠିନ ହୋଇ ଛିଡ଼ାହୁଏ । ଆମେମାନେ ଜାଣୁନା କିପରି ଭାବରେ ଆମମାନଙ୍କର ନିଜ ନିଜର ସ୍ୱାର୍ଥ ପୂରଣ କରିବାକୁ ହୁଏ।

ଆ.ପ୍ର. ୨୦/୨୧.୪.୧୯୫୧

**ପ୍ର. – ଇଷ୍ଟାନୁସରଣର ସୁବିଧା ପାଇଁ କ'ଣ ନିର୍ଜନରେ ସାଧନା କରିବାର ପ୍ରୟୋଜନ ହୁଏ ନା ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟସଙ୍ଗ, ନିର୍ଜନ-ସାଧନ, ବୃହତ୍ତର ପରିବେଶର ସେବା, ପାରିବାରିକ ସଙ୍ଗ – ଏହି ଚାରୋଟି ପାଖାପାଖି ଚଳାଇ ନେଇ ଯିବାକୁ ହୁଏ। ତାଛଡ଼ା ଅଲଗା ପ୍ରୟୋଜନ ହୁଏନା। କ୍ଳାନ୍ତି ଯେତେବେଳେ ଆସେ, ସେତେବେଳେ ମନ କେବଳ ନିର୍ଜନତା ଚାହେଁ। କିନ୍ତୁ ନିର୍ଜନ ସାଧନା ସଙ୍ଗେ-ସଙ୍ଗେ ଜୋର କରି କାମଦାମରେ ଲିପ୍ତ ରହିବାକୁ ହୁଏ। ତା ନହେଲେ ସାଧନା ମଧ୍ୟ ଠିକ୍ ରକମ ହୁଏନା। ...କାମଦାମ ଛଡ଼ା କେବଳ ନିର୍ଜନ ସାଧନା କରି କାହାରି କିଛି ହୁଏନା। ତେବେ ଏହି ଚାରିଧରଣର ଜୀବନ ବଜାୟ ରଖିବା ଭଲ। ଆଉ ଗୋଟିଏ କଥା ଏହି ଯେ, ତୁମେ ଯେତେ ଯାହା କର ନା କାହିଁକି, ସବୁକିଛି ଇଷ୍ଟାର୍ଥେ ଉପଚୟୀ ହେବା ଦରକାର। ତୁମର ଯଦି ପ୍ରତିଷ୍ଠା ହୁଏ, ଅଥଚ ସେ ପ୍ରତିଷ୍ଠାରେ ଯଦି ଇଷ୍ଟପ୍ରତିଷ୍ଠା ନ ହୁଏ, ଜାଣିବ ସେ ପ୍ରତିଷ୍ଠାର କୌଣସି ଦାମ୍ ନାହିଁ।

ଆ.ପ୍ର. ୨୦/୨୪.୪.୧୯୫୧

**ପ୍ର. – ଇଷ୍ଟାନୁସରଣର ପଥରେ ଦୁଃଖ-କଷ୍ଟ କେତେବେଳେ ସହ୍ୟ ହୁଏ ?**

**ଶ୍ରୀଶ୍ରୀଠାକୁର** – ଅନୁରାଗ ରହିଲେ, କ୍ଳେଶସୁଖପ୍ରିୟତା ରହେ। ହୁଏତ ତୁମେ ତିରିଶ ମାଇଲ ଚାଲି ଚାଲି ଆସିଛ, ଦେହ-ହାତ-ଗୋଡ଼ ବଥା ହୋଇଯାଇଛି, ଶୋଷରେ ଛାତି ଫାଟି ଯାଉଛି, ତଥାପି ହୃଦୟ ଭିତରୁ ଆନନ୍ଦର ଅନୁଭବ ହେଉଛି। ଦେହ ଟିପି ଦେଲେ ଯେପରି ଭଲ ଲାଗେ, ସେହିପରି ଆରାମ ବୋଧ ହେଉଛି। ଲଙ୍କା ଦହନ କରିବାକୁ ଯାଇ ହନୁମାନର ମୁହଁ ପୋଡ଼ିଗଲା, କିନ୍ତୁ ସେ ଦିଗକୁ ଖିଆଲହିଁ ନାହିଁ। ଗୋଟିଏ କାମ ହାସଲ ହୋଇଛି, ସେଥିରେହିଁ ସେ ଆନନ୍ଦରେ ମତୁଆଲା।

ଆ.ପ୍ର. ୨୦/୫.୫.୧୯୫୧

**ପ୍ର. – ଇଷ୍ଟଙ୍କୁ ମଝିରେ ମଝିରେ ଭୁଲିଯିବାର କାରଣ କ'ଣ ?**

**ଶ୍ରୀଶ୍ରୀଠାକୁର** – ଅନୁରାଗହିଁ ମଣିଷକୁ conscious (ସଚେତନ) ରଖେ। ତାହା ଯେତେ ବିପଥରେ ଚାଲିଯାଏ, ସେତେ ଭୁଲ ହୁଏ। ଯାହା କର, ଉଦ୍ଦେଶ୍ୟ ଯଦି ଥାଏ ଇଷ୍ଟାର୍ଥକୁ ପୂରଣ କରିବି, ସେତେବେଳେ ଭୁଲ କମ୍ ହୁଏ।

ଆ.ପ୍ର. ୨୦/୨୦.୫.୧୯୫୧

**ପ୍ର. – ଇଷ୍ଟାନୁସରଣର ଇଚ୍ଛା ଥିବା ସତ୍ତ୍ୱେ ମଧ୍ୟ ଅନେକ ସମୟରେ ଯେ କରିହୁଏ ନାହିଁ – ଏହା କିପରି ଦୂର ହେବ ?**

**ଶ୍ରୀଶ୍ରୀଠାକୁର** – ଏହି ଧାରଣା ରଖିବା ଦରକାର ଇଷ୍ଟାର୍ଥପରାୟଣତାହିଁ ମୋର ସମ୍ପତ୍ତି ଏବଂ ଯିଏ ବା ଯାହା ମୋର ଏହି ଇଷ୍ଟାର୍ଥପରାୟଣତାର ପୋଷକ ଓ ସହାୟକ, ସେ ହିଁ ମୋର ଆତ୍ମୀୟ ବା ନିଜର। ତା'ଛଡ଼ା ଆତ୍ମୀୟ-ସ୍ୱଜନ, ବନ୍ଧୁ-ବାନ୍ଧବ, ଟଙ୍କା-ପଇସା, ଚାକିରୀ-ବାକିରୀ କିଛି ହିଁ କିଛି ନୁହେଁ। ଏକ ଲହମାରେ ସବୁ ଛାଡ଼ି ଦେଇପାରେ। ଚରିତ୍ରରେ ଏହିପରି କୌଶଳ ମହଜୁତ ରଖି ସବୁ ସମୟରେ ଚାଲିବାକୁ ହୁଏ। ମୂଢ଼ ମୋହ ଧର୍ମାର୍ଥ ପୂରଣ କରିବାକୁ ଦିଏ ନାହିଁ।

ଆ.ପ୍ର. ୨୦/୩୧.୫.୧୯୫୧

**ପ୍ର. – ଇଷ୍ଟାନୁସରଣର ସାଧନାରେ ନିତ୍ୟକରଣୀୟ ଯେଉଁ ଧ୍ୟାନ ସେଥିରେ କେତେବେଳେ ଇଷ୍ଟମୂର୍ତ୍ତିର ଦର୍ଶନ ହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟମୂର୍ତ୍ତି ଦର୍ଶନ ସହଜରେ ହୁଏ ନାହିଁ। ଅନ୍ୟ କେତେ କ'ଣ ଆସେ, କିନ୍ତୁ ସେହି ଜିନିଷ ସହଜରେ ଆସେ ନାହିଁ। ତାହା ଆସିବାକୁ ଗଲେ ବୃତ୍ତି-ପ୍ରବୃତ୍ତି ସହ ସମସ୍ତ ମନଟିକୁ ଇଷ୍ଟସ୍ୱାର୍ଥପରାୟଣ କରି ତୋଳିବାକୁ ହେବ, ତାପରେ analitically ଓ synthetically (ବିଶ୍ଳେଷଣାତ୍ମକ ଓ ସଂଶ୍ଳେଷଣାତ୍ମକ ଭାବରେ) ତାଙ୍କୁ ବୋଧ କରିବାକୁ ହୁଏ। ଆଉ, ଏହି ବୋଧହିଁ ଫୁଟି ଉଠେ ଏହି ସଂହତ ମୂର୍ତ୍ତିରେ। ଏହା ସହଜ କଥା ନୁହେଁ। ପ୍ରବଳ ଅନୁରାଗ ଛଡ଼ା ହୁଏନାହିଁ।

ଆ.ପ୍ର. ୨୦/୧୦.୬.୧୯୫୧

**ପ୍ର. – ଇଷ୍ଟାନୁସରଣରେ ନିତ୍ୟକରଣୀୟ ଯେଉଁ ନାମ ଜପ ତାହା ଅର୍ଥ ଭାବନାର ସହିତ କ'ଣ ପାଇଁ କରିବାକୁ ହୁଏ ? ଅର୍ଥ ଭାବନା ମାନେ କ'ଣ ?**

**ଶ୍ରୀଶ୍ରୀଠାକୁର** – ଅର୍ଥ ଭାବନାର ସହିତ କରିଲେ ନାମ ସାର୍ଥକ ହୁଏ। ଭାବନା ମାନେ ବୋଧ ଦେଇ ତାହା ବୁଝିବା । କରିବା ମଧ୍ୟ ଦେଇ ତାହା ହେବା।

ଆ.ପ୍ର. ୨୦/୨୨.୬.୧୯୫୧

**ପ୍ର. – ଇଷ୍ଟାନୁସରଣର ମୂଳ ଜିନିଷ କ'ଣ ?**

**ଶ୍ରୀଶ୍ରୀଠାକୁର** – ଶ୍ରଦ୍ଧା, ଭକ୍ତି, ଟାଣହିଁ ମୂଳ ଜିନିଷ। ରାମକୃଷ୍ଣଦେବ କହିଛନ୍ତି, ମା'ର



ସନ୍ତାନ ପ୍ରତି ଟାଣ, ସତୀ ସ୍ତ୍ରୀର ସ୍ୱାମୀ ପ୍ରତି ଟାଣ, ବିଷୟୀର ବିଷୟ ପ୍ରତି ଟାଣ – ଏହି ତିନି ଟାଣ ଏକତ୍ର ହେଲେ ଯେତେଟା ଟାଣ ହୁଏ, ଇଷ୍ଟଙ୍କ ପ୍ରତି ଯଦି ସେତେଟା ଟାଣ ହୁଏ, ତେବେ ତାଙ୍କୁ ଲାଭ ହୁଏ। ସେତେବେଳେ ପ୍ରବୃତ୍ତି-ନିୟନ୍ତ୍ରଣ ସ୍ୱତଃହିଁ ହୁଏ। ତାଙ୍କର ପରିପନ୍ଥୀ କିଛିହିଁ ଭଲ ଲାଗେ ନାହିଁ। ଏହି ଟାଣର ଉଦ୍‌ବୋଧନ ଯଦି ନ ହୁଏ, ତେବେ ତୁମେ ଲକ୍ଷେ ଶାସ୍ତ୍ର ପଢ଼, ବିଜ୍ଞାନ ପଢ଼, ଗବେଷଣା କର, ଜାଣିଥାଅ – ତାର କୌଣସି ମାନେ ହୁଏ ନାହିଁ, ସେଗୁଡ଼ିକ ଚରିତ୍ରରେ ଫୁଟି ଉଠେ ନାହିଁ। ଜାଣିବାଗୁଡ଼ିକ ଯଦି ଭକ୍ତିର ଭିତର ଦେଇ, କର୍ମର ଭିତର ଦେଇ, ଚରିତ୍ରରେ ମୂର୍ତ୍ତ ହୋଇ, ଇଷ୍ଟଙ୍କଠାରେ ସାର୍ଥକ ହୋଇ ନ ଉଠେ – ପରସ୍ପର ସଙ୍ଗତି ନେଇ – ତେବେ ସେ-ଜାଣିବାର କୌଣସି ଦାମ୍ ନାହିଁ। ସେଥିରେ ବିଚ୍ଛିନ୍ନ ପ୍ରବୃତ୍ତିର ଦେହରେ ହାତ ପଡ଼େ ନାହିଁ। ଅନୁରାଗ ଆସିଲେ ଲୁହା ବି ସୁନା ହୋଇଯାଏ। 'କୋଇଲା କି ମଇଲା ଛୁଟେ ଜବ୍ ଆଗ କରେ ପରବେଶ୍।'

ଆ.ପ୍ର. ୨୦/୨.୭.୧୯୫୧

**ପ୍ର. – ଇଷ୍ଟାନୁସରଣର ଉଦ୍ଦେଶ୍ୟ ଯଦି ଆତ୍ମପ୍ରତିଷ୍ଠା ହୁଏ ?**

**ଶ୍ରୀଶ୍ରୀଠାକୁର** – ଯେଉଁମାନେ ଆତ୍ମପ୍ରତିଷ୍ଠା କରିବାକୁ ଯାଆନ୍ତି, ସେମାନଙ୍କର ଆତ୍ମପ୍ରତିଷ୍ଠା ହୁଏ ନାହିଁ। କିନ୍ତୁ ଯେଉଁମାନେ ଇଷ୍ଟପ୍ରତିଷ୍ଠା କରିବାକୁ ଯାଆନ୍ତି, ଇଷ୍ଟପ୍ରତିଷ୍ଠାର ଭିତର ଦେଇ ସହଜରେହିଁ ସେମାନଙ୍କର ଆତ୍ମପ୍ରତିଷ୍ଠା ହୁଏ ଏବଂ ସେଥିରେ ବିପଦ ନଥାଏ।

ଆ.ପ୍ର. ୨୦/୧୦.୭.୧୯୫୧

**ପ୍ର. – ଇଷ୍ଟାନୁସରଣ ଓ ଇଷ୍ଟ-ଚିନ୍ତାରେ ସଂସାର-ଚିନ୍ତା ଯଦି ଆସି ବାଧା ଦିଏ ?**

**ଶ୍ରୀଶ୍ରୀଠାକୁର** – ସଂସାର-ଚିନ୍ତା କ'ଣ, ତାଙ୍କର ଚିନ୍ତା କରିବୁ, ତାଙ୍କ ପାଇଁ ସଂସାର କରିବୁ। ଆଉ, କେବଳ ନିଜର ସଂସାର ନେଇ ରହିବୁ ନାହିଁ। ଦଶଜଣଙ୍କ ସଂସାରର ଉନ୍ନତି ଯାହାଦ୍ୱାରା ହୁଏ, ସେହି ଚିନ୍ତାହିଁ କରିବୁ। ସେମାନଙ୍କର ସେବା କରିବୁ। ଏପରି ଭାବରେ ଚଳିବୁ, ଯାହାଦ୍ୱାରା ତୋର ଶତ୍ରୁ ମଧ୍ୟ ତୋତେ ଭଲପାଇବ। ଆଉ, ଯେଉଁଠାରେ ଯେଉଁ ଭାବରେ ବି ରହିବୁ ସର୍ବତ୍ର ସମସ୍ତଙ୍କ ମଧ୍ୟରେ ଈଶ୍ୱରଙ୍କ (ଇଷ୍ଟଙ୍କର) ପ୍ରତିଷ୍ଠା କରିବୁ।

ଆ.ପ୍ର. ୨୦/୭.୧୦.୧୯୫୧

**ପ୍ର. – କ'ଣ କରିଲେ ଇଷ୍ଟାନୁସରଣର ପଥରେ ସହନଶୀଳତା ବଢ଼େ ?**

**ଶ୍ରୀଶ୍ରୀଠାକୁର** – ଅଭ୍ୟାସ କରୁ-କରୁ ହୁଏ। ମଣିଷ ଯଦି କୌଣସି ଦୁର୍ବ୍ୟବହାର କରେ, ସେତେବେଳେ ଭାବିବା ଉଚିତ୍, ସେ ପ୍ରବୃତ୍ତି-ଅଭିଭୂତିର କାରଣରୁ ଏପରି କରୁଛି, ସେଥିପାଇଁ ମନରେ ଯେପରି କୌଣସି ବ୍ୟଥା ନ ନେଉ। ତାର ଅବସ୍ଥାଟା ଯେପରି ବୁଝୁ। ମଣିଷ ତ ପ୍ରବୃତ୍ତି ଅଭିଭୂତ ହୋଇ ଚାଲେହିଁ। କିନ୍ତୁ ଆମର ଏକମାତ୍ର ପ୍ରବୃତ୍ତିହିଁ ଯେପରି ଭଗବାନ (ଇଷ୍ଟ)

ହୁଅନ୍ତି । ତାଙ୍କୁ ନେଇ ଏବଂ ତାଙ୍କ ପାଇଁ ଯେପରି ସବୁ-କିଛି ହୁଏ । ଏହିଟା ହେଲା simplest complex (ସରଳତମ ପ୍ରବୃତ୍ତି) । ତାଙ୍କୁ ଭଲପାଇବୁ ଏବଂ ତାଙ୍କ ପାଇଁ ଦୁନିଆକୁ ଭଲପାଇବୁ । ଏହାଦ୍ୱାରା ଅନ୍ୟ ସବୁ ପ୍ରବୃତ୍ତି ସରଳ ହୋଇଉଠେ ।

ଆ.ପ୍ର. ୨୦/୯.୧୦.୧୯୫୧

**ପ୍ର. – ଇଷ୍ଟଙ୍କୁ ଧରି ଛିଡ଼ା ନ ହେଲେ ମଣିଷ କ'ଣ ପ୍ରକୃତରେ କୃତି ହୋଇପାରେ ନାହିଁ ?**

**ଶ୍ରୀଶ୍ରୀଠାକୁର** – ହୋଇପାରେ, କିନ୍ତୁ ଭାଙ୍ଗି ଯାଏ । ଦକ୍ଷ ଯେମିତି ଶିବଙ୍କୁ ଅସ୍ୱୀକାର କରିବା ଫଳରେ ତାର ଛାଗମୁଣ୍ଡ ହୋଇଗଲା । ଇଷ୍ଟହୀନ ଦକ୍ଷଚାରେ ଏହି ଦଶା ହୁଏ ।

**ପ୍ର. – ସଦ୍‌ଗୁରୁଙ୍କୁ (ଇଷ୍ଟଙ୍କୁ) ପାଇ ମଧ୍ୟ ଅନେକଙ୍କର ଜୀବନ ଯେ ସେପରି ଫୁଟି ଉଠେ ନାହିଁ, ସେଠାରେ କ'ଣ ବୁଝିବାକୁ ହେବ, ସେ ଠିକ୍‌ଭାବରେ ଧରି ନାହିଁ ?**

**ଶ୍ରୀଶ୍ରୀଠାକୁର** – ତା' ମାନେ ସେ ପାଇ ନାହିଁ, ସଦ୍‌ଗୁରୁ (ଇଷ୍ଟ) ତାର ଆପ୍ତ ହୋଇ ଉଠି ନାହାନ୍ତି । ଆପ୍ତ ହୋଇ ନ ଉଠିଲେ ସେ ଇଷ୍ଟାର୍ଥପରାୟଣ ମଧ୍ୟ ହୋଇଉଠେ ନାହିଁ ।

**ପ୍ର. – ଅନୁରାଗ ଛଡ଼ା ସିଏ କ'ଣ ଅନ୍ୟଭାବରେ ଆପ୍ତ ହୁଅନ୍ତି ନାହିଁ ? କେହି ଯଦି ଆର୍ତ୍ତ ହୁଏ ?**

**ଶ୍ରୀଶ୍ରୀଠାକୁର** – ଯେପରି କରି ଆପ୍ତ ହୁଏ, ସେମିତି ନ କଲେ କି ଆପ୍ତ ହୁଏ ? ଆର୍ତ୍ତ ହୋଇ ଆପ୍ତ ମନେ କରିଲେ ଦୁଇପଇସା ପାଇହିଁ ଖୁସି ହୋଇଯାଏ । ତାଙ୍କ ପାଇଁ କରିବାର ନିଶା ହୁଏନାହିଁ । ଅନୁରାଗ ଛଡ଼ା କ'ଣ ହୁଏ ? କାହାର ଅନୁରାଗ ଯଦି ଗଜାଏ, ଆଉ ସେ ଯଦି ଗୋଟିଏ ବିରାଟ ମଣିଷ ବି ହୁଏ, ଏବଂ ତିନି ଓଳି ଯଦି ସେ ଯୋତାମାଡ଼ ବି ଖାଏ ତଥାପି ତା'ର ମନ ଟଳେ ନାହିଁ, ସେ ନଡ଼େ ନାହିଁ । ବିଭିଷଣ ଯେ ଏତେ ବଡ଼ ମଣିଷ, ସେ ଯେତେବେଳେ ରାମଚନ୍ଦ୍ରଙ୍କ ପାଖରେ ଥିଲେ, କେତେଜଣ ତାଙ୍କୁ କେତେ ଲାଞ୍ଛନା, ଗଞ୍ଜନା, ଅପମାନ କରିଛନ୍ତି । କେତେ ସନ୍ଦେହ କରିଛନ୍ତି, କିନ୍ତୁ ସେ ତାଙ୍କ ଇଷ୍ଟାର୍ଥପରାୟଣ ଉଦ୍ଦେଶ୍ୟଠାରୁ ଗୋଟିଏ ଚୁଳ ମଧ୍ୟ ନଡ଼ି ନାହାନ୍ତି । ଏହାକୁହିଁ କହନ୍ତି ଆପ୍ତ ହେବା । ଏହାକୁହିଁ କହନ୍ତି ଅନୁରାଗ ।

ଆ.ପ୍ର. ୨୦/୨୨.୧୦.୧୯୫୧

**ପ୍ର. – ଇଷ୍ଟାନୁସରଣରେ ସାର୍ଥକ ହେବାର ତୁକ୍‌ଟା କ'ଣ ?**

**ଶ୍ରୀଶ୍ରୀଠାକୁର** – ସାର୍ଥକତାର ପ୍ରଥମ ତୁକ୍‌ହିଁ ହେଲା ଇଷ୍ଟସ୍ୱାର୍ଥୀ ହେବା, ଇଷ୍ଟଙ୍କୁ ନିଜର ସ୍ୱାର୍ଥ କରି ନେବା । ...ଅଳ୍ପ କେତେ ଜଣଙ୍କ ଭିତରେ ଯଦି ସେହି ଜିନିଷ ଥାଏ, ସେଥିରେ କ'ଣ ଯେ ହୋଇପାରେ କୁହାଯାଏ ନାହିଁ । ହନୁମାନ, ଉମର, ଉସମାନ, ଆବୁବକର



ଇତ୍ୟାଦିଙ୍କ ମଧ୍ୟରେ ଏହି ଜିନିଷଟି ଥିଲା । ଏହି ରକମଟା ରହିଲେ ଦୂରଦୃଷ୍ଟି, ଅନ୍ତଃଦୃଷ୍ଟି, ବୁଦ୍ଧି, ଚାତୁର୍ଯ୍ୟ, ସାହସ, ବୀର୍ଯ୍ୟ, ସବୁକିଛିହିଁ ବଢ଼ିଯାଏ ।

ଆ.ପ୍ର. ୨୧/୧୬.୪.୧୯୫୨

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ଅବସ୍ଥାନ-ସ୍ଥାନ ସମ୍ବନ୍ଧରେ କିପରି ମନୋଭାବ ଥିବା ଦରକାର ?**

**ଶ୍ରୀଶ୍ରୀଠାକୁର** – ଫାଙ୍କ୍ (ସମୟ) ପାଇଲେହିଁ ଚାଲିଆସିବାକୁ ହୁଏ । ମନେ କରିବାକୁ ହୁଏ, ଯେଉଁଠାରେ ଗୁରୁ ସେହିଟା ତୁମର କର୍ମସ୍ଥଳ, ଏହିଟାହିଁ ତୁମର ଘର ।

ଆ.ପ୍ର. ୨୧/୧୦.୫.୧୯୫୨

**ପ୍ର. – ଇଷ୍ଟାନୁସରଣରେ ତାଙ୍କ ସହିତ ସମ୍ପର୍କ କ'ଣ ଦୀକ୍ଷାଦାତା ଋତ୍ୱିକଙ୍କ ମାଧ୍ୟମରେହିଁ ଠିକ୍ ରଖିବାକୁ ହୁଏ ?**

**ଶ୍ରୀଶ୍ରୀଠାକୁର** – କାହାରି ମାଧ୍ୟମରେ ଗୁରୁ (ଇଷ୍ଟଙ୍କ) ସହିତ ସମ୍ପର୍କ ହେଲେ ସେହି ଭାବରେ ରଙ୍ଗୀନ୍ ହୋଇଯାଏ । ଗୁରୁଙ୍କ (ଇଷ୍ଟଙ୍କ) ସହିତ ସମ୍ପର୍କ ସିଧାସିଧି । କାହାରି ମାଧ୍ୟମରେ ଯିବାକୁ ହେଲେ ସର୍ବନାଶ । ସୂର୍ଯ୍ୟଙ୍କର ପ୍ରତ୍ୟେକଟି କିରଣହିଁ ସିଧାସିଧି ଆସେ । ଗୋଟିଏ କିରଣ ମଧ୍ୟ ଦେଇ ଆଉ ଗୋଟିଏ କିରଣ ଆସେ ନାହିଁ । ଋତ୍ୱିକଙ୍କ ମଧ୍ୟ ଦେଇ ମୋ ପାଖକୁ ଯେ ଆସିବ ତାହା କିନ୍ତୁ ନୁହେଁ । କାରଣ ସେମାନେ ଦୀକ୍ଷା ଦେଇ ନାହାଁନ୍ତି, ଦେଇଛି ମୁଁ । ପ୍ରତ୍ୟେକଙ୍କ ସହିତ ମୋର ସିଧାସିଧି ସମ୍ପର୍କ ରହିବା ଭଲ ।

ଆ.ପ୍ର. ୨୧/୧୧.୫.୧୯୫୨

**ପ୍ର. – ଇଷ୍ଟାନୁସରଣରେ କେତେବେଳେ ନିଃସନ୍ଦେହ ହୋଇହୁଏ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟାନୁରାଗ ଠିକ୍ ଠିକ୍ ଗଜାଇ ଉଠିଲେହିଁ ନିଃସନ୍ଦେହ ହୋଇହୁଏ । ମଣିଷ ଯେବେ ଇଷ୍ଟୀଚପା ହୁଏ, ସେବେ ତା'ର ସବୁ-କିଛି ଦେଇ ତାଙ୍କୁ ଉପଚୟୀ କରିବାକୁ ଚାହେଁ, ସେତେବେଳେ ଦ୍ୱିଧା ବୋଲି କିଛି ରହେ ନାହିଁ । ଆ.ପ୍ର. ୨୧/୨୯.୮.୧୯୫୨

**ପ୍ର. – ଇଷ୍ଟାନୁସରଣର କ୍ରମାଗତି କ'ଣ ପାଇଁ ବଜାୟ ରହେନା ?**

**ଶ୍ରୀଶ୍ରୀଠାକୁର** – କ୍ରମାଗତି ରହେନା; ଅନ୍ୟ ବିଷୟ ବଡ଼ ହୋଇଉଠେ । ଆଦର୍ଶଙ୍କଠାରେ (ଇଷ୍ଟଙ୍କଠାରେ) ଦୃଢ଼ ନହେଲେ, ଜ୍ୱଳନ୍ତ ଆକୂତି ନ ରହିଲେ କୌଣସି ବିଷୟ ଉପରେ ମଣିଷର ଆଧିପତ୍ୟ ଆସେ ନାହିଁ । ଅବସ୍ଥାର ଦାସ ହୋଇପଡ଼େ । ଆତ୍ମସ୍ୱାର୍ଥ ଆସିଲେ ସେତେବେଳେ ଭୁଲ ହୋଇଯାଏ । ଅର୍ଥ, ମାନ, ଯଶ, ଇତ୍ୟାଦିର ପ୍ରତ୍ୟାଶା ଆସିଲେ ସେତେବେଳେ ଆଉ ପାରେ ନାହିଁ । କିନ୍ତୁ ଆଉ ଦଶଜଣଙ୍କର ସ୍ୱାର୍ଥ ପାଇଁ କରିଲେ ଅସୁବିଧା ହୁଏ ନାହିଁ ।

**ପ୍ର. – ଇଷ୍ଟାନୁସରଣର ଜ୍ୱଳନ୍ତ ଆକୃତି କ'ଣ ବୁଦ୍ଧି କରି ବି ହୁଏ ?**

**ଶ୍ରୀଶ୍ରୀଠାକୁର** – ସବୁହିଁ ତ ବୁଦ୍ଧି କରୁ-କରୁ ହୁଏ । ବାରମ୍ବାର କରୁ-କରୁ ସେତେବେଳେ ନିଜ ତରଫରୁହିଁ ହୁଏ । ଗୋଟିଏ ଡାଳରେ କେତେ ପତ୍ର, ହୁଏତ ଅନୁମାନ କରିଲ, ଗଣିଲ, ପୁଣି ସେତେବେଳେ intution (ଅନ୍ତଃଦୃଷ୍ଟି) ପରି ହୋଇଯିବ । ପ୍ରତ୍ୟେକ ବ୍ୟାପାରରେହିଁ ଏହିପରି ହୁଏ । Mental blindness (ମାନସିକ ଅନ୍ଧତା) ଯେପରି କିଛି ପ୍ରକାରରେ ବି ନ ଆସେ । ସବୁ ସମୟ ସବୁ ଦିଗକୁ ତୀକ୍ଷ୍ଣ observation (ପର୍ଯ୍ୟବେକ୍ଷଣ) ରଖିବା ଦରକାର ।

ଆ.ପ୍ର. ୨୧/୧୦.୧୦.୧୯୫୨

**ପ୍ର. – ଇଷ୍ଟାନୁସରଣରେ ଇଷ୍ଟ କଥାର ମାନେ କ'ଣ ?**

**ଶ୍ରୀଶ୍ରୀଠାକୁର** – ସେ ହିଁ ଆଚାର୍ଯ୍ୟ, ସଦ୍‌ଗୁରୁ । ଆ.ପ୍ର. ୨୧/୧୫.୧୧.୧୯୫୨

**ପ୍ର. – ଇଷ୍ଟାନୁସରଣର ଭଲ ବୁଝି ମଧ୍ୟ ଯେଉଁମାନେ ଧରିପାରନ୍ତି ନାହିଁ ସେମାନଙ୍କର ଉପାୟ କ'ଣ ?**

**ଶ୍ରୀଶ୍ରୀଠାକୁର** – ସେମାନଙ୍କର ଉପାୟ ତୁମେମାନେ, ତୁମମାନଙ୍କର ସାହଚର୍ଯ୍ୟ, ତୁମମାନଙ୍କର ସଙ୍ଗ । ତୁମମାନଙ୍କୁ ଭଲପାଇ ସେମାନେ ବୁଝିବେ । ମଣିଷର ତପସ୍ୟା ବଣ-ଜଙ୍ଗଲରେ ନୁହେଁ, କର୍ମକ୍ଷେତ୍ର ମଧ୍ୟ ଦେଇ ନିଜକୁ ନିୟନ୍ତ୍ରଣ କରିବାରେହିଁ ତପସ୍ୟାର କାର୍ଯ୍ୟକାରିତା । ଦୁନିଆର କୋଳରେ ଯେଉଁମାନେ ଜନ୍ମୁଛନ୍ତି, ସେମାନେ ପ୍ରତ୍ୟେକେହିଁ ତୁମ ପକ୍ଷରେ ଅପରିହାର୍ଯ୍ୟ । କାହାକୁହିଁ ତୁମେ ବାଦ୍ ଦେଇ ପାରିବ ନାହିଁ । ଲାଗିରହି ପ୍ରତ୍ୟେକକୁହିଁ ଠିକ୍ କରିବା ଦରକାର । କାହାକୁ ଯଦି ରାସ୍ତାକୁ ଆଣି ନ ପାର, ତାହା ତୁମରହିଁ ଖାଁକତି (କମତି) । କ'ଣ ପାଇଁ ପାରିଲ ନାହିଁ, ଭାବିଚିନ୍ତି ନିଜକୁହିଁ adjust (ନିୟନ୍ତ୍ରଣ) କରିବା ଦରକାର । ଏହାହିଁ ତପସ୍ୟା ।

ଆ.ପ୍ର. ୨୧/୨୪.୧୧.୧୯୫୨

**ପ୍ର. – ଇଷ୍ଟାନୁସରଣର ଦୀକ୍ଷା ଯଦି କୌଣସି ଋତ୍ୱିକଙ୍କଠାରୁ ନ ନେବାକୁ ଇଚ୍ଛା କରେ ?**

**ଶ୍ରୀଶ୍ରୀଠାକୁର** – ମୁଁ ଯାହାକୁ ଚାହେଁ, ଭକ୍ତି କରେ ଅନୁସରଣ କରେ, ସେ ଯଦି କୌଣସି ଋତ୍ୱିକଙ୍କ ପାଖରୁ ଦୀକ୍ଷା ନେବାର ବିଧାନ ଦିଅନ୍ତି ସେଠାରେ ସେହି ଋତ୍ୱିକ କିନ୍ତୁ ଗୁରୁ ନୁହଁନ୍ତି । ତାଙ୍କର ଅବର୍ତ୍ତମାନରେ ଯେଉଁମାନେ ଦିଅନ୍ତି, ସେମାନେ ବି କିନ୍ତୁ ଋତ୍ୱିକ । ସେମାନେ କେବଳ ତାଙ୍କର (ଇଷ୍ଟଙ୍କର) ପଥ ବତାଇ ଦିଅନ୍ତି ମାତ୍ର । ସେମାନେ ମଧ୍ୟ ନିଜର ଧ୍ୟାନ କରିବାର କଥା କହନ୍ତି ନାହିଁ, ଇଷ୍ଟଙ୍କୁ ଧ୍ୟାନ କରିବାର କଥାହିଁ କହନ୍ତି । ଯେଉଁମାନେ ଅବିହିତ-ପୂର୍ବକ କରନ୍ତି, ସେମାନଙ୍କର ଅନେକଙ୍କର ବଂଶ ପଙ୍କ୍ତି ଲୋପ ପାଇଯାଏ । ଯେଉଁମାନେ ମୋର ଦୀକ୍ଷା



ଦିଅନ୍ତି, ସେମାନେ x, y, z ନୁହଁନ୍ତି; ସେମାନେ xa, xb, xc, x common (ସମସ୍ତଙ୍କ ମଧ୍ୟରେ) ଅଛନ୍ତି । Common (ଅଭିନ୍ନ) ଜିନିଷଟା ନେଇହିଁ ସେମାନେ ଛିଡ଼ା ହୁଅନ୍ତି ।

ଆ.ପ୍ର. ୨୧/୩.୨.୧୯୫୩

**ପ୍ର. – ଇଷ୍ଟାନୁସରଣ ପାଇଁ ଯେଉଁ ଇଷ୍ଟୀଚଳନରେ ଚାଲିବାକୁ ହୁଏ ସେହି ଇଷ୍ଟୀଚଳନ ମାନେ କ'ଣ ?**

**ଶ୍ରୀଶ୍ରୀଠାକୁର** – ଇଷ୍ଟୀଚଳନ ମାନେ ଶୁଭ ଚଳନ, ସପାରିପାର୍ଶ୍ୱିକ ଇଷ୍ଟାର୍ଥୀ ଚଳନ । ଏହା ଯଦି ଥାଏ, ତାହେଲେ ସବୁ ବଦଳି ଯାଏ । ଆମମାନଙ୍କ ଜୀବନର ତପସ୍ୟାହିଁ ହେଲା ଇଷ୍ଟାର୍ଥୀ ଚଳନ । ଭଲ-ମନ୍ଦ ଯାହା କିଛି ହେଉ ବା ଥାଉ, ତାକୁ ଇଷ୍ଟାର୍ଥୀ କରି ବିନ୍ୟସ୍ତ କରିବା ଦରକାର ।

ଆ.ପ୍ର. ୨୨/୬.୮.୧୯୫୩

**ପ୍ର. – ଇଷ୍ଟାନୁସରଣରେ କେଉଁ ଭାବରେ ତାଙ୍କ ସହିତ ଶୀଘ୍ର-ଶୀଘ୍ର ସଙ୍ଗତି ହୋଇପାରେ ?**

**ଶ୍ରୀଶ୍ରୀଠାକୁର** – ମାତାଲ ଯେପରି ସବୁ କାର୍ଯ୍ୟ ମଧ୍ୟରେ ଫାଙ୍କ୍ ଦେଖି ଚମ୍ପଟ ମାରି ମଦ ଦୋକାନରେ ପଶେ, ସେହିପରି ସବୁ କାର୍ଯ୍ୟ ମଧ୍ୟରେ ଫାଙ୍କ କରି ଏଠାକୁ ଚାଲିଆସିବାକୁ ହୁଏ । ଏହିଟାହିଁ ନିଜର ଘର ବୋଲି ଜାଣିବାକୁ ହୁଏ । ବଙ୍ଗାଳି ଯେପରି ଘର ମୁହାଁ ହୁଏ, ସେହିପରି ଘର ମୁହାଁ ହୋଇ ରହିବାକୁ ହୁଏ ।

ଆ.ପ୍ର. ୨୨/୧୯.୧୧.୧୯୫୩

**ପ୍ର. – ଇଷ୍ଟାନୁସରଣରେ ତାଙ୍କର ଭଲପାଇବା କ'ଣ ଚାଲିବାକୁ ଯଥେଷ୍ଟ ପ୍ରେରଣା ଯୋଗାଏ ନାହିଁ ?**

**ଶ୍ରୀଶ୍ରୀଠାକୁର** – ମୁଁ କହେ, ତୁମେ ତାଙ୍କୁ ଭଲପାଅ, ତୁମର ଭଲପାଇବା ଯେପରି ତାଙ୍କର ଭଲପାଇବା-ସାପେକ୍ଷ ନ ହୁଏ । ଅବଶ୍ୟ, ସେ ଭଲପାଆନ୍ତିହିଁ, ତାଙ୍କର ଭଲପାଇବାର ଦୌଲତରେହିଁ ବଞ୍ଚି ଅଛ । ମୁଁ କହେ, ସେ ଭଲପାଆନ୍ତୁ ବା ନ ପାଆନ୍ତୁ, ତାଙ୍କ ପ୍ରତି ତୁମର ଭଲପାଇବା ଯେପରି ଅକ୍ଷୁର୍ଣ୍ଣ ଥାଏ । ସେ ତୁମକୁ ମାରନ୍ତୁ, ଧରନ୍ତୁ, ଗାଳି ଦିଅନ୍ତୁ, ଅପଦସ୍ତ କରନ୍ତୁ, ନିର୍ଯ୍ୟାତନା କରନ୍ତୁ, କଷ୍ଟ ଦିଅନ୍ତୁ ଆଉ ଗୁହର ବାଲଟିର ଭିତରେହିଁ ବସାଇ ରଖନ୍ତୁ କିମ୍ବା ରାଜଭୋଗ ଓ ଦୁଗ୍ଧଫେନନିଭ ଶଯ୍ୟାରେହିଁ ରଖନ୍ତୁ, ତୁମର ଭଲପାଇବା ଯେପରି ସବୁ ଅବସ୍ଥାରେ ଅକ୍ଷୁର୍ଣ୍ଣ ରହେ । ତୁମେ ଯେପରି ଯେ-କୌଣସି ଅବସ୍ଥାରେ ଆତ୍ମପ୍ରସାଦ ନେଇ ଉଦାତ୍ତ କଣ୍ଠରେ କହିପାର – 'ଠାକୁର ! ମୁଁ ତୁମର, ଠାକୁର ! ମୁଁ ତୁମର, ଠାକୁର ! ମୁଁ ତୁମର ।'

ଆ.ପ୍ର. ୨୨/୩୦.୧୧.୧୯୫୩

**ପ୍ର. – ଇଷ୍ଟାନୁସରଣ ଜୀବନରେ ତାଙ୍କୁହିଁ ପ୍ରଥମ ଓ ପ୍ରଧାନ କରି ରଖିବାକୁ ହୁଏ କାହିଁକି ?**

**ଶ୍ରୀଶ୍ରୀଠାକୁର –** ତାହା concentric (ସୁକେନ୍ଦ୍ରିକ) ହେବା ପାଇଁ । ତୁମ ପାଖରେ କେହି ଯଦି ମୋ ଠାରୁ ଅଧିକ ହୁଏ କିମ୍ବା କେହି ଯଦି ତୁମ ପାଖରେ ମୋର ସମାନ ହୁଏ, ତେବେ ଟାଣଟା bifurcated (ଦ୍ୱିଧା ବିଭକ୍ତ) ହେବାର ସମ୍ଭାବନା ଥାଏ । ସେଥିରେ ପୂରା adjustment (ନିୟନ୍ତ୍ରଣ) ହୁଏ ନାହିଁ ।

ଆ.ପ୍ର. ୨୨/୧୬.୧୨.୧୯୫୩

